# ମୋ ସ୍ମୃତିର ଆଲେଖ୍ୟ

ଡକ୍ଟର ଦିଗରାଜ ବ୍ରହ୍ମା



ବ୍ରହ୍ମା ସାରସ୍ୱତ ପ୍ରକାଶନୀ
ମହାବୀର ବିହାର, କଳାରାହାଙ୍ଗ, ଭୁବନେଶ୍ୱର - ୭୫୧୦୨୪

# ମୋ ସ୍ମୃତିର ଆଲେଖ୍ୟ

ଡକ୍ଟର ଦିଗରାଜ ବ୍ରହ୍ମା
ମହାବୀର ବିହାର, କଳାରାହାଙ୍ଗ,
କିଟ୍, ଭୁବନେଶ୍ୱର - ୭୫୧୦୨୪
ଯୋଗାଯୋଗ ନଂ- ୯୪୩୭୭୮୪୫୯୨
୯୪୩୮୫୩୯୪୩୭
E.mail : drb432@gmail.com

ସଂପାଦନା :
ଶ୍ରୀମତୀ ସୌମ୍ୟା ସାରସ୍ୱତା ପଣ୍ଡା

ବୈଷୟିକ ସହାୟତା :
ଶ୍ରୀମତୀ ସନ୍ଧ୍ୟାରାଣୀ ପଣ୍ଡା
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାପାତ୍ର
ଶ୍ରୀମତୀ ଶ୍ୱେତା ମିଶ୍ର

ପ୍ରକାଶକ :
ଶ୍ରୀମତୀ ଜ୍ୟୋତ୍ସ୍ନାରାଣୀ ବ୍ରହ୍ମା
ବ୍ରହ୍ମା ସାରସ୍ୱତ ପ୍ରକାଶନୀ
ମହାବୀର ବିହାର, କଳାରାହାଙ୍ଗ
ଭୁବନେଶ୍ୱର - ୭୫୧୦୨୪

ମୁଦ୍ରଣ :
ଶ୍ରୀ ନୀଳକଣ୍ଠ ପ୍ରିଣ୍ଟର୍ସ
୧୬, ଭୌମନଗର,
ୟୁନିଟ୍ -୪, ଭୁବନେଶ୍ୱର
ମୋ - ୯୪୩୭୩୦୮୯୦୫

ପ୍ରଥମ ସଂସ୍କରଣ :
୨୦୧୭



ମୁଦ୍ରିତ ବହି ସଂଖ୍ୟା :
୧୦୦୦

ମୂଲ୍ୟ : ଟ. ୨୫୦/- ମାତ୍ର

# MO SMURTIRA ALEKSHYA

**Dr Digaraj Brahma**
Mahavir Vihar,
Kalarahanga, KIIT,
Bhubaneswar - 751024
Contact No. : 9437784592
9438539437
E.mail : drb432@gmail.com

**Editing:**
Mrs. Saumya Saraswata Panda

**Technical Support :**
Mrs. Sandhyarani Panda
Mrs. Annapurna Mahapatra
Mrs. Sweta Mishra

**Publisher :**
Mrs. Jyotshnarani Brahma
Brahma Saraswata Prakashani
Mahavir Vihar, Kalarahanga
Bhubaneswar - 751024

**Printed at :**
**Shree Nilakantha Printers**
16, Bhouma Nagar, Unit-4,
Bhubaneswar
Mob. : 9437308905

**First Edition :**
**2017**



**No. of Books Printed :**
**1000**

**Price : 250/- only**



ଆଶୀର୍ବାଦର ଅନିର୍ବାଣ ଦୀପଶିଖା : ବାବା ବୈକୁଣ୍ଠନାଥ



ଦେହଥିଲେ ଦେହାତୀତ ସାଧୁ ସନ୍ଥ ତୁମେ ତିନି
ରଘୁ-ବୈକୁଣ୍ଠ-ଲକ୍ଷ୍ମଣ ବନ୍ଧୁତ୍ୱରେ ହୋଇ ଧନୀ



ସତରେ ସ୍ମୃତି ତୁମେ କେତେ ପୂଜ୍ୟ କେତେ ମଧୁମୟ
ପିତୃମାତୃ ସ୍ମୃତି-ସ୍ନାତ ଜାନକୀ-ଲକ୍ଷ୍ମଣ ତନୟ



ଭାବମୟୀ-ପଞ୍ଚାନନ ସ୍ନେହାସିକ୍ତ ହୋଇଛି ହୃଦୟ
ସେ ହୃଦୟେ ଥାଉ ସଦା କକୁ-ଖୁଡ଼ୀ ପାଦ ପଦ୍ମେ ଲୟ



ଶିକ୍ଷାବିତ୍ ସ୍ୱର୍ଗତଃ ସୁରେନ୍ଦ୍ର କୁମାର ଆଚାର୍ଯ୍ୟ, ସ୍ୱର୍ଗତା ସ୍ୱର୍ଣ୍ଣଲତା ଆଚାର୍ଯ୍ୟ ଓ ପରିବାର

# ମୋ ସ୍ମୃତିର ଆଲେଖ୍ୟ ସଂପର୍କରେ

ମୋ ସ୍ମୃତିର ଆଲେଖ୍ୟ ହେଉଛି ମୋର ଅଭୁଲା ସ୍ମୃତିଲିପି । ଏପରି ଏକ ଆତ୍ମଜୀବନୀ ଲେଖିବାର ଅଭିପ୍ରାୟ ମୋର କେବେ ନ ଥିଲା । ସେଥିପାଇଁ ମୋ ଜୀବନର ୬୮ ବର୍ଷ ବିତି ଯାଇଥିଲେ ମଧ୍ୟ ସେ ଦିଗରେ ମୁଁ ମନ ବଳାଇ ନ ଥିଲି । ଅନେକ ସମୟରେ ମୋ ବନ୍ଧୁମାନେ ସେମାନଙ୍କ ସଂପର୍କରେ ଅନ୍ୟମାନଙ୍କଠାରୁ ଲେଖାମାନ ମଗାଇ ବହିମାନ ଛପାଇଛନ୍ତି । ଓଡ଼ିଶାର କେତେକ ଲବ୍ଧପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ସ୍ୱର୍ଗାବାସ ପରେ ସେମାନଙ୍କ ପରିବାର ତରଫରୁ କିମ୍ବା ସେମାନଙ୍କ ସ୍ମୃତି ସଂସଦ ତରଫରୁ ମଧ୍ୟ ସେମାନଙ୍କ ସ୍ମରଣରେ ପୁସ୍ତକମାନ ପ୍ରକାଶ କରାଯାଇଛି । ସେଇପରି ମୁଁ ଉପଦେଷ୍ଟା ଥିବା ଏକାମ୍ର ଶିଶୁ ସାହିତ୍ୟର ଅନେକ ସଭ୍ୟଙ୍କ ସ୍ମୃତିକଥା ସମ୍ବଳିତ ପୁସ୍ତକମାନ ପ୍ରକାଶିତ ହୋଇଅଛି ।

ଏକାମ୍ର ଶିଶୁ ସାହିତ୍ୟ ସଂସଦର ସଭାପତି ଅଛନ୍ତି ରାଜ୍ୟର ଖ୍ୟାତନାମା ଶିକ୍ଷାବିତ୍ ତଥା ସାହିତ୍ୟିକ ଡକ୍ଟର ଶରତ କୁମାର ବିଶ୍ୱାଳ । ଥରେ ସଂସଦର ବାର୍ଷିକ ଉତ୍ସବ ଦିନ ମୋତେ ଡକ୍ଟର ବିଶ୍ୱାଳ କହିଲେ, "ବ୍ରହ୍ମାବାବୁ ! ଆପଣଙ୍କ ବହୁମୁଖୀ ପ୍ରତିଭାକୁ ନେଇ ଏକ ପୁସ୍ତକ ପ୍ରକାଶନ କରିବା ନିମନ୍ତେ ମୋର ଇଚ୍ଛା । ସେଥିପାଇଁ ଆପଣଙ୍କ ଅନୁମତି ନ ନେଇ ମୁଁ ଆପଣଙ୍କୁ ନିକଟରୁ ଜାଣିଥିବା ବ୍ୟକ୍ତି ବିଶେଷଙ୍କଠାରୁ ଲେଖା ମଗାଇ ପାରୁନାହିଁ । ଆପଣ ସେ ବାବଦରେ କ'ଣ କହୁଛନ୍ତି ?"

ମୁଁ ଡକ୍ଟର ବିଶ୍ୱାଳଙ୍କୁ ସେ ବାବଦରେ ସିଧାସିଧା ମନାକରି ପାରିଲି ନାହିଁ । କଥାଟିକୁ ଟଳାଇ ନେବା ପାଇଁ କହିଲି, "ସେମାନେ ମୋ ବାବଦରେ ଏକଦର୍ଶୀ ହୋଇ ଲେଖିବେ । ମୁଁ ଯାହା ନୁହେଁ, ତାହା କହିବେ । ଗୋଟିଏ କଥାକୁ ଅନେକ ବନ୍ଧୁ ମଧ୍ୟ ଲେଖିବେ । ତେଣୁ ଭାବୁଛି "ଆତ୍ମ ଜୀବନୀ" ଲେଖିବି ।"

ସେ ମୋ କଥା ଶୁଣି ନୀରବ ରହିଲେ ।

ମାତ୍ର ସେ ଦିନ ମଧ୍ୟ ମୋର ଆତ୍ମ ଜୀବନୀଟିଏ ଲେଖିବାର ଅଭିପ୍ରାୟ ନ ଥିଲା ।

ଏ ଘଟଣାର କିଛିଦିନ ପରେ ମୋର ମନେ ପଡ଼ିଲା ପରମପୂଜ୍ୟ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀ ମୋ ବାପାଙ୍କ ସ୍ୱର୍ଗାବାସ ପରେ ମୋତେ ଦେଇଥିବା ପ୍ରସ୍ତାବ । ବାବା ସେଦିନ ମୋତେ କହିଥିଲେ, "ଦିଗ ! ଲକ୍ଷ୍ମଣବାବୁ ହେଉଛନ୍ତି ଆମ ଆଶ୍ରମର ଗୁରୁଜୀ ଓ ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠାତା ପ୍ରଥମ ଗୁରୁଜୀ । ମୁଁ ଚାହୁଁଚି ତାଙ୍କର ଏକ ପ୍ରତିମୂର୍ତ୍ତି ବିଦ୍ୟାଳୟ ପରିସର ମଧ୍ୟରେ ସ୍ଥାପନ କରିବା ପାଇଁ । ତୁମେ ଦୁଇଭାଇ ତ ଭଲରେ ଅଛ, ହଁ' ଭରିଲେ ସେ କାମରେ ମୁଁ ଆଗେଇବି ।"

ମୁଁ କିଛି ନ କହି ସେଦିନ ନୀରବ ରହିଲି । ସେଦିନ ଯଦି ହଁ'ଟିଏ ମାରିଥାନ୍ତି, ତେବେ ଆଜି ବାବା ବୈକୁଣ୍ଠନାଥଙ୍କ ପ୍ରତିଷ୍ଠିତ ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟର ପରିସର ମଧ୍ୟରେ ଏହାର ପ୍ରଥମ ଶିକ୍ଷାଦାତା ତଥା ଆଶ୍ରମର ଗୁରୁଜୀ, ପିଲାମାନଙ୍କ ଅତିପ୍ରିୟ ବଡ଼ସାର୍, ଲକ୍ଷ୍ମଣ ପଣ୍ଡାଙ୍କ ଆବକ୍ଷ ପ୍ରତିମୂର୍ତ୍ତିଟିଏ ରହି ପାରିଥାନ୍ତା । ତେଣୁ ବାବା ବୈକୁଣ୍ଠନାଥଙ୍କ ଅବର୍ତ୍ତମାନରେ ଇଚ୍ଛା ପ୍ରକାଶ କଲେ ମଧ୍ୟ ସଂପାଦିତ କରିବା ଆମ ପକ୍ଷରେ କଷ୍ଟକର ।

ସେଇ ଦୃଷ୍ଟିକୋଣରୁ ଚିନ୍ତା କଲି ମୋ ଆତ୍ମଜୀବନୀ ପ୍ରକାଶିତ ହେଉ । ଏହା ମୋର ଜନ୍ମିତ ବାପା, ବୋଉ, ଦଦେଇ ସ୍ୱର୍ଗତଃ ରଘୁନାଥ ପଣ୍ଡା, କକେଇ ସ୍ୱର୍ଗତଃ ପଞ୍ଚାନନ ପଣ୍ଡା ଓ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ସ୍ମୃତିଚାରଣ କରି ଅନ୍ୟମାନଙ୍କୁ ସୁଯୋଗ ଦେଉ ଯେ ସେମାନଙ୍କ ଆଦର୍ଶ ଓ ପରମ୍ପରାର ଦାୟାଦ ହିସାବରେ ପରିପୁଷ୍ଟ ହୋଇ ମୁଁ କେତେଦୂର ମୋ ଜୀବନରେ ମୋ କର୍ମ ପ୍ରବାହକୁ ଆଗେଇ ନେଇଛି । କେତେଦୂର ମୋର ଦୋଷତ୍ରୁଟିକୁ ଲୁଚେଇ ରଖି ସେମାନଙ୍କ କ୍ଷମାର ପ୍ରାର୍ଥୀ ହୋଇଛି ।

ମୋ ସ୍ମୃତି ମଧ୍ୟରେ ଲୁଚିଥିବା ଭାବନାକୁ ମୁଁ କେବେ ପ୍ରଦର୍ଶିତ କରିବାକୁ ଚାହିଁ ନାହିଁ, କିମ୍ବା କାହାପ୍ରତି ମନରେ ଟିକିଏ ହେଲେ ଅସୂୟା ଭାବ ରଖି ଲେଖି ନାହିଁ । ଯାହା ସତ, ଅଙ୍ଗେ ନିଭା କଥା ଲେଖିଛି । ଅପ୍ରିୟ ସତ୍ୟ କଥାଠାରୁ ଯେତେଦୂର ସମ୍ଭବ ନିଜକୁ ଦୂରେଇ ରଖିଛି ।

"ମୋ ସ୍ମୃତିର ଆଲେଖ୍ୟ'' ପ୍ରକାଶନରେ ମୋ ପରିବାରର ସମସ୍ତ ସଭ୍ୟ ଆଗ୍ରହ ପ୍ରକାଶ କରିଛନ୍ତି ।

ସାହିତ୍ୟିକା ପତ୍ନୀ ଶ୍ରୀମତୀ ଜ୍ୟୋସ୍ନାରାଣୀ ବ୍ରହ୍ମା, ମୋର ଚାରି ବୋହୂ ସୌମ୍ୟା ସାରସ୍ୱତା, ସନ୍ଧ୍ୟାରାଣୀ, ଅନ୍ନପୂର୍ଣ୍ଣା ଓ ଶ୍ୱେତା ବିଭିନ୍ନ ଭାବରେ ସାହାଯ୍ୟ କରିଛନ୍ତି । ମୋ ପୁଅ ଜ୍ୟୋତିପ୍ରକାଶ, ଦୀପ୍ତିପ୍ରକାଶ, ଶକ୍ତିପ୍ରକାଶ ଓ କାନ୍ତିପ୍ରକାଶ ପ୍ରକାଶନରେ ଆଗ୍ରହ ପ୍ରକାଶ କରିଛନ୍ତି । ଦୁଇ ନାତି ଆୟୁଷ୍ମାନ୍ ଦେବାଂଶୁ (ରିଷି), ରୁଦ୍ରାଂଶୁ (ରିକୁଲ) ସହଯୋଗ କରିଛନ୍ତି । ସେଥିପାଇଁ ସେମାନେ ମୋର ଧନ୍ୟବାଦାର୍ହ ।

ଏତଦ୍‌ବ୍ୟତୀତ ମୋର ବଡ଼ ଭାଇ ଚତୁର୍ଭୁଜ ବ୍ରହ୍ମା, ଜଗଦାନନ୍ଦ ବ୍ରହ୍ମା, ପୁତୁରା ଡକ୍ଟର ସରୋଜ ସୁନ୍ଦର ବ୍ରହ୍ମା, ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶ୍ରମର ବାଳକାନନ୍ଦ ବାବା, ଜଳୌକା ଆଶ୍ରମର ପ୍ରେମାନନ୍ଦ ବାବା, ଧନେଶ୍ୱର ସାହୁ, ଶିଶୁ ପ୍ରତିଭାର ସଂପାଦକ ପ୍ରକାଶ ମଙ୍ଗରାଜ, ଶିକ୍ଷକ ବନ୍ଧୁ ଲକ୍ଷ୍ମୀପ୍ରସାଦ ସାହୁ, ଜବାହରଲାଲ ସୁବୁଦ୍ଧି ଆବଶ୍ୟକ ସ୍ଥଳେ ସାହାଯ୍ୟ ଓ ସହଯୋଗ କରିଛନ୍ତି । ମୋର ଆଦରଣୀୟ ଭଣଜା ମନୋରଞ୍ଜନ ପାଣିଗ୍ରାହୀ ଓ ଭବାନୀ ଶଙ୍କର ମିଶ୍ର ମଧ୍ୟ ଏହାର ପ୍ରକାଶନରେ ଆନ୍ତରିକତା ପ୍ରକାଶ କରିଛନ୍ତି ।

**ମୋତେ** ଏଇ ପୁସ୍ତକ ରଚନା ଦିଗରେ ବିଭିନ୍ନ ଦୃଷ୍ଟିକୋଣରୁ ବୈଷୟିକ ଓ ଐତିହାସିକ ପରାମର୍ଶ ଦେଇଛନ୍ତି ପ୍ରଫେସର ଗୟାଧର ପଣ୍ଡା । ତାଙ୍କର ସ୍ନେହ, ଶ୍ରଦ୍ଧା ଓ ଅକୁଣ୍ଠିତ ସାହାଯ୍ୟ ନିମନ୍ତେ ମୁଁ ତାଙ୍କ ପାଖରେ ଋଣୀ ।

ଏତଦ୍‌ବ୍ୟତୀତ୍ ନୀଳକଣ୍ଠ ପ୍ରିଣ୍ଟର୍ସର ମୁଖ୍ୟ ପୃଷ୍ଠପୋଷକ ଶ୍ରୀଯୁକ୍ତ ସୁବୋଧ ଦାଶ, ତାଙ୍କ ସାନଭାଇ ଶ୍ରୀଯୁକ୍ତ ସୁରେଶ ଦାଶ, ଶ୍ରୀମତୀ କୃଷ୍ଣପ୍ରିୟା ସାହୁ(ମାନୁ)ଙ୍କ ପ୍ରଚେଷ୍ଟାରେ ମୋ ସ୍ମୃତିର ଆଲେଖ୍ୟର ପ୍ରକାଶନ ସମ୍ଭବ ହୋଇଅଛି । ଏଇ ଅବସରରେ ମୁଁ ସେମାନଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି ।

ପରିଶେଷରେ **ମୋ ସ୍ମୃତିର ଆଲେଖ୍ୟ** ଆଜି ମୋ ମଧ୍ୟରେ ସୀମିତ ନ ରହୁ । ଏହା ନିଜ ବାଟରେ ନିଜେ ଆଗେଇ ଯାଉ ।

ଦିବାକର ବ୍ରହ୍ମା

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ଆମ ଗ୍ରାମ ରୁଦ୍ରପୁର | ୯ |
| ଆମ ଐତିହ୍ୟ ଓ ସଂସ୍କୃତିର ଆଧାର : ଇତିହାସ ପ୍ରସିଦ୍ଧ ଜଳୌକା | ୧୦ |
| ଜନ୍ମ ଓ ଜନ୍ମ ବୃତ୍ତାନ୍ତ | ୧୩ |
| ବାଲ୍ୟକାଳ | ୧୫ |
| ଗାଁର ଆରାଧ୍ୟ ଦେବତା ଲକ୍ଷ୍ମୀକାନ୍ତ | ୧୬ |
| ପ୍ରଥମ ବିଦ୍ୟା ଅଧ୍ୟୟନ | ୧୮ |
| ପ୍ରାଥମିକ ଶିକ୍ଷା | ୧୯ |
| ଆଧ୍ୟାତ୍ମିକ ଚେତନାର ଉତ୍ସ : ଆମ ପ୍ରାଥମିକ ବିଦ୍ୟାଳୟ | ୨୩ |
| ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ତତ୍କାଳୀନ ଶିକ୍ଷାପଦ୍ଧତି | ୨୫ |
| ଗାନ୍ଧିଶିକ୍ଷାଶ୍ରମ, ଚଂପାପୁର : ଆମ ମାଧ୍ୟମିକ ଶିକ୍ଷାନୁଷ୍ଠାନ | ୨୯ |
| ଛାତ୍ରର ଚରିତ୍ର ଗଠନରେ ଶିକ୍ଷକଙ୍କ ଭୂମିକା | ୩୨ |
| ସାହିତ୍ୟର ଉନ୍ମେଷ ପୀଠ : ଗାନ୍ଧିଶିକ୍ଷାଶ୍ରମ | ୪୨ |
| ଆମେ ଦେଇଥିବା ମାଟ୍ରିକ ପରୀକ୍ଷା | ୪୬ |
| ମାଟ୍ରିକ୍ ପରବର୍ତ୍ତୀ ନାମଲେଖା ପ୍ରସଙ୍ଗ | ୪୭ |
| ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ | ୫୦ |
| କଳା ସାହିତ୍ୟ ସଂସ୍କୃତିର ସାଧନା ପୀଠ : ରେଭେନ୍ସା ମହାବିଦ୍ୟାଳୟ | ୫୨ |
| ରେଭେନ୍‌ସା ଐତିହ୍ୟର ସାକ୍ଷୀ : ପୂର୍ବ ଛାତ୍ରାବାସ | ୫୩ |
| ଜାଗରଣର ସଂପାଦନା : ଅନନ୍ୟ ଅନୁଭୂତି | ୫୪ |
| ଜାଗରଣ : ୧୯୬୯-୭୦ର ପ୍ରକାଶନ | ୫୭ |
| କଲେଜ ଜୀବନର ଅନୁଭୂତି | ୬୨ |
| କଲେଜ ଜୀବନର ଯବନିକା | ୬୫ |
| ଜୀବନ ସଂଗ୍ରାମର ଅୟମାରମ୍ଭ | ୬୮ |
| ହରଭଙ୍ଗା ଅଭିମୁଖେ | ୭୦ |
| ମଧୁସୂଦନ ଜଗନ୍ନାଥ ବିଦ୍ୟାପୀଠରେ ଯୋଗଦାନ ଓ ହିନ୍ଦୀ ଏମ୍.ଏ ପରୀକ୍ଷା ଦେବା ପ୍ରସଙ୍ଗ | ୭୪ |
| ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟ ଅଭିମୁଖେ | ୭୮ |
| ପ୍ରଶିକ୍ଷଣ ମହାବିଦ୍ୟାଳୟ ସଂପର୍କୀୟ ଅନୁଭୂତି | ୮୦ |
| ଅଧ୍ୟାପକମାନଙ୍କ ପ୍ରଦର୍ଶନମୂଳକ ଶିକ୍ଷା | ୮୧ |
| ଶିକ୍ଷାଦାନରେ ଯଶୋଦା ପ୍ରସଙ୍ଗ | ୮୨ |
| ମୋ ପରୀକ୍ଷକ : ପ୍ରଫେସର ବୈଦ୍ୟନାଥ ରଥ | ୮୫ |
| ପ୍ରଶିକ୍ଷଣ ମହାବିଦ୍ୟାଳୟର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ | ୮୬ |
| ବି.ଏଡ୍. ଉତ୍ତୀର୍ଣ୍ଣ ହେବାର ପରବର୍ତ୍ତୀ ସମୟ | ୮୭ |

ସରକାରୀ ଚାକିରିରେ ପ୍ରବେଶ ୮୮
ଦେଖିଥିବା ଏକ ଆଧ୍ୟାତ୍ମିକ ସ୍ୱପ୍ନ ୯୩
ଆଠଗଡ଼ରୁ ବହୁଗ୍ରାମ ଅଭିମୁଖେ ୯୭
ବହୁଗ୍ରାମର ଅଭୁଲା ଅନୁଭୂତି ୯୯
ଏମ୍.ଏଡ୍ ଅଧ୍ୟୟନ (୧୯୭୪-୭୫) ୧୦୩
ମୋର ବିବାହ ୧୦୪
ଆମ ପରିବାରର ପ୍ରଥମ ଅତିଥି ୧୦୫
ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଯୋଗଦାନ ୧୦୮
ଗୁରୁଦିବସରେ ଗୁରୁ ଶବ୍ଦର ବ୍ୟାଖ୍ୟା ୧୧୩
ଅଧ୍ୟକ୍ଷ ଶରତଚନ୍ଦ୍ର ଦାଶଙ୍କ ବିଦାୟ ଓ ନୂତନ ଅଧ୍ୟକ୍ଷ ଅମାନ୍ତଙ୍କ ଯୋଗଦାନ ୧୧୩
ଦୈନିକ ସଂବାଦପତ୍ର ହୀରାଖଣ୍ଡ ଓ ଡକ୍ଟର ମହତାବଙ୍କ ସହିତ ସଂପର୍କ ୧୧୪
ସମ୍ବଲପୁରର ସାଂସ୍କୃତିକ ପରିବେଶ ୧୨୧
ଦୁର୍ଗା ପୁସ୍ତକ ଭଣ୍ଡାର ଓ ମୋ ପ୍ରକାଶିତ ପୁସ୍ତକ ୧୨୪
ସାବିତ୍ରୀ ନିବାସ : ମୋ ବାସସ୍ଥାନ ୧୨୯
ଆମ ପରିବାରର ନବାଗତ ଅତିଥି ୧୩୭
ପରିବାରର ଅନ୍ୟତମ ସଦସ୍ୟ : ଶିଶୁ ଶୁଆ ୧୩୮
ସାବିତ୍ରୀ ନିବାସରୁ ଗାଁ ଅଭିମୁଖେ ୧୪୦
ବିଲାତ ଅଭିମୁଖେ ଯାତ୍ରା ୧୪୧
ମୋ ଗବେଷଣା : କେତେ ସ୍ମୃତି କେତେ ଅନୁଭୂତି ୧୪୪
ଚାକିରି ଜୀବନର ପୁନଃ ଅୟମାରମ୍ଭ ୧୫୧
ଅନୁଗୁଳରେ ମୋର ଅଧ୍ୟାପକ ଜୀବନ ୧୫୪
ମୋର ପ୍ରଥମ ପି.ଏଚଡ଼ି ଛାତ୍ର ଓ ପରବର୍ତ୍ତୀ ଗବେଷକ ୧୭୦
ଅନୁଗୁଳର ଅଧିଷ୍ଠାତ୍ରୀ ଦେବୀ : ବୁଢ଼ୀ ଠାକୁରାଣୀ ୧୭୧
ଇଟିଭି ପ୍ରଡ଼କ୍ସନ୍ ସେଣ୍ଟର, ଭୁବନେଶ୍ୱରରେ ଯୋଗଦାନ ୧୭୨
ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ଯୋଗଦାନ ୧୭୯
ପାଠ୍ୟପୁସ୍ତକ ଲେଖକ ହେବାର ସୌଭାଗ୍ୟ ୧୮୯
ଜନସଂଖ୍ୟା ଶିକ୍ଷାର ଦାୟିତ୍ୱ ନିର୍ବାହ ୧୯୬
ଜନସଂଖ୍ୟା ଶିକ୍ଷାର ନୂତନ ରୂପରେଖ ୧୯୭
ଜନସଂଖ୍ୟା ଓ ବିକାଶ ସରଣୀ : ବିକାଶ ଶବ୍ଦର ବ୍ୟାଖ୍ୟା ୧୯୯
ପ୍ରକଳ୍ପ ପରିଚାଳନା ସଂପର୍କୀୟ ଅନୁଭୂତି ୨୦୧
ଥାଇଲାଣ୍ଡରେ ଜନସଂଖ୍ୟା ଶିକ୍ଷା ପ୍ରଶିକ୍ଷଣ କାର୍ଯ୍ୟକ୍ରମ ୨୦୩
ଦିଲ୍ଲୀରେ ପାସପୋର୍ଟ ପାଇବା ସମସ୍ୟା ୨୦୫
ଥାଇଲାଣ୍ଡର ଐତିହାସିକ ପୃଷ୍ଠଭୂମି ୨୦୮

ପ୍ରଶିକ୍ଷଣର କେନ୍ଦ୍ରବିନ୍ଦୁ : ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟ ୨୦୮
ପ୍ରଶିକ୍ଷଣ ଶୈଳୀ : କିଛି ଆଲୋଚନା ଓ ପାଠପଢ଼ା ୨୦୯
କାନ୍‌ବେରୀ ପ୍ରୋଭିନ୍‌ସରେ କୈଶୋର ଶିକ୍ଷା ୨୧୦
ଥାଇଲାଣ୍ଡରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ୨୧୨
ଜନସଂଖ୍ୟା ଶିକ୍ଷାରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମ ୨୧୩
ଓଡ଼ିଶା ଜନସଂଖ୍ୟା ଶିକ୍ଷା ପ୍ରକଳ୍ପ : ଜାତୀୟ ସ୍ତରରେ ପ୍ରଥମ ୨୧୬
ଶିଶୁ ଗୀତିକା କର୍ମଶାଳା ଓ ପ୍ରକାଶନର ଅତିରିକ୍ତ ଦାୟିତ୍ୱ ୨୧୭
ଏନ୍.ସି.ଟି.ଇ କାର୍ଯ୍ୟର ଅତିରିକ୍ତ ଦାୟିତ୍ୱ ୨୨୦
ଜନସଂଖ୍ୟା ଶିକ୍ଷାର ମଧ୍ୟବର୍ତ୍ତୀକାଳୀନ ମୂଲ୍ୟାୟନ ୨୨୨
କୈଶୋର ଶିକ୍ଷା କାର୍ଯ୍ୟକ୍ରମରେ ଖୋର୍ଦ୍ଧା ଶିକ୍ଷା ଜିଲ୍ଲାର ଅନୁଭୂତି ୨୨୫
ଚା' କପଟିଏ ରହିଗଲା ୨୩୨
ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟରୁ ବିଦାୟ ୨୩୩
ଡିଏଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ, କୋରାପୁଟ ୨୩୯
ମହାବିଦ୍ୟାଳୟର ବିକାଶମୂଳକ କାର୍ଯ୍ୟକ୍ରମ ୨୪୬
ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ, ଜୟପୁରର ମୁଖ୍ୟଭାବେ ଦାୟିତ୍ୱ ଗ୍ରହଣ ୨୪୯
ସରକାରୀ ଚାକିରିରୁ ଅବସର ଗ୍ରହଣ ୨୫୩
ଅବସର ଦିନର ଅନୁଭୂତି ୨୫୫
ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ ୨୫୬
ସ୍ମୃତିରେ ସୁରେନ୍ଦ୍ର ଲାଲ ଦାସ, ବି.ଏଡ୍ କଲେଜ, ଆନନ୍ଦ ନଗର ୨୫୭
ସ୍ମୃତିରେ ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନ, ନନ୍ଦନପୁର ୨୫୯
ମୋ ସାହିତ୍ୟିକ ଜୀବନର ମୂଳଦୁଆ ଓ ବିକାଶ ୨୬୪
ଶିଶୁ ସାହିତ୍ୟ ପ୍ରସଙ୍ଗ ୨୬୮
ଆନ୍ତର୍ଜାତିକ ଶିକ୍ଷା କ୍ଷେତ୍ରରେ ଆମ ରାଜ୍ୟର ପ୍ରଥମ ଶିଶୁ ସାହିତ୍ୟ ଗବେଷଣା ପୁସ୍ତକ ୨୭୦
ଆନୁଷ୍ଠାନିକ ସ୍ୱୀକୃତି ଓ ସମ୍ମାନ ୨୭୧
ସାହିତ୍ୟ ଏକାଡ଼େମୀ ପ୍ରଦତ୍ତ ପୁରସ୍କାରର ବିଚାରକ ମଣ୍ଡଳୀରେ ସ୍ଥାନ ୨୭୨
ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପର୍କ ୨୭୨
ରେଭେନ୍‌ସା, ୭୦ : ବାର୍ଷିକ ବନ୍ଧୁମିଳନ ଓ ଦରଦୀ ବନ୍ଧୁ ସୌମ୍ୟରଞ୍ଜନ ୨୭୪
ମୋ ସ୍ମୃତିର ଶେଷ ଫର୍ଦ୍ଦ ୨୭୫
ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀ ଓ ଆମ ପରିବାର ୨୮୦
ଆମ ପରିବାର ଓ ବନ୍ଧୁବାନ୍ଧବ ୨୮୪
ସ୍ମୃତିର ନକ୍ସାରେ କେରୁଆଳଖଣ୍ଡ ଓ ଅନ୍ୟାନ୍ୟ ବ୍ୟକ୍ତି ବିଶେଷ ୨୮୭
ଶେଷ ଫର୍ଦ୍ଦର ଶେଷ କଥା : ଏଇଠି ଶେଷ ହେଉ ୨୯୧




ଆମ ବଂଶଲତା
ଚନ୍ଦ୍ରଶେଖର ପଣ୍ଡା
ସାଗରୀ
ଚକ୍ରଧର ପଣ୍ଡା
ସାଗରିକା ଦେବୀ
ଗୋପୀନାଥ ପଣ୍ଡା
ମୋତିଦେବୀ
ସଦାନନ୍ଦ ପଣ୍ଡା
ସୁନାମଣି
ନୃସିଂହ ବ୍ରହ୍ମା
ରଘୁନାଥ ପଣ୍ଡା
ଲକ୍ଷ୍ମଣ ପଣ୍ଡା
ଜାନକୀ
କୁଞ୍ଜବିହାରୀ ପଣ୍ଡା
ରାଜଦେବୀ
ପଞ୍ଚାନନ ପଣ୍ଡା
ଭାବମୟୀ
ଚତୁର୍ଭୁଜ ବ୍ରହ୍ମା
ହାରାମଣି
ଦିଗରାଜ ବ୍ରହ୍ମା
ଜ୍ୟୋସ୍ନାରାଣୀ
ଜଗଦାନନ୍ଦ ବ୍ରହ୍ମା
ଗାୟତ୍ରୀ
ନିଖିଳାନନ୍ଦ ବ୍ରହ୍ମା
ଗୁଣ୍ଡିଚା
ସରୋଜ ସୁନ୍ଦର
ଅନିମା
ଐଶ୍ୱର୍ଯ୍ୟା
ଅନନ୍ୟା
ଜ୍ୟୋତିପ୍ରକାଶ
ସୌମ୍ୟା ସାରସ୍ୱତା
ଦେବାଂଶୁ
(ରିଷି)
ଦୀପ୍ତିପ୍ରକାଶ
ସନ୍ଧ୍ୟାରାଣୀ
ରୁଦ୍ରାଂଶୁ
(ରିକୁଲ)
ଶକ୍ତିପ୍ରକାଶ
ଅନ୍ନପୂର୍ଣ୍ଣା
କାନ୍ତିପ୍ରକାଶ
ଶ୍ୱେତା
ସାର୍ଥକ
ସ୍ୱାତୀ
ସମର୍ଥ
ସଂକଳ୍ପ
ନେହା
ସର୍ବେଶ
ପ୍ରିୟଙ୍କା
ସ୍ମୃତି

## ଆମ ଗ୍ରାମ ରୁଦ୍ରପୁର

କଟକଠାରୁ ପାଞ୍ଚନମ୍ବର ଜାତୀୟ ରାଜପଥରେ ଉତ୍ତର ଦିଗରେ ପ୍ରାୟ ତିରିଶ କିଲୋମିଟର ପଥ ଅତିକ୍ରମ କଲେ ମାଳିକା ପ୍ରସିଦ୍ଧ ଛତିଆ ଅବସ୍ଥିତ । ଛତିଆଠାରୁ ପୂର୍ବ ଦିଗରେ ପାଞ୍ଚ କିଲୋମିଟର ଦୂରରେ ଇତିହାସ ପ୍ରସିଦ୍ଧ ଜଳୌକା ପାହାଡ଼ ପଡ଼ିଥାଏ । ସେଇ ଜଳୌକାର ଉତ୍ତର ପୂର୍ବ କୋଣରେ ଆମ ଗ୍ରାମ ରୁଦ୍ରପୁର ଅବସ୍ଥିତ ।

ରୁଦ୍ରପୁରର ପୂର୍ବଦିଗରେ ମହାନଦୀର ଶାଖା ନଦୀ ବିରୂପା ପ୍ରବାହିତ । ପଶ୍ଚିମ ଦିଗରେ ଶସ୍ୟଶ୍ୟାମଳା କ୍ଷେତ୍ର ଅଡ଼ମ୍ବୁର ଗ୍ରାମ ଅବସ୍ଥିତ, ଉତ୍ତର ଦିଗରେ କେରୁଆଳ ଗ୍ରାମ ବିଦ୍ୟମାନ । ଦକ୍ଷିଣ ଦିଗରେ ଇତିହାସ ପ୍ରସିଦ୍ଧ ଜଳୌକା ପାହାଡ଼ ଓ ଗଣେଶ୍ୱରପୁର ଗ୍ରାମ ଅବସ୍ଥିତ ।

ଆମ ଗ୍ରାମ ଏକ ଐତିହ୍ୟ ସଂପନ୍ନ ଗ୍ରାମ । ପ୍ରାୟ ପାଞ୍ଚଶହ ବର୍ଷତଳେ ଏଇ ଗ୍ରାମରେ ରାଜା ପ୍ରତାପ ରୁଦ୍ରଦେବ (ଖ୍ରୀ୧୪୯୭-୧୫୪୦) ଙ୍କର ଏକ କ୍ଷୁଦ୍ର ନଅର ଥିଲା ବୋଲି କେହି କେହି ମତପୋଷଣ କରନ୍ତି । ଏଇ ନଅରର ଉପର ଭାଗରେ ଏକ କାରୁକାର୍ଯ୍ୟ ଖଚିତ ମଣ୍ଡପ ଥିଲା । ସେଠାରେ ରାଜା ପ୍ରତାପ ରୁଦ୍ରଦେବ ପ୍ରଜା ଓ ପାରିଷଦବର୍ଗଙ୍କ ସହିତ ବିଚାର ବିମର୍ଷ କରୁଥିଲେ ।

ଏବେ ଏଇ ମଣ୍ଡପ ଭଗ୍ନପ୍ରାୟ । ଏହା କଳାପାହାଡ଼ଙ୍କ ଦ୍ୱାରା ଭଙ୍ଗାଯାଇଥିବା ଅନୁମାନ କରାଯାଏ । ମଣ୍ଡପ ତଳେ ଥିବା ନଅରଟି କାଳକ୍ରମେ ମାଟିତଳେ ପୋତି ହୋଇ ଯାଇଅଛି । ଲୋକ ସ୍ମୃତିରୁ ଜଣାଯାଏ ଯେ ମଣ୍ଡପକୁ ଖନନ କରି ତଳେ ଥିବା ନଅର ମଧ୍ୟକୁ ପୂର୍ବ ପୁରୁଷର କେତେକ ଲୋକ ଯିବାକୁ ପ୍ରୟାସ କରିଥିଲେ । ମାତ୍ର ସେମାନେ ମଣ୍ଡପ ଦ୍ୱାରଦେଶରେ ପହଞ୍ଚିବା ମାତ୍ରେ ଏକ ସତର୍କବାଣୀ ଶୁଣି ଭୟଭୀତ ହୋଇ ସେଠାରୁ ଫେରି ଆସିଥିଲେ । ସେଇଦିନଠାରୁ ଆଉ କେହି ମଣ୍ଡପକୁ ଖୋଲିବାକୁ ସାହସ କରି ନାହାନ୍ତି । ସଂପ୍ରତି ଏଇ ମଣ୍ଡପ "ସୁନିଆ ମଣ୍ଡପ" ରୂପେ ବିଦିତ । ଏଇ

ସୁନିଆ ମଣ୍ଡପରେ ରାଜା ଅଧିକାଂଶ ସମୟରେ ବିରାଜମାନ କରୁଥିଲେ । ସେ ସମୟରେ ପ୍ରତାପ ରୁଦ୍ରଦେବଙ୍କର ରାଜଧାନୀ କଟକ ଥିଲା ।

ରାଜା ପ୍ରତାପ ରୁଦ୍ରଦେବ ପ୍ରଭୁ ରୁଦ୍ରଙ୍କର ପରମ ଭକ୍ତ ଥିଲେ । ସେ ମଧ ରୁଦ୍ରଦେବ ନାମରେ ପରିଚିତ ଥିଲେ । ତେଣୁ ତାଙ୍କ ନାମାନୁସାରେ ଆମ ଗ୍ରାମର ନାମ ରୁଦ୍ରପୁର । ଏଠାରେ ରୁଦ୍ର ଅର୍ଥାତ୍ ଭଗବାନ ଶିବଙ୍କର କୌଣସି ମନ୍ଦିର ନାହିଁ ।

ଆମ ଗ୍ରାମର ଦକ୍ଷିଣରେ ଗଣେଶ୍ୱରପୁର ଗ୍ରାମ ଅବସ୍ଥିତ । ଏଇ ଗ୍ରାମରେ ଥିବା ସୁବର୍ଣ୍ଣ ଲିଙ୍ଗ ପ୍ରଭୁ ତାରକେଶ୍ୱର ନାମରେ ପୂଜିତ । ରାଜା ପ୍ରତିଦିନ ନିଜ ନଅରରୁ ଏକ ସୁଡ଼ଙ୍ଗ ପଥ ଦେଇ ପ୍ରଭୁ ତାରକେଶ୍ୱରଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ବର୍ତ୍ତମାନ ସେଇ ସୁଡ଼ଙ୍ଗ ପଥଟି ନ ଥିଲେ ମଧ ତା'ର ଭଗ୍ନାବଶେଷ ପରିଦୃଷ୍ଟ ହୁଏ ।

ରୁଦ୍ରପୁରର ପଶ୍ଚିମ ଦିଗରେ ଠାକୁରଡ଼ିହ ଅବସ୍ଥିତ । ଏଠାରେ ରାଜାଙ୍କ ଦ୍ୱାରା ତୋଳାଯାଇଥିବା ମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତି ପୂଜା ପାଉଥିଲେ । ସୂର୍ଯ୍ୟବଂଶୀ ରାଜା ପ୍ରତାପ ରୁଦ୍ରଦେବ ପ୍ରଭୁ ଜଗନ୍ନାଥଙ୍କ ପରମ ଭକ୍ତ ଥିଲେ । ସେ ପ୍ରତିଦିନ ଠାକୁରଡ଼ିହରେ ଅବସ୍ଥିତ ଜଗନ୍ନାଥ ମନ୍ଦିରକୁ ଯାଇ ଚତୁର୍ଦ୍ଧା ମୂର୍ତ୍ତି ଶ୍ରୀସୁଦର୍ଶନ, ବଳଭଦ୍ର, ଦେବୀ ସୁଭଦ୍ରା ଓ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରୁଥିଲେ । ଦର୍ଶନ ପରେ ହିଁ ସେ ଅନ୍ନଜଳ ସ୍ପର୍ଶ କରୁଥିଲେ ।

ସେ ସମୟରେ ଏ ଅଞ୍ଚଳ ବାଘ, ସିଂହ ଆଦି ହିଂସ୍ର ବଣ୍ୟଜନ୍ତୁ ଓ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଶୁଣାଯାଏ ଯେ ଥରେ ମନ୍ଦିର ଭିତରେ ପଶି ଦେବୀ ସୁଭଦ୍ରାଙ୍କୁ ବାଘ ନେଇ ଖଣ୍ଡେ ଦୂରରେ ଫିଙ୍ଗି ଦେଇଥିଲା । ତେଣୁ ଠାକୁରଙ୍କ ନିରାପତ୍ତା ଦୃଷ୍ଟିକୋଣରୁ ସ୍ଥାନୀୟ ଦେବୀ ବିଲ୍ୱ (ଦେବିଲ)ଗ୍ରାମ ନିକଟସ୍ଥ ନହରା ଗ୍ରାମକୁ ଶ୍ରୀମନ୍ଦିରର ସ୍ୱୀକୃତି ପ୍ରାପ୍ତ ସନନ୍ଦ ଆଣି ସ୍ଥାନାନ୍ତରିତ କରାଯାଇଥିଲା । ସେବେଠାରୁ ଚତୁର୍ଦ୍ଧା ମୂର୍ତ୍ତି ନହରା ଗ୍ରାମରେ ପୂଜା ପାଉଛନ୍ତି । ପୁରୀର ରଥଯାତ୍ରା ଭଳି ପ୍ରତିବର୍ଷ ନହରାଗ୍ରାମରେ ରଥଯାତ୍ରା ଅନୁଷ୍ଠିତ ହୋଇ ଆସୁଅଛି । ବାହୁଡ଼ା ଦିନ ଆମ ଗ୍ରାମ ରୁଦ୍ରପୁର ଆନୁକୂଲ୍ୟରେ ନହରାସ୍ଥିତ ଗୁଣ୍ଡିଚା ମନ୍ଦିରରେ ପୂଜାର୍ଚ୍ଚନା କରାଯାଏ ।

**ଆମ ଐତିହ୍ୟ ଓ ସଂସ୍କୃତିର ଆଧାର : ଇତିହାସ ପ୍ରସିଦ୍ଧ ଜଳୌକା**

ଆମ ଗ୍ରାମ ଓ ଅଞ୍ଚଳର ଐତିହ୍ୟ ଓ ସଂସ୍କୃତିର ମୂଳ ଆଧାର ହେଉଛି ମାଳିକା ବର୍ଣ୍ଣିତ ଓ ଇତିହାସ ପ୍ରସିଦ୍ଧ ଜଳୌକା ପାହାଡ଼ । କେଉଁ ପ୍ରାଚୀନ କାଳରୁ ଜଳୌକାରେ ଅବସ୍ଥିତ ମୁନିଋଷିଙ୍କ ଆଶ୍ରୟସ୍ଥଳୀର ସ୍ଥିତି ଏବେ ବି ରହିଅଛି । ଜଳୌକାରେ ଅବସ୍ଥିତ ନଳୀଗୁମ୍ଫା, ସାତ ବଖୁରିଆ ଘର, ମଣିନାଗ ଗୁମ୍ଫା ଆଦିର ମହିମା ବିଭିନ୍ନ ସମୟରେ ସାଧୁସନ୍ଥମାନଙ୍କ ଦ୍ୱାରା ବର୍ଣ୍ଣିତ ହୋଇଅଛି ।

ଜଲୌକାରେ ସାତଶହ ବାଉନ ଗୁମ୍ଫା ଅଛି ବୋଲି ମାଳିକାରେ ବର୍ଣ୍ଣନା କରାଯାଇଛି । ଏଇ ଗୁମ୍ଫାମାନଙ୍କ ମଧ୍ୟରେ ମଣିନାଗ ଗୁମ୍ଫା ସର୍ବଶ୍ରେଷ୍ଠ । ନଳୀ ଗୁମ୍ଫାରେ ଥିବା ସୁଡ଼ଙ୍ଗ ପଥ ଯାଜପୁରସ୍ଥିତ ବିରଜା ମନ୍ଦିର ସହ ସଂଯୁକ୍ତ ଥିଲା ବୋଲି କେହି କେହି ମତପୋଷଣ କରନ୍ତି । ନଳୀଗୁମ୍ଫାର ପଶ୍ଚିମ ପଟରେ ସାତ ବଖୁରିଆ ଘର । କେଉଁକାଳରୁ ପଥର ଖଣ୍ଡକୁ କାଟି ସାଧୁସନ୍ଥମାନେ ଏହାକୁ ତିଆରି କରିଥିଲେ । ସେ ସମୟରେ ନିଶାର୍ଦ୍ଧରେ ସେମାନଙ୍କ ଭଜନ କୀର୍ତ୍ତନ ଓ ଖଞ୍ଜଣୀ ମାଡ଼ରେ ଜଲୌକାର ପରିବେଶ ରସାଣିତ ହେଉଥିଲା । ଓଁକାର ଧ୍ୱନି ସହ ନିରାକାର ଅଲେଖ ଅବ୍ୟକ୍ତ ପରଂବ୍ରହ୍ମଙ୍କ ଭଜନ ସମଗ୍ର ଅଞ୍ଚଳର ଆଧ୍ୟାତ୍ମିକ ଚିନ୍ତା ଓ ଚେତନାକୁ ଦିବ୍ୟାୟିତ କରୁଥିଲା ।

ଜଲୌକାର ଉତ୍ତରରେ ବିଚାରବଟ ଅବସ୍ଥିତ । ଏଠାରେ ସୂକ୍ଷ୍ମ ଶରୀରରେ ସର୍ବଦେବ ମିଳିତ ହୋଇଥାନ୍ତି ବୋଲି ବିଶ୍ୱାସ କରାଯାଏ । ସେମାନଙ୍କ ବିଚାର ବିମର୍ଷ ମାନବ କଲ୍ୟାଣ ନିମନ୍ତେ ଅଭିପ୍ରେତ ଥାଏ ।

ମଣିନାଗ ଗୁମ୍ଫାରେ ମଣି ସହ ମଣିନାଗ ସର୍ପ ବିଦ୍ୟମାନ । ପାହାଡ଼ର ଲମ୍ବ ଓ ମୋଟ ସହିତ ଏହାର ଲମ୍ବ ଓ ମୋଟ ପ୍ରାୟତଃ ସମାନ ବୋଲି ଜନଶ୍ରୁତିରେ ଶୁଣାଯାଏ । ନିଶାର୍ଦ୍ଧରେ ଏଇ ସାପ ଜଲୌକା ପାହାଡ଼ର ପୂର୍ବ ଦିଗରେ ଅବସ୍ଥିତ ବିରୂପା ନଦୀରୁ ଜଳପାନ କରିଥାଏ । ଏ ସବୁ ଅଲୌକିକ କଥା ମାଳିକାରେ ବର୍ଣ୍ଣନା କରାଯାଇଅଛି ।

ଜଲୌକାର ଉତ୍ତର ଦିଗରେ ପାହାଡ଼ ଉପରେ ଶାମୁକା ସଦୃଶ ଏକ ଜଳଭଣ୍ଡାର ଅଛି । ବର୍ଷସାରା ଏଇ ଶାମୁକାରେ ପଦ୍ମଫୁଲ ଫୁଟିଥାଏ । ମାତ୍ର ଏଇ ଶାମୁକାର ପବିତ୍ରତା ନଷ୍ଟ ହେବା ଫଳରେ ଏବେ ଏଇ ଶାମୁକାରେ ଆଉ ପଦ୍ମଫୁଲ ଫୁଟିବାର ଦେଖାଯାଏ ନାହିଁ । ଏହାର ଧାର୍ମିକ ମାହାତ୍ମ୍ୟ ଆମ ଅଞ୍ଚଳର ଲୋକେ ଅନୁଭବ କରିଥାନ୍ତି । ସାଧାରଣତଃ ଯେତେବେଳେ ଖରାଦିନେ ବୃଷ୍ଟିପାତ ହୁଏ ନାହିଁ, ଜମିବାଡ଼ିର ମାଟି ଖଣ୍ଡ ଫାଟି ଆଁ କରିଥାଏ, ବୃଷ୍ଟିର ଅଭାବରେ ଚାଷକାର୍ଯ୍ୟ ଆରମ୍ଭ ହୋଇ ପାରେ ନାହିଁ, ସେଇ ସମୟରେ ଇନ୍ଦ୍ର ଦେବତାଙ୍କୁ ବର୍ଷା ନିମନ୍ତେ ଏଠାରେ ପୂଜା ଅର୍ଚ୍ଚନା କରାଯାଏ । ଭୋଗ ଅର୍ପଣ ପରେ ପରେ ଆମେ ଭୋଗ ଓ ପଣା ପାଉ । ମୁଁ ପିଲାବେଳେ ଅନେକ ଥର ଲକ୍ଷ୍ୟ କରିଛି ଯେ ଚୁଡ଼ାଘଷା, ଦୁଧକୁସୁମା ଆଦି ଅର୍ପଣ ପରେ ପରେ ଗାଁର ଉତ୍ତର ଦିଗର ଆକାଶରେ କଳା ମେଘଖଣ୍ଡେ ଘୋଟି ଆସେ । ଆମେ ଆସନ୍ନ ବର୍ଷା ଦାଉରୁ ରକ୍ଷା ପାଇବା ନିମନ୍ତେ ପାହାଡ଼ ଉପରୁ ଓହ୍ଲେଇ ଗାଁ ଆଡ଼କୁ ଦୌଡ଼ୁ । ମଝିରେ ମଝିରେ ଫେରିଲାବେଳେ ବର୍ଷା ମାଡ଼ ମଧ୍ୟ ଖାଉ । ଏପରି ଅଲୌକିକ ସ୍ଥିତି ଓ ଉଦ୍‌ବେଳନ କ୍ୱଚିତ ଦେଖାଯାଏ । ପ୍ରବଳ ବର୍ଷାର ପରେ ପରେ ଜମି ଚାଷବାସ କାର୍ଯ୍ୟ ମଧ୍ୟ ସ୍ଥାନୀୟ

ଲୋକେ କରିଥାନ୍ତି । ଜଳୌକା ପାହାଡ଼ର ଅପରପାର୍ଶ୍ୱ ଶନି ଡୋଟା ନିକଟସ୍ଥ ପାହାଡ଼ରେ ଏକ ଲଙ୍ଗଳ ଶିଆର ଦେଖାଯାଏ । ଏହା ଭୀମଙ୍କ ଲଙ୍ଗଳ ଶିଆର ନାମରେ ପରିଚିତ ।

ନଳୀଗୁମ୍ଫାର ପାହାଡ଼ ଦେଇ ଗଣେଶ୍ୱରପୁର ଗ୍ରାମ ଆଡ଼କୁ ଓହ୍ଲେଇ ଗଲେ ପାହାଡ଼ର ପାଦଦେଶରେ ସୋମବଂଶୀ ରାଜାଙ୍କ ଦ୍ୱାରା ଦଶମ ଶତାବ୍ଦୀରେ ପ୍ରତିଷ୍ଠିତ ପଞ୍ଚଆୟତନ ବିଶିଷ୍ଟ ପାଞ୍ଚଟି ଭଗ୍ନ ମନ୍ଦିର ଦେଖାଯାଏ । ଏଇ ମନ୍ଦିର ଭଗବାନ ବିଷ୍ଣୁଙ୍କ ପୂଜା ଓ ଉପାସନା ନିମନ୍ତେ ନିର୍ମିତ ହୋଇଥିଲା । ସ୍ଥାନୀୟ ଅଞ୍ଚଳରେ ଏଇ ମନ୍ଦିର ପଞ୍ଚୁ ପାଣ୍ଡବ ମନ୍ଦିର ନାମରେ ପରିଚିତ । ଏହାର ଭଗ୍ନାବଶେଷ ଓ ଏବେ ପୂଜା ପାଇଁ ଥିବା ବିଷ୍ଣୁଙ୍କ ଭଗ୍ନମୂର୍ତ୍ତି ଦେଖି କେହି କେହି କଳାପାହାଡ଼ ଦ୍ୱାରା ଏହା ଭଙ୍ଗାଯାଇଛି ବୋଲି ମତ ପୋଷଣ କରନ୍ତି । ସଂପ୍ରତି ପଞ୍ଚୁପାଣ୍ଡବ ମନ୍ଦିରର ରକ୍ଷଣାବେକ୍ଷଣ ଦାୟିତ୍ୱ ଭାରତର ପ୍ରତ୍ନତତ୍ତ୍ୱ ବିଭାଗ ନେଇଛନ୍ତି । ପଞ୍ଚୁପାଣ୍ଡବ ମନ୍ଦିରର ଅଳ୍ପଦୂରରେ ପାହାଡ଼ ଉପରେ ଦେବୀ ଅମ୍ବିକା ବିରାଜମାନ । ଆମ ରୁଦ୍ରପୁର ଗ୍ରାମର ବିବାହ, ବ୍ରତ ଓ ଅନ୍ୟାନ୍ୟ କାମରେ ଦେବୀଙ୍କର ପୂଜାର୍ଚ୍ଚନା କରି ଶୁଭକାମ କରାଯାଇଥାଏ । ଦେବୀ ଅମ୍ବିକା ହେଉଛନ୍ତି ଆମ ଗ୍ରାମ, କେରୁଆଳ ଓ ଗଣେଶ୍ୱରପୁର ଗ୍ରାମର ଗ୍ରାମ ଦେବୀ ।

ଜଳୌକାରେ ଅବସ୍ଥିତ ମାତା ମଠ ଓ ଶତ୍ରୁଘ୍ନ ବାବାଙ୍କ ମଠ ଭଗ୍ନପ୍ରାୟ । ସେହିପରି ଜଳୌକାର ଦକ୍ଷିଣ ଦିଗରେ ଅବସ୍ଥିତ ବାବା ଫୁଲମାଳିଆଙ୍କ ମଠ ମଧ୍ୟ ଭଗ୍ନ ପ୍ରାୟ । ସେଇ ମଠ ପାର୍ଶ୍ୱବର୍ତ୍ତୀ ପାହାଡ଼ ଉପର ସ୍ଥାନରେ ସାଧୁସନ୍ଥମାନେ ଆସି ବିଭିନ୍ନ ସମୟରେ ବସବାସ କରନ୍ତି । ଏହା "ରାସସ୍ଥଳୀ" ନାମରେ ପରିଚିତ ।

ଜଳୌକାର ଏଇ ଦକ୍ଷିଣ ଦିଗରେ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶ୍ରମ "ଆନନ୍ଦ ଧାମ" ଅବସ୍ଥିତ । ବାବା ବୈକଣ୍ଠନାଥ ତାଙ୍କ ଗୁରୁ ନିରଞ୍ଜନ ସ୍ୱାମୀଙ୍କ ଆଦେଶ କ୍ରମେ ସୁଦୂର ପଶ୍ଚିମ ବଙ୍ଗରୁ ଆସି ଜଳୌକାରେ ଅବସ୍ଥିତ ମଣିନାଗ ଗୁମ୍ଫାରେ ସାଧନାରତ ଥିଲେ । ସେତେବେଳେ ଏଇ ପାହାଡ଼ ଓ ଗୁମ୍ଫା ଅତୀବ ବିପଦସଂକୁଳ ଥିଲେ ମଧ୍ୟ ଜୀବନର ସମସ୍ତ ମାୟା ବନ୍ଧନକୁ କାଟି ଯୁବକ ବୈକୁଣ୍ଠ ସାଧନାର ପ୍ରଥମ ସ୍ତରରେ ଏଇ ମଣିନାଗ ଗୁମ୍ଫାରେ କଟାଇ ସିଦ୍ଧି ଲାଭ କରି ସିଦ୍ଧ ପୁରୁଷରେ ପରିଣତ ହୋଇଥିଲେ । ବାବା ବୈକୁଣ୍ଠ ତାଙ୍କ ଜୀବନକାଳ (୧୯୧୨-୨୦୦୧)ର ଅଧିକାଂଶ ସମୟ ଜଳୌକା ପାହାଡ଼ରେ କଟାଇଥିଲେ । ନିଜର ରଚନା ଓ ଅମୂଲ୍ୟ ବାଣୀ ମାଧ୍ୟମରେ ଆମ ରାଜ୍ୟ, ଦେଶ ଓ ବିଦେଶର କଳା-ସାହିତ୍ୟ-ସଂସ୍କୃତିର ସାଂସ୍କୃତିକ ପୀଠ ରୂପେ ଜଳୌକାକୁ ପରିଚିତ କରାଇଥିଲେ । ସଂପ୍ରତି ପ୍ରତିବର୍ଷ **ବୈକୁଣ୍ଠ ବାର୍ତ୍ତାବହ ସମିତି** ଆନୁକୂଲ୍ୟରେ ଜଳୌକାର ଆନନ୍ଦଧାମରେ ଜଳୌକା ଉତ୍ସବ ପାଳନ କରାଯାଉଅଛି ।

ପ୍ରତିବର୍ଷ ଜଳୌକାର ଉତ୍ତର ଦିଗରେ ଅବସ୍ଥିତ ବିରାଟ ଆମ୍ରତୋଟାରେ ଉତ୍କଳ ପ୍ରସିଦ୍ଧ ଶନି ପୂଜା ବୈଶାଖ ମାସ ଅକ୍ଷୟ ତୃତୀୟା ପର ଶନିବାର ଦିନ ଅନୁଷ୍ଠିତ ହୋଇଥାଏ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଭକ୍ତମାନେ ଆସି ଶନିଦେବଙ୍କ ପୂଜାର୍ଚ୍ଚନା ଓ କୃପାଲାଭ କରିଥାନ୍ତି ।

ଅତୀତର ଇତିହାସ ପୃଷ୍ଠା କ୍ରମଶଃ ଫିକା ପଡ଼ିଯାଇଥିଲେ ମଧ୍ୟ ସେ ସବୁର ମୂକସାକ୍ଷୀ ଜଳୌକା ଏବେ ମଧ୍ୟ ଅତୀତର ଜୀବନ୍ତ ସ୍ମୃତିରେ ଉଦ୍‌ଭାସିତ । ପ୍ରତିବର୍ଷ ଦେଶ ବିଦେଶର ଅନେକ ପର୍ଯ୍ୟଟକ ଆସି ଜଳୌକାର ମାହାତ୍ମ୍ୟ ସହିତ ପରିଚିତ ହେବା ସହିତ ସାଧୁସନ୍ଥଙ୍କର ସାଧନା ପୀଠ ପରିଭ୍ରମଣ କରି କୃପାଲାଭ କରିଥାନ୍ତି ।

**ଜନ୍ମ ଓ ଜନ୍ମ ବୃତ୍ତାନ୍ତ**

ମୋର ଜନ୍ମ ୧୯୪୮ ମସିହା ଏପ୍ରିଲ ମାସ ୧୨ ତାରିଖ, ସୋମବାର, ଚୈତ୍ର ଶୁକ୍ଳ ଚତୁର୍ଥୀ, ଧନୁ ଲଗ୍ନ, ବୃଷ ରାଶି, କୃତ୍ତିକା ନକ୍ଷତ୍ରରେ କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭଞ୍ଜ ଡାକ୍ତରଖାନାରେ ରାତି ଦଶଟା ଚାଳିଶ ମିନିଟ୍‌ରେ ହୋଇଥିଲା । ମୋର ପିତା ଥିଲେ ଲକ୍ଷ୍ମଣ ପଣ୍ଡା ଓ ମାତା ଜାନକୀ ଦେବୀ । ମୁଁ ଥିଲି ଅଷ୍ଟମ ଗର୍ଭର ସନ୍ତାନ । ମୋର ଛଅ ଭଉଣୀ ମଧ୍ୟରୁ ଚାରିଜଣ ଜୀବିତ ଥିଲେ । ମୋ ଉପରେ ମୋର ଜଣେ ବଡ଼ ଭାଇ । ଭଉଣୀମାନେ ବିବାହିତା ଥିବାରୁ ମୋର ଶୈଶବ ବଡ଼ ଭାଇ ଓ ଗାଁର ଶିଶୁମାନଙ୍କ ସହ କଟିଥିଲା ।

ମୋର ଜନ୍ମ କଟକ ବଡ଼ ଡାକ୍ତରଖାନାରେ ହେବା ସଂପର୍କରେ ମୁଁ ବାପାଙ୍କ ମୁଖରୁ ଅନେକବାର ଶୁଣିଛି । ଏହା ଏକ ରୋମାଞ୍ଚକର କାହାଣୀ ଭଳି ଥିଲା । ସେ କଥା ଓ କାହାଣୀ ଶୁଣିଲାବେଳେ ମୋ ମନର କୌଣସି ଭାବାନ୍ତର ଆସୁନଥିଲା । ମୁଁ ଏଇ ଘଟଣାଟିକୁ ଅତି ସ୍ୱାଭାବିକ ଭାବେ ନେଉଥିଲି, ଯେପରିକି ଏଇ ଘଟଣା ସହିତ ମୋର କୌଣସି ସଂପର୍କ ନାହିଁ ।

ବାପା ଯାହା କହନ୍ତି ତାହା ହେଲା ଏଇପରି

ସେଦିନ ଆମ ଗାଁକୁ ବାପାଙ୍କର ଡାକରା ପାଇ ଛତିଆ ଅଞ୍ଚଳର ବିଶିଷ୍ଟ ଡାକ୍ତର ଜଗନ୍ନାଥ ଦାସ, ଏମ୍.ବି.ବି.ଏସ୍ ଆମ ଘରକୁ ଆସିଥାନ୍ତି । ସେତେବେଳକୁ ମୋ ବୋଉ ଆସନ୍ନ ପ୍ରସବା ଥାଆନ୍ତି । ପ୍ରସବ ଜନିତ ବେଦନା ଅଧିକରୁ ଅଧିକ ହେବାରୁ ଓ ପ୍ରସବ ନ ହେବାରୁ ଜଗନ୍ନାଥ ବାବୁଙ୍କ ସହାୟତା ନିଆଯାଇଥିଲା । ସେତେବେଳେ ଏବେ ଯେପରି କଟକକୁ ଗାଡ଼ିଘୋଡ଼ା ଯାତାୟାତ କରୁଛି, ସେପରି ନ ଥିଲା । ତେଣୁ ଯଦି କେହି କଟକ ଆସିବାକୁ ଚାହୁଁଥିଲେ, ତେବେ ସେମାନେ ଜଗତପୁର ପର୍ଯ୍ୟନ୍ତ ଆସୁଥିଲେ । ଜଗତପୁରରେ

ଥିବା ରେଳଧାରଣା ପଡ଼ିଥିବା ପୋଲ ଉପରେ ଚାଲି ଚାଲି ଆସି କଟକ ସହରରେ ପହଞ୍ଚି ପାରୁଥିଲେ । ଏଣୁ ଗାଁ ଗହଳିରେ ଶିଶୁର ପ୍ରସବ ସାଧାରଣତଃ ଧାଈମାନଙ୍କ ଦ୍ୱାରା କରାଯାଉଥିଲା । ଯଦି ଧାଈ ପାରୁ ନ ଥିଲେ କିମ୍ବା ପ୍ରସୂତିର ଅବସ୍ଥା ସଂକଟାପନ୍ନ ହେଉଥିଲା, ସେତେବେଳେ ସ୍ଥାନୀୟ ଡାକ୍ତରଙ୍କ ସାହାଯ୍ୟ ନିଆଯାଉଥିଲା ।

ଜଗନ୍ନାଥବାବୁ ଆମ ଘରକୁ ଆସି ବୋଉର ପରୀକ୍ଷା ନିରୀକ୍ଷା କଲେ । କହିଲେ, "ମା' ପେଟରେ ଶିଶୁଟି ମରିଯାଇଛି । ତେଣୁ ଅପରେସନ୍ କରି ଶିଶୁଟିକୁ ବାହାର କରିବାକୁ ପଡ଼ିବ ।" ଏହା କହି ସେ ପାଣି ଗରମ କରିବାକୁ କହିଲେ ଓ ଆବଶ୍ୟକୀୟ ଯନ୍ତ୍ରପାତିକୁ ଅପରେସନ୍ ନିମନ୍ତେ ଗରମ ଜଳରେ ପକାଇ ଜୀବାଣୁ ମୁକ୍ତ କଲେ ।

ଏହି ସମୟରେ ମୋର ବଡ଼ ବାପା ରଘୁନାଥ ପଣ୍ଡା ଆମ ଘର ଆଗରେ ଡାକ୍ତରବାବୁଙ୍କ ସାଇକେଲ୍‌କୁ ଦେଖି ବାପାଙ୍କୁ ଡ଼ାକ ଛାଡ଼ିଲେ । ବାପା ଆସିବାରୁ ପଚାରିଲେ, "ଆରେ ଲଛିଆ ! ହାରାବୋଉର କ'ଣ ହୋଇଛି ଯେ ଜଗନ୍ନାଥ ବାବୁ ଆସିଛନ୍ତି ?"

ବାପା କହିଲେ, "ପିଲାଟି ମାଆ ପେଟରୁ ନଷ୍ଟ ହୋଇ ଯାଇଛି । ତେଣୁ ମାଆ ପେଟରୁ ମୃତ ଶିଶୁଟିକୁ କାଢ଼ିବାକୁ ପଡ଼ିବ । ସେଥିପାଇଁ ଆବଶ୍ୟକ ପ୍ରାଥମିକ କାର୍ଯ୍ୟ ଡାକ୍ତରବାବୁ ସାରି ଅପରେସନ୍ ପାଇଁ ପ୍ରସ୍ତୁତ ହୋଇ ଗଲେଣି ।''

ବଡ଼ବାପା କ୍ଷଣିକ ପାଇଁ ନୀରବ ରହିଗଲେ । ମନେ ମନେ କ'ଣ ଭାବି ବାପାଙ୍କୁ କହିଲେ, ତୁ ଡାକ୍ତରବାବୁଙ୍କୁ ଫେରେଇ ଦେ । ମୁଁ ହାରାବୋଉକୁ କଟକ ବଡ଼ ମେଡ଼ିକାଲ୍‌କୁ ପଠାଇଦେବାର ବ୍ୟବସ୍ଥା କରୁଛି ।" ଏହାକହି ସେ ଆମ ଗାଁ ରୁଦ୍ରପୁରର ନିକଟବର୍ତ୍ତୀ କେରୁଆଳ ଗ୍ରାମକୁ ଚାଲିଗଲେ । କିଛି ଲୋକଙ୍କୁ ଧରି ସବାରୀ ସହିତ ଆସିଲେ । ବୋଉକୁ ସବାରୀରେ ବସାଇ କଟକ ନେବାର ବ୍ୟବସ୍ଥା କଲେ ।

ମୋ ବୋଉକୁ ସବାରୀରେ କଟକ ଅଣାଗଲା । ଯଥା ସମୟରେ ପ୍ରସୂତି ଭବନରେ ଭର୍ତ୍ତି କରି ବାପା ଗାଁକୁ ଚାଲିଗଲେ । ପ୍ରତିଦିନ ଗାଁରୁ ସାଇକେଲରେ ପ୍ରାୟ ତିରିଶ କିଲୋମିଟର ଆସି ଓ ତିରିଶି କିଲୋମିଟର ଫେରି ସେ ବୋଉର ସ୍ୱାସ୍ଥ୍ୟ ଅବସ୍ଥା ବୁଝି ଗାଁକୁ ଫେରି ଯାଉଥିଲେ । ପ୍ରସୂତି ୱାର୍ଡ଼ ମଧ୍ୟକୁ ପୁରୁଷମାନଙ୍କୁ ଯିବା ମନା ଥିଲା । ଯାହାର ସନ୍ତାନ ସନ୍ତତି ହେଉଥିଲା ତାହା ଏକ କଳାପଟାରେ ଲେଖି ପ୍ରସୂତି ୱାର୍ଡ଼ର ବାହାରେ ଅନ୍ୟମାନଙ୍କ ଅବଗତି ନିମନ୍ତେ ରଖାଯାଉଥିଲା ।

୧୯୪୮ ମସିହା ଏପ୍ରିଲ୍ ମାସ ୧୩ ତାରିଖ ମଙ୍ଗଳବାର ଦିନ ଗାଁରୁ ବାପା ଆସି ସେଇ କଳାପଟାରୁ ପଢ଼ି ଜାଣିବାକୁ ପାଇଲେ ଯେ ପୂର୍ବଦିନ ରାତି ଦଶଟା ଚାଳିଶ ମିନିଟରେ ମୋର ଜନ୍ମ ହୋଇଅଛି ।

ଜନ୍ମ ପୂର୍ବରୁ ମୁଁ ମୋର ଜନ୍ମଦାତ୍ରୀ ମାଆଙ୍କୁ ଦୂରଦୂରାନ୍ତକୁ ବୁଲାଇ ଥିବା ହେତୁ ସେ ମୋ ନାମ ଶ୍ରଦ୍ଧାରେ ଦିଗରାଜ ରଖିଥିଲେ ।

ବାଲ୍ୟକାଳ

ପଲ୍ଲୀ ପରିବେଶ ମଧ୍ୟରେ ମୋର ଶୈଶବ କଟିଥିଲା । ଧୂଳି ଧୂଷରିତ ହୋଇ ଗାଁ ମାଟିରେ ସାଙ୍ଗ ସାଥୀଙ୍କ ସହିତ ମୋର ସମୟ ଖେଳକୁଦରେ ଅତିବାହିତ ହେଉଥିଲା । ଦିନେ ମୋ ଧୂଳିଧୂଷରିତ ଚେହେରା ଦେଖି ବଡ଼ବାପା ମୋତେ କହିଲେ, "ଆ, ମୋ ସହିତ ଆଜି ନଈକୁ ଗାଧୋଇ ଯିବୁ ।" ମୁଁ ସୁନାପିଲାଟି ଭଳି ତାଙ୍କ କଥା ମାନିଲି ଓ ପଛେ ପଛେ ଗଲି ।

ଆମ ଗାଁର ଶେଷ ମୁଣ୍ଡରେ ଏକ ନଦୀବନ୍ଧ । ଏହି ବନ୍ଧଟି ବନ୍ୟାଦାଉରୁ ରକ୍ଷା କରିବା ପାଇଁ ତିଆରି ହୋଇଥିଲା । ତା'ର ଅନତି ଦୂରରେ କୂଳ ନିନାଦିନୀ ବିରୂପା ନଈ ପ୍ରବାହିତ । ଆମ ଗ୍ରାମର ଆବାଳ ବୃଦ୍ଧବନିତା ପ୍ରାୟ ବିରୂପା ନଦୀରେ ଗାଧୋଇବାକୁ ଯାଆନ୍ତି । କେବଳ ଗାଁକୁ ନୂଆ ଆସିଥିବା ବୋହୂମାନେ ପ୍ରାୟତଃ ଯାଆନ୍ତି ନାହିଁ । ତଥାପି କେହି କେହି ମଧ୍ୟ ଓଢ଼ଣା ପକାଇ ଯିବାର ଦୃଶ୍ୟ ମଧ୍ୟ ଦେଖାଯାଏ ।

ମୋତେ ବଡ଼ବାପା ସେଦିନ ସେଇ ବିରୂପା ନଦୀକୁ ଗାଧୋଇ ନେଇଗଲେ । ମୋର ଦେହରେ ଯତ୍ନର ସହିତ ସାବୁନ ଲଗାଇ ଧୋଇଧାଇ ସଫା କରିଦେଲେ । ମୁଁ ତାଙ୍କ ପଛେ ପଛେ ଘରକୁ ଫେରିଲି । ସେଦିନ ଘରେ ମୋର ସଫାସୁତୁରା ଚେହେରା ଦେଖି ସମସ୍ତେ ଖୁସି ହୋଇ ଯାଇଥିଲେ । ମୋ ବଡ଼ବାପା, ବାପା ଓ ତାଙ୍କର ଅନ୍ୟ ଭାଇମାନେ ସେତେବେଳେ ଭିନ୍ନେ ହୋଇ ଅଲଗା ଅଲଗା ରହୁଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଭାବଗତ ଏକତା ଓ ପରସ୍ପର ମଧ୍ୟରେ ସ୍ନେହ ଶ୍ରଦ୍ଧା ଥିଲା । ଆମେ ପିଲାମାନେ ସେଥିରୁ ବଞ୍ଚିତ ହେଉ ନ ଥିଲୁ । ଏହା ଫଳରେ ଏବେ ମଧ୍ୟ ପରିଣତ ବୟସରେ ମୋ ବଡ଼ ଭାଇ ଚତୁର୍ଭୁଜ ବ୍ରହ୍ମା, ମୋ କକେଇ ପଞ୍ଚାନନ ପଣ୍ଡାଙ୍କ ଦୁଇ କକେଇ ପୁଅ ଭାଇ ଜଗଦାନନ୍ଦ ବ୍ରହ୍ମା, ନିଖିଳାନନ୍ଦ ବ୍ରହ୍ମା ଓ ମୋ ମଧ୍ୟରେ ଅମ୍ଳାନ ଭାତୃତ୍ୱ ସଂପର୍କ ରହିଅଛି ।

ଶୈଶବରୁ ମୋ ବଡ଼ ଭଉଣୀ ହାରାନାନୀ ବଡ଼ବାପାଙ୍କୁ ଜେଜେ ବୋଲି ଡାକୁଥିଲେ । ସେ ଆମ ସମସ୍ତଙ୍କଠାରୁ ବୟସରେ ଢ଼େର ବଡ଼ ଥିଲେ । ତେଣୁ ତାଙ୍କ ପରେ ଯେଉଁମାନେ ଜନ୍ମ ହୋଇଥିଲେ ସେମାନେ ସମସ୍ତେ ବଡ଼ବାପାଙ୍କୁ ଜେଜେ ବୋଲି ଡାକୁଥିଲେ । ମୋର ବଡ଼ବାପା ରଘୁନାଥ ପଣ୍ଡା ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସେ ଅଞ୍ଚଳର ସମ୍ମାନସ୍ପଦ ବ୍ୟକ୍ତି ଥିଲେ ।

ଗାଆଁର ପର୍ବପର୍ବାଣିର ପ୍ରଭାବ ମୋର ବାଲ୍ୟଜୀବନରେ ଅଧିକ ପଡ଼ିଥିଲା । ପ୍ରତିବର୍ଷ ଜାକଜମକରେ ରଜ ପର୍ବ ପାଳିତ ହେଉଥିଲା । ପ୍ରାୟତଃ ଘରେ ଘରେ ଦୋଳି

ଲାଗୁଥିଲା । ଗାଁର ପୁଅ ଓ ଝିଅମାନେ ଦୋଳି ଖେଳିବାର ଦୃଶ୍ୟ ଅତୀବ ରମଣୀୟ ଥିଲା । ଆମ ଘର ଆଗରେ ବଉଳଗଛଟିଏ ଥିଲା ସେଥିରେ ବାପା ରଜଦୋଳି ଲଗାଉଥିଲେ । ଆମେ ଦୋଳି ଖେଳି ରଜକୁ ଉପଭୋଗ କରୁଥିଲୁ ।

ଏହି ପର୍ବରେ ଧରିତ୍ରୀମାତାଙ୍କୁ ତିନିଦିନ ସମ୍ମାନ ଜଣାଇ ଚାଷବାସ ଆଦି ନିଷେଧ କରାଯାଇଥାଏ । ଗାଁର ଆରମ୍ଭରେ ରହୁଥିଲେ ଆମ ଭାୟାର ଦଦେଇ ପ୍ରବୀଣ ପ୍ରାଥମିକ ଶିକ୍ଷକ ସୋମନାଥ ପଣ୍ଡା । ତାଙ୍କ ଘରେ ପଶା ପାଲିଟିଏ ଥାଏ । ବିଶେଷତଃ ରଜ ତିନିଦିନ ଏଇ ପଶାଖେଳ ତାଙ୍କ ପିଣ୍ଡାରେ ଧୂମଧାମର ସହିତ ହୋଇଥାଏ । ଆମେ ପିଲାମାନେ ବେଳେବେଳ ଯାଇ ସେହି ଖେଳକୁ ଦେଖି ଉପଭୋଗ କରୁଥାଉ । ଏବେ ଆମ ଗାଆଁରେ ପଶାଖେଳ ସଂପୂର୍ଣ୍ଣ ଲୋପ ପାଇଅଛି ।

ଗାଆଁର ଶେଷ ମୁଣ୍ଡରେ ଠିକ୍ ବିରୂପା ନଦୀବନ୍ଧର ତଳକୁ ଥିଲା ସ୍ୱର୍ଗତଃ ଦୈତାରୀ ଶତପଥୀ ଓ ସ୍ୱର୍ଗତଃ ତ୍ରିଲୋଚନ ଶତପଥୀଙ୍କ ଘର । ସ୍ୱର୍ଗତଃ ତ୍ରିଲୋଚନ ଶତପଥୀ ଜଣେ ଦକ୍ଷ ତାସ ଖେଳାଳି ଥିଲେ । ସେ ତାଙ୍କର ଅନୁଗାମୀ, ବୃଦ୍ଧ ଓ ଯୁବକମାନଙ୍କୁ ଧରି ରଜ ତିନିଦିନ ପାନ ଖାଇ ତାସମାଡ଼ କରୁଥିଲେ । ସେ ଯେତେବେଳେ 'ତୁରୁପ' କହି ତାସ ମାଡ଼ କରୁଥିଲେ, ସେତେବେଳେ ସତେ ଯେମିତି ଆକାଶ ପାତାଳ କମ୍ପି ଉଠୁଥିଲା । ନାଲିଛକା ଓ କଳାଛକାରେ ଉଭୟ ପକ୍ଷର ଖେଳାଳିଙ୍କର ହାରଜିତ୍ ବେଶ୍ ସ୍ୱଷ୍ଟ ଜଣାପଡୁଥିଲା ।

ରଜର ଖେଳମାନଙ୍କ ମଧ୍ୟରେ ବିଶେଷ ଆକର୍ଷଣ ଥିଲା କୁଳନିନାଦିନୀ ବିରୂପା ନଈର ବାଲିରେ କିତିକିତି ଓ ବୋହୂଚୋରି ଖେଳ । ସେସବୁ ଖେଳକୁ ଗାଁର ଅତିପ୍ରିୟ ରାଧାଅଜା (ସ୍ୱର୍ଗତଃ ରାଧାନାଥ ପଣ୍ଡା), ନଟିଆନା (ସ୍ୱର୍ଗତଃ ନଟବର ପଣ୍ଡା) ଆଦି ପରିଚାଳନା କରୁଥିଲେ । ଦଳେ ପିଲା ଖେଳୁଥିଲେ ଓ ଆଉ ଦଳେ ପିଲା ଉପଭୋଗ କରୁଥିଲେ ।

ବନ୍ଧୁବାନ୍ଧବ, କୁଣିଆ ମଇତ୍ର, ଝିଅ-ଜୋଇଁଙ୍କ ଗହଣରେ ଗାଁର ପରିବେଶ ହସ ଖୁସିରେ ଫାଟି ପଡୁଥିଲା । ଘରେ ଘରେ ପିଠାପଣା ଓ ନୂତନ ଖାଦ୍ୟର ପରିବେଷଣ ମଧ୍ୟରେ ରଜ ତିନିଦିନ କିପରି ଚାଲିଯାଉଥିଲା ତାହା ଜାଣିବା କଷ୍ଟକର ହେଉଥିଲା ।

**ଗାଆଁର ଆରାଧ୍ୟ ଦେବତା : ଲକ୍ଷ୍ମୀକାନ୍ତ**

ଆମ ଗାଆଁର ଆରାଧ୍ୟ ଦେବତା ହେଉଛନ୍ତି ପ୍ରଭୁ ଲକ୍ଷ୍ମୀକାନ୍ତ । ଲକ୍ଷ୍ମୀକାନ୍ତଙ୍କର ଝୁଲଣ ଯାତ୍ରା ଓ ଦୋଳଯାତ୍ରା ହେଉଛି ଦୁଇଟି ମୁଖ୍ୟ ପର୍ବ । ଝୁଲଣ ଯାତ ତିନି ଦିନ ମଧ୍ୟରେ ସୀମିତ ରହିଲା ବେଳେ ଦୋଳଯାତ୍ରା ଦୋଳ ଦଶମୀଠାରୁ ଆରମ୍ଭ ହୋଇ ଦୋଳ ପୂର୍ଣ୍ଣିମା ପର୍ଯ୍ୟନ୍ତ ବଡ଼ ଯାକଜମକର ସହିତ ପ୍ରତିବର୍ଷ ପାଳନ କରାଯାଏ ।

ଗାଆଁର ତିନିଘରେ ଠାକୁର ଠାକୁରାଣୀ ତିନୋଟି ସ୍ଥାନରେ ଥାଆନ୍ତି । ସନ୍ଧ୍ୟା ଅତିବାହିତ ହେବାର ଦୁଇ ତିନିଘଣ୍ଟା ପରେ ଠାକୁରମାନେ ନିଜ ନିଜ ରହଣି ସ୍ଥାନରୁ ଦୋଳ ମଣ୍ଡପ ଆଡ଼କୁ ବିଜେ କରନ୍ତି । ଘଣ୍ଟ ଓ ଢ଼ୋଲ ଆଦି ବାଦ୍ୟର ତାଳେ ତାଳେ ଗାଆଁ ଦାଣ୍ଡରେ ଏଇ ବିଜେଯାତ୍ରା ଆରମ୍ଭ ହୋଇଥାଏ । ସମସ୍ତ ଠାକୁର ଆଲୋକମାଳାରେ ଆସି ଦୋଳ ମଣ୍ଡପ ପାଖରେ ପହଞ୍ଚିଲା ପରେ ତିନିଥର ବିଜେ ମଣ୍ଡପ ପରିକ୍ରମା କରନ୍ତି । ତା'ପରେ ଠାକୁରମାନଙ୍କୁ ସୁସଜ୍ଜିତ ବିମାନ ଉପରେ ଅବସ୍ଥାନ କରାଯାଇ ଭୋଗରାଗ କରାଯାଇଥାଏ । ଏହି କାର୍ଯ୍ୟକ୍ରମରେ ଗ୍ରାମର ଆବାଳବୃଦ୍ଧବନିତା ଜାତିବର୍ଣ୍ଣ ଧର୍ମ ନିର୍ବିଶେଷରେ ଯୋଗଦାନ କରିଥାନ୍ତି । ଆମ ଗ୍ରାମର ଅନତିଦୂରରେ ଅବସ୍ଥିତ କେରୁଆଳ ଗ୍ରାମର ଭାଇମାନେ ଏହି ଯାତ୍ରାରେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ପିଲାବେଳେ କେହି କେହି ବିଜେ ସମୟରେ ବନତ ବୁଲାଇଥାନ୍ତି ଓ କେହି କେହି ବାଡ଼ି ଖେଳ ମଧ୍ୟ କରି ଗ୍ରାମର ପରିବେଶକୁ ଉତ୍ସବ ମୁଖରିତ କରିଥାନ୍ତି । ଏଇ ଯାତ୍ରାରେ ମୋ ବାପା ମଧ୍ୟ ଅନେକ ସମୟରେ ବାଡ଼ି ଖେଳ ପ୍ରଦର୍ଶନ କରୁଥିଲେ ।

ବିଜେ ମଣ୍ଡପରେ ପ୍ରଭୁ ଲକ୍ଷ୍ମୀକାନ୍ତ ଓ ଅନ୍ୟ ଦେବଦେବୀଙ୍କ ଅବସ୍ଥାନ ପରେ ଭୋଗ ଅର୍ଚ୍ଚନା କରାଯାଇଥାଏ । ଭୋଗ ଅର୍ଚ୍ଚନା ସରିଗଲା ପରେ ଆରମ୍ଭ ହୁଏ ଯାତ୍ରା ପର୍ବ : ଅର୍ଥାତ୍ ନାଟ୍ୟ ଉତ୍ସବ ପର୍ବ ।

ପ୍ରତିବର୍ଷ ଆମ ଗ୍ରାମକୁ ଦୋଳରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ନାଚପାର୍ଟି ଆସି ଅଭିନୟ ପରିବେଷଣ କରିଥାନ୍ତି । ସେହିସବୁ ଅଭିନୟ ମଧ୍ୟରେ ସାମାଜିକ, ପୌରାଣିକ କିମ୍ବା ସାଂପ୍ରତିକ ପରିସ୍ଥିତିକୁ ନେଇ ରଚିତ ନାଟକ ଅଭିନୀତ ହୋଇଥାଏ । ଅଭିନୟ ଦେଖିବା ପାଇଁ ଆଖପାଖ ଅଞ୍ଚଳରୁ ମଧ୍ୟ ଅନେକ ଦର୍ଶକ ଆସିଥାନ୍ତି ।

ଏହି ଦୋଳ ପର୍ବ କେବଳ ଆମ ଗାଁ ମଧ୍ୟରେ ସୀମିତ ନ ଥିଲା । ଏହା ଆଖପାଖ ଅଞ୍ଚଳର ଏକ ସାଂସ୍କୃତିକ ଉତ୍ସବ ରୂପେ ଆଜି ପର୍ଯ୍ୟନ୍ତ ଚଳି ଆସୁଅଛି । ସେହିସବୁ ଯାତ୍ରା ମଧ୍ୟରେ ଭେଡ଼ାର ଚୌଧୁରୀ ପରିବାରର ଦୋଳଯାତ୍ରା, ଯଶୋରାଜପୁର, ସମସରପୁର ଆଦିର ଦୋଳ ଯାତ୍ରା ସ୍ଥାନୀୟ ଅଞ୍ଚଳର ସାଂସ୍କୃତିକ ଓ ଧାର୍ମିକ ପରମ୍ପରାକୁ ଅଦ୍ୟାବଧି ଉଜ୍ଜୀବିତ କରି ରଖିଅଛି ।

ନାଟ୍ୟ ଉତ୍ସବ ସରୁ କି ନସରୁ ପାହାନ୍ତା ପୂର୍ବରୁ ବିମାନକୁ କାନ୍ଧେଇ ଠାକୁରମାନଙ୍କୁ ଢ଼ୋଲ ବା ବାଦ୍ୟର ତାଳେ ତାଳେ ବିଭିନ୍ନ ମିଳନ ସ୍ଥାନକୁ ନିଆଯାଏ । ଆମ ଗ୍ରାମର ଲକ୍ଷ୍ମୀକାନ୍ତ ଠାକୁର ଯେଉଁସବୁ ମିଳନ ସ୍ଥଳକୁ ଆଜି ପର୍ଯ୍ୟନ୍ତ ଯାଇ ଆସୁଛନ୍ତି; ସେଗୁଡ଼ିକ ହେଲା ଛତିଆ, ଜରିପଡ଼ା, ଗୋବିନ୍ଦପୁର ଓ ମଞ୍ଚେଶ୍ୱର । ଏସବୁ ମିଳନସ୍ଥଳକୁ ବିଭିନ୍ନ

ଗ୍ରାମର ଠାକୁରମାନ ମହାସମାରୋହରେ ଢ଼ୋଲ, ବାଦ୍ୟ, ଘଣ୍ଟା, ଛତ୍ରୀ, ଚାମର ଆଦିର ତାଳେତାଳେ ଆସିଥାନ୍ତି । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସବୁ ଗ୍ରାମରୁ ଆସିଥବା ଠାକୁରମାନେ ବିଜେ କରିଥାନ୍ତି । ସବୁ ଠାକୁରଙ୍କୁ ଭୋଗ ଦେବାପରେ ମେଳଣ ଉତ୍ସବ ଭାଙ୍ଗିଥାଏ ଓ ଠାକୁରମାନେ ପୁନଃ ନିଜ ନିଜ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି ।

ପ୍ରଭୁ ଲକ୍ଷ୍ମୀକାନ୍ତଙ୍କ ମେଳଣଯାତ୍ରା ପରମ୍ପରା ଅନୁଯାୟୀ ଅନୁଷ୍ଠିତ ହୋଇ ଆସୁଅଛି । ଏକାଦଶୀ ଦିନ ଲକ୍ଷ୍ମୀକାନ୍ତ ଗଣେଶ୍ୱରପୁରରେ ଅଧିଷ୍ଠିତ ହୋଇଥିବା ପ୍ରଭୁ ତାରକେଶ୍ୱରଙ୍କୁ ଭେଟ କରିଥାନ୍ତି । ଦ୍ୱାଦଶୀଦିନ ଛତିଆ, ତ୍ରୟୋଦଶୀ ଦିନ ଜରିପଡ଼ା ଓ ଚତୁର୍ଦ୍ଦଶୀ ଦିନ ଗୋବିନ୍ଦପୁର ଓ ପୂର୍ଣ୍ଣିମା ଦିନ ମଞ୍ଚେଶ୍ୱର ମେଳଣରେ ଯୋଗଦାନ କରିଥାନ୍ତି ।

ପୂର୍ଣ୍ଣିମା ଦିନ ମଞ୍ଚେଶ୍ୱର ମେଳଣରୁ ଫେରି ପ୍ରଭୁ ଲକ୍ଷ୍ମୀକାନ୍ତ ଓ ଠାକୁରମାନଙ୍କୁ ପୂର୍ବପୁରୁଷଙ୍କ ଦ୍ୱାରା ନିର୍ମିତ ଏକ ଐତିହ ମଣ୍ଡପରେ ବିମାନ ସହିତ ରଖାଯାଏ । ଏହି ମଣ୍ଡପ ଦୋଳମଣ୍ଡପ ରୂପେ ପରିଚିତ । ସନ୍ଧ୍ୟାବେଳକୁ ଗାଁର ବିଭିନ୍ନ ଘରୁ ଆସିଥିବା ଭୋଗ ଠାକୁରମାନଙ୍କୁ ଅର୍ପଣ କରାଯାଇଥାଏ ।

ପାରମ୍ପରିକ ଭାବେ ଗ୍ରାମର ଅବଧାନ ଆସି ସନ୍ଧ୍ୟା ପହରରେ ପହଞ୍ଚି ଯାଆନ୍ତି । ସେ ନୂତନ ପାଞ୍ଜି ଆଣିଥାନ୍ତି । ଉପସ୍ଥିତ ଜନତାଙ୍କ ଆଗରେ ସେ ନୂତନ ପାଞ୍ଜି ଠାକୁରଙ୍କୁ ଅର୍ପଣ କଲାପରେ ଆଗାମୀ ବର୍ଷର ଭଲମନ୍ଦ ସଂପର୍କରେ ସମ୍ୟକ୍ ସୂଚନା ଦେଇଥାନ୍ତି ।

ପ୍ରଭୁ ଲକ୍ଷ୍ମୀକାନ୍ତ ଓ ଠାକୁରମାନେ ପୂର୍ଣ୍ଣିମା ପରଦିନ ନିଜ ନିଜ ରହଣି ସ୍ଥାନକୁ ଫେରି ଆସିଥାନ୍ତି । ଏହିପରି ଆମ ଗ୍ରାମର ଗୋଟିଏ ବର୍ଷର ଦୋଳଯାତ୍ରା ଆନନ୍ଦ ଉତ୍ସବ ମଧ୍ୟରେ ସମାହିତ ହୋଇଥାଏ ।

**ପ୍ରଥମ ବିଦ୍ୟା ଅଧ୍ୟୟନ**

ପ୍ରଥମେ କେମିତି ଓ କିପରି ପାଠପଢ଼ା ଆରମ୍ଭ କଲି, ସେ ସଂପର୍କରେ ଏବେ ମଧ୍ୟ ମୋର ଧାରଣା ସ୍ୱଷ୍ଟ ନୁହେଁ । ମାତ୍ର, ମୋର ଶିକ୍ଷକ ପିତା ସ୍ୱର୍ଗତଃ ଲକ୍ଷ୍ମଣ ପଣ୍ଡା ମୋର ପ୍ରଥମ ବାଲ୍ୟଗୁରୁ ଥିଲେ । ସେଥିପାଇଁ ମୋତେ ପାଠ ପଢ଼ିବାକୁ ଚାଟଶାଳୀ କିମ୍ବା ଅବଧାନଙ୍କ ପାଖକୁ ଯିବାକୁ ପଡ଼ି ନାହିଁ ।

ପ୍ରଥମେ ବାପା ମୋତେ ସିଲଟ ଓ ଖଡ଼ି ସାହାଯ୍ୟରେ ଅକ୍ଷର ଶିକ୍ଷାର ସୁଯୋଗ ଦେଇଥିଲେ ।

ସେ ପ୍ରଥମେ ସିଲଟରେ ତିନୋଟି ଗୋଲ ଗୋଲ ମୁଣ୍ଡଳି ବୁଲାଇ ମଡ଼େଇବା ପାଇଁ ମୋତେ କହିଥିଲେ । ସେହିସବୁ ଗୋଲକୁ ପ୍ରଥମେ ବ୍ରହ୍ମା, ପରେ ବିଷ୍ଣୁ ଓ ଶେଷରେ ମହେଶ୍ୱର ବୋଲି କୁହାଯାଉଥିଲା । ତେଣୁ ପ୍ରଥମ ଗୋଲାକାର ମୁଣ୍ଡଳି ଉପରେ ଖଡ଼ି

ଦେଇ ବୁଲାଇଲା ବେଳେ ବ୍ରହ୍ମା, ଦ୍ୱିତୀୟ ବୁଲାଇଲା ବେଳେ ବିଷ୍ଣୁ ଓ ପରେ ପରେ ମହେଶ୍ୱର କହି ମୋର ଲେଖିବାର ଧାରାକୁ ନିର୍ଦ୍ଦିଷ୍ଟ ଶୈଳୀକୁ ନେବାକୁ ମୁଁ ଚାହୁଁଥିଲି । ଏହି ତିନୋଟି ଗୋଲାକାର ଅକ୍ଷରକୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବୋଲି ବାରମ୍ବାର କହୁଥିବା ହେତୁ ଶିଶୁମନ ଉଲ୍ଲସିତ ହେଉଥିଲା । ଏହି ଗୋଲାକାର ଆକୃତିକୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କୁହାଯିବାର କ'ଣ ଯଥାର୍ଥତା ଅଛି ତାହା ମୁଁ ଆଜି ପର୍ଯ୍ୟନ୍ତ ଜାଣି ନାହିଁ ବା ସେ ସଂପର୍କରେ ଗବେଷଣା କରିନାହିଁ । ମାତ୍ର ମୁଁ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟରେ ବି.ଏଡ୍. ପଢୁଥିଲା ବେଳେ ମୋର ଶିକ୍ଷକ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ ଥରେ କହୁ କହୁ କହିଥିଲେ, "ପିଲାମାନେ ! ତୁମେ କହି ପାରିବ କି ଆମର ପ୍ରଥମ ଅକ୍ଷର ଶିକ୍ଷାଦାନରେ କାହିଁକି ପିଲାମାନଙ୍କ ସିଲଟ ଉପରେ ତିନୋଟି ଗୋଲାକାର ମୁଣ୍ଡଳି ଖଡ଼ି ସାହାଯ୍ୟରେ ବୁଲାଇ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର କହି କ୍ରମାନ୍ୱୟରେ ବୁଲାଇବାକୁ କୁହାଯାଇଥାଏ ?"

ସେଦିନ ଅଧ୍ୟାପକ ଶତପଥୀଙ୍କ ଉତ୍ତର ଉପସ୍ଥିତ ବି.ଏଡ୍. ଛାତ୍ର ମଧ୍ୟରୁ କେହିଜଣେ ଦେଇପାରି ନ ଥିଲେ ।

ସମସ୍ତଙ୍କୁ ନୀରବ ରହିବାର ଦେଖି ଅଧ୍ୟାପକ ଶତପଥୀ କହିଥିଲେ - ଏହି ତିନୋଟି ଗୋଲାକାର ମୁଣ୍ଡଳି ମଧ୍ୟରେ ଆମ ଓଡ଼ିଆ ଭାଷାର ସମସ୍ତ ଲିପି ସହଜରେ ଲେଖିହେବ । ତାହା ସେ ସେଦିନ କଳାପଟାରେ ଗୋଲାକାର ଅକ୍ଷର (ଶୂନ) ସାହାଯ୍ୟରେ ଓଡ଼ିଆର ସମସ୍ତ ଅକ୍ଷରର କିପରି ସଂପର୍କ ରହିଛି ପ୍ରଦର୍ଶନ କରିଥିଲେ ।

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସ୍ୱାଧୀନ ଭାବେ ଗୋଲାକୃତି କରି ଲେଖିବା ପରେ ପରେ ବାପା ମୋତେ ଛବି ବହି ପଢ଼ିବାକୁ ଦେଇଥିଲେ । ଛବି ବହିରେ ଥିବା ଆକର୍ଷଣୀୟ ଚିତ୍ର ଓ ଚିତ୍ରତଳେ ଥିବା ଶବ୍ଦ ଯଥା - ଘର, ରଥ, ରବର ଆଦି ଥିବା ହେତୁ ଅତି ସହଜରେ ପଢ଼ି ହେଉଥିଲା । ଏହାଦ୍ୱାରା ପଠନ ସହିତ ଅକ୍ଷର ଶିକ୍ଷାର ଦକ୍ଷତା ମଧ୍ୟ କ୍ରମଶଃ ବୃଦ୍ଧି ହେବାକୁ ଲାଗିଲା ।

### ପ୍ରାଥମିକ ଶିକ୍ଷା

ମୋର ପ୍ରାଥମିକ ଶିକ୍ଷା ଛଅ ବର୍ଷ ବୟସରେ ୧୯୫୪ ମସିହାରେ ଆରମ୍ଭ ହୋଇଥିଲା । ବାପା ମୋର ନାମ ସେ ବର୍ଷ ଆମ ଘରଠାରୁ ପ୍ରାୟ ପାଞ୍ଚ ଛଅ କିଲୋମିଟର ଦୂରରେ ଜଳୌକା ପାହାଡ଼ ପାଦଦେଶରେ ଅବସ୍ଥିତ ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଲେଖାଇଥିଲେ । ସେତେବେଳେ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶିଶୁ ଶ୍ରେଣୀକୁ ନେଇ ଆଉ ତିନୋଟି ଶ୍ରେଣୀ ଥିଲା । ସେଗୁଡ଼ିକ ହେଲା ପ୍ରଥମ, ଦ୍ୱିତୀୟ ଓ

ତୃତୀୟ ଶ୍ରେଣୀ । ପ୍ରାଥମିକ ଶିକ୍ଷାରେ ଶିଶୁ ଶ୍ରେଣୀର ଆବଶ୍ୟକତା ଯଥେଷ୍ଟ ବେଶୀ । ଏହା ଶିଶୁକୁ ପ୍ରାଥମିକ ଶିକ୍ଷାର ପରବର୍ତ୍ତୀ ଶ୍ରେଣୀ ପାଇଁ ଖେଳ, ନାଚ ଗୀତ ମାଧ୍ୟମରେ ମାନସିକ ସ୍ତରରେ ପ୍ରସ୍ତୁତ କରିଥାଏ । ଏବେ ଏଇ ବ୍ୟବସ୍ଥା ଆମ ଓଡ଼ିଆ ମାଧ୍ୟମ ବିଦ୍ୟାଳୟରୁ ପ୍ରାୟତଃ ଉଠିଯାଇଛି, ମାତ୍ର ଇଂରାଜୀ ମାଧ୍ୟମ ବିଦ୍ୟାଳୟଗୁଡ଼ିକରେ ପ୍ରାକ୍ ଶ୍ରେଣୀ ହିସାବରେ ଏଲ୍.କେ.ଜି ଓ ୟୁ.କେ.ଜି ଅଛି ।

ମୁଁ ବାପାଙ୍କ ସହିତ ଆମ ଗାଁଠାରୁ ରସିକନଗର ଚାଲିଚାଲି ଯାଉଥିଲି । ବାପା ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟର ହେଡ଼ପଣ୍ଡିତ ଥିଲେ । ତେଣୁ ଘରଠାରୁ ଏତେ ଦୂରରେ ପଢ଼ିବାରେ ମୋର କୌଣସି ଅସୁବିଧା ହେଉ ନ ଥିଲା ।

ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟଟି ଜଳୌକା ପାହାଡ଼ର ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶ୍ରମ ତଳେ ଅବସ୍ଥିତ । ଏହି ପାହାଡ଼ଟି ସିଧାଭାବେ ଉତ୍ତର-ଦକ୍ଷିଣ ଭାବେ ଦଣ୍ଡାୟମାନ । ଆମେ ଆମ ଘରଠାରୁ ଶତ୍ରୁଘ୍ନ ବାବାଙ୍କ ମଠ ପାଖାପାଖି ଦକ୍ଷିଣ ଦିଗରେ ପାହାଡ଼ ତଳେ ତଳେ ପ୍ରାୟତଃ ପାଞ୍ଚ କିଲୋମିଟର ଗଲାପରେ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶ୍ରମ ପାଦଦେଶରେ ଥିବା ଏଇ ବିଦ୍ୟାଳୟରେ ପହଞ୍ଚି ଥାଉ ।

ବିଦ୍ୟାଳୟରେ ପହଞ୍ଚି ବାପା ଓ ମୁଁ ଗୋଡ଼ହାତ ଧୋଇ ଶ୍ରେଣୀ କୋଠରିକୁ ପ୍ରବେଶ କରୁ । ଠିକ୍ ଚାରିଟାବେଳେ ବିଦ୍ୟାଳୟର ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟ ସରିଯାଏ । ଆମେ ପୂର୍ବବତ୍ ଘରକୁ ଫେରିଆସୁ ।

ଏହି ବିଦ୍ୟାଳୟଟି ଜଳୌକା ଆନନ୍ଦଧାମର ପ୍ରତିଷ୍ଠାତା ପରମ ପୂଜ୍ୟ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଦ୍ୱାରା ୧୯୪୯ ମସିହା ଏପ୍ରିଲ ମାସ ପହିଲା ଦିନ ପ୍ରତିଷ୍ଠିତ ହୋଇଥିଲା । ସେ ସମୟରେ ଦୁଇ କୋଠରି ବିଶିଷ୍ଟ ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟ ସେ ଅଞ୍ଚଳରେ ଏକ ଆଦର୍ଶ ପ୍ରାଥମିକ ବିଦ୍ୟାଳୟ ଥିଲା । ମୋ ବାପା ଏହାର ପ୍ରଥମ ହେଡ଼ପଣ୍ଡିତ ଭାବେ ସେଠାରେ ଯୋଗଦାନ କରିଥିଲେ । "ବଡ଼ ସାର୍" ନାମରେ ସେ ଛାତ୍ରଛାତ୍ରୀଙ୍କ ଗ୍ରହଣରେ ପରିଚିତ ଥିଲେ । ଜଣେ ଅଭିଜ୍ଞ ଶିକ୍ଷକ ହିସାବରେ ସେ ଶିଶୁ ଶ୍ରେଣୀ, ପ୍ରଥମ ଶ୍ରେଣୀ ଓ ତୃତୀୟ ଶ୍ରେଣୀରେ ଶିକ୍ଷାଦାନ କରୁଥିଲେ । ଅନ୍ୟ କୋଠରିରେ ଶିକ୍ଷାଦାନ କରୁଥିଲେ 'ସାନ ସାର୍' ଗଣେଶ୍ୱରପୁର ଗ୍ରାମର ପ୍ରାଥମିକ ଶିକ୍ଷକ ସୁରେନ୍ଦ୍ରନାଥ କର ।

ଶିକ୍ଷାଦାନ ବେଳେ କେବେ ବଡ଼ ସାର୍‌ଙ୍କୁ ବିରକ୍ତି ହେବା ବା କାହାକୁ ଦଣ୍ଡ ଦେବାର ଦୃଶ୍ୟ ସାଧାରଣତଃ ପିଲାମାନେ ଦେଖିବାକୁ ପାଆନ୍ତି ନାହିଁ । ମାତ୍ର ସାନ

ସାର୍‌ଙ୍କ କଥା ଥିଲା ଟିକିଏ ଅଲଗା । ସେ ଟିକିଏ ରାଗିଗଲେ ନିଜକୁ ନିଜର ଅଧୀନରେ ରଖିପାରୁ ନ ଥିଲେ । ପିଲାମାନଙ୍କ ଉପରେ ବେତର ପାହାରର ଶବ୍ଦ ବଡ଼ସାର୍‌ଙ୍କୁ ଶୁଭିଲେ ସେ ନିଜ ସ୍ଥାନରୁ ଉଠି ସାନ ସାର୍‌ଙ୍କ କୋଠରି ପର୍ଯ୍ୟନ୍ତ ଚାଲିଯାଇ କହୁଥିଲେ, "ସୁର ! ଥାଉ, ବେଶ୍ ହୋଇଗଲା । ମାଡ଼ ଦେଲେ ତ ପିଲାଙ୍କ ମୁଣ୍ଡ ଖରାପ ହୋଇଯିବ । ସେମାନେ ଆଉ ପାଠ ବୁଝିବେ କ'ଣ ?"

ବାପାଙ୍କ କଥା ଶୁଣି ସାନ ସାର୍‌ଙ୍କ ମାଡ଼ ଦେବା କାର୍ଯ୍ୟ ବନ୍ଦ ହୋଇଯାଏ । ତାଙ୍କର ବଡ଼ସାର୍‌ଙ୍କ ପ୍ରତି ଏତେ ସମ୍ମାନ ଥାଏ ଯେ ସେ କେବେ ତାଙ୍କୁ ଅସମ୍ମାନ ବା ଅବମାନନା କରିବାର କେହି ଦେଖି ନ ଥାନ୍ତି ।

ସେତେବେଳେ ସାରା ଦେଶରେ ଗାନ୍ଧିଜୀଙ୍କ ଆଦର୍ଶରେ ଦେଶର ପ୍ରାଥମିକ ଶିକ୍ଷାକୁ ମୌଳିକ ଢାଞ୍ଚାରେ ପରିଚାଳିତ କରିବାକୁ ଚେଷ୍ଟା କରାଯାଉଥିଲା । ଏଥିରୁ ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟ ବା କିପରି ବାଦ୍ ଯାଆନ୍ତା । ହସ୍ତ କର୍ମ ସହିତ ବିଦ୍ୟାଳୟର ବଗିଚା କାମ ନିତ୍ୟ ନୈମିତ୍ତିକ କାର୍ଯ୍ୟ ଥିଲା ।

ପିଲାମାନଙ୍କ ପରିସ୍ରା ନିମନ୍ତେ ଓ ମଳତ୍ୟାଗ ନିମନ୍ତେ ବଡ଼ ବଡ଼ ଦୁଇଟି ଗାତ ଖୋଳାଯାଇ ପରିସ୍ରାଗାର ଓ ପାଇଖାନା ସ୍ଥଳୀ ନିରୂପଣ କରାଯାଇଥିଲା । ପରିସ୍ରା ଗାତରେ କାଠିକୁଟା ଓ ଶୁଖିଲା ପତ୍ର ପକାଯାଇ ପୂରଣ କରାଯାଇଥିଲା । ପରିସ୍ରା କରିବା ସ୍ଥାନରୁ ପରିସ୍ରା ଯାଇ ଗାତରେ ପଡ଼ିବା ନିମନ୍ତେ ଏକ ନଳା ଖଞ୍ଜା ଯାଇଥିଲା । ଖାତଟିକୁ କିଛି ଦିନ ପରେ ଖୋଳା ଯାଇ କାଠିକୁଟା ପତରରେ ପ୍ରସ୍ତୁତ ଖତକୁ ବିଦ୍ୟାଳୟର ବଗିଚାରେ ବ୍ୟବହାର କରାଯାଇଥିଲା । ସେତେବେଳେ ଏହାକୁ ସୁବର୍ଣ୍ଣ ଖତ କୁହାଯାଉଥିଲା । ସେହିପରି ପାଇଖାନାର ମଳରେ ପ୍ରସ୍ତୁତ ଖତକୁ ହୀରକ ଖତ କୁହାଯାଉଥିଲା ।

ମହାତ୍ମା ଗାନ୍ଧୀଙ୍କ ସମୟରେ ସୂତାକଟା ତକଲିକୁ ଦେଶର ମୁକ୍ତିର ମାର୍ଗ ବୋଲି କୁହାଯାଇଥିଲା । ସେତେବେଳର ଗୋଟିଏ କବିତାର ଦୁଇଧାଡ଼ି ଏବେ ବି ମୋର ମନେ ଅଛି । ସେ ଦୁଇଟି ଧାଡ଼ି ହେଲା - "ତକଲିକୁ ଭାଇ ନମଣ ଛୋଟ - ତକଲି ଏ ଦେଶ ମୁକତି ବାଟ ।" ଗାନ୍ଧୀ ମହାତ୍ମା ଏହି ଛୋଟ ସୂତାବୁଣା ତକଲି ମାଧ୍ୟମରେ ସୂତାବୁଣି ସ୍ୱଦେଶୀ ଖଦଡ଼ ପିନ୍ଧିବାର ବାର୍ତ୍ତା ଘରେ ଘରେ ପହଞ୍ଚାଇ ଦେବା ପାଇଁ ପ୍ରାଥମିକ ସ୍ତରର ଶିକ୍ଷାକୁ ତୃଣମୂଳ ସ୍ତରର ଉପଯୁକ୍ତ ସ୍ଥାନ ବୋଲି ବିବେଚିତ କରୁଥିଲେ । ଏତଦ୍‌ବ୍ୟତୀତ ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଅରଟ ମାଧ୍ୟମରେ ସୂତାବୁଣାର କୌଶଳ ସଂପର୍କରେ ମଧ୍ୟ ପିଲାମାନଙ୍କୁ ଯଥା ସମ୍ଭବ ଧାରଣା ଦିଆଯାଇଥିଲା । ତକଲି ଓ ଅରଟ ସାହାଯ୍ୟରେ ସୂତା ବୁଣିବାକୁ ଶିଶୁମାନଙ୍କ ମଧ୍ୟରେ ଅସରନ୍ତି ଆଗ୍ରହ ଦେଖାଯାଉଥିଲା ।

ଶିଶୁ ଶ୍ରେଣୀରେ ଆମେ ହସଖେଳ ମାଧ୍ୟମରେ ବିଭିନ୍ନ ଗୀତ ଶିଖିଥିଲୁ । ନିଜର ପରିବେଶକୁ କିପରି ସଫାସୁତରା ରଖିବ ତାହା ମଧ୍ୟ ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ସଫାସୁତରା ରଖିବାର କାର୍ଯ୍ୟକ୍ରମ ମାଧ୍ୟମରେ ଶିଖିଥିଲୁ । ଶିଶୁ ଶ୍ରେଣୀ ଓ ପ୍ରଥମ ଶ୍ରେଣୀ ମଧ୍ୟରେ ବିଶେଷ ବ୍ୟବଧାନ ନ ରହି ପାଠ ପଢ଼ା ହେଉଥିବାରୁ ଶିଶୁ ଶ୍ରେଣୀର ପିଲାମାନେ ମଧ୍ୟ ପ୍ରଥମ ଶ୍ରେଣୀର ପାଠ କିଛି କିଛି ଶିଖୁଥିଲେ ।

ସେହିପରି ଶିଶୁ ଓ ପ୍ରଥମ ଶ୍ରେଣୀ ଗୋଟିଏ କୋଠରିର ଗୋଟିଏ ପାର୍ଶ୍ୱରେ ଥିଲାବେଳେ ଅନ୍ୟ ପାର୍ଶ୍ୱରେ ତୃତୀୟ ଶ୍ରେଣୀର ପିଲାମାନେ ପଢୁଥିଲେ । ବହୁଶ୍ରେଣୀ ଶିକ୍ଷାଦାନ ପଦ୍ଧତି (Multigrade Teaching Method) ଅନୁସୃତ ହୋଇଥିବା ହେତୁ ନିମ୍ନ ଶ୍ରେଣୀର ପିଲାମାନେ ମଧ୍ୟ ଉଚ୍ଚ ଶ୍ରେଣୀର ପିଲାମାନଙ୍କ ପାଠ ଶିଖିଯାଉଥିଲେ । ଏହା ଫଳରେ ଉଚ୍ଚ ଶ୍ରେଣୀ ପିଲାମାନଙ୍କୁ ପ୍ରଶ୍ନ ପଚରା ଗଲାବେଳେ ମୁଁ ସ୍ୱତଃପ୍ରବୃତ୍ତ ଅନେକ ପ୍ରଶ୍ନର ଉତ୍ତର ଦେଇ ପାରୁଥିଲି ।

ପିଲାମାନଙ୍କ ମଧ୍ୟରେ ପାରସ୍ପରିକ ଆଲୋଚନା ଓ ପାରସ୍ପରିକ କାର୍ଯ୍ୟକଳାପ (Mutual discussion-cum-interaction) ହେଲେ, ପାଠରେ ଦୁର୍ବଳ ଥିବା ପିଲାମାନେ ବିଶେଷ ଲାଭବାନ ହୋଇଥାନ୍ତି । ଏଇ ତତ୍ତ୍ୱକୁ ନ ବୁଝି ଓଡ଼ିଶାର ଏକ ସୁନାମଧନ୍ୟ ଉଚ୍ଚ ବିଦ୍ୟାଳୟର ପ୍ରଧାନଶିକ୍ଷକ ସମସ୍ତ ଦୁର୍ବଳ ପିଲାମାନଙ୍କ ପାଇଁ ଗୋଟିଏ ସେକସନ୍ ଖୋଲି ଥିବାର ଦୃଷ୍ଟାନ୍ତ ମୁଁ ଅଧ୍ୟାପକ ଥିଲାବେଳେ ଜାଣିବାକୁ ପାଇଥିଲି । ସେ ଦୁର୍ବଳ ଶିକ୍ଷକଙ୍କୁ ସେହି ଶ୍ରେଣୀରେ ମଧ୍ୟ ଶିକ୍ଷାଦାନ ଦେବାରେ ନିୟୋଜିତ କରୁଥିଲେ । ବିଦ୍ୟାଳୟରେ ଚାଲୁଥିବା ଏପରି ଅବସ୍ଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ମାତ୍ର ସେ ପ୍ରଧାନଶିକ୍ଷକ ରାଜନୈତିକ ଓ ସାମାଜିକ ଦୃଷ୍ଟିକୋଣରୁ ଏତେ ବଳିଷ୍ଠ ଥିଲେ ଯେ ତାଙ୍କର ଏତାଦୃଶ ଶିକ୍ଷାସଂସ୍କାରକୁ ଆହ୍ୱାନ ଦେବାକୁ କୌଣସି ବ୍ୟକ୍ତିବିଶେଷ ବା ପରିଦର୍ଶକ ସାହସ ଜୁଟାଇ ପାରୁ ନ ଥିଲେ । ମାତ୍ର ତାଙ୍କ ପରେ ପରେ ଏପରି ବ୍ୟକ୍ତିକୈନ୍ଦ୍ରିକ ତଥାକଥିତ ଶିକ୍ଷାସଂସ୍କାର ଆପେ ଆପେ ସେଇ ଶିକ୍ଷାନୁଷ୍ଠାନରୁ ଅପସରି ଯାଇଥିଲା । ସେ ମହାଶୟ ହୁଏତ ପାଠରେ ଦୁର୍ବଳ ଥିବା ପିଲାଟି ସବଳ ପିଲା ସହିତ ପଢ଼ିଲେ ଅଧିକ ଶିକ୍ଷାଲାଭ କରିପାରେ, ଶିକ୍ଷାର ଏ ତତ୍ତ୍ୱଟି ଭୁଲି ଯାଇଥିଲେ ।

ମୁଁ ତୃତୀୟ ଶ୍ରେଣୀରେ ପଢୁଥିଲାବେଳେ ମହାତ୍ମା ଗାନ୍ଧିଙ୍କ ଆବକ୍ଷ ଚିତ୍ର ସାହିତ୍ୟ ବହିର ମଲାଟରେ ଶୋଭା ପାଉଥିଲା । ଏହି ଚିତ୍ରଟି ମୋର ବାଲ୍ୟ ମନକୁ ଏପରି କିଣି ନେଇଥିଲା ଯେ ଏବେ ମଧ୍ୟ ଏହି ବହିଟିର ସଂପୂର୍ଣ୍ଣ ରୂପରେଖ ମୋ ମନ ମଧ୍ୟରେ ରଖି ପାରିଅଛି । ବହିଟିର ନାମ ଥିଲା "ସାହିତ୍ୟ ପ୍ରଭା" । ଏଥିରେ ସ୍ଥାନିତ ଥିବା ଗୀତ,

ଗଳ୍ପ ଓ ଏହାର ପରିପାଟୀ ଯେମିତି ମନଛୁଆଁ ଥିଲା; ସେମିତି ଏହାର ଭାଷା, ଶୈଳୀ ଓ ଭାବ କୁନିକୁନି ପିଲାମାନଙ୍କ ମନ ଛୁଇଁ ପାରୁଥିଲା ।

ଆମେ ପଢୁଥିଲାବେଳେ ଶିକ୍ଷା ବିଭାଗର ଜଣେ ପରିଦର୍ଶକ ଆମ ବିଦ୍ୟାଳୟକୁ ବୁଲି ଆସିଥିଲେ । ତାଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ମୁଁ ଯଥାଶୀଘ୍ର ଦେଇପାରୁଥିବା ହେତୁ ସେ ମୋ ଉପରେ ବେଶୀ ଖୁସି ହୋଇ ଯାଇଥିଲେ । ବାପାଙ୍କୁ ମୋର ପରିଚୟ ପଚାରିଥିଲେ ଓ ପାଇଥିଲେ ମଧ୍ୟ । ମାତ୍ର ମୋର ସ୍ଥିତପ୍ରଜ୍ଞ ବାପାଙ୍କ ଉପରେ ପରିଦର୍ଶକଙ୍କ ପ୍ରଶଂସା କୌଣସି ପ୍ରଭାବ ପକାଇ ପାରି ନ ଥିଲା ।

**ଅଧ୍ୟାତ୍ମିକ ଚେତନାର ଉତ୍ସ ! ଆମ ପ୍ରାଥମିକ ବିଦ୍ୟାଳୟ**

ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟ ଜଳୌକା ପାହାଡ଼ ଉପରେ ଥିବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶ୍ରମର ପାଦ ଦେଶରେ ଅବସ୍ଥିତ । ବାବାଙ୍କ ଆଶୀର୍ବାଦ ଲାଭ କରି ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟ ୧୯୪୯ ମସିହା ଏପ୍ରିଲ ମାସ ପହିଲା ଦିନ ବାବାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଆଶ୍ରମର ଆଧ୍ୟାତ୍ମିକ ପରିବେଶର ପ୍ରଭାବ ଆଖପାଖ ଅଞ୍ଚଳରେ ପଡୁଥିଲାବେଳେ ପ୍ରତ୍ୟକ୍ଷ ଭାବରେ କୁନି କୁନି ପିଲାଙ୍କ ଉପରେ ମଧ୍ୟ ପଡୁଥିଲା ।

ବାବା ବୈକୁଣ୍ଠନାଥ କେବଳ ଜଣେ ଆଧ୍ୟାତ୍ମିକ ପୁରୁଷ ନ ଥିଲେ, ସେ ଥିଲେ ଜଣେ ସଂସ୍କାରବାଦୀ ସ୍ୱାଧୀନତା ସଂଗ୍ରାମୀ ଓ ରାଜନୀତିଜ୍ଞ ମଧ୍ୟ । ଆଶ୍ରମରେ ବାରମାସରେ ତେର ପର୍ବ ପାଳିତ ହେବା ସହିତ କାର୍ତ୍ତିକ ପୂର୍ଣ୍ଣିମା ଓ ବୈଶାଖ ପୂର୍ଣ୍ଣିମା ମହାସମାରୋହରେ ମଧ୍ୟ ସେ ସମୟରେ ପାଳିତ ହୋଇ ଆସୁଥିଲା ।

ଆମେ ପଢୁଥିବା ସମୟରେ ରସିକନଗର ଗ୍ରାମର ପିଲାମାନଙ୍କୁ ନେଇ ବାବା "କଂସ ବଧ" ନାଟକ ଜଳୌକା ଆଶ୍ରମ ନିକଟସ୍ଥ ସମତଳ ଭୂମିରେ କରିଥିଲେ । ସେ ନିଜେ ଏହାର ନିର୍ଦ୍ଦେଶନା ଦେଇଥିଲେ ଓ ଯଥାଯଥ ମଞ୍ଚାଭିନୟ ମଧ୍ୟ କରାଇଥିଲେ ।

ଏତଦ୍‌ବ୍ୟତୀତ ବିଭିନ୍ନ ସମୟରେ ପର୍ବପର୍ବାଣି ପାଳନପୂର୍ବକ ଆଧ୍ୟାତ୍ମିକ ଆଲୋଚନାଚକ୍ର ମଧ୍ୟ ଆଶ୍ରମରେ ଅନୁଷ୍ଠିତ ହେଉଥିଲା । ବକ୍ତାମାନଙ୍କର ଭାଷଣର ପ୍ରଭାବ ଆମମାନଙ୍କ ଉପରେ ଯଥେଷ୍ଟ ପଡୁଥିଲା ଓ ଭବିଷ୍ୟତରେ ଆମେ କେମିତି ଜଣେ ଜଣେ ସୁବକ୍ତା ହେବୁ ତା'ର ପରିକଳ୍ପନା ମଧ୍ୟ ଆମର ଶିଶୁ ସୁଲଭ ପ୍ରାଣକୁ ଆନ୍ଦୋଳିତ କରୁଥିଲା ।

୧୯୫୭ ମସିହାରେ ମୁଁ ତୃତୀୟ ଶ୍ରେଣୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ଏଥିସହିତ ମୋର ନିମ୍ନ ପ୍ରାଥମିକ ବିଦ୍ୟାଳୟର ଅଧ୍ୟୟନର ଯବନିକା ପଡ଼ିଲା । ଆମ ଗ୍ରାମ ପାଖରେ କୌଣସି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ନ ଥିବା ହେତୁ ମୋର ନାମଲେଖା ଆମ

ଗ୍ରାମଠାରୁ ପ୍ରାୟ ଛଅ କିଲୋମିଟର ଦୂରରେ ଥିବା ମାଗୁରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ହୋଇଥିଲା । ଏଇ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ଥିଲେ ଶ୍ରୀଯୁକ୍ତ ଯୋଗେନ୍ଦ୍ର ମହାନ୍ତି । ସେ ଆମ ଗ୍ରାମ ରୁଦ୍ରପୁର ନିକଟବର୍ତ୍ତୀ ଅଡ଼ମ୍ବୁରପାଟଣା ନିବାସୀ ଥିଲେ ।

ଶ୍ରୀଯୁକ୍ତ ମହାନ୍ତିଙ୍କ ସହିତ ଯେଉଁମାନେ ସହକର୍ମୀ ଶିକ୍ଷକ ଥିଲେ, ସେମାନେ ହେଲେ ଆମ ରୁଦ୍ରପୁର ଗ୍ରାମର ଶ୍ରୀଯୁକ୍ତ ସୋମନାଥ ପଣ୍ଡା, ଶ୍ରୀଯୁକ୍ତ ମାର୍କଣ୍ଡ ପଣ୍ଡା ଓ ମୋ ବାପାଙ୍କର ଛାତ୍ର ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାନ୍ତି । ସେମାନେ ସମସ୍ତେ ଜଣେ ଜଣେ ପ୍ରବୀଣ ଶିକ୍ଷକ ଥିଲେ । ସେମାନଙ୍କର ଶିକ୍ଷାଦାନ ଶୈଳୀ ପ୍ରାଣସ୍ପର୍ଶୀ ଓ ଉନ୍ନତମାନର ଥିଲା ।

ପ୍ରଧାନଶିକ୍ଷକ ଯୋଗେନ୍ଦ୍ରବାବୁ ଜଣେ ଋଷି ପ୍ରତିମ ଅମାୟିକ ବ୍ୟକ୍ତି ଥିଲେ । ସେ ଗଣିତ ଓ ସାହିତ୍ୟ ଆଦି ବିଷୟବସ୍ତୁକୁ ଅତି ଚିତ୍ତାକର୍ଷକ ଭାବେ ପଢ଼ାଉଥିଲେ ।

ସେତେବେଳେ ଆମର ପରୀକ୍ଷା ବର୍ଷକୁ ଦୁଇଥର ହେଉଥିଲା । ଶିକ୍ଷା ବର୍ଷର ପ୍ରଥମାର୍ଦ୍ଧ ପରୀକ୍ଷାକୁ ଷାଣ୍ମାସିକ ଓ ଦ୍ୱିତୀୟାର୍ଦ୍ଧ ପରୀକ୍ଷାକୁ ବାର୍ଷିକ ପରୀକ୍ଷା କୁହାଯାଉଥିଲା ।

ପଞ୍ଚମ ଶ୍ରେଣୀରେ ଅନୁଷ୍ଠିତ ହେଉଥିବା ଷାଣ୍ମାସିକ ପରୀକ୍ଷାରେ ମୋର ଗଣିତରେ ଶହେ ନମ୍ବରରୁ କୋଡ଼ିଏ ନମ୍ବର ଥିଲା । ସେତେବେଳେ ଗଣିତ ପରୀକ୍ଷାରେ ସର୍ବମୋଟ ଦଶଟି ପ୍ରଶ୍ନ ପଚରା ଯାଉଥିଲା ଓ ଯେ କୌଣସି ପାଞ୍ଚଗୋଟି ପ୍ରଶ୍ନର ଉତ୍ତର ଦେବାକୁ କୁହାଯାଉଥିଲା । ଉତ୍ତର ଠିକ୍ ଥିଲେ ହିଁ ପୂରା ନମ୍ବର ମିଳୁଥିଲା, ନଚେତ୍ 'ଶୂନ' ଦିଆଯାଉଥିଲା । ଏହାଥିଲା ସେତେବେଳର ମୂଲ୍ୟାୟନ ପଦ୍ଧତି । ଆଜିକାଲି ଭଳି ଷ୍ଟେପ୍ ମାର୍କିଂ ପଦ୍ଧତି ଅନୁସୃତ ହେଉ ନ ଥିଲା ।

ଯେଉଁଦିନ ଯୋଗୀସାର୍ ଆମକୁ ଖାତା ଫେରାଇ ଦେଖାଇଲେ, ସେତେବେଳେ ସେ ମୋତେ କହିଲେ, "ତୁ ଜଣେ ଶିକ୍ଷକଙ୍କ ପୁଅ ହୋଇ ଏତେ କମ୍ ନମ୍ବର କିପରି ରଖୁଚୁ ?"

ଏତିକିରେ ମୋ ମୁଣ୍ଡକୁ ରାଗ ଚଢ଼ିଗଲା । ଏକେତ କମ୍ ନମ୍ବର ଥିଲା ଓ ସେଥିପାଇଁ ମୁଁ ଆପେ ଆପେ ଆଗରୁ ଲଜ୍ଜିତ ହୋଇଥିଲି । ପୁଣି ଶିକ୍ଷକଙ୍କର ପୁଅ କହିବାରୁ ମୋର କ୍ରୋଧ ଏତେ ବଢ଼ିଗଲା ଯେ ମୁଁ ସଙ୍ଗେ ସଙ୍ଗେ କହିଲି, "ସାର୍ ! ଆପଣଙ୍କ ପାଖରେ ଟିଉସନ୍ ହୋଇଥିଲେ ମୋତେ ଅଧିକ ନମ୍ବର ମିଳିଥାନ୍ତା । ଆମ ଶ୍ରେଣୀର ଗଧ ପିଲାମାନେ ତ ପୁଣି ଟିଉସନ ହୋଇ ମୋଠାରୁ ବେଶୀ ନମ୍ବର ରଖିଛନ୍ତି ।"

ଏକଥା ଶୁଣି ସାର୍ ମୋ ଉପରେ ଭୀଷଣ ରାଗିଗଲେ । ସେ ସଙ୍ଗେ ସଙ୍ଗେ ବେତ ବାହାର କରି ମୋ ପିଠିରେ ଚାରି ପାଞ୍ଚ ପାହାର କଷିଦେଲେ । ତା'ର ଚିହ୍ନ

କିଛିଦିନ ପାଇଁ ରହିଲା । ଗାଧୋଇଲାବେଳେ ତାହା ବାପା ସହଜରେ ଦେଖି ପାରିଥିଲେ । ମୋତେ କିନ୍ତୁ କିଛି ପଚାରିଲେ ନାହିଁ । ସମଧର୍ମୀ ଶିକ୍ଷକ ବନ୍ଧୁମାନଙ୍କୁ ପଚାରି ସବୁ କଥା ବୁଝିଥିଲେ ।

ମାତ୍ର ମୋର ସୌଭାଗ୍ୟ ଯେ ମୁଁ ଏପରି ଜଣେ ପିତାଙ୍କୁ ଶିକ୍ଷକ ରୂପେ ପାଇଥିଲି ଯେ କି କେବେ ମୋର ପରୀକ୍ଷାଫଳ ଦେଖି ବିବ୍ରତ ନ ଥିଲେ କିମ୍ବା ମୋର ପରୀକ୍ଷା ଫଳାଫଳକୁ ତର୍ଜମା କରି ବିରକ୍ତ ହେଉ ନ ଥିଲେ । ଏପରିକି ମୁଁ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ହେଲାପରେ ମଧ୍ୟ ସେ ମୋତେ ପ୍ରଶିକ୍ଷଣ ସମ୍ବନ୍ଧୀୟ ଦିଗ୍‌ଦର୍ଶନ ଦେଉଥିଲେ । ସେ ଭଲଭାବେ ଜାଣିଥିଲେ; ଗୋଟିଏ ସମୟର ଫଳାଫଳ ସବୁ ସମୟରେ ରୁହେନା । ତଳ ଶ୍ରେଣୀରେ ଖରାପ ଫଳାଫଳ ପ୍ରଦର୍ଶନ କରୁଥିବା ପିଲାମାନେ ଉଚ୍ଚଶ୍ରେଣୀରେ ହଠାତ୍ ସୁନ୍ଦର ଫଳାଫଳ ପ୍ରଦର୍ଶନ କରିଥାନ୍ତି । ତାହା ହିଁ ଉଚ୍ଚ ଶ୍ରେଣୀରେ ମୋ କ୍ଷେତ୍ରରେ ଘଟିଥିଲା ।

ମାତ୍ର ବାପା ଯୋଗୀ ସାର୍‌ଙ୍କ ପ୍ରତି ମୋର ମନ୍ତବ୍ୟ ଖବର ଜାଣି ବୋଉକୁ ଗୋଟିଏ କଥା କହିଥିଲେ, "ସେ ଯଦି ଶିକ୍ଷକମାନଙ୍କ ଉପରେ ଏମିତି ରାଗିବ, ତେବେ କେମିତି ଭବିଷ୍ୟତରେ ପାଠ ପଢ଼ିବ ?"

**ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ତତ୍‌କାଳୀନ ଶିକ୍ଷା ପଦ୍ଧତି**

୧୯୫୭ ମସିହାରେ ମାଗୁରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟଟି ଶିଶୁ ଶ୍ରେଣୀରୁ ଆରମ୍ଭ ହୋଇ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଥିଲା । ମୁଁ ଏହି ବିଦ୍ୟାଳୟରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ ଦୁଇବର୍ଷ ପଢ଼ିବାର ସୁଯୋଗ ଲାଭ କରିଥିଲି । ଆଜି ପରିଣତ ବୟସରେ ମୁଁ ଯେତେବେଳେ ଏଇ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଅନୁସୃତ ଶିକ୍ଷା ପଦ୍ଧତି ସଂପର୍କରେ ପଶ୍ଚାତ୍ ଅବଲୋକନ କରେ, ମୋତେ ସେତିକି ଆଶ୍ଚର୍ଯ୍ୟ ଲାଗେ ଯେ ସେତେବେଳର ଶିକ୍ଷକମାନେ ଆଜିର ବୈଷୟିକ ଯନ୍ତ୍ରପାତି ବ୍ୟବହାର କରୁଥିବା ପ୍ରାଥମିକ ଶିକ୍ଷକମାନଙ୍କଠାରୁ କୌଣସି ଗୁଣରେ ନ୍ୟୂନ ନ ଥିଲେ । କେବଳ ଏତିକି ତଫାତ୍ ଯେ ସେମାନେ ନିଜର କଳ୍ପନା ଓ ଅଭିନୟ ମାଧ୍ୟମରେ ଶ୍ରେଣୀ ଗୃହକୁ ଜୀବନ୍ତ କରୁଥିଲାବେଳେ ଆଜିର ବେତାର ଓ ଟେଲିଭିଜନ ଯୁଗରେ ଶିକ୍ଷକମାନେ ବାସ୍ତବ ଜଗତର ଦୃଶ୍ୟପଟ୍ଟ ଶ୍ରେଣୀ ଗୃହକୁ ଦୃଶ୍ୟଶ୍ରାବ୍ୟ ଉପକରଣ ମାଧ୍ୟମରେ ଆଣି ପାରୁଛନ୍ତି ।

ଶିଶୁ ଓ ପ୍ରଥମ ଶ୍ରେଣୀର ଦାୟିତ୍ୱ ନେଇଥିଲେ ପ୍ରବୀଣ ଶିକ୍ଷକ ମାର୍କଣ୍ଡ ପଣ୍ଡା । ସେ ପିଲାମାନଙ୍କୁ ଗଳ୍ପ ଓ କାହାଣୀ କହିଲା ବେଳେ ନିଜେ ହିଁ ଚରିତ୍ରମାନଙ୍କ ସ୍ୱର ଓ ଅଭିନୟ ପ୍ରଦର୍ଶନ କରୁଥିଲେ । ଗପ ସହିତ ଚରିତ୍ରମାନଙ୍କ କଥୋପକଥନକୁ ସେ

ଉପଯୁକ୍ତ ଭାବେ ସ୍ୱରର ଉତ୍‌ଥାନ ଓ ପତନ ମଧ୍ୟରେ ଉପସ୍ଥାପନ କରୁଥିଲେ । ବିଷୟବସ୍ତୁଟି ଆଧୁନିକ ଚଳଚ୍ଚିତ୍ର ଭଳି ଶ୍ରେଣୀ ଗୃହରେ ଉପସ୍ଥାପିତ ହୋଇପାରୁଥିଲା । ପିଲାମାନେ ତାଙ୍କର ଗପ ଓ ଗୀତକୁ ଆଗ୍ରହ ସହକାରେ ଶୁଣୁଥିଲେ । ଉଦାହରଣସ୍ୱରୂପ ସେ ଯେତେବେଳେ "ଟୁଉକୁ ମୂଷିରେ ଟୁକେଇ ମୂଷି, ଧାନ ଭରଣକ ଖାଉଥା ବସି, ତୁ ଥା ମୁଁ ଯାଉଛି ରୁଷି" ଗୀତଟିକୁ ଉପସ୍ଥାପିତ କରୁଥିଲେ, ସେତେବେଳେ ନିଜେ ତଳେ ଆଣ୍ଠୋଇ ପଡ଼ି ଟୁଉକୁ ମୂଷିକୁ ଖୁଆଇବାର ଭଙ୍ଗୀ ଓ ଧାନ ଦେବାର ଅଭିନୟ କରୁଥିଲେ । ଏହି ଉପସ୍ଥାପନ ଅତୀବ ଚିତ୍ତାକର୍ଷକ ଥିଲା । ବେଳେବେଳେ ଆମ୍ଭେମାନେ ଉଚ୍ଚ ଶ୍ରେଣୀରେ ପଢୁଥିଲେ ମଧ୍ୟ ବାରଣ୍ଡାରେ ଠିଆ ହୋଇ ତାଙ୍କର ଏପରି ଶିକ୍ଷାଦାନକୁ ଉପଭୋଗ କରୁଥିଲୁ ।

ସେହିପରି ଶିକ୍ଷକ ସୋମନାଥ ପଣ୍ଡାଙ୍କ ଶିକ୍ଷାଦାନ ମଧ୍ୟ ଉନ୍ନତ ଓ ବଳିଷ୍ଠ ଥିଲା । ସେ କେବେ ପିଲାଙ୍କୁ ଶାରୀରିକ ଦଣ୍ଡ ଦେବା ମୋର ମନେ ନାହିଁ । ଯଦି କାହା ଉପରେ ବିରକ୍ତ ହେଉଥିଲେ 'ଅସର୍ଜନା' ବୋଲି କହୁଥିଲେ । ମାଡ଼ ଓ ଗାଳି ଦେବାଠାରୁ ଏହି ଶବ୍ଦର ପ୍ରଭାବ ପିଲାମାନଙ୍କ ଉପରେ ଯଥେଷ୍ଟ ପଡୁଥିଲା ।

ବର୍ଷ ମଝିରେ ଆମ ବିଦ୍ୟାଳୟକୁ ମାଗୁରା ନିକଟସ୍ଥ ହଂସିଣାବାଦ ଗ୍ରାମର ପ୍ରାଥମିକ ଶିକ୍ଷକ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାନ୍ତି ବଦଳି ହୋଇ ଆସିଥିଲେ । ସେ ଜଣେ ଉଦୀୟମାନ ଯୁବ ଶିକ୍ଷକ ଥିଲେ ।

ସେତେବେଳେ ହସ୍ତାକ୍ଷର ଓ ଶ୍ରୁତଲିଖନ କାର୍ଯ୍ୟ ପ୍ରଚଳନ ଥିଲା । ଏବେ ଆମ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ହସ୍ତାକ୍ଷର ଲିଖନର ପ୍ରଚଳନ ଥିଲେ ମଧ୍ୟ ହସ୍ତାକ୍ଷର ଖାତାଗୁଡ଼ିକୁ ଦେଖି ପିଲାର ଅକ୍ଷର ଲିଖନ ଚାଳନର କୌଶଳ ଉପରେ ଗୁରୁତ୍ୱ ଦିଆଯାଉ ନାହିଁ । ମୁଁ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ କାର୍ଯ୍ୟ କରୁଥିଲାବେଳେ ଗଜପତି, ରାୟଗଡ଼ା, କୋରାପୁଟ, ନବରଙ୍ଗପୁର, ମାଲକାନଗିରି ଆଦି ଜିଲ୍ଲାର ପ୍ରାଥମିକ ବିଦ୍ୟାଳୟର ସ୍ଥିତି ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲି । ପ୍ରାୟତଃ ଗୋଟିଏ ଗୋଟିଏ ସ୍କୁଲରେ ସେତେବେଳେ ପଚାଶରୁ ପଞ୍ଚସ୍ତରୀ ଜଣ ପିଲା ଥିଲେ । ପ୍ରତ୍ୟେକ ଶ୍ରେଣୀରେ ଦଶରୁ ପନ୍ଦର ଜଣ ପିଲା ଥିଲେ ମଧ୍ୟ ଶିକ୍ଷକମାନେ ହସ୍ତାକ୍ଷର ଖାତା ଦେଖୁ ନ ଥିଲେ ବା ହସ୍ତାକ୍ଷର ଉପରେ ଗୁରୁତ୍ୱ ଦେଉ ନ ଥିଲେ । ଏ ସ୍ଥିତି ମୋତେ ମର୍ମାହତ କରିଥିଲା । କାରଣ ଉପକୂଳ ଜିଲ୍ଲାର ପ୍ରାଥମିକ ସ୍କୁଲରେ ଯେତେବେଳେ ଏହି କାର୍ଯ୍ୟ ହେଉ ନ ଥିଲା, ସେତେବେଳେ ଉପକୂଳବର୍ତ୍ତୀ ଜିଲ୍ଲାର ଶିକ୍ଷକମାନଙ୍କର ଯୁକ୍ତି ଥିଲା ଯେ ଆମର ପ୍ରତିଶ୍ରେଣୀର ପିଲାସଂଖ୍ୟା ପଇଁଚାଳିଶରୁ ଅଧିକ । ଆମେ କେତେ ହସ୍ତାକ୍ଷର ଖାତା

ଦେଖିବୁ ଓ ସଂଶୋଧନ କରିବୁ ? ମାତ୍ର ସେଇ ସ୍ଥିତାବସ୍ଥା ଓଡ଼ିଶାର କମ୍ ସଂଖ୍ୟକ ପିଲାଥିବା ବିଦ୍ୟାଳୟରେ ଥିବା ହେତୁ ମୋର ଶିକ୍ଷକଙ୍କର ପେଶାଗତ ସ୍ପୃହା ଉପରେ ସନ୍ଦେହ ଆସିଥିଲା । ଏତଦ୍‌ବ୍ୟତୀତ ଆମବେଳେ ପ୍ରଚଳିତ ଥିବା 'ଶ୍ରୁତଲିଖନ' କାର୍ଯ୍ୟକ୍ରମ ଯାହାକି ଶିକ୍ଷାର୍ଥୀର ବର୍ଣ୍ଣାଶୁଦ୍ଧିର ସୁରକ୍ଷା କରିଥାଏ, ତାହା ଏବେ ଯେ କୌଣସି ବିଦ୍ୟାଳୟରେ ପ୍ରଚଳିତ ହେଉଅଛି; ସେ ଜ୍ଞାନ ମଧ୍ୟ ମୋର ନାହିଁ ।

ଶିକ୍ଷକ ପୂର୍ଣ୍ଣଚନ୍ଦ୍ର ମହାନ୍ତି ଆମର ହସ୍ତାକ୍ଷର ଖାତା ଦେଖିଲାବେଳେ ଆମକୁ ସୁନ୍ଦର ସୁନ୍ଦର ଅକ୍ଷରରେ ଲେଖିବାକୁ ପ୍ରୋତ୍ସାହିତ କରୁଥିଲେ । ଆମ ଖାତାଗୁଡ଼ିକ ଦେଖିଲାବେଳେ ସେ ଚାଳନ (Stroke) ଉପରେ ଗୁରୁତ୍ୱ ଦେଇ ଆବଶ୍ୟକ ସ୍ଥଳେ, ସଂଶୋଧନ କରୁଥିଲେ । ପ୍ରତ୍ୟେକ ହସ୍ତାକ୍ଷର ଖାତାର ମାର୍ଜିନ ସ୍ଥାନର ହସ୍ତାକ୍ଷରଗୁଡ଼ିକର ମୂଲ୍ୟାୟନ କରି 'କ', 'ଖ', 'ଗ' କିମ୍ବା 'ଘ' ଲେଖୁଥିଲେ । ଏହା ଫଳରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସୁନ୍ଦର ହସ୍ତାକ୍ଷର ଲେଖି ସର୍ବୋଚ୍ଚ ସ୍ତର ହାସଲ କରିବା ନିମନ୍ତେ ପ୍ରତିଯୋଗିତା ଲାଗୁଥିଲା ।

ପ୍ରତିଦିନର ବିଦ୍ୟାଳୟ କାର୍ଯ୍ୟନିର୍ଘଣ୍ଟ ଦିନ ଦଶଟା ବେଳୁ ଆରମ୍ଭ ହୋଇଥାଏ । ଭକ୍ତକବି ମଧୁସୂଦନ ରାଓଙ୍କ "ହେ ଆନନ୍ଦମୟ ଜୋତି ଭୁବନପାଳକ" ପ୍ରତ୍ୟେକ ପିଲା, ବିଦ୍ୟାଳୟର ବାରଣ୍ଡାରେ ଠିଆ ହୋଇ ଶିକ୍ଷକମାନଙ୍କ ସହିତ ବୋଲିଥାନ୍ତି । ପିଲାମାନଙ୍କର କେଶ, ନଖ, ପୋଷାକପତ୍ରର ଯତ୍ନ ପିଲାମାନଙ୍କ ମଧ୍ୟରୁ ହୋଇଥିବା 'ସ୍ୱାସ୍ଥ୍ୟମନ୍ତ୍ରୀ' ତଦାରଖ କରିଥାନ୍ତି । ଯେଉଁ ପିଲାମାନଙ୍କ କ୍ଷେତ୍ରରେ ବ୍ୟତିକ୍ରମ ଘଟିଥାଏ ତାହା ନ କରିବା ପାଇଁ ସଚେତନ କରାଇଥାନ୍ତି ।

ପ୍ରତିଦିନ ମଧ୍ୟାହ୍ନରେ ଖାଇବା ନିମନ୍ତେ ଅଳ୍ପ ସମୟ ପାଇଁ ଛୁଟି ହୁଏ । ମାଗୁରା ଆଖପାଖର ପିଲାମାନେ ଘରକୁ ଖାଇବାକୁ ଗଲାବେଳେ ଆମେ ଦୂରରୁ ଯାଇଥିବା ପିଲାମାନେ ପେଟ ଶୁଖାଇ ସ୍କୁଲରେ ବସିଥାଉ । ପାଣି ପିଇ ଉଭୟ ଶୋଷ ଓ ଭୋକ ମେଣ୍ଟାଇଥାଉ । ଏବେ ଘରୁ ପିଲାମାନେ ଜଳଖିଆ ନେଲା ଭଳି ଆମ ବେଳେ ସେ ବ୍ୟବସ୍ଥା ନ ଥିଲା । ମଝିରେ ମଝିରେ ଖାଇବା ଛୁଟି ସମୟରେ ଜଣେ ବୁଢ଼ୀ ମାଉସୀ ମୁଢ଼ି, ବରା ଓ ପିଆଜି ଆଦି ଆଣି ବିକୁଥିଲା । ଯେଉଁ ପିଲାମାନେ ପଇସା କିମ୍ବା ଘରୁ ଆଣିଥିବା କିଛି ଚାଉଳ ଦେଉଥିଲେ ସେମାନେ କିଣି ପାରୁଥିଲେ । ଅନେକ ଘରର ପିଲାମାନେ ବାପା ମା'ଙ୍କୁ ପଇସା ମାଗିଲେ ମଧ୍ୟ ସେମାନେ ଶୁଣୁ ନ ଥିଲେ । ହୁଏତ ସେଥିପାଇଁ ସେମାନଙ୍କର ଦୁର୍ବଳ ଆର୍ଥିକ ସ୍ଥିତି ସେତେବେଳେ ଦାୟୀ ହୋଇଥିବ । ଏହା ଫଳରେ କିଛି ପିଲା, ନିଜ ବସ୍ତାନିରେ କିଛି ଚାଉଳ ଘରୁ ଲୁଚେଇ ଆଣି ତା'ର

ବିନିମୟରେ ମୁଢ଼ି, ବରା, ଆଳୁଚପ୍ ଆଦି ଖାଇବାର ସୁଯୋଗ ପାଉଥିଲେ । ଏ ସ୍ଥିତି ଶିକ୍ଷକମାନେ ଜାଣିଲେ ମଧ୍ୟ ନ ଜାଣିଲା ଭଳି ରହୁଥିଲେ ।

ମାଗୁରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଢୁଥିଲାବେଳେ ମୋର ସହପାଠୀ ମଧ୍ୟରେ ଥିଲେ ଆମ ରୁଦ୍ରପୁର ଗ୍ରାମର ମୋର କକେଇ ପୁଅ ସାନଭାଇ ଜୀବନକୃଷ୍ଣ ବ୍ରହ୍ମା । ସେ ଜଣେ ମେଧାବୀ ଛାତ୍ର ଥିଲେ ଓ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ପରବର୍ତ୍ତୀ ସମୟରେ ସେ ଏମ୍.ଏ ., ବି.ଏଡ୍. କରି ଶିକ୍ଷକତା କରିଥିଲେ ଓ ପ୍ରଧାନଶିକ୍ଷକ ପଦରୁ ଲଳିତଗିରି ଉଚ୍ଚ ବିଦ୍ୟାଳୟରୁ ଅବସର ନେଇଛନ୍ତି । ଜଣେ ଦକ୍ଷ ପ୍ରଧାନଶିକ୍ଷକରୂପେ ଜୀବନ ବାବୁଙ୍କୁ ସମସ୍ତେ ଜାଣନ୍ତି । ସେଥିପାଇଁ ଖୋର୍ଦ୍ଧା ଶିକ୍ଷାମଣ୍ଡଳାଧୀଶ ଡକ୍ଟର ଶରତ କୁମାର ବିଶ୍ୱାଳ ତାଙ୍କୁ ଗୋପାଳପୁର ଉଚ୍ଚ ବିଦ୍ୟାଳୟ ପରିସରରେ ତା୨ ୧ ଫେବୃୟାରୀ, ୨୦୦୯ରେ ମାନପତ୍ର ଓ ଉପାୟନ ଦେଇ ସମ୍ବର୍ଦ୍ଧିତ କରିଥିଲେ । ସେଇ ସମ୍ବର୍ଦ୍ଧନା ଉତ୍ସବରେ ଜଣେ ଅତିଥି ଭାବରେ ମୁଁ ମଧ୍ୟ ଉପସ୍ଥିତ ଥିଲି ।

ଆମେ ଚତୁର୍ଥ ଶ୍ରେଣୀରେ ପଢୁଥିବାବେଳେ ଆମକୁ ଥରେ ପ୍ରଧାନଶିକ୍ଷକ ଯୋଗୀ ସାର୍ କହିଲେ, "ତୁମର ସାଙ୍ଗ ଜଗବନ୍ଧୁ ଆଉ ସ୍କୁଲକୁ ଦୀର୍ଘଦିନ ହେଲା ପଢ଼ିବାକୁ ଆସୁନାହିଁ । ମୁଁ ଖବର ନେଲି ଯେ ସେ ଆଉ ପାଠ ପଢ଼ିବ ନାହିଁ । ତୁମେ କେଇଜଣ ତା'ର ଭଲ ସାଙ୍ଗ । ଯାଅ, ତାକୁ ଟିକେ ବୁଝେଇ ଶୁଝେଇ ସ୍କୁଲକୁ ଆଣିବ ।''

ଖେଳ ଛୁଟି ସମୟରେ ଆମେ ସାର୍‌ଙ୍କ କଥା ଶୁଣି ସ୍କୁଲର କିଛି ଦୂରରେ ଥିବା ଗେଙ୍ଗୁଟି ନଈ ପାର ହୋଇ ଜଗବନ୍ଧୁର ଗାଆଁ ପଦ୍ମନାଭପୁରରେ ପହଞ୍ଚିଲୁ । ସେ ଆମକୁ ଦେଖି ଭାରି ଖୁସି ହେଲା । ଆମେ ତାକୁ ସାର୍‌ଙ୍କ ଖବର ଦେଲୁ ଓ ପାଠ ପଢ଼ିବା ପାଇଁ ପ୍ରବର୍ତ୍ତାଇଲୁ । ସେ ସେତେବେଳେ କହିଲା, "ତୁମେମାନେ ଯଦି କହୁଛ, ମୁଁ ଯୋଗୀସାର୍‌ଙ୍କ କଥା ଅନ୍ୟଥା କରିବି ନାହିଁ । କାଲିଠାରୁ ସ୍କୁଲକୁ ଯିବି ।"

ସତକୁ ସତ ପରଦିନ ଅଧାରୁ ପାଠ ଛାଡ଼ିଥିବା ଆମର ପ୍ରିୟ ସାଙ୍ଗ ଜଗବନ୍ଧୁ ସ୍କୁଲକୁ ଫେରି ଆସିଲା । ତାକୁ ଦେଖି ସାର୍ ଯେତିକି ଖୁସି ହେଲେ, ଆମ୍ଭେମାନେ ଆମର ପୁରୁଣା ସାଙ୍ଗକୁ ପାଇ ଅଧିକ ଖୁସି ହେଲୁ । ପଞ୍ଚମଶ୍ରେଣୀ ଛାଡ଼ିଲାପରେ ଆମେ ଆମ ସୁବିଧାମତେ ସ୍କୁଲ ବାଛିନେଲୁ । ମୁଁ ଓ ଆମ ଗ୍ରାମ ସାଥୀ ଜୀବନ ଗାନ୍ଧିଶିକ୍ଷାଶ୍ରମରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲୁ । ପରବର୍ତ୍ତୀ ସମୟରେ ଜଗବନ୍ଧୁ ଅଧିକ ପଢ଼ି ସେହି ମାଗୁରାସ୍ଥିତ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ହେବାର ସୁଯୋଗ ପାଇଥିଲା ।

ମୋର ଅଧ୍ୟାପକ ଜୀବନରେ ଥରେ ଅଧେ ମୁଁ ଗାଁକୁ ଛତିଆରୁ ଚାଲିଚାଲି ଗଲାବେଳେ ବାଟରେ ଜଗବନ୍ଧୁ ସହିତ ସାକ୍ଷାତ ହୋଇଛି । ସେତେବେଳେ ସେ ମୋତେ

କହେ ଯେ ଆମେ ଯାଇ ଯଦି ତାକୁ ସ୍କୁଲକୁ ଫେରେଇ ନ ଆଣିଥାନ୍ତୁ ତେବେ ଆଜି ସେ ଜଣେ ଶିକ୍ଷକ ହେବାର ପଦମର୍ଯ୍ୟାଦା ପାଇ ନଥାନ୍ତା । ତା' ମୁହଁରୁ ଏଇ କେଇପଦ କଥା ଶୁଣି ମୋର ପୂର୍ବ ସ୍ମୃତି ମନେ ପଡ଼େ । ମୁଁ ମନେ ମନେ ଖୁସି ହୁଏ ।

**ଗାନ୍ଧିଶିକ୍ଷାଶ୍ରମ, ଚମ୍ପାପୁର : ଆମ ମାଧ୍ୟମିକ ଶିକ୍ଷାନୁଷ୍ଠାନ**

ଓଡ଼ିଶାର ଇତିହାସରେ ଛତିଆ ନିକଟବର୍ତ୍ତୀ ଗାନ୍ଧିଶିକ୍ଷାଶ୍ରମ, ଚଂପାପୁର ଉଚ୍ଚ ବିଦ୍ୟାଳୟର ସ୍ୱତନ୍ତ୍ର ସ୍ଥାନ ରହିଅଛି । ଛତିଆଠାରୁ ପୂର୍ବ ଦିଗରେ ପ୍ରାୟ ପାଞ୍ଚ କିଲୋମିଟର କୁଆଁପାଳ ରାସ୍ତାରେ ଗଲେ ଗେଙ୍ଗୁଟି ନଦୀ ପଡ଼େ । ଏହାର କୂଳରେ ଏହି ବିଦ୍ୟାଳୟ ଅବସ୍ଥିତ । ବର୍ତ୍ତମାନ ଏହାର ନାମ ପରିବର୍ତ୍ତିତ ହୋଇ ଗାନ୍ଧିଶିକ୍ଷାଶ୍ରମ, କଇଥା ଚମ୍ପାପୁର ହୋଇଅଛି । ଜାତିର ପିତା ମହାତ୍ମାଗାନ୍ଧିଙ୍କ ଆଶୀର୍ବାଦ ଲାଭ କରି ତାଙ୍କର ପଟ୍ଟଶିଷ୍ୟ ସ୍ୱର୍ଗତଃ ଗୋବିନ୍ଦ ମିଶ୍ର ଗାନ୍ଧିଶିକ୍ଷାଶ୍ରମକୁ ୧୯୪୨ ମସିହା ଜାନୁୟାରୀ ମାସ ୯ ତାରିଖରେ ପ୍ରତିଷ୍ଠା କରିଥିଲେ ।

ଗୋବିନ୍ଦଜୀ ସୁଦୂର ଦଶପଲ୍ଲାରୁ ଆସି ଚଂପାପୁରଠାରେ ପ୍ରଥମେ ଗାନ୍ଧିସେବାଶ୍ରମ ପ୍ରତିଷ୍ଠା କରିଥିଲେ । ଏଇ ଆଶ୍ରମ ମାଧ୍ୟମରେ ସେ ସ୍ଥାନୀୟ ଅଞ୍ଚଳରେ ଶିକ୍ଷା, ସ୍ୱାସ୍ଥ୍ୟ ସହିତ ବିଭିନ୍ନ ଅର୍ଥନୈତିକ, ପ୍ରଗତିମୂଳକ କାର୍ଯ୍ୟକ୍ରମର ପରିକଳ୍ପନା କରିଥିଲେ ।

ଜାତିର ଜନକ ମହାତ୍ମା ଗାନ୍ଧୀ ୧୯୩୪ ମସିହାରେ ଓଡ଼ିଶାରେ ପଦଯାତ୍ରା କରୁଥିବା ସମୟରେ ଗାନ୍ଧିସେବାଶ୍ରମକୁ ଆସି ଦୁଇଦିନ ରହିଥିଲେ । ସ୍ଥାନୀୟ ଅଞ୍ଚଳରେ ସେବାଶ୍ରମ ପରିବର୍ତ୍ତେ 'ଶିକ୍ଷାଶ୍ରମ'ର ଆବଶ୍ୟକତା ଅଧିକ ଅନୁଭବ କରି ମହାତ୍ମାଗାନ୍ଧି ସେବାଶ୍ରମକୁ ଶିକ୍ଷାଶ୍ରମ କରିବା ନିମନ୍ତେ ଗୋବିନ୍ଦଜୀଙ୍କୁ ସୁଚିନ୍ତିତ ପରାମର୍ଶ ଦେଇଥିଲେ ।

୧୯୬୦ ମସିହାରେ ଷଷ୍ଠ ଶ୍ରେଣୀରେ ଭର୍ତ୍ତି ହେବା ପାଇଁ ଏକ ପ୍ରବେଶିକା ପରୀକ୍ଷା ହୋଇଥିଲା । ଏହି ପ୍ରବେଶିକା ପରୀକ୍ଷାରେ ସ୍ଥାନୀୟ ଅଞ୍ଚଳର ୫ମ ଶ୍ରେଣୀ ଉତ୍ତୀର୍ଣ୍ଣ ପିଲାମାନେ ଯୋଗଦାନ କରିଥିଲେ । ମୁଁ ମଧ୍ୟ ମୋର ବାପାଙ୍କ ସହିତ ସ୍କୁଲକୁ ପ୍ରବେଶିକା ପରୀକ୍ଷା ଦେବା ନିମନ୍ତେ ଯାଇଥିଲି ।

ପରୀକ୍ଷାଟି କାର୍ଯ୍ୟାଳୟର ସଂଶ୍ଳିଷ୍ଟ ଏକ ଘରେ ହୋଇଥିଲା । ଆଗନ୍ତୁକ ଅଭିଭାବକମାନଙ୍କୁ ଘରର ବାହାରେ ଥିବା ବାରଣ୍ଡାରେ ବସିବାର ସୁଯୋଗ ଦିଆଯାଉଥିଲା । ପରୀକ୍ଷାର ନିରୀକ୍ଷକ ଥିଲେ ବିଦ୍ୟାଳୟର ପ୍ରବୀଣ ଶିକ୍ଷକ ଭକ୍ତଚରଣ ମହାନ୍ତି । ପରୀକ୍ଷା ସମୟରେ ମାଗୁରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ମୋର ଜଣେ ସହପାଠୀ ସାରଙ୍କ ଆଢୁଆଳରେ ମୋତେ ବାରମ୍ବାର କେତୋଟି ପ୍ରଶ୍ନର ଉତ୍ତର କହିଦେବାକୁ ଅସ୍ପଷ୍ଟ ଶବ୍ଦରେ କହିଲା । ମୁଁ ତାକୁ କୌଣସି କଥା କହିବାକୁ ମନା କଲି ।

ଏହି ସମୟରେ ସାର୍‌ଙ୍କ ନଜର ଆମ ଦୁହିଁଙ୍କ ଉପରେ ପଡ଼ିଲା । ସେ ସଙ୍ଗେ ସଙ୍ଗେ ମୋର ଓ ସେ ପିଲାଟିର ଖାତାକୁ ଛଡ଼ାଇ ନେଲେ । ମୁଁ ଲଜ୍ଜା ଓ ଅପମାନରେ କାନ୍ଦି କାନ୍ଦି ବାହାରକୁ ଚାଲି ଆସିଲି । ମୋର ଏ ପରିସ୍ଥିତି ହୁଏତ ବାପା ଦୂରରୁ ଲକ୍ଷ୍ୟ କରିଥିଲେ । ସେ ପ୍ରବୋଧନା ଦେଇ କହିଲେ, "ତୁ ଏତେ ବ୍ୟସ୍ତ ହେଉଛୁ କାହିଁକି ? ଏ ସ୍କୁଲ ହେଲେ ହେଲା ନ ହେଲେ ନାହିଁ । ମୁଁ ତୋତେ ଅନ୍ୟତ୍ର ପଢ଼ାଇବି ।" ବାପାଙ୍କର ପ୍ରବୋଧନା ମୋତେ ସାନ୍ତ୍ୱନା ଦେବା ନିମନ୍ତେ ଉଦ୍ଦିଷ୍ଟ ଥିଲା । ମୁଁ ସେତେବେଳେ ଭଲ ଭାବରେ ଜାଣିଥିଲି ଯେ ଆମ ଆଖପାଖ ଅଞ୍ଚଳରେ ଗାନ୍ଧିଶିକ୍ଷାଶ୍ରମ ହିଁ ଏକମାତ୍ର ମାଧମିକ ବିଦ୍ୟାଳୟ ଥିଲା । ସେତେବେଳେ ସେ ଅଞ୍ଚଳର ଦୁଇ ପ୍ରମୁଖ ଉଚ୍ଚବିଦ୍ୟାଳୟ ଚୌଧୁରୀ ରାଧାନାଥ ଉଚ୍ଚ ବିଦ୍ୟାଳୟ, ଭେଡ଼ା ଓ ଟାଙ୍ଗୀ ଉଚ୍ଚବିଦ୍ୟାଳୟ ଆମ ଘରଠାରୁ ବହୁତ ଦୂରରେ ଅବସ୍ଥିତ ଥିଲା ।

ଏଇ ପ୍ରବେଶିକା ପରୀକ୍ଷାର ସମୟ ଦୁଇଘଣ୍ଟା ଥିଲା । ଆଉ ଘଣ୍ଟାଏ ବାକିଥିଲା ବେଳେ ମୁଁ ପରୀକ୍ଷାସ୍ଥାନରୁ ତଡ଼ା ଖାଇଥିଲି । ପରୀକ୍ଷା ସରିବା ପରେ ପରେ ଖାତା ଦେଖାଗଲା । ଉତ୍ତର ଦେଖିଲାବେଳେ ଭକ୍ତବାବୁ ମନ୍ତବ୍ୟ ଦେଇଥିଲେ, "ଏ ପିଲାଟି ଭଲ ପିଲା, ଆଉ ପିଲାଟି ଯାକୁ ହଇରାଣ କରୁଥିଲା ।" ଘଣ୍ଟାକ ମଧ୍ୟରେ ଭକ୍ତବାବୁ ସମସ୍ତ ଖାତାର ମୂଲ୍ୟାୟନର ଫଳାଫଳ ପ୍ରଧାନଶିକ୍ଷକଙ୍କୁ ଜଣାଇଦେଲେ । ପ୍ରଧାନ ଶିକ୍ଷକଙ୍କ ଅନୁମୋଦନ ପରେ ପ୍ରବେଶିକା ପରୀକ୍ଷାର ଫଳାଫଳ ବାହାରିଲା । ମୁଁ ଷଷ୍ଠ ଶ୍ରେଣୀରେ ପଢ଼ିବା ପାଇଁ ବଛାବଛି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲି ।

ଗାନ୍ଧିଶିକ୍ଷାଶ୍ରମରେ ଛଅବର୍ଷ :

ଗାନ୍ଧିଶିକ୍ଷାଶ୍ରମରେ ମୁଁ ଛଅବର୍ଷ (୧୯୬୦-୬୬) ଅତିବାହିତ କରିଥିଲି । ସେ ସମୟରେ ମୋର ଚରିତ୍ରର ଉନ୍ମେଷ ଓ ବିକାଶ ଘଟିଥିଲା । ଏହା ସମ୍ଭବ ହୋଇଥିଲା ତତ୍‌କାଳୀନ ଗାନ୍ଧିଶିକ୍ଷାଶ୍ରମର ଚରିତ୍ରବାନ ପ୍ରାଜ୍ଞ ବିବେଚନଶୀଳ ଶିକ୍ଷକମାନଙ୍କ ଯୋଗୁଁ ।

ମୁଁ ପଢୁଥିବା ସମୟରେ ଏହାର ପ୍ରଧାନଶିକ୍ଷକ ଥିଲେ ଶିକ୍ଷାବିତ୍ କୁଣ୍ଡଳି ଭୀମସେନ୍ ଭୀମରାଓ ପଟ୍ଟନାୟକ । ସେ ଜଣେ ଗୌରବର୍ଣ୍ଣଯୁକ୍ତ ଦୀର୍ଘକାୟ ବ୍ୟକ୍ତି ଥିଲେ । ଅଫିସ ବାରଣ୍ଡାରେ ଠିଆ ହୋଇ ସେ ଯଦି "କିଏ" ବୋଲି ବଡ଼ ଶବ୍ଦଟିଏ କରୁଥିଲେ ତେବେ ବିଦ୍ୟାଳୟ ସାରା ଚହଳ ପଡ଼ିଯାଉଥିଲା । ସତେ ଯେମିତି ଗୋଟିଏ ଛୋଟ ଭୂକମ୍ପନ ଆଖପାଖ ଅଞ୍ଚଳରେ ଘଟିଅଛି ।

ଆମ ପ୍ରଧାନଶିକ୍ଷକ ଭଦ୍ର, ଅମାୟିକ ସ୍ୱଭାବର ବ୍ୟକ୍ତି ଥିଲେ ମଧ ଛାତ୍ରମାନଙ୍କ ଚାରିତ୍ରିକ ସ୍ଖଳନ ଦେଖିଲେ ଶାରୀରିକ ଦଣ୍ଡ ଦେବାକୁ ଭୁଲୁ ନ ଥିଲେ । "ଧଡ଼ି ! ବେତ

ଆଣ" କହିଲେ ବିଦ୍ୟାଳୟର ପିଅନ ଧଡ଼ି ସଙ୍ଗେ ସଙ୍ଗେ ବେତ ସାରଙ୍କ ହାତକୁ ବଢ଼ାଇ ଦେଉଥିଲା । ସେ ଦୋଷୀ ପିଲାଟିର ପିଠିରେ ଆଠ ଦଶ ପାହାର ବେତ୍ରାଘାତ କରି ଛାଡ଼ି ଦେଉଥିଲେ । ପିଠିରେ ବେତମାଡ଼ର ଚିହ୍ନ ପଡ଼ି ଯାଉଥିଲା, ଏହି ଦଣ୍ଡ ପିଲାଙ୍କ ପାଇଁ 'ଦୃଷ୍ଟାନ୍ତ'ମୂଳକ ଦଣ୍ଡ ଥିଲା । ଏହା ଫଳରେ ଅନ୍ୟପିଲାମାନେ ଦୋଷଯୁକ୍ତ କାର୍ଯ୍ୟ କରିବାକୁ ପ୍ରୋତ୍ସାହନ ପାଉ ନ ଥିଲେ ।

ଅଧ୍ୟାପକ ସମୟରେ ମୁଁ ଶାରୀରିକ ଦଣ୍ଡ ସଂପର୍କରେ ଗବେଷଣା କରିଥିଲି । ଆମ ଦେଶର ବିଭିନ୍ନ ରାଜ୍ୟ ଓ ବିଦେଶର ଶିକ୍ଷା ବୋର୍ଡ଼ ମଧ୍ୟ ଅନୁଧ୍ୟାନ କରିଥିଲି । ସେଥିରେ ବେତ୍ର ପାହାର କରିବାର କ୍ଷମତା କେବଳ ପ୍ରଧାନଶିକ୍ଷକଙ୍କର ଅଧିକାର ପରିସର ଭୁକ୍ତ ଥିଲା ଓ ତାହା ଅପରାଧକୁ ଦେଖି ଯୁକ୍ତିଯୁକ୍ତ ଭାବେ ଦିଆଯିବ ବୋଲି କୁହାଯାଇଥିଲା । ଆମର ପୂଜ୍ୟ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ବେତ୍ରାଘାତ ଯୁକ୍ତି ସମ୍ମତ ଥିଲା ଓ ସ୍ନେହାନୁମୋଦିତ ଥିଲା ବୋଲି ପରବର୍ତ୍ତୀ ସମୟରେ ଅନୁଭବ କରିଅଛି; ମାତ୍ର ତାଙ୍କର କୌଣସି ଦୋଷ ଗୁଣକୁ ମାପିବାର ଧୃଷ୍ଟତା ଏବେ ମଧ୍ୟ ମୋର ନାହିଁ ।

୧୯୮୬ ମସିହାରେ ପ୍ରଚଳିତ ଜାତୀୟ ଶିକ୍ଷା ନୀତି, (NPE : 1986)ରେ ଶାରୀରିକ ଦଣ୍ଡକୁ ବିଦ୍ୟାଳୟରୁ ଉଚ୍ଛେଦ କରାଯାଇଛି । ଆମ ଓଡ଼ିଶାରେ ସମସ୍ତ ବିଦ୍ୟାଳୟକୁ ଦଣ୍ଡମୁକ୍ତ ଅଞ୍ଚଳ ବୋଲି ସରକାର ଘୋଷଣା କରିଅଛନ୍ତି । ଏହାକୁ ଆଳକରି ଅଧିକାଂଶ ବିଦ୍ୟାଳୟରେ ଶିକ୍ଷକ ଶିକ୍ଷୟିତ୍ରୀ ନିଜର କର୍ତ୍ତବ୍ୟ ଓ ଦାୟିତ୍ୱବୋଧର ଦ୍ୱାହି ଦେଇ କହୁଛନ୍ତି, "ଆମେ ତ ପିଲାଙ୍କୁ ମାରି ପାରିବୁ ନାହିଁ, ସେମାନେ ଆମକୁ ମାନୁ ନାହାଁନ୍ତି । ତେଣୁ ପାଠପଢ଼ା କେମିତି ହେବ ?" ଏହା ସତ୍ତ୍ୱେ ମଧ୍ୟ ଅନେକ ବିଦ୍ୟାଳୟରେ ଦଣ୍ଡଦ୍ୱାରା ପିଲାଙ୍କୁ ମାରି ଲହୁଲୁହାଣ କରିବାର ଦୃଷ୍ଟାନ୍ତ ମଧ୍ୟ ଗଣମାଧ୍ୟମରେ ସ୍ଥାନ ପାଉଅଛି । ଶିକ୍ଷାବିତ୍ ରାୟବର୍ଣ୍ଣ (Rayburn)ଙ୍କ ମତରେ "ଶାରୀରିକ ଦଣ୍ଡ କେବଳ ଅଯୌକ୍ତିକ ନୁହେଁ, ବରଂ ଏହା ପିଲାର ଶାରୀରିକ ଓ ମାନସିକ ବିକାଶର ପରିପନ୍ଥୀ ।" ଏପରି ପରିସ୍ଥିତିରେ ସଚେତନ ଶିକ୍ଷାବିତ୍‌ମାନେ ମନେ କରନ୍ତି ଯେ ପୂର୍ବଭଳି କେବଳ ପ୍ରଧାନଶିକ୍ଷକଙ୍କର ଚାରିତ୍ରିକ ବିଶୃଙ୍ଖଳାରେ ଶିକ୍ଷାର୍ଥୀଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା ରହିବା ଦରକାର । ସେ କେଉଁ ପରିସ୍ଥିତିରେ ଯୁକ୍ତିଯୁକ୍ତ (reasonable) ଦଣ୍ଡ ଦେଲେ, ତାହା ମଧ୍ୟ ଲିପିବଦ୍ଧ କରି ରଖିବା ଦରକାର । ଏହା ଫଳରେ କୌଣସି ଅଭିଭାବକ ଅଭିଯୋଗ କଲେ ସେ ଘଟଣାର ସତ୍ୟାସତ୍ୟ ଜାଣି ପାରିବେ ।

ଆମର ଶିକ୍ଷକମାନଙ୍କ ମଧ୍ୟରେ ଯେଉଁ କେତେ ଜଣ ଶିକ୍ଷକ ଥିଲେ ସେମାନେ ହେଲେ ସର୍ବଶ୍ରୀ ଅଭିମନ୍ୟୁ ଆଚାର୍ଯ୍ୟ, ଦୟାନିଧି ଆଚାର୍ଯ୍ୟ, ବାବାଜୀ ପଲେଇ, ଜଗନ୍ନାଥ

ନାୟକ, ସହଦେବ ରାଉତ, ବୈଷ୍ଣବ ନାୟକ, ଦୈତାରୀ ସାହୁ, ନିରଞ୍ଜନ ଷଣ୍ଢ, ବଂଶୀଧର ମିଶ୍ର, ମହେଶ୍ୱର ରାଉତ, ହୃଷୀକେଶ ମିଶ୍ର, ଦିବାକର ବରାଳ, ଅନନ୍ତ ରାଉତରାୟ, ଅଲେଖ ଆଚାର୍ଯ୍ୟ, ଭକ୍ତଚରଣ ମହାନ୍ତି, କାଳିଚରଣ ନାୟକ ଓ  ମହେଶ୍ୱର ରାଉତ । କିରାଣି ଥିଲେ ସ୍ଥାନୀୟ ହରିପୁର ଗ୍ରାମର ବଂଶୀଧର ନାୟକ । ଚତୁର୍ଥ ଶ୍ରେଣୀ କର୍ମଚାରୀ ଥିଲେ ଛେଦାର ଧଡ଼ି ଓ ହରିପୁରର ଧନେଶ୍ୱର ଭାଇନା । ଅରକ୍ଷିତ ବିଦ୍ୟାଳୟର ପରିମଳ ବ୍ୟବସ୍ଥା ଦେଖାଶୁଣା କରୁଥିଲା ।

ମୁଁ ନବମ ଶ୍ରେଣୀରେ ପଢୁଥିଲାବେଳେ ବିଦ୍ୟାଳୟର ସୁନାମଧନ୍ୟ ପ୍ରଧାନଶିକ୍ଷକ କୁଣ୍ଡଳି ଭୀମସେନ ଭୀମରାଓ ପଟ୍ଟନାୟକଙ୍କ ବଦଳି ମହାବିନାୟକ ଉଚ୍ଚବିଦ୍ୟାଳୟ, ବଡ଼ଚଣାକୁ ହୋଇଥିଲା । ତାଙ୍କ ସ୍ଥାନରେ ରାଜ୍ୟର ଅନ୍ୟତମ ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀଯୁକ୍ତ ଧନେଶ୍ୱର ସାମଲ, ନନ୍ଦକିଶୋର ବିଦ୍ୟାପୀଠ, କୁସୁପୁରରୁ ସ୍ଥାନାନ୍ତରିତ ହୋଇ ଗାନ୍ଧି ଶିକ୍ଷାଶ୍ରମରେ ଯୋଗଦାନ କରିଥିଲେ ।

**ଛାତ୍ରର ଚରିତ୍ର ଗଠନରେ ଶିକ୍ଷକଙ୍କ ଭୂମିକା**

ପ୍ରତ୍ୟେକ ବିଦ୍ୟାଳୟ  ହେଉଛି ଏକ ଉଦ୍ୟାନ । ଏହାର ଶିକ୍ଷାର୍ଥୀ ହେଉଛନ୍ତି ଚାରାଗଛ ସଦୃଶ । ମାଳିର ଯତ୍ନରେ ଚାରାଗଛଗୁଡ଼ିକ ବଢ଼ିଥାନ୍ତି । ଯତ୍ନର ଅଭାବ ହେଲେ ସେଗୁଡ଼ିକର ସୁଷମ ବିକାଶ ହୁଏ ନାହିଁ ।

ସେହିପରି ଗୋଟିଏ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କର ମାନସିକ, ବୌଦ୍ଧିକ, ଶାରୀରିକ ବିକାଶ ଦାୟିତ୍ୱସଂପନ୍ନ ଶିକ୍ଷକଶିକ୍ଷିକାମାନଙ୍କ ଯୋଗୁଁ ସମ୍ଭବପର ହୋଇଥାଏ । ବିଦ୍ୟାଳୟର ଶିକ୍ଷକଙ୍କର ଚାରିତ୍ରିକ ସ୍ଖଳନ ଘଟିଲେ ବିଦ୍ୟାଳୟ କାହିଁକି ଛାତ୍ରଛାତ୍ରୀ, ଅଭିଭାବକ ଓ ସମାଜ ମଧ୍ୟ କ୍ଷମା ଦେଇ ନ ଥାଏ । ସେ ସମୟରେ ଆମେ ଏମିତି ଜଣେ ପ୍ରଧାନଶିକ୍ଷକଙ୍କୁ ଜାଣିଥିଲୁ ଯିଏ କି ଚରିତ୍ରଗତ ସ୍ଖଳନ ଦେଖି ଜଣେ ଅଧେ ଶିକ୍ଷକଙ୍କୁ ଶାରୀରିକ ଦଣ୍ଡ ସ୍ୱରୂପ ବେତ୍ରାଘାତ କରିଥିଲେ । ମାତ୍ର ତାଙ୍କ  ବିରୋଧରେ କେହି ଜଣେ ମଧ୍ୟ ସ୍ୱର ଉତ୍ତୋଳନ କରିବାକୁ ସାହସ ଜୁଟାଇ ପାରି ନ ଥିଲେ ।

ମୋର ଗାନ୍ଧିଶିକ୍ଷାଶ୍ରମରେ ଛଅ ବର୍ଷର ଅଧ୍ୟୟନ (୧୯୬୦-୬୬) ସମୟରେ ମୁଁ ଯେଉଁ ଶିକ୍ଷକମାନଙ୍କ ସଂସ୍ପର୍ଶରେ ଆସିଥିଲି, ସେମାନେ ସମସ୍ତେ ଚରିତ୍ରବାନ ଥିଲେ । ନିଜ ନିଜର ଶିକ୍ଷାଦାନ କ୍ଷେତ୍ରରେ ମଧ୍ୟ ଦକ୍ଷ ଥିଲେ ।

ପ୍ରଧାନଶିକ୍ଷକ ରାଓଙ୍କର ଇଂରାଜୀ ଶିକ୍ଷାଦାନ ପ୍ରାଣସ୍ପର୍ଶୀ ଥିଲା । ବିଜ୍ଞାନ ଶିକ୍ଷକ ଦୟାନିଧି ଆଚାର୍ଯ୍ୟ ବିଜ୍ଞାନ ଶିକ୍ଷାଦାନ ସମୟରେ ବିଜ୍ଞାନର ଜଟିଳ ତତ୍ତ୍ୱକୁ ସହଜ, ବୋଧଗମ୍ୟ ଓ ନାଟକୀୟ ପଦ୍ଧତିରେ ଉପସ୍ଥାପନ କରୁଥିଲେ । ସେ ଶିକ୍ଷାଦାନ ସମୟରେ

ବିଭିନ୍ନ ଗ୍ୟାସ୍‌ର ପ୍ରସ୍ତୁତି, ଆଲୋକ ସଂଶ୍ଲେଷଣ ପଦ୍ଧତି (Photosynthesis), ବାଷ୍ପଚାଳିତ ରେଳଗାଡ଼ି କିପରି ଚାଲେ ଆଦି ବିଷୟବସ୍ତୁ ଉପସ୍ଥାପନ ସମୟରେ ପରୀକ୍ଷା ନିରୀକ୍ଷା ମାଧ୍ୟମରେ ବୁଝାଇଥିଲେ । ଏବେ ଆମର ଓଡ଼ିଆ ମାଧ୍ୟମ ବିଦ୍ୟାଳୟରେ ଏପରି ଲାବୋରେଟୋରୀ ଭିତ୍ତିକ ପ୍ରଦର୍ଶନମୂଳକ ଶିକ୍ଷାଦାନ ପ୍ରାୟତଃ ନାହିଁ । କେବଳ ବର୍ଷକୁ ଥରେ ସରକାରଙ୍କ ଦ୍ୱାରା ଅନୁଷ୍ଠିତ ବିଜ୍ଞାନ ମେଳାରେ ବିଭିନ୍ନ ବିଦ୍ୟାଳୟରୁ ଆସୁଥିବା କିଛି କୁନି ବୈଜ୍ଞାନିକମାନେ ସେମାନଙ୍କଦ୍ୱାରା ପ୍ରସ୍ତୁତ ହେଉଥିବା ପ୍ରକଳ୍ପମାନ ପ୍ରଦର୍ଶନ କରୁଅଛନ୍ତି ।

ଗାନ୍ଧିଶିକ୍ଷାଶ୍ରମର ଅନ୍ୟତମ ପ୍ରବୀଣ ଶିକ୍ଷକ ହେଉଛନ୍ତି ସ୍ୱର୍ଗତଃ ଅଭିମନ୍ୟୁ ଆଚାର୍ଯ୍ୟ । ଜଣେ ଦକ୍ଷ ଇଂରାଜୀ ଓ ସାମାଜିକ ବିଜ୍ଞାନ ଶିକ୍ଷକ ଭାବେ ତାଙ୍କୁ ଆହ୍ୱାନ ଦେବାପାଇଁ ହୁଏତ ଆମ ରାଜ୍ୟରେ ସେତେବେଳେ ଖୁବ୍ କମ୍ ଶିକ୍ଷକ ଥିଲେ । ତାଙ୍କର ସ୍ୱକୀୟ କାର୍ଯ୍ୟଧାରା ଆପେ ଆପେ ଶିକ୍ଷାର୍ଥୀମାନଙ୍କର ଚରିତ୍ରବିକାଶ ନିମନ୍ତେ ଖୋରାକ ଯୋଗାଉଥିଲା । ମୁଁ ନିଜେ ଶିଖିଥିବା ଦୁଇଟି ଦୃଷ୍ଟାନ୍ତ ଏଠାରେ ପ୍ରଲୋଭିତ ହୋଇ ଉପସ୍ଥାପନ କରୁଛି ।

ଥରେ ଶ୍ରେଣୀଗୃହରେ ମୁଁ ମୋ ଚପଲ ଭୁଲବଶତଃ ଛାଡ଼ି ଘରକୁ ଚାଲି ଆସିଥିଲି । ଶ୍ରେଣୀକକ୍ଷ ଛାଡ଼ି ପିଲାମାନେ ଗଲା ପରେ ପରେ ଅରକ୍ଷିତ ଚାବି ପକାଇଥାଏ । ପରଦିନ ଶ୍ରେଣୀକକ୍ଷ ଖୋଲା ହେବା ପୂର୍ବରୁ ମୁଁ ଯାଇ ସ୍କୁଲରେ ହାଜର ହୋଇଗଲି । ଅରକ୍ଷିତ ଶ୍ରେଣୀର କବାଟ ଖୋଲିଲା । ମୋ ବସିବା ସ୍ଥାନରେ ମୁଁ ମୋର ଚପଲ ହଳକ ପାଇଲି ନାହିଁ । ଅରକ୍ଷିତ ଛଡ଼ା ଆଉ କେହି ଚପଲ ନେବା ଚିନ୍ତା କରିବା ମୋ ପକ୍ଷରେ କଷ୍ଟକର ଥିଲା । ତେଣୁ ମୁଁ ଅରକ୍ଷିତକୁ କହିଲି, "ତୁମ ଛଡ଼ା ଆଉ କେହି ମୋ ଚପଲ ନେଇ ନ ଥିବେ । ତୁମେ ତ ସକାଳେ ଶ୍ରେଣୀ କୋଠରି ସଫା କରିଥିଲାବେଳେ ମୋ ଚପଲ ପାଇଥିବ ।'' ଏଇକଥା ପଦକରେ ସେ ମୋତେ ଗାଳିଗୁଲଜ କଲା । ତେଣୁ ମୁଁ ତା ନାମରେ ଅଭିଯୋଗ କରିବାକୁ ପ୍ରଧାନଶିକ୍ଷକଙ୍କ ପାଖକୁ ଗଲି । ପ୍ରଧାନଶିକ୍ଷକଙ୍କ କାର୍ଯ୍ୟାଳୟ ବାହାର ବାରଣ୍ଡାରେ ଅଭିମନ୍ୟୁ ସାର୍ ବସିଥିଲେ । ମୋର ବ୍ୟସ୍ତତା ଦେଖି ସାର୍ କହିଲେ, "ଏଥିରେ ଏତେ ବ୍ୟସ୍ତ ହେବାର କିଛି ନାହିଁ କିମ୍ବା ଅରକ୍ଷିତକୁ ସନ୍ଦେହ କରିବାର ଯଥାର୍ଥତା ନାହିଁ । ବମ୍ବେ, ଦିଲ୍ଲୀ, କଲିକତା ଆଦି ବଡ଼ ବଡ଼ ନଗରୀରେ ଯେଉଁ ସ୍ଥାନରେ ସକାଳେ ସ୍କୁଲ ହୁଏ, ସନ୍ଧ୍ୟାବେଳକୁ ଗଲେ ସେଠାରେ ଦୋକାନ ବଜାର ବସିଥାଏ । ତେଣୁ ସ୍କୁଲ ସମୟରେ ଯଦି ଜଣେ ପିଲା, ତା'ର ବହିବସ୍ତାନି ଛାଡ଼ି ଆସେ, ତେବେ ସେ ପରଦିନ ସେଗୁଡ଼ିକ ପାଇବ କେମିତି ? ତେଣୁ ନିଜର ଜିନିଷପତ୍ର ନିଜେ ସାଇତି

ସୁରକ୍ଷିତ ରଖିବା ନିଜର ଦାୟିତ୍ୱ ।'' ମୁଁ ସାରଙ୍କର କଥାଶୁଣି ଆଶ୍ୱସ୍ତ ହେଲି । ଅଯଥାରେ ବିନା ପ୍ରମାଣରେ କାହାକୁ ସନ୍ଦେହ କରିବା ଯେ ଅନ୍ୟାୟ, ତାହା ସେଦିନ ମୁଁ ସାର୍‌ଙ୍କ କେଇପଦ କଥାରୁ ଶିକ୍ଷାଲାଭ କରିଥିଲି ।

ଆମ ସମୟର ପ୍ରଶ୍ନପତ୍ରର ପଦ୍ଧତି ଓ ବର୍ତ୍ତମାନର ପ୍ରଶ୍ନପତ୍ର ପଦ୍ଧତି ମଧ୍ୟରେ ଆକାଶପାତାଳ ପ୍ରଭେଦ ଅଛି । ସେତେବେଳେ ଅଭିମନ୍ୟୁ ସାର୍‌ଙ୍କ ସମସରପୁରସ୍ଥିତ ବାସଭବନକୁ ସାଧାରଣତଃ ଇଂରାଜୀରେ ଦୁର୍ବଳଥିବା ପିଲାମାନେ ପଢ଼ିବାକୁ ଯାଉଥିଲେ । ଇଂରାଜୀ କବିତାର ସାରକଥା (Summary) ଉପରେ ପ୍ରାୟ ଦଶ ନମ୍ବର ଥିଲା । ସାର ଘରେ ପାଠପଢ଼ା ସମୟରେ ଇଂରାଜୀ କବିତା ସାରକଥା କିଛି ପିଲାଙ୍କୁ ଲେଖିଦେଉଥିଲେ ଏବଂ ଘୋଷିବାକୁ କହୁଥିଲେ । ମୁଁ ଏକାଦଶ ଶ୍ରେଣୀରେ ପଢୁଥିଲାବେଳେ ମାଟ୍ରିକ ପରୀକ୍ଷାର ଠିକ୍ ତିନିମାସ ପୂର୍ବରୁ ସାର୍‌ଙ୍କ ଘରେ ଯାଇ ପଢ଼ିବାକୁ କହିଲି । ସାର୍ ରାଜି ହେଲେ । ଦୁଇ ମାସ ପଢ଼ି ସାରିଲା ପରେ ମୁଁ ଲକ୍ଷ୍ୟ କଲି ଯେ ସାର୍ ମୋତେ ଛାଡ଼ି ଅନ୍ୟପିଲାମାନଙ୍କ ଖାତାରେ The Daffodils, The Inchcape Rock, The Solitary Reaper. ଆଦି କବିତାର ସାରାଂଶ ଲେଖି ଦେଉଛନ୍ତି । ମାତ୍ର ଦିନକ ପାଇଁ ମୋ ଖାତାରେ କୌଣସି ସାରାଂଶ ଲେଖୁ ନାହାନ୍ତି । ମୁଁ ଯେଉଁ ଆଶା ନେଇ ଯାଇଥିଲି , ତାହା ମଉଳି ଗଲା । ଭାବିଥିଲି ସାର୍ ଗୋଟିଏ ଦୁଇଟି କବିତାର ସାରାଂଶ ଲେଖି ଦେଇଥିଲେ ମୁଁ ଘୋଷିଥାନ୍ତି ଓ ପରୀକ୍ଷା ଖାତାରେ ସେହିସବୁ ଶବ୍ଦ ଲେଖି ବେଶୀ ନମ୍ବର ରଖିଥାନ୍ତି । ମାଟ୍ରିକ ପରୀକ୍ଷା ହେବାକୁ ଆଉ ମାସେ ବାକି ଥିଲା । ପରୀକ୍ଷାର ପନ୍ଦରଦିନ ଆଗରୁ ସାର୍‌ଙ୍କ ପାଖରେ ପଢ଼ିବା ବନ୍ଦ ହୋଇଯିବ ।

ଏପରି ଏକ ପରିସ୍ଥିତିରେ ମୁଁ ଦିନେ ସନ୍ଧ୍ୟାବେଳେ ସାରଙ୍କ ପାଖରେ ମୋ ମନୋଭାବ ବ୍ୟକ୍ତ କରି କହିଲି, "ସାର୍ ! ଆପଣ ମୋତେ ଗୋଟିଏ ଦୁଇଟି କବିତାର ସାରକଥା ଲେଖି ଦିଅନ୍ତେ ନି !"

ମୋ କଥା ଶୁଣି ସାର୍ ନୀରବ ରହିଗଲେ ।

କିଛି ସମୟ ପରେ କ'ଣ ଭାବି ମୋତେ କହିଲେ, "ମୁଁ ଲେଖି ଦେଇଥିଲେ ତୁ ଘୋଷିଥାନ୍ତୁ । ଘୋଷିବାରେ ତୋର ମୂଲ୍ୟବାନ ସମୟରୁ କିଛି ଅପଚୟ ହୋଇଥାନ୍ତା । ମୋ ଲେଖାରେ ଯେ ତୁ ଷାଠିଏ ସତୁରୀରୁ ଅଧିକ ନମ୍ବର ରଖିଥାନ୍ତୁ, ତାର ମଧ୍ୟ କୌଣସି ଗ୍ୟାରେଣ୍ଟି ନାହିଁ । ମାତ୍ର ମୁଁ ଯେତିକି ଜାଣେ ତୋ ଲେଖାରେ ତୁ ଷାଠିଏ ପାଖାପାଖି ନମ୍ବର ପାଇବୁ ତେଣୁ କାହିଁକି ବୃଥା ସମୟ ନଷ୍ଟ କରି ଘୋଷାଘୋଷି କରିବୁ ।"

ମୋ ପାଇଁ ସାରଙ୍କ ବର୍ଣ୍ଣିତ ବାଣୀ ଆଶ୍ୱାସନା ଥିଲା ନା ଆଶୀର୍ବାଦ ଥିଲା ସେକଥା ବୁଝିବାର ଶକ୍ତି ମୋର ନ ଥିଲା । ତେଣୁ ମୋତେ ଯେ ସାର୍ ଆଉ ସାରକଥା (Summary) ଘୋଷିବା ନିମନ୍ତେ ଲେଖିଦେବେନି ତାହା ଭାବି ସେଦିନ ମୁଁ ଦୁଃଖିତ ହୋଇଥିଲି ।

୧୯୬୬ ମସିହା ଫେବୃୟାରୀ ମାସରେ ମାଟ୍ରିକ୍ ପରୀକ୍ଷା ହେଲା । ଫଳ ଜୁନ୍ ମାସରେ ବାହାରିଲା । ସାର୍‌ଙ୍କ କଥାନୁସାରେ ମୁଁ ଇଂରାଜୀ ଦ୍ୱିତୀୟ ପ୍ରଶ୍ନରେ ୫୭ ନମ୍ବର ରଖିଥିଲି ।

ଶିକ୍ଷକ ଜୀବନରେ ମୁଁ ସାର୍‌ଙ୍କ ମୂଲ୍ୟବାନ କଥା ଦୁଇପଦର ପ୍ରୟୋଗ ଆବଶ୍ୟକ ସ୍ଥଳେ କରିଅଛି । ଅନାବଶ୍ୟକ ଭାବେ ପିଲାମାନଙ୍କ ଲେଖାକୁ ସଂଶୋଧନ କରିବା, ନୋଟ୍ ଡାକିବା ଆଦି କାର୍ଯ୍ୟରୁ ନିଜକୁ କ୍ଷାନ୍ତ ମଧ୍ୟ ରଖିଛି ।

ମୋ ଜୀବନରେ ବିଶେଷଭାବେ ଗାନ୍ଧିଶିକ୍ଷାଶ୍ରମର ଏପରି ଜଣେ ଶିକ୍ଷକ ପ୍ରଭାବ ପକାଇଥିଲେ ଯେ କି ବାଲ୍ୟକାଳରୁ ଜୀବନ ସହିତ ସଂଗ୍ରାମ କରି ମାଟ୍ରିକ୍ ସିପିଏଡ଼୍ ଉତ୍ତୀର୍ଣ୍ଣ ହୋଇ କ୍ରମଶଃ ପରୀକ୍ଷା ଦେଇ ରାଷ୍ଟ୍ରଭାଷା ରତ୍ନ, ଇଂରାଜୀରେ ଏମ୍.ଏ ଓ ବି.ଏଡ଼୍ ପାଶ୍ କରି ଇଂରାଜୀରେ ମହାତ୍ମା ଗାନ୍ଧୀଙ୍କ ଉପରେ ଗୋଟିଏ କବିତା ବହି ଗାନ୍ଧି ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ୧୯୬୯ ମସିହାରେ ପ୍ରକାଶ କରି ସୁନାମ ଅର୍ଜନ କରିଥିଲେ । ପିଲାମାନଙ୍କର ବିଶୃଙ୍ଖଳିତ ଆଚରଣକୁ ସେ କୌଣସି ମତେ ବରଦାସ୍ତ କରୁ ନଥିଲେ । ଥରେ ତାଙ୍କର ଜଣେ ସଂପର୍କୀୟ ଛାତ୍ର କୌଣସି ଏକ ଶିକ୍ଷକଙ୍କ ପ୍ରତି ଖରାପ ଆଚରଣ ପ୍ରଦର୍ଶନ କରିଥିବା କଥା ଜାଣି ସେ ସେହି ଛାତ୍ରଙ୍କୁ ମାରି ମାରି ସେ ଶିକ୍ଷକଙ୍କ ପାଖକୁ ନେଇ କ୍ଷମା ପ୍ରାର୍ଥନା କରାଇଥିଲେ । ମୋର ସେହି ପରମ ପୂଜ୍ୟ ଶିକ୍ଷକ ଜଣକ ହେଉଛନ୍ତି ଛତିଆ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତି ଶ୍ରୀଯୁକ୍ତ ଜଗନ୍ନାଥ ନାୟକ ।

ଶ୍ରୀଯୁକ୍ତ ନାୟକ ଶ୍ରେଣୀ ଶ୍ରେଣୀ ମଧ୍ୟରେ ଫୁଟବଲ ପ୍ରତିଯୋଗିତା ହେଉଥିଲା ବେଳେ ରେଫରିର ଦାୟିତ୍ୱ ନେଇ ଯେପରି ଖେଳ ପରିଚାଳନା କରୁଥିଲେ ଓ ନିରପେକ୍ଷତା ରକ୍ଷା କରୁଥିଲେ ତାହା ସମସ୍ତଙ୍କର ଗ୍ରହଣୀୟ ଥିଲା । ବେଳେବେଳେ ଦେଖାଯାଏ ଯେ ଦୁଇ ଶ୍ରେଣୀର ଖେଳାଳିଙ୍କ ମଧ୍ୟରୁ ଯେଉଁ ଶ୍ରେଣୀର ଖେଳାଳିମାନେ୍ ଅଧିକ ଗୋଲ ଖାଇଥାନ୍ତି, ସେମାନଙ୍କ ପାଇଁ ସ୍ୱତଃପ୍ରବୃତ୍ତଭାବେ ସାରଙ୍କ ସହାନୁଭୂତି ଆସିଥାଏ ଓ ତାହା ତାଙ୍କ ଆଚରଣରେ ପ୍ରତିଫଳିତ ହୋଇଥାଏ ।

ମୁଁ ଗାନ୍ଧିଶିକ୍ଷାଶ୍ରମରେ ପଢୁଥିଲାବେଳେ ରାଷ୍ଟ୍ରଭାଷା ପ୍ରାରମ୍ଭିକ, ପ୍ରବେଶ ଓ ପରିଚୟ ପରୀକ୍ଷା ସୁଦୂର ବୈରୀ ହାଇସ୍କୁଲରେ ଦେଇଥିଲି । ପରିଚୟ ପରୀକ୍ଷା ଦେଲାବେଳେ ମୁଁ ନବମ ଶ୍ରେଣୀର ଛାତ୍ର ଥିଲି । ଏହି ପରୀକ୍ଷା ଦେବା ଛାତ୍ରମାନେ ପ୍ରାୟତଃ ପାଞ୍ଚଟି ରଚନା

ଏକ ସ୍ୱତନ୍ତ୍ର ପ୍ରବନ୍ଧ ଖାତାରେ ଲେଖି ହିନ୍ଦୀ ଯୋଗ୍ୟତାସଂପନ୍ନ ଶିକ୍ଷକଙ୍କ ଦ୍ୱାରା ମୂଲ୍ୟାୟନ କରି ଦେଉଥିଲେ । ଏହା ପରିଚୟ ପାଠ୍ୟକ୍ରମର ଏକ ଆଂଶିକ ଆବଶ୍ୟକତା ଥିଲା । ମୋର ପ୍ରସ୍ତୁତ ପ୍ରବନ୍ଧଗୁଡ଼ିକ ଦେଖିବାକୁ ମୁଁ ଶ୍ରୀଯୁକ୍ତ ନାୟକଙ୍କୁ ଅନୁରୋଧ କରିଥିଲି । ପ୍ରତ୍ୟେକ ରଚନା ଶେଷରେ ସଂଶୋଧକଙ୍କ ମନ୍ତବ୍ୟ ଲେଖିବାର ସ୍ଥାନ ଥିଲା । ସାର୍ ମୋର ଏକ ରଚନାରେ ଲେଖିଥିଲେ ଏହା ଏକ 'ମୌଳିକ' ରଚନା । ସେତେବେଳେ 'ମୌଳିକ' ଶବ୍ଦର ଅର୍ଥ କ'ଣ ମୁଁ ଜାଣି ନ ଥିଲି । ସାର୍‌ଙ୍କୁ ପଚାରିବାରୁ ସାର୍ କହିଲେ, "ସେଇ ରଚନାଟି ତୋର ନିଜର ଅନୁଧ୍ୟାନ ଓ ମୂଳ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ତେଣୁ ଏହାକୁ ମୁଁ ମୌଳିକ ରଚନା ବୋଲ ମନ୍ତବ୍ୟ ଦେଇଛି ।''

ମୁଁ ଅନେକ ସମୟରେ ଇଂରାଜୀ ପ୍ରବନ୍ଧ ଆଦି ଲେଖି ସାର୍‌ଙ୍କୁ ସଂଶୋଧନ କରିବାକୁ ଦେଉଥିଲି । ସାର୍ ଆବଶ୍ୟକ ସ୍ଥଳେ ନୀଳ କାଳିରେ ସଂଶୋଧନ କରି ମୋତେ ଫେରାଇ ଦେଉଥିଲେ । ଏହା ସାରଙ୍କ ପାଠପଢ଼ା ବିଷୟ କିମ୍ବା ଦାୟିତ୍ୱ ନ ଥିଲା । କେବଳ ମୋ ପ୍ରତି ତାଙ୍କର ସ୍ନେହ ଓ ଶୁଭେଚ୍ଛା ଯୋଗୁଁ ସେ ମୋର ଲେଖାଗୁଡ଼ିକ ଦେଖୁଥିଲେ ।

ଦିନେ ମୁଁ ସାର୍‌ଙ୍କୁ ପଚାରିଲି, "ସାର୍ ! ଆପଣ ତ ମୋ ଖାତାରେ ବେଶୀ କଟାକଟି କରୁ ନାହିଁନ୍ତି, ମାତ୍ର ଆମର ଜନୈକ ଇଂରାଜୀ ଶିକ୍ଷକ କାହିଁକି ନାଲିଗାର ମାରି ବିଶେଷ କଟାକଟି କରୁଛନ୍ତି ? ଏହା ଫଳରେ ଆମର ଖାତା କ୍ଷତାକ୍ତ ଓ ରକ୍ତାକ୍ତ ହେଉଛି ।"

ସାର୍‌ଙ୍କ ଉତ୍ତର ମୋ ପ୍ରତି ଅତି ସରଳ ଓ ପ୍ରଣିଧାନଯୋଗ୍ୟ ଥିଲା । ସାର୍ କହିଲେ, "ଯେଉଁ ସାର୍ କାଟନ୍ତି ମୁଁ ତାଙ୍କ କଥା ଜାଣେ । ପିଲା ଲେଖୁଥିବା ନିଜସ୍ୱ ଶୈଳୀକୁ ସେ ନିଜର ଚିନ୍ତାଧାରା ଓ ଭାବନା ଅନୁଯାୟୀ କଟାକଟି କରିଥାନ୍ତି କିମ୍ବା ପିଲା ଲେଖୁଥିବା ଶବ୍ଦ ଠିକ୍ ଥିଲେ ମଧ୍ୟ ସେ ଆଉ ଗୋଟିଏ ଶବ୍ଦ ଲେଖିଥାନ୍ତି । ଏହାଦ୍ୱାରା ପିଲାଟି ହତୋତ୍ସାହିତ ହୋଇଥାଏ । ତୋ ଲେଖାରେ ଯେଉଁଠି ଗୋଟିଏ ଦୁଇଟି ସଂଶୋଧନ କରିଛି, ତାହାର ଯଥାର୍ଥତା ଉପଲବ୍ଧି କରି କରିଛି ।"

ସେଦିନ ମୁଁ ସାର୍‌ଙ୍କ କଥାର ସାରମର୍ମ ବୁଝିପାରିଲି । ମୋ ମନରେ କ୍ରମଶଃ ନିଜର ଭାଷା ଓ ଚିନ୍ତାଧାରା ଉପରେ ଆତ୍ମବିଶ୍ୱାସର ଅଭ୍ୟୁଦୟ ସେଇଦିନଠାରୁ ଘଟିଲା ।

ଗାନ୍ଧିଶିକ୍ଷାଶ୍ରମରେ ଅଧ୍ୟୟନ ସମୟରେ ଆମେ ଏପରି ଜଣେ ଗଣିତ ବିଶେଷଜ୍ଞଙ୍କୁ ପାଇଥିଲୁ ଯାହାଙ୍କୁ କି ଯେ କୌଣସି ଜଟିଳ ଗଣିତର ପ୍ରଶ୍ନ ପଚାରୁ ପଚାରୁ ସେ ତା'ର ଉତ୍ତର ସଙ୍ଗେ ସଙ୍ଗେ କହି ଦେଉଥିଲେ । ସେ ହେଉଛନ୍ତି ପ୍ରବୀଣ ଗଣିତ ବିଶେଷଜ୍ଞ

ଶ୍ରୀଯୁକ୍ତ ବାବାଜୀ ଚରଣ ପଲାଇ । ଆମବେଳେ ଜାତୀୟକରଣ ବହି ନ ଥିଲା । ବିଭିନ୍ନ ଲେଖକଙ୍କ ଦ୍ୱାରା ପ୍ରସ୍ତୁତ ବହିକୁ ଦେଖି ବିଦ୍ୟାଳୟ କର୍ତ୍ତୃପକ୍ଷ ନିଜ ବିଦ୍ୟାଳୟ ପାଇଁ ବହି ନିର୍ବାଚନ କରୁଥିଲେ । ଆମେ ପଢୁଥିବା ଆଲ୍‌ଜେବ୍ରା ବହି କେ.ପି. ବସୁଙ୍କ ଦ୍ୱାରା ଲିଖିତ ହୋଇଥିଲା । ରହେମତ୍ ଓ କରାମତ ଅଲ୍ଲୀଙ୍କ ଗଣିତ ବହି ସେ ସମୟରେ ଛାତ୍ରଛାତ୍ରୀମାନଙ୍କଦ୍ୱାରା ଆଦୃତ ହେଉଥିଲା । ଗଣିତ ଇଚ୍ଛାଧୀନ ବିଷୟର ବହିର ଜଣେ ଲେଖକ ଥିଲେ ଆମ ଶିକ୍ଷା ବିଷୟ (Education)ର ଜଣେ ବିଦ୍ୱାନ ଅଧ୍ୟାପକ ରମଣୀ ରଞ୍ଜନ ଦାସ ।

ମୁଁ ଭଲ ପଢୁଥିବା ହେତୁ ମୋ ଉପରେ ଶ୍ରୀଯୁକ୍ତ ପଲାଇଙ୍କର ଶୁଭ ଦୃଷ୍ଟି ଥିଲା । ସେ ମୋତେ ବିନା ଦ୍ୱିଧାରେ ଅବସର ସମୟରେ ଗଣିତର ଜଟିଳ ତତ୍ତ୍ୱକୁ ବୁଝାଇ ଦେଉଥିଲେ । ଜଣେ ଭଲ ଶିକ୍ଷକ ହୋଇଥିବା ହେତୁ ସେ ପିଲାମାନଙ୍କ ଉପରେ ରାଗୁ ନ ଥିଲେ କି ଅଯଥା ଦଣ୍ଡ ଦେଉ ନ ଥିଲେ ।

ସେ ସମୟରେ ମୁଁ ନବମ ଶ୍ରେଣୀରେ ପଢୁଥିଲାବେଳେ ଜନୈକ ଶିକ୍ଷକ ଆମ ବିଦ୍ୟାଳୟକୁ ବଦଳି ହୋଇ ଆସିଥିଲେ । ତାଙ୍କର ଶିକ୍ଷାଦାନ ସନ୍ତୋଷଜନକ ନ ଥିଲା । ତେଣୁ ତାଙ୍କ ବିରୋଧରେ ଆମ ଶ୍ରେଣୀର ଦଳେ ପିଲା ପ୍ରଧାନଶିକ୍ଷକଙ୍କୁ ଭେଟି ତାଙ୍କୁ ଇଂରାଜୀ ବିଷୟ ଆମ ଶ୍ରେଣୀରେ ପଢ଼ାଇବାକୁ ନ ଦେବା ଲାଗି ଅନୁରୋଧ କରିଥିଲୁ । ସେଇ ପିଲାମାନଙ୍କ ସହିତ ଶ୍ରୀଯୁକ୍ତ ପଲେଇ ମୋତେ ଦେଖିଥିଲେ । ପ୍ରଧାନଶିକ୍ଷକ ଆମ ଅଭିଯୋଗ ଶୁଣି କେବଳ ଏତିକି କହିଥିଲେ, "ସେ ପାଠ ପଢ଼ାଇଲାବେଳେ ମୁଁ ଯାଇଁ ଉପସ୍ଥିତ ରହିବି ।"

ସେଦିନ ବିଦ୍ୟାଳୟ ଛୁଟିପରେ ମୋର ପଲେଇ ସାର୍‌ଙ୍କ ସହିତ ସାକ୍ଷାତ ହୋଇଥିଲା । ସେ ମୋତେ କହିଥିଲେ, "ଦିଗରାଜ ! ତୋର କେଉଁ ପାଠ ତୁ ବୁଝିପାରୁନୁ ଯେ ତୁ ପୁଣି ଅନ୍ୟପିଲାଙ୍କ ସହିତ ଯାଇ ପ୍ରଧାନଶିକ୍ଷକଙ୍କ ପାଖରେ ଜଣେ ଶିକ୍ଷକଙ୍କ ବିରୋଧରେ ଅଭିଯୋଗ କରୁଛୁ ? ତୋତେ ତ ପାଠ ବୁଝାଇଦେବା ପାଇଁ ଏ ବିଦ୍ୟାଳୟରେ ସ୍ୱତପ୍ରବୃତ୍ତ ଭାବେ ଅନେକ ଶିକ୍ଷକ ଅଛନ୍ତି ।"

ସାର୍‌ଙ୍କ କଥା ଶୁଣି ମୁଁ ନୀରବ ରହିଲି । କୌଣସି ଉତ୍ତର ଦେଲି ନାହିଁ ।

ଜଣେ ଶିକ୍ଷକଙ୍କ ବିରୋଧରେ ଅଭିଯୋଗ କରିବା ଯେ କେତେ କଷ୍ଟକର ଓ ସମ୍ବେଦନଶୀଳ ବିଷୟ ତାହା ମୁଁ ମୋର ଶିକ୍ଷକ ଜୀବନରେ ମର୍ମେ ମର୍ମେ ଅନୁଭବ କରିଥିଲି । ସେ ସଂପର୍କରେ ଏଠାରେ ଗୋଟିଏ ଦୁଇଟି ପ୍ରସଙ୍ଗ ଉତ୍‌ଥାପନ କରିବା ସମୀଚୀନ ହେବ ।

ମୁଁ ୧୯୭୦ ମସିହାରେ ମଉଦାସ୍ଥିତ ମଧୁସୂଦନ ଜଗନ୍ନାଥ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରୁଥିଲି । ମୋ ଶିକ୍ଷକତା ସମୟରେ ସେ ଅଞ୍ଚଳର ଗୋଠଦାର ଜଣେ ବିଶିଷ୍ଟ ବିଦ୍ୱାନ ବ୍ୟକ୍ତି ଜଗବନ୍ଧୁ ମିଶ୍ର ତାଙ୍କର ବଡ଼ ପୁଅ ସହିତ ଆମ ବିଦ୍ୟାଳୟରେ ପହଞ୍ଚିଲେ । ପ୍ରଧାନଶିକ୍ଷକଙ୍କୁ ତାଙ୍କର ଅଷ୍ଟମ ଶ୍ରେଣୀରେ ପଢୁଥିବା ପୁଅ ରାଜୁନି (ଶ୍ରୀମାନ୍ ପ୍ରସନ୍ନ କୁମାର ମିଶ୍ର)ର ମୁଁ ପରୀକ୍ଷାର ଦେଖିଥିବା କୌଣସି ଏକ ବିଷୟର ଖାତା ଦେଖିବାକୁ ଚାହିଁଥିଲେ । ସଙ୍ଗେ ସଙ୍ଗେ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ବଂଶୀଧର ଭୋଳ ମୋତେ ତାଙ୍କ କାର୍ଯ୍ୟାଳୟକୁ ଡ଼କାଇଲେ । ରାଜୁନି ଜଣେ ମେଧାବୀ ଓ ଶିକ୍ଷକମାନଙ୍କର ପ୍ରିୟ ଛାତ୍ର ଥିଲା । ହୁଏତ ସେ ମୋର ମୂଲ୍ୟାୟନ ଠିକ ହୋଇନାହିଁ ବୋଲି ତାର ବାପାଙ୍କ ଆଗରେ ଅଭିଯୋଗ କରିଥିଲା ଓ ତା'ର ବଡ଼ ଭାଇ, ଯେ କି ସେଠାରେ ପଢୁ ନ ଥିଲା ତାକୁ ସମର୍ଥନ କରିଥିଲା । ତେଣୁ ମୋଟାମୋଟି ଭାବେ ପିଲାମାନଙ୍କ ଅଭିଯୋଗର ସତ୍ୟାସତ୍ୟ ବୁଝିବାକୁ ଶ୍ରୀଯୁକ୍ତ ମିଶ୍ର ବିଦ୍ୟାଳୟକୁ ଆସିଥିଲେ । ପ୍ରଧାନଶିକ୍ଷକଙ୍କ ଉପସ୍ଥିତିରେ ଶ୍ରୀଯୁକ୍ତ ମିଶ୍ର ଖାତାଟିକୁ ତନ୍ନତନ୍ନ କରି ଦେଖିଲେ । ଖାତା ଦେଖିଲାବେଳେ ତାଙ୍କର କୌଣସି ପ୍ରତିକ୍ରିୟା ନ ଥିଲା କିମ୍ବା ମୋ ପ୍ରତି ଟିକିଏ ହେଲେ ଅସୂୟାଭାବ ତାଙ୍କ ମନରେ ସ୍ଥାନ ପାଇ ନ ଥିଲା । ସେ ପ୍ରଶ୍ନ, ଉତ୍ତର ଓ ମାର୍କ ଦେଖି ଦେଖି ଚାଲିଲେ । କୌଣସି ଏକ ସ୍ଥାନରେ ରାଜୁନିର ବଡ଼ ଭାଇ କହିଲା, "ଏଇ ସ୍ଥାନରେ ରାଜୁନି ଆଉ ଅଧିକ ନମ୍ବର ପାଇବ ।" ଏହା ଶୁଣି ଶ୍ରୀଯୁକ୍ତ ମିଶ୍ର ମୋ ଉପସ୍ଥିତିରେ ତାକୁ କହିଲେ - "କାହିଁକି ଅଧିକ ମାର୍କ ପାଇବ ? ଅଧିକ ମାର୍କ ପାଇବାକୁ ହେଲେ ଅଧିକ ତଥ୍ୟ ଦିଆଯିବା ଆବଶ୍ୟକ । ସେ ଯାହା ଲେଖିଛି ତଦନୁଯାୟୀ ନମ୍ବର ପାଇଛି ।" ଏହା କହି ଶ୍ରୀଯୁକ୍ତ ମିଶ୍ର ବଡ଼ ପୁଅ ସହିତ ବିଦ୍ୟାଳୟ ଛାଡ଼ି ଚାଲିଗଲେ ।

ଆଉ ଗୋଟିଏ ଘଟଣା ଥିଲା ଏହିପରି : ମୁଁ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଭୁବନେଶ୍ୱରରେ ଅବସ୍ଥାପିତ ଥିଲାବେଳେ ବରମୁଣ୍ଡା ନିକଟସ୍ଥ ରେଣ୍ଟାଲ୍ କଲୋନୀରେ ଅବସ୍ଥିତ ସରକାରୀ ଘରେ ରହୁଥିଲି । ସେତେବେଳେ ମୋର ସାନ ଦୁଇପୁଅ ଏହି କଲୋନୀର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଢୁଥିଲେ । ଏହାର ପ୍ରଧାନ ଶିକ୍ଷୟିତ୍ରୀଭାବେ ରାଜ୍ୟର ସୁନାମଧନ୍ୟା ଲେଖିକା ଶରତକୁମାରୀ ମିଶ୍ର ଥିଲେ । ମୁଁ ଏସ.ସି.ଇ.ଆର.ଟିର ଅଧ୍ୟାପକ ଥିବା ହେତୁ ମୋ ପ୍ରତି ପ୍ରଧାନ ଶିକ୍ଷୟିତ୍ରୀ ଓ ଅନ୍ୟାନ୍ୟ ଶିକ୍ଷୟିତ୍ରୀମାନଙ୍କର ଯଥେଷ୍ଟ ସମ୍ମାନ ଥିଲା ।

ଥରେ ମୋ ପିଲାମାନେ ଜଣେ ଶିକ୍ଷୟିତ୍ରୀ ମୋର ଜନୈକ ପୁଅର କୌଣସି ଏକ ଉତ୍ତର ଠିକ୍ ଥାଇ ମଧ୍ୟ ପୂରାମାର୍କ ଦେଇ ନାହାନ୍ତି ବୋଲି ଅଭିଯୋଗ କଲେ । ଏ

ପ୍ରକାର ଅଭିଯୋଗ ମୋ ଅଭିଜ୍ଞତାରେ ମୂଲ୍ୟହୀନ ହୋଇଥିଲେ ମଧ୍ୟ ମୁଁ ପ୍ରଧାନ ଶିକ୍ଷୟିତ୍ରୀଙ୍କ ସେ ଖାତା ଦେଖିବା କଥା କହିଲି । ମାତ୍ର ଖାତା ଦେଖିଥିବା ଶିକ୍ଷୟିତ୍ରୀ ଜାଣି ପାରିଲେ ଯେ ଏ ପ୍ରସଙ୍ଗରେ ମୁଁ ସେଠାକୁ ଯାଇଛି । ସେ ସଙ୍ଗେ ସଙ୍ଗେ ପ୍ରଧାନ ଶିକ୍ଷୟିତ୍ରୀଙ୍କ କାର୍ଯ୍ୟାଳୟକୁ ଆପେ ଆପେ ଆସିଲେ । ମୁଁ ଲକ୍ଷ୍ୟ କଲି ଯେ ଏ ପ୍ରସଙ୍ଗରେ ସେ ନିଜକୁ ଟିକିଏ ସଂକୁଚିତ ମନେ କରୁଛନ୍ତି । ମୁଁ କହିଲି, "ମାଡ଼ାମ୍ ! ଆପଣ ଯେ କମ୍ ନମ୍ବର ଦେଇଛନ୍ତି ତାହା ନୁହେଁ । କେବଳ ସେ କ'ଣ କରିଛି ସେ କଥା ମୁଁ ଖାତା ଦେଖିଲେ ଜାଣି ପାରିବି । ମୋର ଅନୁଧ୍ୟାନ ମଧ୍ୟ ଠିକ୍ ହେବ ।" ଦେଖିଲି ପିଲାଟି ଯେଉଁ ଅଭିଯୋଗ କରିଛି ସତ୍ୟ । ବସ୍ତୁନିଷ୍ଠ (Objective) ପ୍ରଶ୍ନର ଉତ୍ତର ଠିକ୍ ଥିଲେ ମଧ୍ୟ ସେ ଦୁଇ ନମ୍ବରରୁ ବଞ୍ଚିତ ହୋଇଥିଲା । ମାତ୍ର ସେହିପରି ଅନ୍ୟ ସ୍ଥାନରେ ମଧ୍ୟ ସେ ଅଧିକ ଦୁଇ ନମ୍ବର ପାଇଅଛି । ସେ ସାମଗ୍ରିକ ଭାବେ ଯେତିକି ନମ୍ବର ପାଇବା କଥା ତାହା ପାଇଛି । ଏସବୁ କଥା ସେଠାରେ ଉଲ୍ଲେଖ ନ କରି ମୂଲ୍ୟାୟନ ଯଥାର୍ଥ ଓ ନିରପେକ୍ଷ ଅଛି କହି ମୁଁ ସେଠାରୁ ଚାଲି ଆସିଲି ।

ଗାନ୍ଧିଶିକ୍ଷାଶ୍ରମରେ ପଢୁଥିଲାବେଳେ ମୋର ଭିଣୋଇ ବଂଶୀଧର ମିଶ୍ର ଶିକ୍ଷକତା କରୁଥିଲେ । ସେ ସଂସ୍କୃତରେ ଯେତିକି ବିଦ୍ୱାନ ଥିଲେ ଇଂରାଜୀ ଭାଷାରେ ମଧ୍ୟ ସେତିକି ଧୂରନ୍ଧର ଥିଲେ । ଓଡ଼ିଆ ଭାଷାରେ ମଧ୍ୟ ତାଙ୍କର ଅଧିକ ଦକ୍ଷତା ଥିଲା । ସେ କୌଣସି ପିଲାକୁ କେବେ ନିରୁତ୍ସାହିତ କରୁ ନ ଥିଲେ । ତାଙ୍କର ମୂଲ୍ୟାୟନ ଯଥାର୍ଥ । ମୁଁ ଦଶମ ବାର୍ଷିକ ପରୀକ୍ଷାରେ ସାହିତ୍ୟରେ ଷାଠିଏରୁ ଅଧିକ ନମ୍ବର ପାଇଥିବା ହେତୁ ଛତିଆର ମୋର ଜଣେ ପ୍ରତିଦ୍ୱନ୍ଦୀ ସହପାଠୀ ସଂପର୍କ ଦୃଷ୍ଟିକୋଣରୁ ମୁଁ ଓଡ଼ିଆରେ ଶ୍ରୀଯୁକ୍ତ ମିଶ୍ରଙ୍କ ଦ୍ୱାରା ଅଧିକ ନମ୍ବର ପାଉଛି ବୋଲି ଚାରିଆଡ଼େ କହି ବୁଲିଲେ । ମାତ୍ର ମାଟ୍ରିକ୍ ପରୀକ୍ଷାରେ ସାହିତ୍ୟରେ ସେ ବର୍ଷର ପରୀକ୍ଷାର୍ଥୀଙ୍କ ମଧ୍ୟରେ ବିଦ୍ୟାଳୟରେ ସର୍ବୋଚ୍ଚ ନମ୍ବର ରଖିଥିବା ହେତୁ, ସେ ବନ୍ଧୁମାନଙ୍କୁ କହିବୁଲିଲେ ଯେ ଶିକ୍ଷକ-ତଥା-ମୋର ଭିଣୋଇ ବଂଶୀଧର ମିଶ୍ରଙ୍କ ମୂଲ୍ୟାୟନ ନିରପେକ୍ଷ ଓ ଯଥାର୍ଥ ଥିଲା ।

ଗାନ୍ଧିଶିକ୍ଷାଶ୍ରମର ସେ ସମୟରେ ଅନ୍ୟତମ ପ୍ରବୀଣ ଶିକ୍ଷକ ଥିଲେ ଶ୍ରୀଯୁକ୍ତ ଭକ୍ତଚରଣ ମହାନ୍ତି । ସେ ମୁଣ୍ଡରେ ଠେକାବାନ୍ଧି ଶ୍ରେଣୀକୁ ଆସୁଥିଲେ ଓ ପ୍ରାଞ୍ଜଳଭାବେ ଓଡ଼ିଆ ପଢ଼ାଉଥିଲେ । ତାଙ୍କର ଦୁଇପୁଅ ଭାରତ କେଶରୀ ମହାନ୍ତି ଓ କଳିଙ୍ଗ କେଶରୀ ମହାନ୍ତି । ତାଙ୍କର ସାନ ପୁଅ ଭାରତ ମୋର ସହପାଠୀ ଥିଲେ । ଶ୍ରୀଯୁକ୍ତ ମହାନ୍ତି ଅଭିନୟ ମାଧ୍ୟମରେ ଓଡିଆ ବିଷୟବସ୍ତୁ ପଢ଼ାଉଥିଲେ । ସେ "କଂସର ଚିଟାଉ" ପଢ଼ାଉଥିଲାବେଳେ "ଲେଖିଅଛି କଂସ ହୋଇ ମହାରୋଷ ଆରେ ଗୋପପତି ନନ୍ଦ"

ଆବୃତ୍ତି କଲାବେଳେ ସମଗ୍ର ଶ୍ରେଣୀକକ୍ଷ ଯେମିତି କଂସର ଦରବାରରେ ପରିଣତ ହୋଇଯାଉଥିଲା ।

ଶ୍ରୀଯୁକ୍ତ ମହାନ୍ତି ଗାନ୍ଧିଶିକ୍ଷାଶ୍ରମରେ ଅବସ୍ଥାପିତ ଥିଲାବେଳେ "Students Guide" ନାମକ ଏକ ଶିକ୍ଷାଜର୍ଣ୍ଣାଲ ନିଜସ୍ୱ ପ୍ରଚେଷ୍ଟାରେ ପ୍ରକାଶ କରୁଥିଲେ । ଏଥିରେ ବିଭିନ୍ନ ପ୍ରବୀଣ ଶିକ୍ଷାବିତ୍‌ମାନଙ୍କର ପାଠ୍ୟକ୍ରମ ବିଷୟଭିତ୍ତିକ ଆଲୋଚନା ପ୍ରକାଶିତ ହେଉଥିଲା । ରାଜ୍ୟର ଅନେକ ବିଦ୍ୟାଳୟ ଓ ଛାତ୍ରଛାତ୍ରୀମାନେ ଏହାଦ୍ୱାରା ଉପକୃତ ହେଉଥିଲେ । ଆମ ସମୟର ଶିକ୍ଷା ବ୍ୟବସ୍ଥା ଅନୁଯାୟୀ ସପ୍ତମ ଶ୍ରେଣୀରେ ସରକାରଙ୍କ ତରଫରୁ ସାଧାରଣ ପରୀକ୍ଷା (Common Examination)ର ବ୍ୟବସ୍ଥା ଥିଲା । ଶ୍ରୀଯୁକ୍ତ ମହାନ୍ତି ପରୀକ୍ଷା ଉପଯୋଗୀ "ଗଣିତ ସମାଧାନ" ନାମକ ଏକ ପୁସ୍ତକ ପ୍ରକାଶ କରିଥିଲେ । ଏଥିରେ ସୁନିର୍ବାଚିତ ପରୀକ୍ଷାଭିତ୍ତିକ ବିଭିନ୍ନ ଗଣିତ ପ୍ରଶ୍ନ ଓ ଜ୍ୟାମିତି ପ୍ରଶ୍ନ ଥାଇ ତାହାର ସମାଧାନର ଧାରା ବର୍ଣ୍ଣିତ ହୋଇଥିଲା । ଏହା ଆମ ପାଇଁ ବଡ଼ ଉପାଦେୟ ଥିଲା । ବିଶେଷତଃ ଉଚ୍ଚ ଶ୍ରେଣୀରେ ଆମକୁ ଠିକ୍ ବାଟରେ ପାଠ ପଢ଼ିବା ଓ ଲେଖିବା ପାଇଁ ଶିକ୍ଷକଙ୍କ ବ୍ୟତୀତ ଅନ୍ୟ କେହି ଦିଗ୍‌ଦର୍ଶନ ଦେବାକୁ ନ ଥିବା ହେତୁ ଆମେ ଏହି ବହି ସ୍ୱତଃପ୍ରବୃତ୍ତ ଭାବେ କିଣିବାକୁ ଲାଗି ପଡ଼ିଥିଲୁ । ମାତ୍ର କୌଣସି ସମୟରେ ସାର୍ "ମୋ ବହି କିଣ" ବୋଲି କାହାକୁ କହି ନାହାଁନ୍ତି କିମ୍ବା ଯିଏ ନ କିଣେ ତା' ପ୍ରତି ମଧ୍ୟ ଅସୂୟାଭାବ ଦେଖାଇ ନାହାଁନ୍ତି । ଏହି ବହିଟି କିଣିବା ପାଇଁ ମୁଁ ବାରମ୍ବାର ଘରେ ବାପାଙ୍କୁ କହିଥିଲି । ସେ ସେଥିପାଇଁ ଆଗ୍ରହ ପ୍ରକାଶ କରି ନ ଥିଲେ । କିନ୍ତୁ ବୋଉକୁ କହିବାରୁ ସେ ମୋତେ ଦେଢ଼ ଟଙ୍କା ଦେଇଥିଲା । ମୁଁ ଏଇ ବହି କିଣି ପ୍ରଶ୍ନର କିପରି ଧାରା ଅନୁଯାୟୀ ଉତ୍ତର ଦିଆଯିବ ଜାଣି ବିଶେଷ ଲାଭବାନ ହୋଇଥିଲି ।

ପରବର୍ତ୍ତୀ ସମୟରେ ଆମର ଏଇ ପ୍ରିୟ ଶିକ୍ଷକ ଗାନ୍ଧିଶିକ୍ଷାଶ୍ରମରୁ ବିଦାୟ ନେଇ କଟକସ୍ଥିତ ମାଧ୍ୟମିକ ଶିକ୍ଷା ପରିଷଦ ଦ୍ୱାରା ପରିଚାଳିତ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲରେ ଶିକ୍ଷକତା କରିଥିଲେ । ସେତେବେଳେ ସେ କଟକର ବାଦାମବାଡ଼ି ଅଞ୍ଚଳରେ "ଦି ଗାଇଡ୍ ପ୍ରେସ୍" ଖୋଲି ଶିକ୍ଷାର ପ୍ରଚାର ଓ ପ୍ରସାର କରିଥିଲେ । ଜଣେ ଦକ୍ଷ ଛାତ୍ରବତ୍ସଳ ଅମାୟିକ, ଗୁଣଗ୍ରାହୀ ଶିକ୍ଷାବିତ୍ ହିସାବରେ ସ୍ୱର୍ଗତଃ ଭକ୍ତଚରଣ ମହାନ୍ତି ଆମ ରାଜ୍ୟରେ ଏବେ ମଧ୍ୟ ପରିଚିତ ।

ଆମେ ନବମ ଶ୍ରେଣୀରେ ୧୯୬୪ ମସିହାରେ ପଢୁଥିଲାବେଳେ ଗାନ୍ଧି ଶିକ୍ଷାଶ୍ରମରେ କିଛିଦିନ ପାଇଁ ଜଣେ ସୁଶ୍ରୀ, ଗୌରବର୍ଣ୍ଣ,ଦୀର୍ଘଉଚ୍ଚତା ବିଶିଷ୍ଟ ପ୍ରଶାନ୍ତ ଚେହେରା ବ୍ୟକ୍ତିଙ୍କର ଶିକ୍ଷକଭାବେ ଆବିର୍ଭାବ ଘଟିଥିଲା । ସେ ଥିଲେ ଛତିଆର ଜଣାଶୁଣା

ବ୍ୟକ୍ତି ଶ୍ରୀଯୁକ୍ତ ନରୁ ନନ୍ଦଙ୍କ ପୁଅ ଅକ୍ଷୟ କୁମାର ନନ୍ଦ । ଶ୍ରୀଯୁକ୍ତ ନନ୍ଦ ଅଳ୍ପଦିନ ପାଇଁ ଗାନ୍ଧିଶିକ୍ଷାଶ୍ରମରେ ଶିକ୍ଷକତା କରିଥିଲେ । ତାଙ୍କର ଅଳ୍ପ ଦିନର ରହଣି ମଧ୍ୟରେ ସେ ଆମର ଆସ୍ଥାଭାଜନ ହୋଇପାରିଥିଲେ । ଶ୍ରୀଯୁକ୍ତ ନନ୍ଦଙ୍କର ମାର୍ଜିତ ଆଚରଣ, ସ୍ୱଚ୍ଛ କଥାବାର୍ତ୍ତା, ଗଣିତ ଓ ବିଜ୍ଞାନ ସଂପର୍କୀୟ ଆଲୋଚନା ଏବେ ମଧ୍ୟ ପରିଣତ ବୟସରେ ମୋ ଆଖି ଆଗରେ ନାଚି ଉଠେ ।

ଥରେ ଶ୍ରୀଯୁକ୍ତ ନନ୍ଦ ବିଜ୍ଞାନର ଏକ ଏନ୍‌ସାଇକ୍ଲୋପିଡ଼ିଆ ଆମ ଶ୍ରେଣୀଗୃହକୁ ଆଣି ଭବିଷ୍ୟତରେ ମଣିଷର ମୁଣ୍ଡ କିପରି ଦେଖାଯିବ ତାର ଚିତ୍ର ଆମକୁ ଦେଖାଇଥିଲେ । ସେତେବେଳେ ସେ କହିଥିଲେ, "ପିଲାମାନେ ତୁମେ ଜାଣ ଯେ ଗୋଟିଏ ସମୟରେ ମଣିଷ"ର ଲାଞ୍ଜ ଥିଲା ଓ କାଳକ୍ରମେ ତାହା ଲୋପ ପାଇଗଲା । କ୍ରମଶଃ ମଣିଷର କାର୍ଯ୍ୟ ଶୈଳୀ ଓ ବୁଦ୍ଧିର ଏପରି ବିକାଶ ହେଉଛି ଯେ ବୈଜ୍ଞାନିକମାନଙ୍କ ମତରେ ମଣିଷର ଅବୟବର କ୍ଷୟ ଘଟି ଶେଷରେ କେବଳ ତା'ର ମୁଣ୍ଡ ରହିବ ଓ ସମସ୍ତ କାର୍ଯ୍ୟକଳାପକୁ ସେ ମସ୍ତିଷ୍କ ମାଧ୍ୟମରେ ନିୟନ୍ତ୍ରଣ କରିବ ।"

ସେତେବେଳେ ଶ୍ରୀଯୁକ୍ତ ନନ୍ଦଙ୍କ ଏହି ବକ୍ତବ୍ୟ ଏକ ବିଜ୍ଞାନ ଉପନ୍ୟାସ (Science Fiction)ର କାହାଣୀ ଭଳି ଆମକୁ ଲାଗିଥିଲା । ମାତ୍ର ଆଧୁନିକ ବିଜ୍ଞାନର ଚମତ୍କାର ଉଦ୍ଭାବନ ଓ ମଣିଷର କ୍ରମବିକାଶ ଯୋଗୁଁ ଏହା ଯେ ଦିନେ ସମ୍ଭବପର ହୋଇପାରେ, ତାହା କେହି ମନାକରି ପାରିବେ ନାହିଁ ।

ଥରେ ଶ୍ରୀଯୁକ୍ତ ନନ୍ଦ ତ୍ରିକୋଣମିତିର ଏକ ପ୍ରଶ୍ନର ସମାଧାନ କଳାପଟାରେ ସୋପାନ ପରେ ସୋପାନ (step by step) ଲେଖି ବୁଝାଉଥିଲେ । କିନ୍ତୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସେ ରହିଗଲେ ଓ ଆଉ ଆଗେଇ ପାରିଲେ ନାହିଁ । ତା'ପରେ ପଚାରିଲେ, "ତୁମ ଭିତରୁ କେହି ଏ ପ୍ରଶ୍ନଟିର ଉତ୍ତର କରିଛ କି ?" ମୁଁ କହିଲି, "ସାର୍ ! ମୁଁ କରିଛି ।" ସେ ସିଧା ବ୍ଲାକ୍‌ବୋର୍ଡ଼ ପାଖରୁ ମୋ ପାଖକୁ ଆସିଗଲେ । ମୋଠାରୁ ଖାତା ନେଇ ମୁଁ ବସିଥିବା ସ୍ଥାନରେ ସମାଧାନଟିକୁ ଦେଖିଲେ ।

ତା'ପରେ ସେ ମୋତେ ଅତି ସରଳ ଭାବେ ପ୍ରଶ୍ନ କଲେ, "ଏ ସମାଧାନଟି ତୁ ନିଜେ କରିଛୁ ?" ମୁଁ ମନା କଲି ।

ସେ ପ୍ରଶ୍ନ କଲେ, "କିଏ ତୋତେ ବତାଇ ଦେଇଛନ୍ତି ?"

ମୁଁ କହିଲି, "ମୋ କକେଇଙ୍କ ପୁଅ ମୋତେ ବତାଇ ଦେଇଛନ୍ତି ।"

"ସେ କ'ଣ କରନ୍ତି ?" ଶ୍ରୀଯୁକ୍ତ ନନ୍ଦ ପଚାରିଲେ ।

"ସେ ରାଉରକେଲା ଇଞ୍ଜିନିୟରିଙ୍ଗ୍ କଲେଜରେ ଅଧ୍ୟୟନ କରନ୍ତି ।"

ତାଙ୍କ ନାମ କ'ଣ ?

ମୁଁ କହିଲି - "ତାଙ୍କ ନାମ ଜଗଦାନନ୍ଦ ବ୍ରହ୍ମା । ସେ ଗାଁକୁ ଆସିଥିଲେ । ମୁଁ ତାଙ୍କର ସାହାଯ୍ୟ ନେଇଥିଲି ।''

ତା'ପରେ ଶ୍ରୀଯୁକ୍ତ ନନ୍ଦ ସିଧା ସିଧା କଳାପଟା ନିକଟକୁ ଗଲେ ଓ ସମାଧାନଟି କରି ପିଲାମାନଙ୍କୁ ବୁଝାଇ ଦେଇଥିଲେ ।

**ସାହିତ୍ୟର ଉନ୍ମେଷ ପୀଠ : ଗାନ୍ଧିଶିକ୍ଷାଶ୍ରମ**

ପ୍ରତ୍ୟେକ ବିଦ୍ୟାଳୟ ହେଉଛି ଶିଶୁ ପ୍ରତିଭାର ଉନ୍ମେଷ ଓ ବିକାଶର ପୀଠ । ପ୍ରାଥମିକ ଶିକ୍ଷାସ୍ତରରୁ ଆରମ୍ଭ ହୋଇଥିବା ମୋର ସାହିତ୍ୟିକ ଜୀବନର ଉନ୍ମେଷ ଓ ବିକାଶ ଘଟିଥିଲା ଗାନ୍ଧିଶିକ୍ଷାଶ୍ରମ, ଚମ୍ପାପୁରରେ ।

ଆମ ଶ୍ରେଣୀରେ ଥରେ ଅଭିମନ୍ୟୁ ସାର୍ (ଅଭିମନ୍ୟୁ ଆଚାର୍ଯ୍ୟ) କଥା ପ୍ରସଙ୍ଗରେ ଗୋଟିଏ ମୂଲ୍ୟବାନ କଥା କହିଥିଲେ । ସେ କଥାଟି ହେଲା ଜଣେ ଛାତ୍ର ନିଜକୁ କେବଳ ବିଦ୍ୟାଳୟର ପ୍ରଚଳିତ ପାଠ୍ୟପୁସ୍ତକ ମଧ୍ୟରେ ସୀମିତ ରଖିବା ଅନୁଚିତ । ସେଥିପାଇଁ ସେ ଆମକୁ ବିଦ୍ୟାଳୟର ପାଠାଗାରକୁ ଆସୁଥିବା ମୂଲ୍ୟବାନ ଶିଶୁ ଉପଯୋଗୀ ବହିଗୁଡ଼ିକ ପଢ଼ିବାକୁ କହିଥିଲେ । ଏତଦ୍‌ବ୍ୟତୀତ କଟକସ୍ଥିତ ତେଲେଙ୍ଗା ବଜାରରୁ ପୂଜ୍ୟ ରାମକୃଷ୍ଣ ନନ୍ଦଙ୍କ ସଂପାଦିତ ସଂସାର ପତ୍ରିକା ଡାକଯୋଗେ ମଗାଇ ପଢ଼ିବାକୁ ପରାମର୍ଶ ଦେଇଥିଲେ । ସେତେବେଳେ ଆମର ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟରେ ଲାଇବ୍ରେରୀ ଏକ ସ୍ୱତନ୍ତ୍ର ପିରିୟଡ଼ର ମର୍ଯ୍ୟାଦା ଲାଭ କରିଥିଲା । ସେ ପିରିୟଡ଼ରେ ଜଣୈକ ଶିକ୍ଷକ ଲାଇବ୍ରେରୀରୁ ଶ୍ରେଣୀ ପିଲା ସଂଖ୍ୟା ଅନୁଯାୟୀ ୪୦-୪୫ ଖଣ୍ଡ ବହି ଆଣି କ୍ଲାସକୁ ଆସୁଥିଲେ । ସପ୍ତାହକ ପାଇଁ ପିଲାମାନଙ୍କୁ ଘରେ ବହି ପଢ଼ିବାକୁ ଦିଆଯାଉଥିଲା । ବହିଟି ପଢ଼ି ତା'ର ବିଷୟବସ୍ତୁର ସାରକଥା ଲାଇବ୍ରେରୀ ଖାତାରେ ଲେଖି ଆଗାମୀ ପିରିୟଡ଼ରେ ସାର୍‌ଙ୍କ ପାଖରେ ଖାତାଟିକୁ ଦେବାକୁ ପଡୁଥିଲା । ସାରକଥାକୁ ଦେଖି ଶିକ୍ଷକ ମହାଶୟ ନିଜର ମନ୍ତବ୍ୟ ଲିପିବଦ୍ଧ କରୁଥିଲେ ।

ସଂପ୍ରତି ଏ ବ୍ୟବସ୍ଥା ପ୍ରାୟତଃ ଲୋପ ପାଇଯାଇଛି । ପାଠ୍ୟ ନିର୍ଘଣ୍ଟରେ ଲାଇବ୍ରେରୀର ସ୍ୱତନ୍ତ୍ର ପିରିୟଡ଼ ରହିଅଛି ଓ ସରକାରଙ୍କଠାରୁ ମଧ୍ୟ ପର୍ଯ୍ୟାପ୍ତ ଶିଶୁ ସାହିତ୍ୟ ପୁସ୍ତକ ବିଭିନ୍ନ ବିଦ୍ୟାଳୟକୁ ଯୋଗାଇ ଦିଆଯାଉଅଛି । ମାତ୍ର ମୁଁ ପଢୁଥିବା ସମୟରେ ଲାଇବ୍ରେରୀ ପିରିୟଡ଼ର ଯେପରି ସଦୁପଯୋଗ ହେଉଥିଲା, ତାହା ସଂପ୍ରତି ବ୍ୟାହତ ହୋଇଥିବା ଭଳି ଜଣାଯାଏ ।

ଅଭିମନ୍ୟୁ ସାର୍‌ଙ୍କ ପରାମର୍ଶ ଅନୁଯାୟୀ ମୁଁ ମୋର ସଞ୍ଚିତ ପଇସାରୁ 'ସଂସାର' ପତ୍ରିକାଟିଏ ଡାକ ଯୋଗେ କଟକରୁ ମଗାଇଥିଲି । ପ୍ରତିମାସ ଶେଷରେ ବିଭିନ୍ନ ରଙ୍ଗର ମଲାଟ ଥିବା ଶିଶୁ କିଶୋର ପତ୍ରିକା 'ସଂସାର' ମୋ ପାଖରେ ପହଞ୍ଚୁଥିଲା । ପତ୍ରିକା ପାଇଲାବେଳେ ମୋ ମନରେ ଅସରନ୍ତି ଆନନ୍ଦ ଦେଖାଯାଉଥିଲା । ଏହାର ପ୍ରତ୍ୟେକ ପୃଷ୍ଠାରେ ଥିବା ବିଷୟବସ୍ତୁ, ପ୍ରତ୍ୟେକ ଲେଖା ମଧ୍ୟରୁ କେତେକ ମୋ ମନରେ ଏବେ ମଧ୍ୟ ସତେଜ ରହିଅଛି । ସେତେବେଳେ ସଂସାର ପତ୍ରିକାର ଲେଖକମାନଙ୍କ ମଧ୍ୟରୁ ଯେଉଁମାନଙ୍କ ଲେଖା ମୁଁ ପଢ଼ିଥିଲି, ସେମାନେ ହେଲେ – ବୈଜ୍ଞାନିକ କୁଳମଣି ସାମଲ, ଗୋକୁଳାନନ୍ଦ ମହାପାତ୍ର, ଶିକ୍ଷାବିତ୍ ଧନେଶ୍ୱର ସାମଲ, ମଙ୍ଗୁଳୁ ଚରଣ ବିଶ୍ୱାଳ, ପ୍ରଫେସର ଜଗନ୍ନାଥ ମହାନ୍ତି ଓ ଅନ୍ୟାନ୍ୟ ମାନ୍ୟଗଣ୍ୟ ଲେଖକ । ପତ୍ରିକାରେ ସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କ ସଂପାଦକୀୟ ଅତୀବ ଚିତ୍ତାକର୍ଷକ ଓ ଶିକ୍ଷଣୀୟ ଥିଲା । ଧନେଶ୍ୱର ସାମଲଙ୍କ ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ଦୁଇଟି ଲେଖା, 'ଇଓଲି' ଓ "ହସ୍ତାକ୍ଷର ମଧ୍ୟ ଭାଗ୍ୟ ବଦଳେଇ ଦିଏ" ପଢ଼ି ମୁଁ ବିଶେଷ ଭାବେ ଉପକୃତ ହୋଇଥିଲି । ସେହିପରି ମଙ୍ଗୁଳୁଚରଣ ବିଶ୍ୱାଳଙ୍କ ଏକ କବିତାର ଦୁଇଧାଡ଼ି "ବିଶ୍ୱ ଦେଖିଲ ମଧୁମୟ ତୁମେ, ନିଃସ୍ୱ ପାଇଁକି ଗାଇଲ ଗୀତ" ଏବେ ମଧ୍ୟ ମୋ ମଧ୍ୟରେ ମଝିରେ ମଝିରେ ଗୁଞ୍ଜନ ସୃଷ୍ଟି କରିଥାଏ ।

୧୯୬୪ ମସିହା ପରବର୍ତ୍ତୀ ସମୟରେ ମୁଁ ଭକ୍ତବାବୁଙ୍କ ଦ୍ୱାରା ପ୍ରକାଶିତ ଗାଇଡ଼ ଜର୍ଣ୍ଣାଲ ଓ ଅନ୍ୟାନ୍ୟ ପତ୍ରପତ୍ରିକା ଏବଂ ସମ୍ବାଦ ପତ୍ର ପୃଷ୍ଠାରେ ଶିକ୍ଷାବିତ୍ ଧନେଶ୍ୱର ସାମଲଙ୍କ ଅନେକ ଲେଖା ପ୍ରକାଶିତ ହେଉଥିବାର ଲକ୍ଷ୍ୟ କରିଥିଲି । 'ସଂସାର' ରେ ପ୍ରକାଶିତ ଲେଖାଗୁଡ଼ିକ ସେ ସମୟରେ ମୋ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଶ୍ରୀଯୁକ୍ତ ସାମଲ ସେତେବେଳେ ନନ୍ଦକିଶୋର ବିଦ୍ୟାପୀଠ, କୁସପୁରର ପ୍ରଧାନଶିକ୍ଷକ ଥିଲେ । ମୁଁ ବେଳେବେଳେ ମନେ ମନେ ଭାବୁଥିଲି, "ସାର୍ ! ଯଦି ଆମ ବିଦ୍ୟାଳୟକୁ ପ୍ରଧାନ ଶିକ୍ଷକ ହୋଇ ଆସନ୍ତେ, ତେବେ କେତେ ଭଲ ହୁଅନ୍ତା । ଆମେ ତାଙ୍କ ପାଖରୁ ସାହିତ୍ୟ ସଂପର୍କରେ କିଛି ଜାଣନ୍ତୁ ।"

ଥରେ ଆମ ଗାଁରୁ ଚାଲିଚାଲି ପ୍ରତିଦିନ ପରି ବିଦ୍ୟାଳୟରେ ଦଶଟା ପୂର୍ବରୁ ପହଞ୍ଚିଲି । ଆମକୁ ଧନିଆନା କହିଲେ, "ଆମ ବିଦ୍ୟାଳୟରେ ନୂଆ ପ୍ରଧାନଶିକ୍ଷକ ଭାବେ ଧନେଶ୍ୱର ସାମଲ ଯୋଗଦାନ କରିଛନ୍ତି । ମୋର ଦୀର୍ଘଦିନରେ ଶିଶୁସୁଲଭ ଇଚ୍ଛା ଓ ଅଭୀପ୍ସା ଯେ ଏପରି ପୂରଣ ହେବ, ତାହା ମୁଁ କେବେ ଭାବି ନ ଥିଲି ।

ଶ୍ରୀଯୁକ୍ତ ସାମଲ ଜଣେ ଛାତ୍ରବତ୍ସଳ ପ୍ରଧାନଶିକ୍ଷକ ଥିଲେ । ଜଣେ ସାରସ୍ୱତ ସାଧକ ହିସାବରେ ସେତେବେଳେ ସେ ଓଡ଼ିଶାରେ ସୁପରିଚିତ ଥିଲେ ।

ଥରେ ଗାନ୍ଧିଶିକ୍ଷାଶ୍ରମକୁ ଆମ ରାଜ୍ୟର ପୂର୍ବତନ ମୁଖ୍ୟମନ୍ତ୍ରୀ ଡ଼କ୍ଟର ହରେକୃଷ୍ଣ ମହତାବ ଏକ କାର୍ଯ୍ୟକ୍ରମରେ ଆସିଥିଲେ । ତାଙ୍କୁ ସ୍ୱାଗତ କରିବା ନିମନ୍ତେ ପ୍ରଧାନଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କ ଗହଣରେ ଆମେ ବିଦ୍ୟାଳୟର ପ୍ରବେଶ ଦ୍ୱାର ନିକଟରେ ଉପସ୍ଥିତ ହେଇଥିଲୁ ।

ନିର୍ଦ୍ଦିଷ୍ଟ ସମୟରେ ଡକ୍ଟର ମହତାବଙ୍କ ଗାଡ଼ି ଆସି ବିଦ୍ୟାଳୟ ପ୍ରବେଶ ଦ୍ୱାର ନିକଟରେ ପହଞ୍ଚିଲା । ଗାଡ଼ିରୁ ଓହ୍ଲାଇବା ମାତ୍ରେ ପ୍ରଧାନଶିକ୍ଷକ ସାମଲ ତାଙ୍କୁ ଫୁଲ ତୋଡ଼ା ଦେଇ ସମ୍ବର୍ଦ୍ଧନା ଜଣାଇଲେ ।

ଡକ୍ଟର ମହତାବ ସଙ୍ଗେ ସଙ୍ଗେ କହିଲେ "ଧନେଶ୍ୱର ! ତୁମେ କୁସୁପୁର ଛାଡ଼ି କେବେଠାରୁ ଏଠାରେ ଯୋଗ ଦେଲଣି ?"

ଆମ ରାଜ୍ୟର ପୂର୍ବତନ ମୁଖ୍ୟମନ୍ତ୍ରୀ ଯେ ଆମ ବିଦ୍ୟାଳୟର ପ୍ରଧାନଶିକ୍ଷକଙ୍କ ନାମ ଜାଣନ୍ତି, ସେ କଥା ଆମେ ସେଦିନ ଜାଣିବାର ସୁଯୋଗ ପାଇଲୁ । ସେଥିପାଇଁ ଆମ ମନରେ ଗର୍ବ ଓ ଗୌରବ ଆସିଥିଲା ।

ଗାନ୍ଧିଶିକ୍ଷାଶ୍ରମରେ ପଢୁଥିଲାବେଳେ ମୋର ଲେଖା ସ୍ୱର୍ଗତଃ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ସାରସ୍ୱତ ସାଧକ ସୁରେନ୍ଦ୍ର ମହାନ୍ତିଙ୍କ ସଂପାଦିତ ଦୈନିକ ସମ୍ବାଦପତ୍ରର "ଉଦୟଭାନୁ" ପୃଷ୍ଠାରେ ପ୍ରକାଶିତ ହେଉଥିଲା । ଏହି ସମ୍ବାଦପତ୍ରଟି ଜଳୌକା ଆଶ୍ରମର ପ୍ରତିଷ୍ଠାତା ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶ୍ରମକୁ ପ୍ରତିଦିନ ଆସୁଥିଲା । ମୁଁ ପଢ଼ିବା ପାଇଁ ସେତେବେଳେ ବାବା ବାପାଙ୍କ ହାତରେ ମୋ ପାଖକୁ ପଠାଉଥିଲେ । ଦୈନିକ କଳିଙ୍ଗ ପୃଷ୍ଠାରେ ସେ ସମୟରେ 'ଉଦୟଭାନୁ' ନାମକ ଏକ, ଶିଶୁ ସାହିତ୍ୟ ବିଭାଗ ପ୍ରକାଶିତ ହେଉଥିଲା । ମୁଁ ଶିଶୁ କବିତାମାନ ଲେଖି ଉଦୟଭାନୁରେ ପ୍ରକାଶିତ ହେବା ପାଇଁ ଡାକ ଯୋଗେ ପଠାଉଥିଲି । ଉଦୟଭାନୁରେ ପ୍ରକାଶିତ ମୋର କେତୋଟି କବିତା ହେଲା; ଯାଆରେ ଚିଠି ସରଗ ଡାକେ, (୩୧.୫.୬୫) "ଆସିଲାରେ ବରଷା" (୧୪.୯.୬୫), ସବୁଠୁଁ ବଡ଼ ମୋ ଜନମ ଭୂଇଁ (୧୧.୧.୬୬) । ଏହିସବୁ ଲେଖା ମୁଁ ନବମ, ଦଶମ ଓ ଏକାଦଶ ଶ୍ରେଣୀରେ ପଢୁଥିଲାବେଳେ ପ୍ରକାଶିତ ହୋଇଥିଲା । ସେସବୁ ପ୍ରକାଶିତ ଲେଖାକୁ ଏବେ ମଧ୍ୟ ମୁଁ ସାଇତି ରଖିଛି ।

ଆମେ ପଢୁଥିଲାବେଳେ ପ୍ରତିବର୍ଷ ସରସ୍ୱତୀ ପୂଜା ଅବସରରେ ଦଶମ ଶ୍ରେଣୀ ପିଲାମାନେ ଏକ ଡ୍ରାମାର ଆୟୋଜନ କରିଥାନ୍ତି । ସ୍କୁଲର ବଡ଼ ହଲରେ ଗୋଟିଏ କୋଣରେ ସ୍କ୍ରିନ୍ ଓ ଡ୍ରପଟାଣି ଏକ ମଞ୍ଚ ତିଆରି କରାଯାଏ । ଏହି ମଞ୍ଚରେ ଅଭିନୟ ପ୍ରଦର୍ଶିତ ହୁଏ । ଏହି ଅଭିନୟ ଦେଖିବାକୁ ଆଖପାଖ ଗାଁରୁ ବହୁ ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳା ଆସିଥାନ୍ତି ।

୧୯୬୫ ମସିହାରେ ସରସ୍ୱତୀ ପୂଜାର ଆୟୋଜନ କରିବାର ଦାୟିତ୍ୱ ଆମ ଦଶମ ଶ୍ରେଣୀ ପିଲାଙ୍କ ଉପରେ ପଡ଼ିଲା । ମାତ୍ର ଡ୍ରାମା କଥା ପଡ଼ିଲାରୁ ଏହାକୁ କେତେକ ଶିକ୍ଷକ ବିରୋଧ କଲେ । ମାତ୍ର ଏପରି କାର୍ଯ୍ୟକ୍ରମ ସପକ୍ଷରେ ଶ୍ରୀଯୁକ୍ତ ଜଗନ୍ନାଥ ନାୟକ ଥିଲେ । କେତେକ ଶିକ୍ଷକ ଆମ୍ଭମାନଙ୍କ ଭାବାବେଗ ଅନୁକୂଳ ମତ ମଧ୍ୟ ଦେଇଥିଲେ । ଶେଷରେ ଡ୍ରାମା ହେବାର ସ୍ଥିର ହେଲା । ଏହି ଡ୍ରାମାରେ ମୋତେ ଏକ ପ୍ରମୁଖ ଭୂମିକାରେ ଅଭିନୟ କରିବାକୁ ସୁଯୋଗ ମିଳିଥିଲା । ଏହାର ନିର୍ଦ୍ଦେଶନା ଆମ୍ଭମାନଙ୍କ ଅନୁରୋଧ କ୍ରମେ ସମସରପୁର ଗ୍ରାମର ଶ୍ରୀଯୁକ୍ତ ଦେବେନ୍ଦ୍ରନାଥ ଆଚାର୍ଯ୍ୟ ଦେଇଥିଲେ ।

ଆମ ସମୟରେ ଏ.ସି.ସି.(ACC - Auxiliary Cadet Crops) ବ୍ୟବସ୍ଥା ଆଜିକାଲିର ପ୍ରଚଳିତ ଏନ୍.ସି.ସି, (NCC - National Cadet Crops) ଅନୁରୂପ ବିଦ୍ୟାଳୟ ସ୍ତରରେ ପ୍ରଚଳନ ଥିଲା । ଏହାର ଦାୟିତ୍ୱ ବିଦ୍ୟାଳୟର ଖେଳ ଶିକ୍ଷକ ଶ୍ରୀଯୁକ୍ତ ହୃଷୀକେଶ ମିଶ୍ର ନେଇଥିଲେ ।

ଶନିବାର ଦିନ ଶେଷ ପିରିୟଡ୍ ତର୍କ ପ୍ରତିଯୋଗିତା ନିମନ୍ତେ ଉଦ୍ଦିଷ୍ଟ ଥିଲା । ପ୍ରତି ଶ୍ରେଣୀରେ ତର୍କ ପ୍ରତିଯୋଗିତା ଶିକ୍ଷକଙ୍କ ଉପସ୍ଥିତିରେ ହେଉଥିଲା । ଏହା ଫଳରେ ଭାଷଣ ଦେବାର ଶକ୍ତିର ବିକାଶ ପ୍ରାୟତଃ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଘଟିବାର ସୁଯୋଗ ଥିଲା ।

ଧନ୍ଦାମୂଳକ ଶିକ୍ଷା ମଧ୍ୟରେ ସୀବନ ଶିଳ୍ପ (Tailoring) ଥିଲା । ସପ୍ତାହରେ ଆମେ ଦୁଇଦିନ ସୀବନ ଶିଳ୍ପ ସଂପର୍କରେ ଶିକ୍ଷାଲାଭ କରୁଥିଲୁ । ଜଣେ ଧୋତି ଓ ପଞ୍ଜାବୀ ପିନ୍ଧା ଶିକ୍ଷକ ଭାବେ ସୀବନ ଶିଳ୍ପର ଶିକ୍ଷକ ଶ୍ରୀଯୁକ୍ତ ଦିବାକର ବରାଳଙ୍କ ସୁନାମ ଥିଲା । ତାଙ୍କର ଚେହେରାକୁ ଦେଖି କେହି କେହି ତାଙ୍କୁ ପ୍ରଧାନଶିକ୍ଷକ ଭାବି ତାଙ୍କ ସହିତ ନିଜ ପିଲାର ପାଠ ପ୍ରତି ବିଶେଷ ଦୃଷ୍ଟି ଦେବାକୁ କହୁଥିଲେ । ସେ ସେମାନଙ୍କୁ 'ହଁ ଦେଖିବା' କହି ସାନ୍ତ୍ୱନା ଦେଇ ଫେରାଇ ଦେଉଥିଲେ ।

ଏହିପରି କଳା, ସାହିତ୍ୟ, ସଂସ୍କୃତି, ସହପାଠ୍ୟକ୍ରମ ଓ ବିଦ୍ୟାଧନ ମଧ୍ୟରେ ମୋର ତାରୁଣ୍ୟର ଦୀର୍ଘ ଛଅ ବର୍ଷ (୧୯୬୦-୬୬) ଗାନ୍ଧିଶିକ୍ଷାଶ୍ରମର ପରିବେଶ ମଧ୍ୟରେ କଟିଥିଲା ।

ଆମେ ବିଦ୍ୟାଳୟ ଛାଡ଼ି ଆସିଲାପରେ ୧୯୬୭ ମସିହାରେ ବିଦ୍ୟାଳୟର ପ୍ରଥମ ମୁଖପତ୍ର 'ଗଙ୍ଗୋତ୍ରୀ ଆଶ୍ରମ' ଏହାର ସୁଯୋଗ୍ୟ ପ୍ରଧାନ ଶିକ୍ଷକ ଧନେଶ୍ୱର ସାମଲଙ୍କ ସଂପାଦନାରେ ପ୍ରକାଶିତ ହୋଇଥିଲା । ଏହି ପତ୍ରିକା ପାଇଁ ମୁଁ ଏକାଦଶ ଶ୍ରେଣୀରେ ଦେଇଥିବା 'କ୍ଷମା' ସମ୍ବନ୍ଧୀୟ ଏକ ଲେଖା ହିନ୍ଦୀ ଭାଷାରେ ପ୍ରକାଶିତ

ହୋଇଥିଲା । ସେ ସମୟରେ ମୁଁ ରେଭେନ୍ସା ମହାବିଦ୍ୟାଳୟର ପ୍ରଥମ ବି.ଏ ଶ୍ରେଣୀର ଛାତ୍ର ଥିଲି । ଏହାର ଦ୍ୱିତୀୟ ସଂଖ୍ୟା ୧୯୬୯ ମସିହାରେ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ସାମଲ ଓ ଶିକ୍ଷକ ଶ୍ରୀ ନାରାୟଣ ଚନ୍ଦ୍ର ମହାନ୍ତି, ଏମ୍.ଏ, ବି.ଏଡ୍‌ଙ୍କ ସଂପାଦନାରେ ପ୍ରକାଶିତ ହୋଇଥିଲା । ପ୍ରଧାନଶିକ୍ଷକଙ୍କ ଅନୁରୋଧ କ୍ରମେ "ରାଷ୍ଟ୍ରଭାଷା ଏକ ଅଧ୍ୟୟନ" ଶୀର୍ଷକ ମୋ ପ୍ରବନ୍ଧ ଗାନ୍ଧିଶିକ୍ଷାଶ୍ରମର ପୁରାତନ ଛାତ୍ର ହିସାବରେ ଏଥିରେ ସ୍ଥାନିତ ହୋଇଥିଲା ।

**ଆମେ ଦେଇଥିବା ମାଟ୍ରିକ ପରୀକ୍ଷା, ୧୯୬୬**

ଆମର ମାଟ୍ରିକ ପରୀକ୍ଷା, ୧୯୬୬ ମସିହା ଫେବୃୟାରୀ ମାସରେ ହୋଇଥିଲା । ଏଇ ପରୀକ୍ଷାର କେନ୍ଦ୍ର ଥିଲା ମହାବିନାୟକ ବିଦ୍ୟାୟନ, ବଡ଼ଚଣା । ବଡ଼ଚଣାର ଦୂରତ୍ୱ ଆମ ବିଦ୍ୟାଳୟ ଚଂପାପୁରଠାରୁ ପ୍ରାୟ ୧୫ କିଲୋମିଟର ହେବ ।

ସେତେବେଳେ ଘରଠାରୁ ପ୍ରତିଦିନ ଯାଇ ପରୀକ୍ଷା ଦେବା ଛାତ୍ରଛାତ୍ରୀମାନଙ୍କ ପକ୍ଷରେ ସମ୍ଭବ ନ ଥିଲା । ତେଣୁ ଆମ ବିଦ୍ୟାଳୟ କର୍ତ୍ତୃପକ୍ଷ ଆମ ରହଣି ନିମନ୍ତେ ବଡ଼ଚଣା ସାଧାରଣ ସ୍ୱାସ୍ଥ୍ୟକେନ୍ଦ୍ରର ଜନୈକ କର୍ମଚାରୀଙ୍କ ସରକାରୀ ଘରକୁ ପରୀକ୍ଷାଦିନଗୁଡ଼ିକ ନିମନ୍ତେ ନେଇଥିଲେ ।

ଆମେ ପରୀକ୍ଷାର ଦିନକ ପୂର୍ବରୁ ସେଠାରେ ପହଞ୍ଚିଥିଲୁ । ଆମର ଦାୟିତ୍ୱରେ ଥିଲେ ଆମର ବିଜ୍ଞାନ ଶିକ୍ଷକ ଶ୍ରୀଯୁକ୍ତ ଦୟାନିଧି ଆଚାର୍ଯ୍ୟ ଓ ଅନ୍ୟତମ ବରିଷ୍ଠ ଶିକ୍ଷକ ଶ୍ରୀଯୁକ୍ତ ସହଦେବ ରାଉତ । ଗୋଟିଏ କୋଠରି ମଧ୍ୟରେ ଧାଡ଼ି ଧାଡ଼ି ହୋଇ ରାତିରେ ଆମେ ଶୋଉଥିଲୁ । କେହି କେହି ଲାଇଟ ଜଳାଇ ବିଳମ୍ବିତ ରାତି ପର୍ଯ୍ୟନ୍ତ ପଢୁଥିଲେ ।

ଗୋଟିଏ କୋଠରି ମଧ୍ୟରେ ଏତେ ପିଲାଙ୍କ ମଧ୍ୟରେ ରହିବାର ଅଭ୍ୟାସ ମୋର ପୂର୍ବରୁ ନ ଥିଲା । ଦିନେ ଦୁଇଦିନ ପରୀକ୍ଷା ଅତିକ୍ରମ ହେଲାପରେ ମୋର ଦେହ ଭୀଷଣ ଖରାପ ହେଲା । ଗଣିତ ପରୀକ୍ଷା ଦିନ ପରୀକ୍ଷା ହଲ୍‌ରେ ଆଉ ଚେୟାର ଉପରେ ବସି ପରୀକ୍ଷା ଦେବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ଏ ପରିସ୍ଥିତି ଦେଖି ପରୀକ୍ଷା ପାଇଁ ଆସିଥିବା ସୁପରିଟେଣ୍ଡେଣ୍ଟ୍ ପ୍ରଫେସର ଜଗନ୍ନାଥ ପଟ୍ଟନାୟକ ମୋତେ ତାଙ୍କର କାର୍ଯ୍ୟାଳୟରେ ଶୋଇ ପରୀକ୍ଷା ଦେବାର ବ୍ୟବସ୍ଥା କଲେ । ପରୀକ୍ଷା ମଝିରେ ମୋତେ ଏତେ ଭୋକ ଲାଗିଲା ଯେ ମୋର ପୂର୍ବତନ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ କୁଣ୍ଡଳୀ ଭୀମସେନ ଭୀମରାଓ ପଟ୍ଟନାୟକ ଯିଏକି ପୂର୍ବରୁ ମହାବିନାୟକ ବିଦ୍ୟାୟନ, ବଡ଼ଚଣାକୁ ବଦଳି ହୋଇ ଯାଇଥିଲେ, ତାଙ୍କ ଘରୁ ଖାଦ୍ୟ ମଗାଇଲେ । ଅଳ୍ପ ଖାଇ ମୁଁ ସୁସ୍ଥ ଅନୁଭବ କଲି । ବଡ଼ କଷ୍ଟରେ ଗଣିତ ପରୀକ୍ଷା ଦେଲି ।

ରାତିରେ ଅଧିକ ଜ୍ୱର ହେଲା । ତା'ର ପରଦିନ ଛତିଆର ବିଶିଷ୍ଟ ଡାକ୍ତର ଜଗନ୍ନାଥ ଦାସ ବଡ଼ଚଣା ଯାଇ ମୋର ସ୍ୱାସ୍ଥ୍ୟ ପରୀକ୍ଷା କଲେ । ଆବଶ୍ୟକ ଔଷଧପତ୍ର ଦେଲେ । ମୋର ବାପା ଓ ବଡ଼ ଭାଇ ଚତୁର୍ଭୁଜ ବ୍ରହ୍ମା ମଧ ସେଠାରେ ପହଞ୍ଚିଲେ । କିନ୍ତୁ ମୋର ଏଇ ଶାରୀରିକ ଅସୁସ୍ଥତା ସମୟରେ ଆମର ପୂଜ୍ୟସାର୍ ଦୟାନିଧି ଆଚାର୍ଯ୍ୟ (ଅମନବାବୁ) ଯାହା କରିଥିଲେ, ତାହା ମୋ ଜୀବନ ଇତିହାସର ଏକ ସ୍ୱତନ୍ତ୍ର ପୃଷ୍ଠା ହୋଇଗଲା ।

ରାତିରେ ଅମନ ସାର ମୋ ପାଖେ ପାଖେ ରହିଲେ । ତାଙ୍କର ବ୍ୟକ୍ତିତ୍ୱ ଓ କାର୍ଯ୍ୟଶୈଳୀ ଏପରି ଥିଲା ଯେ ଆମ୍ଭେମାନେ ସମସ୍ତେ ତାଙ୍କଠାରୁ ସବୁବେଳେ ଭକ୍ତି ଓ ଶ୍ରଦ୍ଧାରେ ଦୂରତ୍ୱ ରକ୍ଷା କରୁଥିଲୁ । ସେ ଯେ ରାତିରେ ମୋ ଗୋଡ଼ହାତ ଦୀର୍ଘ ସମୟ ଧରି ଆଉଁଷି ଘଷିଦେବେ; ଏକଥା ମୋର ଚିନ୍ତାଧାରାର ବାହାରେ ଥିଲା । ମୁଁ ସାର୍‌ଙ୍କୁ ଯେତେଥର ମୋ ହାତଗୋଡ଼ ଓ ମୁଣ୍ଡ ଆଦି ଆଉଁଷି ନ ଦେବାକୁ କହିଲି, ସାର ସେ କଥା ମାନିଲେ ନାହିଁ । ମାନିବେ କିପରି ? ସେ ହେଉଛନ୍ତି ଗାନ୍ଧିଙ୍କର ପଦଚିହ୍ନ ପଡିଥିବା ଓ ବିଶିଷ୍ଟ ଗାନ୍ଧିବାଦୀ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କର ପ୍ରତିଷ୍ଠିତ ଗାନ୍ଧିଶିକ୍ଷାଶ୍ରମର ସଂସ୍କୃତି ସଂପନ୍ନ ଶିକ୍ଷକ ।

ମୁଁ କଷ୍ଟେମଷ୍ଟେ ପରୀକ୍ଷା ଦେଲି । ପରୀକ୍ଷା ଶେଷ ଦିନ ଏକ ଭୋଜିର ଆୟୋଜନ ହୋଇଥିଲା । ପରଦିନ ଆମେ ସମସ୍ତେ ନିଜ ନିଜ ଘରକୁ ଫେରି ଆସିଥିଲୁ । ମାଟ୍ରିକ୍ ପରୀକ୍ଷାର ଶେଷ ଦିନ ଆମ ସାଙ୍ଗସାଥୀମାନଙ୍କ ବିଦ୍ୟାଳୟ ଜୀବନର ଆପାତତଃ ଶେଷ ଦିନ ଥିଲା ।

### ମାଟ୍ରିକ ପରବର୍ତ୍ତୀ ନାମ ଲେଖା ପ୍ରସଙ୍ଗ

୧୯୬୬ ମସିହା ରଜ ପୂର୍ବରୁ ଆମର ପରୀକ୍ଷାଫଳ ପ୍ରକାଶିତ ହେଲା । ସେତେବେଳେ ମାଧ୍ୟମିକ ଶିକ୍ଷା ପରିଷଦର ପରୀକ୍ଷାଫଳ ରାଜ୍ୟର ଅଗ୍ରଣୀ ଖବର କାଗଜରେ ପ୍ରକାଶିତ ହେଉଥିଲା । ସେ ବର୍ଷ ଗାନ୍ଧିଶିକ୍ଷାଶ୍ରମର କୌଣସି ଛାତ୍ର ପ୍ରଥମ ଶ୍ରେଣୀରେ ପାଶ୍ କରି ନ ଥିଲେ । ବିଦ୍ୟାଳୟ କର୍ତ୍ତୃପକ୍ଷ ଦୁଇଜଣଙ୍କ ଉପରେ ଭରସା ରଖିଥିଲେ । ଜଣେ ହେଉଛନ୍ତି ମୋର ସାଥୀ ନିତ୍ୟାନନ୍ଦ ସାହୁ । ଆର ଜଣକ ହେଉଛି ମୁଁ ।

ନିତ୍ୟାନନ୍ଦ ଥିଲେ ଜଣେ ମେଧାବୀ ଛାତ୍ର । ସେ ଏତେ ଅଧ୍ୟୟନଶୀଳ ଥିଲେ ଯେ ଖେଳଛୁଟିରେ ବସି ପାଠ ପଢୁଥିଲେ । ସେ ରାତିଦିନ ବସି ପଢୁବୋଲି ତା'ର ଜଣେ ଦାଦାପୁଅ ଭାଇ ଯେକି ଗାନ୍ଧିଶିକ୍ଷାଶ୍ରମକୁ ମାଟ୍ରିକ୍ ପରୀକ୍ଷା ପାଖାପାଖି ବଦଳି

ହୋଇ ଶିକ୍ଷକଭାବେ ଯୋଗଦାନ କରୁଥିଲେ, ସେ ଦିଗରେ ତାକୁ ବେଶି ପ୍ରୋତ୍ସାହିତ କରିଥିଲେ ।

ନିତ୍ୟାନନ୍ଦର ପରିଶ୍ରମ ବିଷୟରେ ଜାଣି ମୁଁ ଟେଷ୍ଟ ପରୀକ୍ଷା ପରେ ପରେ ସାରା ରାତି ଉଜାଗର ରହି ପଢ଼ାପଢ଼ି କଲି । ରାତି ଚାରିଟାରେ, ଯେତେବେଳେ ପକ୍ଷୀମାନଙ୍କର କୂଜନରେ ପ୍ରଭାତର ଆଗମନ ହେଉଥିଲା, ସେତେବେଳେ ମୋ ପାଠପଢ଼ା ଶେଷହେଉଥିଲା । ଏପରି ପାଠପଢ଼ାର ନିଶା ପ୍ରାୟ ଏକମାସ ପର୍ଯ୍ୟନ୍ତ ଚାଲିଲା ।

ସ୍ୱାସ୍ଥ୍ୟ ପରିପନ୍ଥୀ ଅନିଦ୍ରା ରଜନୀ ଯେ କେତେ ଭୟାନକ ତାହା ପ୍ରତିଫଳିତ ହୋଇଥିଲା ପ୍ରଥମ ଶ୍ରେଣୀ ପାଇବା ନିମନ୍ତେ ଆଶାୟୀ ଥିବା ଆମ ଦୁଇଜଣ ଛାତ୍ରଙ୍କ ପକ୍ଷରେ ।

ପରୀକ୍ଷାର ଠିକ୍ ମାସେ କିମ୍ବା ପନ୍ଦରଦିନ ଆଗରୁ ନିତ୍ୟାନନ୍ଦ କହିଲା, "ମୋର ପାଠ ଆଦୌ ମନେ ପଡୁନି । ମୁଁ ପରୀକ୍ଷା ଦେବିନି ।" ସେ ତାହାହିଁ କଲା । ଆଉ ମୁଁ ପରୀକ୍ଷା ସମୟରେ ରୁଗ୍ଣ ହୋଇ ଗଣିତ ପରୀକ୍ଷାରେ ସମସ୍ତ ପ୍ରଶ୍ନର ଉତ୍ତର ନ ଦେଇ ପାରି ୧୦୦ ନମ୍ବରରୁ ମାତ୍ର ୩୭ ନମ୍ବର ରଖି ପ୍ରଥମ ଶ୍ରେଣୀରୁ ବଞ୍ଚିତ ହେଲି । ସେତେବେଳେ ପ୍ରଥମ ଶ୍ରେଣୀ ପାଇବାକୁ ୪୮୦ ନମ୍ବର ଥିଲାବେଳେ ମୁଁ ମାଟ୍ରିକ୍ ପରୀକ୍ଷାରେ ସର୍ବମୋଟ ୪୪୯ ନମ୍ବର ରଖି ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲି ।

୧୯୬୬ ମସିହାରେ ମାଧ୍ୟମିକ ଶିକ୍ଷା ପରିଷଦ ଦ୍ୱାରା ପରିଚାଳିତ ସପ୍ଲିମେଣ୍ଟାରୀ ପରୀକ୍ଷାରେ ନିତ୍ୟାନନ୍ଦ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲା ଓ ରାଜ୍ୟର ପ୍ରଥମ ଦଶଜଣ ମଧ୍ୟରେ ପ୍ରଥମ ହେବାର ସୌଭାଗ୍ୟ ଅର୍ଜ୍ଜନ କରିଥିଲା ।

ମୁଁ ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ ପରେ କେଉଁ କଲେଜରେ ପଢ଼ିବି, ପୁଣି ପାଠ ପଢ଼ିବି କି ନ ପଢ଼ିବି ସେ ସଂପର୍କରେ ପାରିବାରିକ ସମସ୍ୟା ଉଠିଥିଲା । ବ୍ୟକ୍ତିଗତ ଭା଼ବେ କଟକ ଯାଇ ଫର୍ମ ଆଣିବା ମଧ୍ୟ ମୋ ପଖରେ କଷ୍ଟକର ଥିଲା । କାରଣ ମାଟ୍ରିକ୍ ପରୀକ୍ଷା ଦେଲାପରେ ମୁଁ ଏତେ ରୁଗ୍ଣ ହୋଇଯାଇଥିଲି ଯେ ଅଳ୍ପବାଟ ଚାଲିଲେ ମୋ ଛାତିରେ ଯନ୍ତ୍ରଣା ହେଉଥିଲା ।

ଦିନେ ବାପା କ'ଣ ଭାବିଲେ କେଜାଣି କହିଲେ, "ଆଜି କଟକ ଯାଇ ଫର୍ମ ନ ଆଣିଲେ ତୁ ଆଉ ପଢ଼ି ପାରିବୁ ନାହିଁ ।" ଏହା କହି ସେ ସାଇକେଲ୍‌ରେ ଆମ ଘରଠାରୁ ପ୍ରାୟ ତିରିଶ କିଲୋମିଟର ଦୂରତ୍ୱରେ ଥିବା କଟକ ଗଲେ । ସଞ୍ଜ ବେଳକୁ ଖ୍ରୀଷ୍ଟ ମହାବିଦ୍ୟାଳୟ ଓ ରେଭେନ୍ସା ମହାବିଦ୍ୟାଳୟରୁ ପ୍ରବେଶିକା ଦରଖାସ୍ତ ଫର୍ମ ଆଣି ପହଞ୍ଚିଲେ । ସେ ଫର୍ମ ପୂରଣ ପାଇଁ ମୁଁ ସମସରପୁରସ୍ଥିତ ଶ୍ରୀଯୁକ୍ତ ଅଭିମନ୍ୟୁ ଆଚାର୍ଯ୍ୟଙ୍କ

ଘରକୁ ଯାଇଥିଲି । ସେ ଫର୍ମଟିକୁ ପୂରଣ କରିଦେଲେ । ଯଥା ସମୟରେ ବାପା ସେହି ଦରଖାସ୍ତ ଦୁଇଟିକୁ ରେଭେନ୍‌ସା କଲେଜ ଓ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଥିବା 'ଦରଖାସ୍ତ ଫର୍ମ' ବାକ୍ସରେ ପକାଇ ଗାଁକୁ ଫେରିଥିଲେ ।

ପ୍ରଥମେ ଖ୍ରୀଷ୍ଟ କଲେଜରୁ ମୋର ନାମ ଲେଖାପାଇଁ ଚିଠି ଆସିଥିଲା । ସେତେବେଳେ କଟକରେ ଥିବା ମୋର କକେଇ (ଶ୍ରୀଯୁକ୍ତ ପଞ୍ଚାନନ ପଣ୍ଡା)ପୁଅ ଭାଇ ଜଗତାନା (ଜଗଦାନନ୍ଦ ବ୍ରହ୍ମା) ଆମ ଗାଁକୁ ଆସିଥିଲେ । ବାପା ତାଙ୍କୁ କହିଲେ, "ଆରେ ଜଗ ! ତୁ ଟିକେ ଦିଗର ନାମ ଖ୍ରୀଷ୍ଟ କଲେଜରେ ଲେଖେଇ ଦିଅନ୍ତୁ ନି ?"

ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ପରଦିନ ଆମେ ଦୁହେଁ ଚାଲି ଚାଲି ଛତିଆ ପର୍ଯ୍ୟନ୍ତ ଗଲୁ । ସେଠାରୁ ବସ୍ ଧରି କଟକ ଗଲୁ । ଦିନ ଏଗାରଟାବେଳେ ଖ୍ରୀଷ୍ଟ ମହାବିଦ୍ୟାଳୟରେ ପହଞ୍ଚିଲୁ । ମୁଁ ପ୍ରାପ୍ତ ବୟସ୍କ ହୋଇ ନ ଥିବା ହେତୁ ସ୍ଥାନୀୟ ଅଭିଭାବକଙ୍କ ତରଫରୁ ଏକ ଅଣ୍ଡରଟେକିଙ୍ଗ୍ (Undertaking) ଦେବାର ବ୍ୟବସ୍ଥା ଥିଲା । ତେଣୁ ସେ ଫର୍ମଟିକୁ ପୂରଣ କଲାବେଳେ କ'ଣ ଭାବିଲେ କେଜାଣି ସେହି ଅଣ୍ଡରଟେକିଙ୍ଗ୍ ଫର୍ମଟିକୁ ହଠାତ୍ ଚିରି ଦେଇ ମୋତେ କହିଲେ, "ତୋର ରେଭେନ୍ସା କଲେଜ ହୋଇଯିବ । ତୁ କାହିଁକି ସେଠାରେ ନ ପଢ଼ି ଏ କଲେଜରେ ପଢ଼ିବୁ ? ଚାଲ ଫେରିଯିବା ।"

ଆମେ ଦୁହେଁ ଫେରି ଆସିଲୁ । ସେ କଟକର କାଳିଗଳିସ୍ଥିତ ଜଗନ୍ନାଥ ବଲ୍ଲଭ ବାସଭବନକୁ ଗଲେ । ମୁଁ ଘରକୁ ଫେରି ଆସି ବାପାଙ୍କୁ ଏ ବିଷୟରେ କହିଲି ।

ବାପା ସମସ୍ତ କଥା ଶୁଣି କହିଲେ, "ଜଗ ଯଦି କହୁଚି, ତେବେ ତୋର ରେଭେନ୍‌ସା କଲେଜ ହୋଇଯିବ । ସେଠାରେ ପାଠ ପଢ଼ିବା ଭଲ ।"

ସତକୁ ସତ କିଛିଦିନ ପରେ ରେଭେନ୍ସା କଲେଜରେ ନାମ ଲେଖାଇବାକୁ ମୋର ନାମଲେଖା ଚିଠି (Intimation Letter) ରେଜିଷ୍ଟ୍ରି ଡାକ ଯୋଗେ ଘରେ ଆସି ପହଞ୍ଚିଲା । ମୁଁ ପ୍ରଥମ ବର୍ଷ ପ୍ରିୟୁନିଭରସିଟି କଳା ଶ୍ରେଣୀରେ ନାମ ଲେଖାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲି । ସେଠାରେ ପଢ଼ିଲେ ମୋ ପାଇଁ ହଷ୍ଟେଲ୍‌ରେ ସିଟ୍ ମିଳିବ ବୋଲି ଉଲ୍ଲେଖ ଥିଲା ।

ନିର୍ଦ୍ଦିଷ୍ଟ ଦିନ ମୁଁ ବାପାଙ୍କ ସହିତ ରେଭେନ୍ସା କଲେଜର କାର୍ଯ୍ୟାଳୟରେ ଉପସ୍ଥିତ ହେଲି । ମୋର ପ୍ରିୟୁନିଭରସିଟି କଳାରେ ନାମ ଲେଖାଗଲା । ମୁଁ ରହିବା ପାଇଁ ରେଭେନ୍ସାର ଐତିହ୍ୟସଂପନ୍ନ ପୂର୍ବ ଛାତ୍ରବାସ ପାଇଥିଲି । ନିର୍ଦ୍ଦିଷ୍ଟ ଦିନରେ ବାପା ମୋତେ ନେଇ ପୂର୍ବ ଛାତ୍ରାବାସରେ ଛାଡ଼ି ଆସିଥିଲେ । ହଷ୍ଟେଲରେ ରହିବା ପୂର୍ବରୁ

ବାପା ଓ ମୁଁ ଯାଇ ହଷ୍ଟେଲ ଅଧୀକ୍ଷକ ପ୍ରଫେସର ତ୍ରିଲୋଚନ ମିଶ୍ରଙ୍କୁ ଦେଖାକରିଥିଲୁ । ସେ ଆମ ଦୁହିଁଙ୍କୁ ତାଙ୍କ କାର୍ଯ୍ୟାଳୟରେ ବସିବାକୁ କହିଲେ । ବାପାଙ୍କ ସହିତ କିଛିକ୍ଷଣ ବାର୍ତ୍ତାଳାପ ପରେ କହିଲେ, "ଆପଣ ବ୍ୟସ୍ତ ହେବେନି । ସେ ଅଳ୍ପଦିନ ମଧ୍ୟରେ ପିଲାମାନଙ୍କ ସହିତ ମିଶି ନିଜକୁ ଚଳେଇ ନେବ ।"

**ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନ**

ଆମ ରାଜ୍ୟ ଓଡ଼ିଶାରେ କଟକସ୍ଥିତ ରେଭେନ୍ସା ମହାବିଦ୍ୟାଳୟର ସ୍ଥାନ ସ୍ୱତନ୍ତ୍ର । ଏହି ମହାବିଦ୍ୟାଳୟ ରେଭେନ୍ସା ସାହେବଙ୍କ ଦ୍ୱାରା ୧୮୬୮ ମସିହାରେ ଛଅଜଣ ଶିକ୍ଷାର୍ଥୀମାନଙ୍କୁ ନେଇ ପ୍ରତିଷ୍ଠିତ ହୋଇଥିଲା । ରେଭେନ୍ସା ସାହେବ ପ୍ରାରମ୍ଭିକ ସ୍ତରରେ କଲେଜ ନିମନ୍ତେ ପ୍ରାୟ ଶହେ ଏକର ଜମି ନେଇଥିଲେ । ହାତଗଣା ସଂଖ୍ୟକ ଛାତ୍ରଛାତ୍ରୀ ପଢୁଥିଲାବେଳେ ଶହେ ଏକର ଜମି ନେବାର କି ଆବଶ୍ୟକତା ଥିଲା ବୋଲି ସାହେବ ଅନେକଙ୍କ ଦ୍ୱାରା ସମାଲୋଚିତ ହୋଇଥିଲେ । ଏବେ ରେଭେନ୍ସା ମହାବିଦ୍ୟାଳୟ ୧୫ ନଭେମ୍ବର, ୨୦୦୬ରେ ଏକ ସ୍ୱୟଂଚାଳିତ ବିଶ୍ୱବିଦ୍ୟାଳୟରେ ପରିଗଣିତ ହୋଇଅଛି । ଏବେ ଶହେ ଏକର ପାଖାପାଖି ଜମି ଯେ ଏଇ ବିଶ୍ୱବିଦ୍ୟାଳୟ ପାଇଁ କେତେ କମ୍ ତାହା ସହଜରେ ଅନୁମେୟ ।

ମୁଁ ରେଭେନ୍ସା ମହାବିଦ୍ୟାଳୟରେ ଚାରୋଟି ଶିକ୍ଷାବର୍ଷ ବିତାଇଥିଲି । ଏହି ଚାରିବର୍ଷ ମଧ୍ୟରୁ ତିନିବର୍ଷ ପୂର୍ବ ଛାତ୍ରାବାସରେ ରହିବାର ସୌଭାଗ୍ୟ ମୋତେ ମିଳିଥିଲା । ୧୯୭୦ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଅନୁଷ୍ଠିତ ବି.ଏ. (ଇତିହାସ ସମ୍ମାନ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା ମହାବିଦ୍ୟାଳୟରୁ ମୋର ଡିଗ୍ରୀ ସ୍ତରୀୟ ଶିକ୍ଷା ଶେଷ କରିଥିଲି ।

ରେଭେନ୍ସା ମହାବିଦ୍ୟାଳୟ ଏତେ ବିଶାଳ ଥିଲା ଯେ ତାହା କଳ୍ପନା କରିବା ପ୍ରଥମ ବର୍ଷ ଆମ ପାଇଁ କଷ୍ଟକର ଥିଲା । ବେଳେବେଳେ ଗୋଟିଏ ଶ୍ରେଣୀର ପିଲା ଆସି ଅନ୍ୟ ଶ୍ରେଣୀର ପିଲାଙ୍କ ମଧ୍ୟରେ ବସିଯାଉଥିଲେ । ପାଠପଢ଼ା ମଝିରେ ଉଠି କହୁଥିଲେ, "ସାର୍ ! ମୁଁ ଭୁଲ୍‌ରେ ଏଠାକୁ ଆସିଛି । ମୋତେ ବାହାରକୁ ଯିବାକୁ ଅନୁମତି ଦିଅନ୍ତୁ ।" ସେ ଗଲାପରେ କେତେକ ଅଧ୍ୟାପକ ଲଘୁ ମନ୍ତବ୍ୟ ଦେଇ କହୁଥିଲେ, "ବିଚରା କ'ଣ କରିବ ? ଯୁଆଡ଼କୁ ଚାହୁଁଚି ନାଲି କୋଠା - ହଜାର ହଜାର ପିଲା । ପୁଣି ବିଜ୍ଞାନ, କଳା, ବାଣିଜ୍ୟ ଶିକ୍ଷାଦାନ ପାଇଁ ସ୍ୱତନ୍ତ୍ର ବ୍ଲକ୍ । ମତିଭ୍ରମ ହୋଇଯାଉଛି । ସେ କେଉଁଠି ବସିବ, କେଉଁଠି ପଢ଼ିବ ଜାଣି ପାରୁନାହିଁ ।"

ଅଧ୍ୟାପକଙ୍କ ଏପରି ମନ୍ତବ୍ୟ ଶୁଣି ପିଲାମାନଙ୍କ ମଧ୍ୟରେ ସାଧାରଣତଃ ହାସ୍ୟରୋଳ ସୃଷ୍ଟି ହେଉଥିଲା । ସେ ସମୟରେ ସାଧାରଣତଃ ଗାଁ ଗହଳିର ଲୋକମାନଙ୍କ ପାଇଁ 'ଅଧ୍ୟାପକ' ଜଣେ ଦର୍ଶନୀୟ ବସ୍ତୁ ଥିଲେ । ହାଇସ୍କୁଲରେ ଶିକ୍ଷକତା କରୁଥିବା ଶିକ୍ଷକଙ୍କର ସେ ଅଞ୍ଚଳରେ ଅସମ୍ଭବ ଖାତିର ଥିଲା । ଆମକୁ ଶିକ୍ଷାଦାନ ଦେଉଥିବା ଅଧ୍ୟାପକ ଓ ଅଧ୍ୟାପିକାମାନେ ପ୍ରତିଭାସମ୍ପନ୍ନ ବ୍ୟକ୍ତି ଥିଲେ । କଲେଜର ପରିସର ଓ ସମାଜରେ ସେମାନଙ୍କର ସମ୍ମାନ ଅମ୍ଳାନ ଓ ଅତୁଟ ଥିଲା ।

ମୁଁ କଲେଜରେ ନାମ ଲେଖାଇଲା ବେଳେ ପ୍ରଫେସର ବିଧୁଭୂଷଣ ଦାସ ଅଧ୍ୟକ୍ଷ ଥିଲେ । ସେ ଅଳ୍ପଦିନ ପାଇଁ ଅଧ୍ୟକ୍ଷ ରହିବା ପରେ ଶିକ୍ଷା ନିର୍ଦ୍ଦେଶକ ପଦରେ ଅଦସ୍ଥାପିତ ହୋଇଥିଲେ । ପରବର୍ତ୍ତୀ ଅଧ୍ୟକ୍ଷ ଥିଲେ ପ୍ରଫେସର ରମାନାଥ ମହାନ୍ତି । ଜଣେ ଅମାୟିକ, ଛାତ୍ରବତ୍ସଳ ଅଧ୍ୟକ୍ଷଭାବେ ତାଙ୍କର ସୁନାମ ଥିଲା । ଏମ୍.ଏସ୍.ସି.ଶ୍ରେଣୀରେ ଗଣିତ ପଢ଼ାଇଲାବେଳେ ଯଦି ସେ ଗଣିତର କୌଣସି ସୂତ୍ରକୁ ଭୁଲି ଯାଉଥିଲେ; ତେବେ ମୂଳସୂତ୍ରର ଆଧାରକୁ ଭିତ୍ତିକରି ମୁଖ୍ୟ ସୂତ୍ରରେ ଉପନୀତ ହେଉଥିଲେ । ଜଣେ ଗଣିତ ଶାସ୍ତ୍ରର ବିଶେଷଜ୍ଞ ଭାବେ ତାଙ୍କର ରାଜ୍ୟ ଓ ଦେଶରେ ଅସମ୍ଭବ ଖ୍ୟାତି ଥିଲା ।

ଅଧ୍ୟକ୍ଷ ରମାନାଥ ମହାନ୍ତିଙ୍କ ଅବସର ପରେ ବିଶିଷ୍ଟ ଅର୍ଥନୀତିଜ୍ଞ ପ୍ରଫେସର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ରେଭେନ୍ସା ମହାବିଦ୍ୟାଳୟର ଅଧ୍ୟକ୍ଷ ପଦ ସମ୍ଭାଳିଥିଲେ । ଅଧ୍ୟକ୍ଷ ମିଶ୍ର ଦେବତୁଲ୍ୟ ଥିଲେ । ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ତାଙ୍କର ଆଚରଣ ଓ ଉଚ୍ଚାରଣର ଯଥେଷ୍ଟ ପ୍ରଭାବ ପଡ଼ିଥିଲା ।

ଥରେ ମୁଁ ମୋର ଇଚ୍ଛାଧୀନ ବିଷୟ ବଦଳାଇବା ନିମନ୍ତେ ଏକ ଦରଖାସ୍ତ ନେଇ ଅଧ୍ୟକ୍ଷ ମିଶ୍ରଙ୍କ କାର୍ଯ୍ୟାଳୟକୁ ଯାଇଥିଲି । ଜଣେ ଛାତ୍ର ଆସି କହିଲା "ସାର୍ ! ଆପଣ ଅନର୍ସ ବିଷୟବସ୍ତୁ ବାଣ୍ଟୁଥିବା ଅଧ୍ୟାପକମାନଙ୍କ ପାଖକୁ ମୋର ଦରଖାସ୍ତ ରେ "ତାକୁ ସେ ବିଷୟରେ ଅନର୍ସ ଦିଆଯାଇପାରେ" ଲେଖି ପଠାଇ ଦିଅନ୍ତୁ । ଅଧ୍ୟକ୍ଷ ମିଶ୍ର ହସିଲେ ଓ ମନା କଲେ । ପିଲାଟି କହିଲା, "ସାର୍, ଆପଣ ତ ମୋତେ ଅନର୍ସ ଦେବାକୁ କହୁନାହାଁନ୍ତି, କେବଳ ଲେଖୁଛନ୍ତି ଯେ ତାକୁ ଅନର୍ସ ଦିଆଯାଇପାରେ । ସେତେବେଳେ ଆମେ ଯେଉଁମାନେ ସେଠାରେ ଉପସ୍ଥିତ ଥିଲୁ ବିନାଦ୍ୱିଧାରେ ଅଧ୍ୟକ୍ଷ ମହୋଦୟ ବୁଝାଇଲେ, "ଦିଆଯାଇପାରେ (May be given) ର ଅର୍ଥ କେବଳ ଦିଆଯାଇ ପାରେ ନୁହେଁ, May ର ଅର୍ଥ ମଧ୍ୟ 'ନିଶ୍ଚିତ' । ମୁଁ କଲେଜର ମୁଖ୍ୟ ତଥା ଅଧ୍ୟକ୍ଷ ହୋଇଥିବା ହେତୁ ଦରଖାସ୍ତକାରୀଙ୍କୁ ନିଶ୍ଚିତଭାବେ ସେ ବିଷୟଟିକୁ ଦେବାକୁ କହୁଅଛି ।" ଅଧ୍ୟକ୍ଷ ମିଶ୍ରଙ୍କ ଏଇ କେଇପଦ କଥା ଯେ କେତେ ଶିକ୍ଷଣୀୟ, ତାହା ସହଜରେ ଅନୁମେୟ ।

ଏମିତି ଅନେକ ଘଟଣାରେ ଆଦର୍ଶ ତଥା ଶିକ୍ଷଣୀୟ ପରମ୍ପରା ସୃଷ୍ଟି କରିଥିବା ମଣିଷମାନଙ୍କ ମଧ୍ୟରେ ନିଆରା ମଣିଷ ଥିଲେ ଅଧ୍ୟକ୍ଷ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର । ଅଧ୍ୟକ୍ଷ ମିଶ୍ର ଆମେରିକାରେ ଅବସ୍ଥିତ ବିଶ୍ୱବିଖ୍ୟାତ ହାଭାର୍ଡ଼ ବିଶ୍ୱବିଦ୍ୟାଳୟରୁ ଡ଼କ୍ଟରେଟ୍ ଡ଼ିଗ୍ରୀ ହାସଲ କରିଥିଲେ । ତାଙ୍କର କାର୍ଯ୍ୟଶୈଳୀ ଓ ଜୀବନଧାରାର ପ୍ରଭାବ କେବଳ ଶିକ୍ଷାର୍ଥୀଙ୍କ ଉପରେ ନୁହେଁ ବରଂ ତାଙ୍କ ସଂସ୍ପର୍ଶରେ ଆସୁଥିବା ବ୍ୟକ୍ତିବିଶେଷଙ୍କ ଉପରେ ପଡୁଥିଲା ।

୧୯୬୮-୬୯ ଶିକ୍ଷାବର୍ଷରେ ଏହି କଲେଜର ଛାତ୍ର ସଂସଦର ସଭାପତି ଅମିତାଭ ବାଗ୍‌ଚୀ ଥଲେ । ଏହି ସମୟରେ ଏକ ଛାତ୍ର ଆନ୍ଦୋଳନ ମହାବିଦ୍ୟାଳୟରେ ଦେଖା ଦେଇଥିଲା । ସରକାର ମଧ୍ୟ ଛାତ୍ର ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରିବାକୁ ଲାଗି ପଡ଼ିଥିଲେ ।

ସେ ସମୟରେ ଦିନେ ଛାତ୍ରମାନେ ସରକାର ବିରୋଧୀ ସ୍ଲୋଗାନ ଦେଇ କଲେଜ ଛକ ଆଡ଼କୁ ଅଗ୍ରସର ହେଲାବେଳକୁ ସମଗ୍ର ପୁଲିସ ବାହିନୀ ଆସି କଲେଜ ଛକକୁ ଜଗି ଦେଇଥିଲେ । ପିଲାମାନେ ମହାବିଦ୍ୟାଳୟର ମୁଖ୍ୟ ଫାଟକ ଡ଼େଇଁ କଲେଜ ଛକ ଆଡ଼କୁ ଅଗ୍ରସର ହେଲା ବେଳକୁ ଲୁହାବୁହା ଗ୍ୟାସ ଓ ଫାୟାରିଙ୍ଗ୍ ହେଲା । କଲେଜର ଛାତ୍ର ତଥା ରାଣୀହାଟ ବାସିନ୍ଦା ପ୍ରଦୀପ୍ତ ମିଶ୍ର ଚାହୁଁ ଚାହୁଁ ଟଳି ପଡ଼ିଲେ । ପିଲାମାନଙ୍କୁ ବୁଝାଇ ସୁଝାଇ କଲେଜ ପରିସର ମଧ୍ୟକୁ ଫେରାଇ ଆଣିବାକୁ କଲେଜ ପରିସରରେ ଥିବା ଅଧ୍ୟକ୍ଷ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଓ ଇଂରାଜୀ ଭାଷା ଓ ସାହିତ୍ୟ ବିଭାଗର ପ୍ରଫେସର ସର୍ବେଶ୍ୱର ଦାଶ ପୁଲିସ ଲାଠିରେ ଆହତ ହେଲେ । ପରଦିନ ଓଡ଼ିଶାର ପ୍ରମୁଖ ଖବରକାଗଜଗୁଡ଼ିକରେ ଶିରୋନାମା ହେଲା – "ରେଭେନ୍ସା କଲେଜ ଜାଲିଓ୍ୱାନାବାଗରେ ପରିଣତ ।"

ସେଦିନ ଯଦି ଅଧ୍ୟକ୍ଷ ମିଶ୍ର ଓ ପ୍ରଫେସର ଦାଶ ପିଲାମାନଙ୍କୁ ରକ୍ଷା କରିବାକୁ ଆଗେଇ ଆସି ନଥାନ୍ତେ ତେବେ କେବଳ ଜଣେ ପ୍ରଦୀପ ମିଶ୍ରଙ୍କ ଜୀବନ ଦୀପ ଲିଭି ନ ଥାନ୍ତା, ବରଂ ଶହ ଶହ ରେଭେନ୍ସାଭିୟାନ୍‌ଙ୍କ ଜୀବନ ସଂକଟର ସମ୍ମୁଖୀନ ହୋଇଥାନ୍ତା ।

**କଳା-ସାହିତ୍ୟ-ସଂସ୍କୃତିର ସାଧନା ପୀଠ : ରେଭେନ୍‌ସା ମହାବିଦ୍ୟାଳୟ**

ମୋର ସ୍ୱଳ୍ପ ଚାରିବର୍ଷର ପାଠପଢ଼ା ମଧ୍ୟରେ ଏକ ଶତାୟୁ ପୁରୁଷର ମର୍ଯ୍ୟାଦା ନେଇ ମୋ ଆଗରେ ରେଭେନ୍ସା କଲେଜ କଳା-ସାହିତ୍ୟ-ସଂସ୍କୃତି ଓ ଅଭିଜ୍ଞତାର ଏକ ମୂର୍ତ୍ତିମନ୍ତ ପ୍ରତିଷ୍ଠାନ ରୂପେ ଠିଆ ହୋଇଥିଲା । ମୋର ସହପାଠୀମାନେ ଏହାର ଚାରିକାନ୍ଥ ମଧ୍ୟରୁ ଅନେକ ଜ୍ଞାନ ଓ ଅଭିଜ୍ଞତା ସାଉଁଟିଛନ୍ତି । ଜ୍ଞାନର ପୀଠସ୍ଥଳୀ କନିକା ଲାଇବ୍ରେରୀ

ମହାବିଦ୍ୟାଳୟର ପାଠ୍ୟକ୍ରମ ବ୍ୟତୀତ କେତେ ଯେ ଜ୍ଞାନ ବାଣ୍ଟି ଚାଲୁଛି ତା'ର ଇୟତା ନାହିଁ ।

ମୋର ସୌଭାଗ୍ୟ ଯେ ମୁଁ ତୃତୀୟ ବାର୍ଷିକ ଡିଗ୍ରୀ ପାଠ୍ୟକ୍ରମର ଦ୍ୱିତୀୟ ବର୍ଷରେ ଆମ ଶ୍ରେଣୀର ଏସ୍.ଏସ୍.ଜି. ପ୍ରତିନିଧି (SSG Representative) ରୂପେ ନିର୍ବାଚିତ ହୋଇଥିଲି । କିଛି ସାହାଯ୍ୟ ପାଇଁ ଦରଖାସ୍ତ କରିଥିବା ଛାତ୍ରଛାତ୍ରୀଙ୍କ ଦରଖାସ୍ତର ବିଚାରବେଳେ ଏସ୍.ଏସ୍.ଜି କମିଟିର ମୁଖ୍ୟ ପ୍ରଫେସର ପ୍ରାଣବନ୍ଧୁ କର ଅତି ସ୍ୱଭାବିକ ଭାବେ ଦରଖାସ୍ତକାରୀଙ୍କ ଆର୍ଥିକ ସ୍ୱଚ୍ଛଳତା ବିଷୟରେ ମୋର ମତାମତ ନେଉଥିଲେ । ସମସ୍ତ ଦରଖାସ୍ତର ବିଚାର ସରିଲା ପରେ ପ୍ରଫେସର କର ମୋତେ ପଚାରିଲେ- "ହଇହୋ ବ୍ରହ୍ମା ! କାହିଁ ତୁମର ତ ଦରଖାସ୍ତ ନାହିଁ । ଯଦିଓ ଦରଖାସ୍ତ ନାହିଁ, ତଥାପି ମୁଁ ତୁମ ପାଇଁ କିଛି ଟଙ୍କାର ବ୍ୟବସ୍ଥା କରି ଦେଇପାରିବି ।"

ପ୍ରଫେସର କରଙ୍କ ଅପ୍ରତ୍ୟାଶିତ ସ୍ନେହଭରା ତଥା ସମ୍ବେଦନଶୀଳ କଥାର ଉତ୍ତର ଦେବାକୁ ଯାଇ ମୁଁ କହିଲି, "ସାର୍ ! ପିଲାଙ୍କ ପ୍ରତିନିଧି କ'ଣ ଆର୍ଥିକ ସାହାଯ୍ୟ ନେବା ଉଚିତ ହେବ ?"

ସାର୍ ମୋ କଥା ଶୁଣି ହସିଲେ ।

ପ୍ରଫେସର ପ୍ରାଣବନ୍ଧୁ କର ମୋର ପ୍ରତ୍ୟକ୍ଷ ଶିକ୍ଷକ ନ ଥିଲେ । ଆମେ ହାଇସ୍କୁଲ ସ୍ତରରେ ପଢୁଥିଲା ବେଳେ ଅତିରିକ୍ତ ସାହିତ୍ୟରେ ତାଙ୍କର ଏକ ଏକାଂକୀକା ପଢ଼ିଥିଲି । ଜଣେ ନାଟ୍ୟକାର ଭାବେ ଓଡ଼ିଶାରେ ତାଙ୍କର ସ୍ୱତନ୍ତ୍ର ପରିଚିତି ଥିଲା । ଗୋଟିଏ ଦୁଇଟି ଏସ୍.ଏସ୍.ଜି ମିଟିଙ୍ଗ୍‌ରେ ସେ ମୋତେ ଏମିତି ଚିହ୍ନି ଯାଇଥିଲି ଯେ ଆଉ ପରବର୍ତ୍ତୀ ଜୀବନକାଳରେ ସେ ମୋତେ ଭୁଲି ନ ଥିଲେ । ମୁଁ ୧୯୭୫ ମସିହାରେ ରାଧାନାଥ ପ୍ରଶିକ୍ଷଣ- ମହାବିଦ୍ୟାଳୟରେ ଏମ୍.ଏଡ୍. ପଢୁଥିଲା ବେଳେ ସେ କୌଣସି କାମରେ ସେଠାକୁ ଯାଇଥିଲେ । ତଙ୍କୁ ମୁଁ ନମସ୍କାର କରିବାକୁ ଗଲାବେଳେ, ସେ ମୋତେ ଚିହ୍ନି କହିଲେ, "ହାଇହୋ ବ୍ରହ୍ମା " ତୁମେ ଏଠାରେ କ'ଣ କରୁଛ ?

ମୁଁ କହିଲି, "ସାର୍, ମୁଁ ଏମ୍.ଏଡ୍ କରୁଛି ।"

ମୋ ଉତ୍ତର ଶୁଣି ସେ ହସି ହସି କହିଲେ, "ବେଶ୍ ଭଲ କଥା ।

**ରେଭେନ୍ସା ଐତିହ୍ୟର ସାକ୍ଷୀ : ପୂର୍ବ ଛାତ୍ରାବାସ**

ରେଭେନ୍ସା ମହାବିଦ୍ୟାଳୟର ଐତିହ୍ୟ ଓ ସମୁଜ୍ଜ୍ୱଳ ଗୌରବର ସାକ୍ଷୀ ହେଉଛି ପୂର୍ବ ଛାତ୍ରାବାସ । ଓଡ଼ିଶାର ଅନେକ ବରପୁତ୍ରଙ୍କ ରାଜନୈତିକ, ଅର୍ଥନୀତିକ, ସାଂସ୍କୃତିକ ଓ ସାରସ୍ୱତ ଜୀବନର ତାରୁଣ୍ୟ ସହିତ ପୂର୍ବ ଛାତ୍ରାବାସ ଏକାନ୍ତ ଭାବେ ପରିଚିତ ।

ସେମାନଙ୍କର ନାମର ଯଦି ତାଲିକା ପ୍ରସ୍ତୁତ କରାଯିବ, ତେବେ ତାହା ଏତେ ଲମ୍ବି ଲମ୍ବି ଯିବ ଯେ ଏଇ କ୍ଷୁଦ୍ର ପରିସର ମଧ୍ୟରେ ଲିପିବଦ୍ଧ କରିବା କଷ୍ଟକର ।

ଓଡ଼ିଆ ସାହିତ୍ୟ ଜଗତରେ ନୂତନ ପରମ୍ପରା ଓ ଧାରା ଆଣିଥିବା ସବୁଜ ଯୁଗର କବି ଅନ୍ନଦା ଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଶରତ ଚନ୍ଦ୍ର ମୁଖାର୍ଜୀ ପୂର୍ବ ଛାତ୍ରାବାସରେ ଯେଉଁ ସାହିତ୍ୟିକ ଅନୁଷ୍ଠାନ ଗଢ଼ିଥିଲେ, ତାର ନାମ ହେଉଛି 'ଅବକାଶ' । ଏହାର ନାମ ସେମାନଙ୍କର ନାମର ଆଦ୍ୟ ଅକ୍ଷରକୁ ନେଇ ଗଠିତ ହୋଇଥିଲା । ସେମାନଙ୍କ ଉଦ୍ୟମରେ ପୂର୍ବ ଛାତ୍ରାବାସର ମୁଖପତ୍ର 'ଜାଗରଣ'ର ପ୍ରଥମ ପ୍ରକାଶନ ୧୯୨୧ ମସିହାରେ ହୋଇଥିଲା । ଏହାର ପ୍ରଥମ ସଂପାଦକ ଥିଲେ ଶ୍ରୀଯୁକ୍ତ କାଳିନ୍ଦୀଚରଣ ପ୍ରାଣିଗ୍ରାହୀ । ତାଙ୍କ ପରବର୍ତ୍ତୀ ସମୟରେ ଯେଉଁମାନେ ସଂପାଦକ ଦାୟିତ୍ୱ ଗ୍ରହଣ କରିଥିଲେ ସେମାନେ ହେଲେ ଓଡ଼ିଶାର ସାରସ୍ୱତ ପୁରୁଷ ବସନ୍ତ କୁମାର ଶତପଥୀ, ଶ୍ରଦ୍ଧାକର ସୂପକାର, ବିଦ୍ୟାଧର ମିଶ୍ର, ସର୍ବେଶ୍ୱର ଦାଶ, ବିଜୟ କୁମାର ବେହେରା, ଶ୍ରୀମନ୍ତ କୁମାର ରାୟ, ବିଦ୍ୟାଧର ମହାନନ୍ଦିଆ, ଜେନାମଣି ନରେନ୍ଦ୍ର କୁମାର, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଯୋଗେଶ ଚନ୍ଦ୍ର ପତି, ଶରତ ଚନ୍ଦ୍ର ପ୍ରଧାନ, ହରିହର ଦାସ, ନଳିନୀ ରଞ୍ଜନ ଦେଓ, ସୁରେନ୍ଦ୍ର କୁମାର ପଣ୍ଡା, ପ୍ରସନ୍ନ ମିଶ୍ର, ନୀହାର କାନ୍ତ କବି, ଗୋଲକ ବିହାରୀ ଷଡ଼ଙ୍ଗୀ, ଶ୍ୟାମସୁନ୍ଦର ମହାପାତ୍ର, ବାଉରୀବନ୍ଧୁ ନନ୍ଦ, ସୁରେନ୍ଦ୍ରନାଥ ସ୍ୱାଇଁ, ନିୟତି ପରିତୋଷାନନ୍ଦ ସ୍ୱାଇଁ, କୃଷ୍ଣ ଚନ୍ଦ୍ର ରାଉତ, ଉତ୍ତମ କୁମାର ପ୍ରଧାନ, ଗୁରୁଚରଣ ଦାସ, ଦିଗରାଜ ବ୍ରହ୍ମା, ବିଚିତ୍ରାନନ୍ଦ ରାୟ, ଗୋପବନ୍ଧୁ ପଟ୍ଟନାୟକ, ଭଗବାନ ସ୍ୱାଇଁ, ଅଭୟ ବେହେରା, ଉପେନ୍ଦ୍ର ତ୍ରିପାଠୀ, ଶାନ୍ତନୁ କୁମାର ସର, ଦେବେନ୍ଦ୍ର ପ୍ରସାଦ ଦାସ, ନାରାୟଣ ପ୍ରଧାନ, ତିଲୋଚନ ମିଶ୍ର, ନିରଞ୍ଜନ ସାହୁ, ଦୀପକ କୁମାର ପୃଷ୍ଟି, ହରିହର ପଣ୍ଡା, ପ୍ରଭାତ କୁମାର ମିଶ୍ର, ଅନନ୍ତ କୁମାର ଗିରି, ନଟବର ଗିରି, ସୁରେନ୍ଦ୍ର ନାରାୟଣ ମିଶ୍ର, ଦେବ ନାୟକ, ପୁଲକ କୁମାର ପାତ୍ର, ଶ୍ରୀଧର ନାୟକ, ପ୍ରତାପ ରଞ୍ଜନ ଜେନା, ଆଶୁତୋଷ ମହାନ୍ତି, ଅଖିଳ କୁମାର ମିଶ୍ର, ରମ୍ୟରାଜ ରଥ ଓ ଅନ୍ୟାନ୍ୟ ବ୍ୟକ୍ତିବିଶେଷ । ଏମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଓଡ଼ିଶାର କଳା-ସାହିତ୍ୟ-ସଂସ୍କୃତିକୁ ଦାନ ଅତୁଳନୀୟ ।

**ଜାଗରଣର ସଂପାଦନା : ଅନନ୍ୟ ଅନୁଭୂତି**

ଇଚ୍ଛା କଲେ କିମ୍ବା କେହି ଦୟା ପ୍ରଦର୍ଶନ କଲେ ଜଣେ ରେଭେନ୍ସା କଲେଜର କୌଣସି ଛାତ୍ରାବାସର ମୁଖପତ୍ରର ସଂପାଦକ ହୋଇପାରିବ ନାହିଁ । ସେଥିପାଇଁ ଛାତ୍ରାବାସର ଅନ୍ତେବାସୀମାନେ ଗୋପନ ବ୍ୟାଲେଟ୍ ପେପରରେ ଛାତ୍ରାବାସର ସାଧାରଣ ସଂପାଦଙ୍କ, ମୁଖପତ୍ରର ସଂପାଦକ, ମେସ୍‌ର ପ୍ରତିନିଧି ଆଦି ନିର୍ବାଚିତ କରିଥାନ୍ତି ।

୧୯୬୮-୬୯ ଶିକ୍ଷାବର୍ଷରେ ପୂର୍ବ ଛାତ୍ରାବାସର ମୁଖପତ୍ର ଜାଗରଣର ସଂପାଦକ ଶ୍ରୀଯୁକ୍ତ ଗୁରୁଚରଣ ଦାସ ମୋତେ ଏହାର ସହ-ସଂପାଦକ ହିସାବରେ ରଖିଥିଲେ । ସେତେବେଳେ ସଂପାଦକ ଯଦିଓ ପ୍ରତ୍ୟକ୍ଷ ନିର୍ବାଚନ ମାଧ୍ୟମରେ ଆସୁଥିଲେ, ସହ ସଂପାଦକ ରଖିବା ସଂପାଦକଙ୍କର ଇଚ୍ଛାଧୀନ ବିଷୟ ଥିଲା । ସେ ସମୟରେ ମୋର କେତେକ ଲେଖା ଓଡ଼ିଶାର ପତ୍ରପତ୍ରିକାରେ ପ୍ରକାଶିତ ହୋଇ ସାରିଥିଲା । ପ୍ରାଚୀର ପତ୍ରିକା, 'ରୋହିଣୀ'ରେ ସ୍ଥାନିତ ମୋର ଲେଖା ମଧ୍ୟ ଅନ୍ତେବାସୀମାନଙ୍କୁ ଆକର୍ଷିତ କରିଥିଲା ।

ତେଣୁ ପରବର୍ଷ ୧୯୬୯-୭୦ ଶିକ୍ଷାବର୍ଷରେ ମୋର ଅଧିକାଂଶ ସାଥୀ ମୋତେ 'ଜାଗରଣ' ପତ୍ରିକାର ସଂପାଦକ ପଦ ପାଇଁ ପ୍ରାର୍ଥୀ ହେବା ପାଇଁ ମତାଇଲେ । ପ୍ରାର୍ଥୀ ହେଲାପରେ ଓ ପ୍ରଚାର ସମୟରେ ମୁଁ ଜାଣିଲି ଯେ ଗୋଟିଏ ଛୋଟିଆ ପରିସରରେ ପ୍ରାୟ ଦୁଇଶହ ଅନ୍ତେବାସୀମାନଙ୍କ ମଧ୍ୟରେ ଗୋଟିଏ ପଦ ପାଇଁ ନିର୍ବାଚନରେ ଲଢ଼ିବା କେତେ କଷ୍ଟକର ।

ମୋ ସହିତ ଯେଉଁମାନେ ଲଢ଼ିବା ପାଇଁ ମନୋନୟନ ପତ୍ର ଦାଖଲ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଅନ୍ତେବାସୀ ନେତ୍ରାନନ୍ଦ ରାୟ, ଧରଣୀଧର ସାହୁ ଓ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଜନୈକ ଅନ୍ତେବାସୀ । ନେତ୍ରାନନ୍ଦ ରାୟ ଓ ଧରଣୀଧର ସାହୁ ଇଂରାଜୀ ଅନର୍ସର ଛାତ୍ର ଥିଲେ । ମୁଁ ଥିଲି ଇତିହାସ ଅନର୍ସର ଛାତ୍ର ।

ଦିନେ ସନ୍ଧ୍ୟାବେଳେ ନେତ୍ରାନନ୍ଦ ବାବୁ ମୋ କୋଠରିକୁ ଆସି କୌଣସି କାରଣରୁ ମୋ ଉପରେ ବିରକ୍ତି ପ୍ରକାଶ କଲେ । ସେତେବେଳେ ଅନ୍ତେବାସୀମାନଙ୍କର ମନରେ ନେତ୍ରାନନ୍ଦବାବୁଙ୍କ ପ୍ରତି ସ୍ୱତନ୍ତ୍ର ସମ୍ମାନ ଥିଲା ।

ମୁଁ ମୋର ସ୍ୱଭାବ ସୁଲଭ ଭାଷାରେ କହିଲି, "ନେତ୍ରାନନ୍ଦ ବାବୁ ! ଆପଣ ମୋର ବଡ଼ ଭାଇ ପରି । ଆପଣ ସଂପାଦକ ହେବା ଯାହା, ମୁଁ ହେବା ସେୟା ।"

ସେ କହିଲେ - "ତେବେ କ'ଣ କରିବା ।" ମୁଁ କହିଲି "ଆମେ ଯଦି ବି.ଏ ଫାଇନାଲ ବର୍ଷର ଦୁଇଜଣ ଛାତ୍ର ଜାଗରଣ ପାଇଁ ପ୍ରତିଯୋଗିତା କରିବା, ତେବେ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ର ଜଣକ ଅଧିକ ଭୋଟ ପାଇ ସଂପାଦକ ହୋଇଯିବ । ତେଣୁ ଆମ ଦୁଇଜଣଙ୍କ ମଧ୍ୟରୁ କିଏ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବ, ତାହା ଗୁଳା ମାଧ୍ୟମରେ ସ୍ଥିର କରିନେବା ।"

ମୋ କଥାରେ ବିନା ଦ୍ୱିଧାରେ ନେତ୍ରାନନ୍ଦ ବାବୁ ରାଜି ହୋଇଗଲେ । ସାଙ୍ଗେ ସାଙ୍ଗେ ଧର୍ମଗୁଳା ଉଠାଗଲା । ସେ ନିଜେ ଗୁଳା ଉଠାଇଲେ । ଗୁଳାରେ ମୋ ନାମ

ଉଠିଥିବାରୁ ସେ ଖୁସି ହେଲେ ଓ ସନ୍ଧ୍ୟାବେଳକୁ ଛାତ୍ରାବାସ କାର୍ଯ୍ୟାଳୟରୁ ନିଜର ମନୋନୟନ ପତ୍ରଟିକୁ ଫେରସ୍ତ ନେଇଗଲେ । ପରେ ନିର୍ବାଚନ ବିଷୟରେ ଆଉ ମୁଣ୍ଡ ନ ଖେଳାଇ ନିଜ ଗାଁକୁ ଚାଲିଗଲେ ।

ସେତେବେଳେ ଛାତ୍ରାବାସର କିଛି ଅନ୍ତେବାସୀ ନିଜକୁ ବୁଦ୍ଧିଜୀବୀ ବୋଲି ଦାବି କରୁଥିଲେ । ସେମାନେ ନେତ୍ରାନନ୍ଦବାବୁ ନିର୍ବାଚନରୁ ଅପସରି ଯାଇଥିବା ହେତୁ ଇଂରାଜୀ ଅନର୍ସର ଛାତ୍ର ଧରଣୀଧର ସାହୁଙ୍କୁ ସଂପାଦକ ପଦ ପାଇଁ ଠିଆ କରାଇଲେ ।

ନିର୍ବାଚନରେ ଯେ ପ୍ରଚାର କରିବା କେତେ କଷ୍ଟ, ମୁଁ ପୂର୍ବ ଛାତ୍ରାବାସର ଏଇ କ୍ଷୁଦ୍ରପରିସର ମଧ୍ୟରେ ଅନୁଭବ କରିଥିଲି । ରାତି ନଅଟା ମଧ୍ୟରେ ଶୋଇ ପଡ଼ିବା ମଣିଷ ମୁଁ । ଗୋଟିଏ ଗୋଟିଏ କୋଠରି ଯାଇ ଭୋଟ ଭିକ୍ଷା କରି ଫେରିଲାବେଳକୁ ରାତି ଗୋଟାଏ ପରେ ହୋଇଯାଉଥିଲା । ମନୋନୟନପତ୍ର ଦାଖଲ କରିବା ପରଠାରୁ ମୋ ଆଖିରୁ ସଂପୂର୍ଣ୍ଣ ଭାବେ ନିଦ ହଜି ଯାଇଥିଲା ।

ଆମେ ଦେଶର ଗଣତାନ୍ତ୍ରିକ ବିଧି ବ୍ୟବସ୍ଥା ମଧ୍ୟରେ ନିର୍ବାଚନ ମାଧ୍ୟମରେ ପ୍ରତି ପାଞ୍ଚବର୍ଷରେ ଜନପ୍ରତିନିଧିମାନେ ବଛା ଯାଆନ୍ତି । ସେମାନେ ନିର୍ବାଚନ ପ୍ରଚାର ଯେ କେତେ କଷ୍ଟରେ କରନ୍ତି, ତାହା ଭାବିଲାବେଳକୁ ମୋତେ ଏବେବି ମୋ ଛାତ୍ରାବାସାର ଅନୁଭୂତି ସହିତ ତୁଳନା କରି ଆଶ୍ଚର୍ଯ୍ୟ ଲାଗେ ।

ଦିନେ ସନ୍ଧ୍ୟାବେଳେ ହଷ୍ଟେଲର ସୁପେରିଟେଣ୍ଡେଣ୍ଟଙ୍କ ଦ୍ୱାରା ଧାର୍ଯ୍ୟ ତାରିଖରେ ଛାତ୍ରାବାସର ବିଭିନ୍ନ ପଦପଦବୀ ପାଇଁ ନିର୍ବାଚନ ହୋଇଥିଲା । ମୁଁ ସବୁଠାରୁ ଅଧିକ ତଥା ଆଶାତୀତ ଭୋଟ ପାଇ ଜାଗରଣର ସଂପାଦକ ପଦ ପାଇଁ ନିର୍ବାଚିତ ହୋଇଥିଲି । ଅନ୍ୟ ଯେଉଁ ବନ୍ଧୁମାନଙ୍କୁ ନେଇ ପୂର୍ବ ଛାତ୍ରାବାସର କାର୍ଯ୍ୟନିର୍ବାହୀ ସଂସ୍ଥା (Executive Body), ୧୯୬୯-୭୦ଗଢ଼ା ଯାଇଥିଲା ସେମାନେ ହେଲେ : ସାଧାରଣ ସଂପାଦକ - ଅର୍ଦ୍ଧେନ୍ଦୁ ଶେଖର ଷଡ଼ଙ୍ଗୀ, ଯୁଗ୍ମ ସାଧାରଣ ସଂପାଦକ - ଅଶୋକ ଦାସ, ମେସ ସଂପାଦକ - ବରଦାକାନ୍ତ ମହାନ୍ତି, ଯୁଗ୍ମ ମେସ ସଂପାଦକ - ସଚ୍ଚିଦାନନ୍ଦ ଦାସ, ବାହ୍ୟ କ୍ରୀଡ଼ା ସଂପାଦକ - ଶଶାଂକ କୁମାର ମିଶ୍ର, ଆନ୍ତଃ କ୍ରୀଡ଼ା ସଂପାଦକ- ଦୀପକ ଦାସ, ସଂପାଦକ, ସଙ୍ଗୀତ - ବୀର କିଶୋର ବରାଳ, ସଂପାଦକ, ପାଠାଗାର- ମୃତ୍ୟୁଞ୍ଜୟ ଷଡ଼ଙ୍ଗୀ, ସଂପାଦକ, ସ୍ୱାସ୍ଥ୍ୟ-ରବୀନ୍ଦ୍ରନାଥ ସାହୁ, ତୃତୀୟ ବାର୍ଷିକ ଶ୍ରେଣୀ ପ୍ରତିନିଧି- ପଦ୍ମନାଭ ମହାପାତ୍ର, ଦ୍ୱିତୀୟ ବାର୍ଷିକ ଶ୍ରେଣୀ ପ୍ରତିନିଧି- ବିଚିତ୍ରାନନ୍ଦ ରାୟ, ପ୍ରଥମ ବାର୍ଷିକ ଶ୍ରେଣୀ ପ୍ରତିନିଧି - ରଜତ କୁମାର ପତି, ପ୍ରାକ୍ ବିଶ୍ୱବିଦ୍ୟାଳୟ ଶ୍ରେଣୀ ପ୍ରତିନିଧି -ପ୍ରଫୁଲ୍ଲ କୁମାର ରଥ ଓ ସଂପାଦକ, ଜାଗରଣ- ଦିଗରାଜ ବ୍ରହ୍ମା ।

ଏହି କାର୍ଯ୍ୟନିର୍ବାହୀ କମିଟି (Executive Committee) ର ସଭାପତି ଥିଲେ ଛାତ୍ରାବାସର ଅଧୀକ୍ଷକ ଅଧ୍ୟାପକ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି ଓ ଉପସଭାପତି ଥିଲେ ସହ-ଅଧୀକ୍ଷକ ଅଧ୍ୟାପକ ଚିତ୍ତରଞ୍ଜନ ମହାନ୍ତି ।

ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଓଡ଼ିଆ ବିଭାଗର ଅଧ୍ୟାପକ ଥିଲେ । ତାଙ୍କଠାରୁ ଛାତ୍ରାବାସର ବିକାଶ ନିମନ୍ତେ ଅନେକ କିଛି ଆଶା କରାଯାଉଥିଲା । ଏପରିକି ସେ ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟାପକ ହୋଇଥିଲେ ମଧ୍ୟ 'ଜାଗରଣ'ର ପ୍ରକାଶନକୁ ବନ୍ଦ କରିବାକୁ ସେ ବର୍ଷ ଚେଷ୍ଟା କରୁଥିଲେ । ଜାଗରଣର ମୁଦ୍ରଣ ନିମନ୍ତେ ପୂର୍ବବର୍ଷ ଅପେକ୍ଷା ଖୁବ୍ କମ୍ ଅର୍ଥ ଦେବେ ବୋଲି କହିଲେ । ଏହାକୁ ବଜେଟ ଉପସ୍ଥାପନ ମିଟିଙ୍ଗରେ ସମସ୍ତ ନିର୍ବାଚିତ ପ୍ରତିନିଧି କଡ଼ା ବିରୋଧ କଲେ । ଆମେ ମିଟିଂ ଛାଡ଼ି ଚାଲିଯିବୁ ବୋଲି କହିଲୁ । ଏହାର ପ୍ରଭାବ ତାଙ୍କ ଉପରେ ପଡ଼ିଲା । ଅତି ଟଣାଓଟରା ମଧ୍ୟରେ 'ଜାଗରଣ' ପ୍ରକାଶନ ପାଇଁ ସେ ବର୍ଷ ୧୯୦୦ ଟଙ୍କା ମାତ୍ର ରଖା ଯାଇଥିଲା । ମାତ୍ର ଏହା ପୂର୍ବ ବର୍ଷର ବଜେଟ୍‌ଠାରୁ ଯଥେଷ୍ଟ କମ୍ ଥିଲା ।

ମୋତେ ଯେତେବେଳେ ଯେଉଁଠି ପ୍ରଫେସର ମହାନ୍ତି ଦେଖିଲେ; କେବଳ ଗୋଟିଏ କଥା କହିଲେ । ସେ କଥାଟି ହେଲା- "ଗୁରୁ (ପୂର୍ବବର୍ଷର ଜାଗରଣ ସଂପାଦକ : ଗୁରୁ ଚରଣ ଦାସ)ତ ବି.ଏ ପରୀକ୍ଷାରେ ଜାଗରଣ ପାଇଁ ଦିନରାତି ଲାଗି ଫେଲ ହୋଇଗଲା । ତୁମେ କାହିଁକି ଲାଗିଛ ?" ତାଙ୍କଠାରୁ ସବୁବେଳେ "ଗୁରୁ ତ ଫେଲ ହୋଇଗଲା" ନକାରାତ୍ମକ କଥା ଶୁଣି ଶୁଣି ମୁଁ ଦିନେ ମନର ବିରକ୍ତି ଭାବକୁ ଚାପି ରଖି କହିଲି, "ସାର୍ ! ମୁଁ ଫେଲ୍ ହେବି ନାହିଁ । ପରୀକ୍ଷାରେ ନିଶ୍ଚିତ ଭାବେ ପାଶ୍ କରିବି । ଆପଣ ତାହା ଦେଖିବେ ।" ସେହିପରି ଲେଖା ଚୟନ ସମୟରେ ସେ ହସ୍ତକ୍ଷେପ କରିବାକୁ ଚାହିଁଥିଲେ ମଧ୍ୟ ମୁଁ ମୋର ଗଣତାନ୍ତ୍ରିକ ଅଧିକାର ନିରପେକ୍ଷଭାବେ ସଂପାଦନ କରିଥିଲି ।

**ଜାଗରଣ : ୧୯୬୯-୭୦ର ପ୍ରକାଶନ**

ସେ ବର୍ଷ ପୂଜାଛୁଟି ପୂର୍ବରୁ ଜାଗରଣର ପ୍ରକାଶନ ନିମନ୍ତେ ଅନ୍ତେବାସୀମାନଙ୍କଠାରୁ ଲେଖା ଆହ୍ୱାନ କରାଗଲା । ଆଗ୍ରହ ଓ ଉତ୍ସାହ ଦେଖି ମୁଁ ଦ୍ୱିତୀୟ ବାର୍ଷିକ କଳା ଛାତ୍ର ଅଲେଖ ଚନ୍ଦ୍ର ତ୍ରିପାଠୀ ଓ ପ୍ରଥମ ବାର୍ଷିକ କଳା ଛାତ୍ର ପୁରୁଷୋତ୍ତମ ବିଶ୍ୱାଳଙ୍କୁ ସହ ସଂପାଦକ ରଖିଲି । ମୋର କେତେକ ସାଥୀଙ୍କ ପରାମର୍ଶ କ୍ରମେ ମୁଁ କଟକସ୍ଥିତ ଭାଷାକୋଷ ଲେନ୍‌ରେ ଥିବା ପୌରୁଷ ପ୍ରେସରେ ଏହାର ପ୍ରକାଶନ ନିମନ୍ତେ ସ୍ଥିର କଲି ।

ଦିନେ ଅପରାହ୍ଣରେ ମୁଁ ପୌରୁଷ ପ୍ରେସ୍‌ରେ ପୌରୁଷର ସଂପାଦକ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ସାକ୍ଷାତ କଲି । ତାଙ୍କୁ ମୋର ପରିଚୟ ଦେଲି ଓ ମୋର ଯିବାର ଉଦ୍ଦେଶ୍ୟ ଜ୍ଞାପନ କଲି । ସେ ସଙ୍ଗେ ସଙ୍ଗ 'ଜାଗରଣ' ପ୍ରକାଶନର ଦାୟିତ୍ୱ ନେଲେ । ମୋତେ ପ୍ରୁଫ୍ ଦେଖିବାର ଦାୟିତ୍ୱ ଆଉ ପଡ଼ିଲା ନାହିଁ । ଅନ୍ୟାନ୍ୟ ସବୁ ଦାୟିତ୍ୱ ପୌରୁଷର ପରିଚାଳନା ଦାୟିତ୍ୱରେ ଥିବା ହରିବାବୁ (ଶ୍ରୀଯୁକ୍ତ ହରେକୃଷ୍ଣ ରାଉତ) ନେଲେ ।

ଜାଗରଣ ପାଇଁ ପୂର୍ବ ବର୍ଷ ଅପେକ୍ଷା କମ୍ ଅର୍ଥ ଥିବାରୁ ମୁଁ ଜଣେ ପେଷାଗତ ଚିତ୍ରକରଙ୍କୁ ଏହାର ପ୍ରଚ୍ଛଦପଟ ପ୍ରସ୍ତୁତ କରିବାର ଦାୟିତ୍ୱ ଦେଇ ନ ଥିଲି । ମତେ ଏଥିପାଇଁ କେତେକ ପେଶାଗତ ଚିତ୍ରକର ମଧ୍ୟ ଅନୁରୋଧ କରିଥିଲେ । ସେତେବେଳେ ନୂତନ ଛାତ୍ରାବାସରେ ରହୁଥିବା ଷଷ୍ଠ ବାର୍ଷିକ ଶ୍ରେଣୀର ଏମ୍.ଏସ୍‌ସି. ଛାତ୍ର ଶ୍ରୀଯୁକ୍ତ ରାମମୋହନ ଖୁଣ୍ଟିଆ ଜଣେ ଭଲ ଚିତ୍ରକର ଥିଲେ । ସେ ଆମ ସହପାଠୀ ହରମୋହନର ବଡ଼ ଭାଇ ହୋଇଥିବାରୁ ମୋର ତାଙ୍କ ସହିତ ଜଣାଶୁଣା ଥିଲା । ମୁଁ ଦିନେ ରାମବାବୁଙ୍କୁ ସାକ୍ଷାତ କରି 'ଜାଗରଣ' ର ପ୍ରଚ୍ଛଦପଟ ଆଙ୍କିବା ପାଇଁ ଅନୁରୋଧ କଲି । ସେ ମୋର ଅନୁରୋଧ ରକ୍ଷା କଲେ । ସେ ଯେଉଁ ପ୍ରଚ୍ଛଦପଟ ତିଆରି କଲେ ତାହା ନିତାନ୍ତ ଯୁଗୋପଯୋଗୀ ଥିଲା । ସେ ସମୟରେ ପୃଥିବୀ ପୃଷ୍ଠରୁ ଋଷିଆ ମହାକାଶଚାରୀ ଆର୍ମିଷ୍ଟ୍ରଙ୍ଗ ମହାକାଶଯାନରେ ଯାଇ ଚନ୍ଦ୍ରପୃଷ୍ଠରେ ପାଦ ଦେଇ ସମଗ୍ର ପୃଥିବୀରେ ଆଲୋଡ଼ନ ସୃଷ୍ଟି କରିଥିଲେ । ଏହା ଫଳରେ ବିଜ୍ଞାନ ଜଗତରେ ନୂତନ ଜାଗରଣ ଖେଳିଥିଲା । ବିଜ୍ଞାନ ଜଗତର ନବ ଜାଗରଣକୁ ଆଖି ଆଗରେ ରଖି ଶ୍ରୀଯୁକ୍ତ ଖୁଣ୍ଟିଆ 'ଜାଗରଣ'ର ମଲାଟକୁ ସାଂକେତିକ ଚିତ୍ର ମାଧ୍ୟମରେ ପ୍ରଦର୍ଶିତ କରିଥିଲେ । ଏଇ ପ୍ରଚ୍ଛଦପଟ ରେଭେନ୍‌ସାର ବୌଦ୍ଧିକ ସ୍ତରରେ ଗ୍ରହଣୀୟ ଓ ଆଦୃତ ହୋଇଥିଲା । ପରବର୍ତ୍ତୀ ସମୟରେ ଶ୍ରୀଯୁକ୍ତ ଖୁଣ୍ଟିଆ ସର୍ବଭାରତୀୟ ଭୂତତ୍ତ୍ୱ ସେବାର ଅଧିକାରୀ ଭାବେ ଯୋଗଦାନ କରି ବହୁ ଗୁରୁତ୍ୱପୂର୍ଣ୍ଣ ପଦ ପଦବୀରେ ଅବସ୍ଥାପିତ ହୋଇଥିଲେ ।

'ଜାଗରଣ'ର ପ୍ରଥମ ସଂପାଦକ କାଳିନ୍ଦୀ ଚରଣ ପାଣିଗ୍ରାହୀ ଥିବା ହେତୁ ତାଙ୍କର ଏକ ବାର୍ତ୍ତା 'ଜାଗରଣ'ରେ ସ୍ଥାନିତ କରିବା ନିମନ୍ତେ ମୁଁ ବ୍ୟକ୍ତିଗତ ଭାବେ ନିଷ୍ପତ୍ତି ନେଇଥିଲି । ସେତେବେଳେ ସେ କଟକସ୍ଥିତ ଗୋପବନ୍ଧୁ ଭବନ ତଥା ସମାଜପ୍ରେସ ନିକଟବର୍ତ୍ତୀ 'ଆକାଶବାଣୀ'ରେ କାର୍ଯ୍ୟରତ ଥିଲେ । ମୁଁ ତାଙ୍କୁ 'ଜାଗରଣ' ପାଇଁ ବାର୍ତ୍ତାଟିଏ ଦେବା ନିମନ୍ତେ ଅନୁରୋଧ କଲି । ସେ ମୋତେ ଏକ ନିର୍ଦ୍ଦିଷ୍ଟ ଦିନ ଦେଲେ ଓ 'ବାର୍ତ୍ତା'ଟି ନେଇ ଆସିବାକୁ କହିଲେ । ମୁଁ ସେଦିନ ଗଲି । ଭାବିଥିଲି ସେ

ଦୁଇଚାରିଧାଡ଼ି ଇଂରାଜୀ କିମ୍ବା ଓଡ଼ିଆରେ ଗତାନୁଗତିକ ଭାବେ ଶୁଭେଚ୍ଛା ବାର୍ତ୍ତା ଗଦ୍ୟ ମାଧ୍ୟମରେ ଦେବେ । ମାତ୍ର ସେପରି ଘଟିଲା ନାହିଁ । ସବୁଜ ଯୁଗର ଏହି କବି ଜଣକ ତଥା ଜାଗରଣର ସର୍ବପ୍ରଥମ ସଂପାଦକ ଯେ ପରିଣତ ବୟସରେ ଯୁବଗୋଷ୍ଠୀ ପାଇଁ କେତେ ସବୁଜ ଓ 'ଜାଗରଣ'ର କେତେ ବଡ଼ ଶୁଭେଚ୍ଛୁ ଥିଲେ; ତାହା ତାଙ୍କର 'ବାର୍ତ୍ତା'ରୁ ସ୍ପଷ୍ଟ ବାରି ହୋଇଥିଲା । ବାର୍ତ୍ତାଟି ଥିଲା ଏହିପରି :

ହେ ଚିର ନୂତନ ଚିର ଚଞ୍ଚଳ
ଉଦ୍ଦାମ ଯଉବନ
ଘୋର ଅନ୍ଧାରେ ଜାଗର ଜାଳୁ ହେ
ତୁମରି ଏ 'ଜାଗରଣ' ।
ଆଲୁଅ ! ଆଲୁଅ !! ଦେଖା ଦିଅ ବାରେ
ଛଳନାର ସବୁ ଭିତର ବାହାରେ
ଫିଟାଇ ଦିଅରେ ଦୁନିଆର ଯେତେ
ମିଥ୍ୟାର ଆବରଣ
ସତ୍ୟର ନିଆଁ ଜାଳି ଦେଉ ଆଜି
ତୁମରି ଏ 'ଜାଗରଣ' ।
ଜମିଲାଣି ଘୋର ଜଞ୍ଜାଳ ରାଶି
ଖାଲି ଫାଙ୍କି ଦଗାବାଜି
ଜାଗ ! ଜାଗ !! ଜାଗ !!! ଉଠୁ ଆହ୍ୱାନ
ଗଗନେ ପବନେ ବାଜି
ଉଡ଼ାଅ ଭୁବନେ ବିଜୟର କେତ
ମରଣ ବିଜୟୀ ଆରେ ନଚିକେତ !
ଜଡ଼ ଅଙ୍ଗରେ ଜୀବନ ଖେଳାଉ
ତୁମ ଦୁନ୍ଦୁଭି - ରଣ
ସତ୍ୟର ନିଆଁ ଜାଳି ଦେଉ ଆଜି
ଆଜିର ଏ 'ଜାଗରଣ' ।

**କାଳିନ୍ଦୀ ଚରଣ ପାଣିଗ୍ରାହୀ**

ଏତଦ୍‌ବ୍ୟତୀତ ଜାଗରଣ ପାଇଁ ତତ୍‌କାଳୀନ ଭାରତବର୍ଷର ରାଷ୍ଟ୍ରପତି ଭି.ଭି. ଗିରିଙ୍କଠାରୁ ମଧ୍ୟ ଜାନୁଆରୀ ୩, ୧୯୭୦ ମସିହାରେ ମିଳିଥିବା ଶୁଭେଚ୍ଛା ବାର୍ତ୍ତା 'ଜାଗରଣ'ରେ ସ୍ଥାନିତ ହୋଇଥିଲା ।

'ଜାଗରଣ' ରେଭେନ୍ସା ମହାବିଦ୍ୟାଳୟର ପୂର୍ବ ଛାତ୍ରାବାସର ପ୍ରାଣସ୍ପନ୍ଦନ । ଏହାର ପ୍ରକାଶନ ଏକ ଗଣତାନ୍ତ୍ରିକ ବିଧି ବ୍ୟବସ୍ଥାର ପ୍ରତିଫଳନ । ଏହି ପ୍ରକାଶନ କାର୍ଯ୍ୟରେ ଅଧ୍ୟାପକମାନଙ୍କ ମଧ୍ୟରୁ ଯେଉଁମାନେ ସହଯୋଗର ହାତ ବଢ଼େଇଥିଲେ, ସେମାନେ ହେଲେ ପ୍ରଫେସର ଗଜେନ୍ଦ୍ରନାଥ ଆଚାର୍ଯ୍ୟ, ଅଧ୍ୟାପକ ସୌଭାଗ୍ୟ କୁମାର ମିଶ୍ର, ଅଧ୍ୟାପକ ରାଜେନ୍ଦ୍ର କୁମାର ମହାନ୍ତି, ଅଧ୍ୟାପକ ତାରିଣି ଚନ୍ଦ୍ର ଦାସ ଓ ଗ୍ରେଟ୍ ବ୍ରିଟେନ୍‌ରୁ ଆସି ଆମକୁ ସ୍ୱଳ୍ପକାଳୀନ ଶିକ୍ଷାଦାନ କରିଥିବା ଅଧ୍ୟାପିକା ମିସ୍ ସେଲିମା ରବର୍ଟସ୍ । ଯେଉଁ ଅନ୍ତେବାସୀମାନଙ୍କ ଚିନ୍ତା ଓ ଚେତନାରେ 'ଜାଗରଣ' ସମୃଦ୍ଧ ହୋଇଥିଲା ସେମାନେ ହେଲେ ସର୍ବଶ୍ରୀ ନେତ୍ରାନନ୍ଦ ରାୟ, ଦିଲ୍ଲୀପ କୁମାର ନନ୍ଦ, କାଙ୍ଗାଳି ରାମ ସାମନ୍ତ, ଯୁଧିଷ୍ଠିର ପାଢ଼ୀ, ଡମ୍ବରୁଧର ବେହେରା, ରବୀନ୍ଦ୍ରନାଥ ପଣ୍ଡା, କିଶୋରୀ ମୋହନ ଦାସ, ବ୍ରଜେନ୍ଦ୍ର ମହାନ୍ତି, ରଘୁନାଥ ନାୟକ, ପୀତାମ୍ବର ମହାନ୍ତି, ବିନାୟକ ପାଇକରାୟ, ବରଦାକାନ୍ତ ମହାନ୍ତି, ଅକ୍ଷୟ କୁମାର ଦାସ, ପଦ୍ମନାଭ ମହାପାତ୍ର, ଚିତ୍ତରଞ୍ଜନ କର, ଶୁକଦେବ ସ୍ୱାଇଁ, ବିଜୟ କୁମାର ନନ୍ଦ, ଲକ୍ଷ୍ମଣ କୁମାର ସାହୁ, ବ୍ରଜ କିଶୋର ମିଶ୍ର, ରମାନାଥ ମିଶ୍ର, ପ୍ରଫୁଲ୍ଲ କମାର ସାହୁ, ସଞ୍ଜୟ କୁମାର ଦାସ, ଦୀପକ ଦାସ, ମଦନ ମୋହନ ମହାପାତ୍ର, ବୀର କିଶୋର ବିଶ୍ୱାଳ, ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି, ଅଲେଖ ଚନ୍ଦ୍ର ତ୍ରିପାଠୀ, ବୃନ୍ଦାବନ ରଥ, ପୁରୁଷୋତ୍ତମ ବିଶ୍ୱାଳ, ନିର୍ମଳ କୁମାର ଚୌଧୁରୀ, ବିଷ୍ଣୁଚରଣ ଖଟୁଆ, ଭଗବାନ ସ୍ୱାଇଁ, ପ୍ରଦୀପ କୁମାର ସାମଲ, ପ୍ରସନ୍ନ କୁମାର ସାହୁ, ଉଦାନ ଘୋଷ, ଦିଗରାଜ ବ୍ରହ୍ମା, ସୁଧାକର ନାୟକ, ବିଜୟ କୁମାର ଶତପଥୀ, ଦୁଃଶାସନ ସ୍ୱାଇଁ, ବଳଭଦ୍ର ମହାପାତ୍ର, ଦାଶରଥୀ ସ୍ୱାଇଁ, ଧରଣୀଧର ସାହୁ, ପ୍ରଫୁଲ୍ଲ କୁମାର ମିଶ୍ର, ସୁବୀର କୁମାର ମିତ୍ର, ପ୍ରଣୟ କୁମାର ମହାପାତ୍ର, ସୁଧାଂଶୁ ପଟ୍ଟନାୟକ, ଭାରତୀ ଭୂଷଣ ରଥ, ପ୍ରଫେସର ଚିତ୍ତରଞ୍ଜନ ମହାନ୍ତି, ମୃତ୍ୟୁଞ୍ଜୟ ଷଡ଼ଙ୍ଗୀ, ସତ୍ୟନାରାୟଣ ମହାନ୍ତି, ବିଜୟ କୁମାର ପ୍ରଧାନ, କାଶୀନାଥ ସାହୁ, ସୁରେଶ କୁମାର ଅଗ୍ରୱାଲ, ଆଲୋକ ଶିଳ୍ପୀ ଗୌରୀଶଙ୍କର ଅଗ୍ରୱାଲ, ସତ୍ୟନାରାୟଣ ମହାନ୍ତି, ବରଦାକାନ୍ତ ମହାନ୍ତି, ସୁଧାଂଶୁ ନାରାୟଣ ମିଶ୍ର, ପ୍ରଫୁଲ୍ଲ କୁମାର ମଲ୍ଲ ଓ ରେଖାଚିତ୍ର ଶିଳ୍ପୀ ସୁଶୀଳ କୁମାର ପଟ୍ଟନାୟକ ।

ଫେବୃୟାରୀ ମାସ ୪ ତାରିଖ, ୧୯୭୦ ମସିହାରେ ପୂର୍ବଛାତ୍ରାବାସର ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏଥିରେ ଅଧକ୍ଷ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର, ଛାତ୍ରାବାସର ଅଧୀକ୍ଷକ ଜାନକୀ ବଲ୍ଲଭ ମହାନ୍ତି, ଉପଅଧୀକ୍ଷକ ଚିତ୍ତ ରଞ୍ଜନ ମହାନ୍ତି, ମହାବିଦ୍ୟାଳୟ ଅଧ୍ୟାପକ ଓ ଅଧ୍ୟାପିକାଗଣ ଯୋଗଦାନ କରିଥିଲେ । 'ଜାଗରଣ' ଉନ୍ମୋଚନର ଅଠଚାଳିଶତମ ସଂଖ୍ୟାକୁ ମହାବିଦ୍ୟାଳୟର ଅଧକ୍ଷ ପ୍ରଫେସର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର

ଉନ୍ମୋଚନ କରିବା ପରେ ପରେ ଏହା ନିମନ୍ତ୍ରିତ ଅତିଥି ଓ ଅନ୍ତେବାସୀମାନଙ୍କ ମଧ୍ୟରେ ବିତରଣ କରାଯାଇଥିଲା।

ମୋ ଉପରେ ଯେଉଁ ଆଶା ଓ ବିଶ୍ୱାସ ରଖି ଅନ୍ତେବାସୀ ବନ୍ଧୁଗଣ ମୋତେ ସଂପାଦକ ଦାୟିତ୍ୱ ଦେଇଥିଲେ ତାହା ସଂପାଦନ କରିଥିବା ହେତୁ ସେଦିନ ମୁଁ ଆଶ୍ୱସ୍ତ ହୋଇଥିଲି ।

ମାତ୍ର ଏଇ ଐତିହ୍ୟସଂପନ୍ନ ରେଭେନ୍ସା ବିଶ୍ୱବିଦ୍ୟାଳୟର ପୂର୍ବଛାତ୍ରାବାସକୁ ୧୯୧୦ ମସିହାରେ ରେଭେନ୍ସାର ତତ୍କାଳୀନ କର୍ତ୍ତୃପକ୍ଷ ଛାତ୍ରୀନିବାସରେ ପରିଣତ କରିବାକୁ ନିଷ୍ପତ୍ତି ନେଇଥିଲେ । ମାତ୍ର ଏହା ବିପକ୍ଷରେ ଛାତ୍ର ଓ ବୁଦ୍ଧିଜୀବୀମାନଙ୍କ ପକ୍ଷରୁ ପ୍ରତିବାଦର ସ୍ୱର ଉଠିଥିଲା । ସେତେବେଳେ ଓଡିଶାର ପ୍ରମୁଖ ସମ୍ବାଦପତ୍ର ସମାଜରେ ବିଶ୍ୱଜୀବନ ମିଶ୍ରଙ୍କ "କ୍ଷତାକ୍ତ ଐତିହ୍ୟ, ଶ୍ୱାସରୁଦ୍ଧ ସାହିତ୍ୟ ଓ ସମ୍ବେଦନହୀନ କର୍ତ୍ତୃପକ୍ଷ" ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଏଇ ପ୍ରବନ୍ଧରେ ସେ ରେଭେନ୍ସା ବିଶ୍ୱବିଦ୍ୟାଳୟର ପୂର୍ବଛାତ୍ରବାସର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ଲେଖିଥିଲେ, "ଇଷ୍ଟହଷ୍ଟେଲରେ ଆରମ୍ଭ ହୋଇଥିବା ନନ୍‌ସେନ୍‌ସ କ୍ଲବ ପରବର୍ତ୍ତୀ କାଳଖଣ୍ଡରେ ସବୁଜ ଯୁଗର ନିଅଁ ପକାଇଥିଲା । ହାତଲେଖା ଜାଗରଣ ପତ୍ରିକା ଯେତେବେଳେ ୧୯୨୧ ମସିହାରେ ଇଷ୍ଟହଷ୍ଟେଲ (ପୂର୍ବ ଛାତ୍ରବାସ)ରୁ ପ୍ରକାଶିତ ହେଲା, ସେତେବେଳେ ଓଡ଼ିଆ ସାହିତ୍ୟର ଏକ ନୂଆ ଧାରାର ଅୟମାରମ୍ଭ ହେଲା । ସର୍ବଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନ୍ନଦା ଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, ଶରତ ମୁଖାର୍ଜୀ, ହରିହର ମହାପାତ୍ର ଥିଲେ ଏହାର ସ୍ୱପ୍ନଦ୍ରଷ୍ଟା । ମାୟାଧର ମାନସିଂ ଓ୍ୱେଷ୍ଟ ହଷ୍ଟେଲ (ପଶ୍ଚିମ ଛାତ୍ରାବାସ)ର ମୁଖପତ୍ର 'ଉର୍ମି'ର ପ୍ରଥମ ସଂପାଦକ ଥିଲେ । ସର୍ବଶ୍ରୀ ବିନୋଦ ଚନ୍ଦ୍ର ନାୟକ, ବିଭୁଧେନ୍ଦ୍ର ମିଶ୍ର, ଚିନ୍ତାମଣି ପାଣିଗ୍ରାହୀ, ଜାନକୀ ବଲ୍ଲଭ ପଟ୍ଟନାୟକ, ଜାନକୀ ବଲ୍ଲଭ ମହାନ୍ତି, ମହାପାତ୍ର ନୀଳମଣି ସାହୁ, ସେକ୍ ମତଲୁବ୍ ଅଲ୍ଲୀ, ହରପ୍ରସାଦ ଦାସ ଓ ଆହୁରି ଅନେକ ଉର୍ମିର ସଂପାଦକ ଭାବେ ନିଜ ସାହିତ୍ୟିକ ଜୀବନର ଅୟମାରମ୍ଭ କରିଥିଲେ ।"

ପ୍ରାବନ୍ଧିକ ମିଶ୍ର ପୁନଃ ଉଲ୍ଲେଖ କରିଥିଲେ :

"ସର୍ବଶ୍ରୀ ଶ୍ରଦ୍ଧାକର ସୂପକାର, ରମାକାନ୍ତ ରଥ, ସୀତକାନ୍ତ ମହାପାତ୍ର, ଯୋଗେଶ ଚନ୍ଦ୍ର ପତି, ଦିଗରାଜ ବ୍ରହ୍ମା, ହରିହର ପଣ୍ଡା ଆହୁରି ଅନେକ ବେସାଲିସ କଲମ ଚଳାଇବା ଶିଖିଥିଲେ ଜାଗରଣ ପୃଷ୍ଠାରୁ । ଓଡ଼ିଆ ସାହିତ୍ୟର ଏନ୍ତୁଡ଼ିଶାଳ ହେଉଛି ଐତିହାସିକ ରେଭେନ୍‌ସାର ପୂର୍ବ ଓ ପଶ୍ଚିମ ଛାତ୍ରାବାସ । ଓଡ଼ିଆ ସାରସ୍ୱତ ଭଣ୍ଡାର

କହିଲେ କିଛି ବର୍ଷ ପୂର୍ବେ ଏଇମାନଙ୍କୁ ହିଁ ବୁଝାଉଥିଲା ।" (ଦୈନିକ ସମାଜ : ଐତିହ୍ୟ ରେଭେନ୍‌ସାର ଗୌରବ ଗାଥା, ୧ସେପ୍ଟେମ୍ବର, ୨୦୧୦ : ପୃଷ୍ଠା ୧୦)

ସେ ଯାହାହେଉ ବୁଦ୍ଧିଜୀବୀମାନଙ୍କ ପ୍ରୟାସ ଫଳରେ ସଂପ୍ରତି ଐତିହ୍ୟସଂପନ୍ନ ପୂର୍ବ ଛାତ୍ରାବାସ ଓ ଏହାର ମୁଖପତ୍ର 'ଜାଗରଣ' ପୂର୍ବବତ୍ ବଞ୍ଚି ରହିପାରିଛି ।

**କଲେଜ ଜୀବନର ଅନୁଭୂତି**

ରେଭେନ୍‌ସା ମହାବିଦ୍ୟାଳୟର ଜୀବନ ଯେ କେତେ ନିଆରା ଓ କେତେ ଆପଣାର ତାହା ରେଭେନ୍‌ସିଆନ୍‌ମାନେ ଜାଣିଥାନ୍ତି । ଏହାର ଗୌରବୋଜ୍ୱଳ ଇତିହାସ, ସ୍ୱାଧୀନତା ସଂଗ୍ରାମରେ ଅଗଣିତ ତତ୍‌କାଳୀନ ଛାତ୍ରଛାତ୍ରୀମାନଙ୍କର ଯୋଗଦାନ, ବ୍ରିଟିଶ ସରକାର ବିରୋଧରେ ଲଢ଼ିବାର ଅଙ୍ଗୀକାରବଦ୍ଧତା, କର୍ତ୍ତୃପକ୍ଷଙ୍କ ଅଗୋଚରରେ ତତ୍‌କାଳୀନ ବ୍ରିଟିଶରାଜ ହଟାଇବା ପାଇଁ କର୍ମଯୋଜନା, ଓଡ଼ିଶାର ପ୍ରାକ୍ ସ୍ୱାଧୀନତା ଇତିହାସକୁ ସମୃଦ୍ଧ କରିଅଛି । ପାଠପଢ଼ା ସମୟରେ ସେ ସମୟରେ କେତେକ ବରିଷ୍ଠ ଅଧ୍ୟାପକ କଥା ପ୍ରସଙ୍ଗରେ ଆମ୍ଭମାନଙ୍କୁ ଏ ସଂପର୍କରେ କହି ଉଦ୍‌ବୁଦ୍ଧ କରୁଥିଲେ । ଏ ସଂପର୍କରେ ଅନେକ ସମୟରେ ଇତିହାସ ବିଭାଗର ମୁଖ୍ୟ ପ୍ରଫେସର ରାଜେନ୍ଦ୍ର କୁମାର ଦାସ, ଆମ ଇତିହାସ ଅନର୍ସ ଶ୍ରେଣୀରେ କଥା ପ୍ରସଙ୍ଗରେ ମଧ୍ୟ ଆଲୋଚନା କରୁଥିଲେ ।

ଆମେ ଏଇଠାରେ ଦେଶ ବିଦେଶର ବହୁ ବିଦ୍ୱାନଙ୍କ ଭାଷଣ ଶୁଣିବାକୁ ସୁଯୋଗ ପାଇଥିଲୁ । ଆମେ ଯେଉଁମାନଙ୍କ ବକ୍ତବ୍ୟ ଶୁଣିବାକୁ ପାଇଥିଲୁ, ସେମାନେ ହେଲେ ଭାରତର ରାଷ୍ଟ୍ରପତି ଭି.ଭି.ଗିରି, ତତ୍‌କାଳୀନ ଦେଶର ଶିକ୍ଷା ମନ୍ତ୍ରୀ ତ୍ରିଗୁଣାସେନ୍, ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁ, ଡକ୍ଟର ହରେକୃଷ୍ଣ ମହତାବ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂ ଦେଓ, ବିଜୟାନନ୍ଦ ପଟ୍ଟନାୟକ, ଶିକ୍ଷାମନ୍ତ୍ରୀ ବନମାଳି ପଟ୍ଟନାୟକ ଆଦି ଅନେକ ରାଜନୀତିଜ୍ଞ ।

ଆମେ ଯେଉଁ ସାହିତ୍ୟିକମାନଙ୍କ ଚିନ୍ତାଧାରା ସହିତ ପରିଚିତ ହେବାର ସୁଯୋଗ ପାଇଥିଲୁ, ସେମାନେ ହେଲେ ନାଟ୍ୟକାର କାଳିଚରଣ ପଟ୍ଟନାୟକ, ପୌରୁଷର ସଂପାଦକ ଜାନକୀବଲ୍ଲଭ ପଟ୍ଟନାୟକ, ବାଗ୍ମୀପୁରୁଷ ଗୌରୀକୁମାର ବ୍ରହ୍ମା, କଳିଙ୍ଗ ଭାରତୀର ସଭାପତି ଅଧ୍ୟାପକ ରଜତ କୁମାର କର, କବି ରାଧାମୋହନ ଗଡ଼ନାୟକ, ନାଟ୍ୟକାର ବିଜୟ ମିଶ୍ର, ନାଟ୍ୟକାର ଭଞ୍ଜ କିଶୋର ପଟ୍ଟନାୟକ ଓ ଅନ୍ୟାନ୍ୟ ଅନେକ ମାନ୍ୟଗଣ୍ୟ ବ୍ୟକ୍ତିବିଶେଷ ।

ସେତେବେଳେ ମହାବିଦ୍ୟାଳୟ ଓ ଛାତ୍ରାବାସ ପରିସରରେ ଯେଉଁ ଅଧ୍ୟାପକମାନଙ୍କ ଗୁଣାବଳୀ ଚର୍ଚ୍ଚିତ ହେଉଥିଲା, ସେମାନେ ହେଲେ ପ୍ରଫେସର

କୁଞ୍ଜବିହାରୀ ଦାଶ, ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ, ପ୍ରଫେସର କରାମତି ଅଲ୍ଲୀ, ପ୍ରଫେସର ରାଜେନ୍ଦ୍ର କୁମାର ଦାସ, ପ୍ରଫେସର ଗଜେନ୍ଦ୍ର ନାଥ ଆଚାର୍ଯ୍ୟ, ପ୍ରଫେସର ବିଚିତ୍ରାନନ୍ଦ ଆଚାର୍ଯ୍ୟ, ଅଧ୍ୟାପକ ରବିନାରାୟଣ ମିଶ୍ର, ଅଧ୍ୟାପକ ପ୍ରଫୁଲ୍ଲ କୁମାର ମହାନ୍ତି, ଅଧ୍ୟାପକ ସୌଭାଗ୍ୟ କୁମାର ମିଶ୍ର, ଭାଷାବିତ୍ ପ୍ରଫେସର ଗୋଲକ ବିହାରୀ ଧଳ, ଅଧ୍ୟାପକ ଅଶୋକ କୁମାର ରଥ, ରସାୟନବିତ୍ ପ୍ରଫେସର ମହେନ୍ଦ୍ର ରାଉତ, ଅର୍ଥନୀତିଜ୍ଞ କ୍ଷେତ୍ରମୋହନ ପଟ୍ଟନାୟକ ପ୍ରମୁଖ ବ୍ୟକ୍ତିବିଶେଷ ।

ରେଭେନ୍ସାର ମୁକ୍ତ ମଞ୍ଚରେ ଯେଉଁମାନେ ନିଜସ୍ୱ ଶୈଳୀରେ ପାଲା ପରିବେଷଣ କରି ବିଦଗ୍ଧ ଦର୍ଶକଙ୍କୁ ଆପ୍ୟାୟିତ କରିଥିଲେ ସେମାନେ ହେଲେ ପାଲାକାର ହରିନାଥ, ଜଗନ୍ନାଥ ବେହେରା ଓ ସେହି ମହାବିଦ୍ୟାଳୟର ଓଡ଼ିଆ ଭାଷା ଓ ବିଜ୍ଞାନର ଷଷ୍ଠ ବାର୍ଷିକ ଛାତ୍ର ନିରଞ୍ଜନ ପଣ୍ଡା । ଶ୍ରୀଯୁକ୍ତ ପଣ୍ଡା ରେଭେନ୍ସା ପରିସରରେ ଏକାଧିକବାର ପାଲା ପରିବେଷଣ କରି ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ପରବର୍ତ୍ତୀ ସମୟରେ ସେ ରେଭେନ୍ସାର ଅଧ୍ୟାପକ ହେବାର ସୁଯୋଗ ମଧ୍ୟ ଲାଭ କରିଥିଲେ ।

ରେଭେନ୍ସାର ସାଂସ୍କୃତିକ କାର୍ଯ୍ୟକ୍ରମରେ ଯେଉଁମାନେ ସେମାନଙ୍କର ସଙ୍ଗୀତ ମୂର୍ଚ୍ଛନାରେ ଆମକୁ ଆପ୍ୟାୟିତ କରିଥିଲେ, ସେମାନେ ହେଲେ ସଙ୍ଗୀତଜ୍ଞ ପ୍ରଫୁଲ୍ଲ କର, ଅକ୍ଷୟ ମହାନ୍ତି, ପ୍ରଣବ ପଟ୍ଟନାୟକ, ରାଖାଲ ଚନ୍ଦ୍ର ମହାନ୍ତି, ଗୀତା ପଟ୍ଟନାୟକ ଆଦି ବହୁ ସଙ୍ଗୀତଜ୍ଞ ।

ରେଭେନ୍ସାରେ ମୋର ଚାରିବର୍ଷର ରହଣି ମଧ୍ୟରେ ମୁଁ ନାଟ୍ୟ ସଂସଦର ସେକ୍ରେଟାରୀ ଭାବେ ଦୁଇଜଣ ଉଦୀୟମାନ ଛାତ୍ରଙ୍କ ସଂସ୍ପର୍ଶରେ ଆସିଥିଲି ସେମାନେ ହେଲେ ଅଭିନେତା ଓ ବର୍ତ୍ତମାନର ରାଜନୀତିଜ୍ଞ ପ୍ରଶାନ୍ତ ନନ୍ଦ, ଅଭିନେତା ମହମ୍ମଦ ମହସୀନ୍ । ବାର୍ଷିକ ନାଟ୍ୟ ଉତ୍ସବରେ ଅତିଥି ଭାବେ ଆସିଥିବା ବ୍ୟକ୍ତିବିଶେଷଙ୍କ ମଧ୍ୟରେ ଥିଲେ ନାଟ୍ୟକାର କାଳିଚରଣ ପଟ୍ଟନାୟକ, ନାଟ୍ୟକାର ବିଜୟ ମିଶ୍ର, ଅଭିନେତା ହେମନ୍ତ ଦାସ, ନିର୍ଦ୍ଦେଶକ ସାରଦା ପ୍ରସନ୍ନ ନାୟକ ଆଦି ଅନେକ ଅଭିନେତା ତଥା ନାଟ୍ୟ ବିଶାରଦ ।

ରେଭେନ୍ସାରେ ଅଧ୍ୟୟନ ସମୟରେ ମୁଁ ୱାର୍ଦ୍ଧା ପରିଚାଳିତ 'ରାଷ୍ଟ୍ରଭାଷା ରତ୍ନ' ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲି । ଏହି ସମୟର ଏକ ନିଜସ୍ୱ ଅନୁଭୂତି ମୋ ପାଇଁ ଆମୋଦଦାୟକ ହୋଇଥିଲା ।

ଘଟଣାଟି ଥିଲା ଏହିପରି :

ମୁଁ ହିନ୍ଦୀ ସାହିତ୍ୟ ଅଧ୍ୟୟନ କଲାବେଳେ ମୋତେ ଦିଗ୍‌ଦର୍ଶନ ଦେବାକୁ କୌଣସି ବ୍ୟକ୍ତି ନ ଥିଲେ । ଏତଦ୍‌ବ୍ୟତୀତ ହିନ୍ଦୀରେ ଲିଙ୍ଗ ଜ୍ଞାନ ସଂପର୍କରେ ମୋ ସନ୍ଦେହ

ସ୍ୱାଭାବିକ ଭାବରେ କିଛିଟା ଭ୍ରମ ଥିଲା । ହିନ୍ଦୀରେ ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ ନେଇ ବାକ୍ୟର ଗଠନ ମଧ୍ୟ ଅନୁରୂପ ହୋଇଥାଏ । ପୁରୁଷତ୍ୱର ପ୍ରମାଣ ନିଶ, ଦାଢ଼ି ହେଲେ ମଧ୍ୟ ଏହା ହିନ୍ଦୀରେ ସ୍ତ୍ରୀ ଲିଙ୍ଗ ହୁଏ । ସେଥିପାଇଁ ମୁଁ ଯାହା ଲେଖୁଚି; ତାହା କେତେଦୂର ଠିକ୍ ତାହା ପରଖି ନେବା ପାଇଁ ହିନ୍ଦୀ ରାଜ୍ୟ ବିହାରରୁ ଆସି ପୂର୍ବ ଛାତ୍ରାବାସରେ ରହୁଥିବା ଗୋଏଲ ନାମକ ମୋର ସହପାଠୀକୁ ମୋର ଲେଖାକୁ ମଝିରେ ମଝିରେ ସଂଶୋଧନ କରିବାକୁ ଦେଲି । ସେ ନାଲି କଲମ ଧରି ମୋର ପ୍ରତ୍ୟେକ ଧାଡ଼ି କ୍ଷତାକ୍ତ ଓ ରକ୍ତାକ୍ତ କଲେ । ତାଙ୍କ ପରାମର୍ଶ ଅନୁସାରେ ମୁଁ ମୋର ଦୋଷ ଓ ତ୍ରୁଟିକୁ ଯେତେ ସଂଶୋଧନ କରି ପରବର୍ତ୍ତୀ ଲେଖା ଦେଖାଇଲି ତାହା ହିଁ ହେଲା ।

ଦିନେ ମୁଁ ମନେ ମନେ ବିଚାର କଲି ଯଦି ମୋର ପ୍ରତ୍ୟେକ ଧାଡ଼ି ଭୁଲ; ତେବେ ମୁଁ କିପରି ୧୯୬୬ ମସିହାରେ 'କୋବିଦ' ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲି ଓ ମାଟ୍ରିକ୍ ପରୀକ୍ଷାରେ  ହିନ୍ଦୀରେ ୫୦ ନମ୍ବର ମଧ୍ୟରୁ ୩୭ ନମ୍ବର ରଖିଥିଲି । ତେଣୁ ମୋ ମନ ମଧ୍ୟରେ ସାଥୀ ଗୋଏଲର ସଂଶୋଧନ ଉପରେ ସ୍ୱାଭାବିକ ଭାବେ ସନ୍ଦେହ ଦେଖାଦେଲା ।

ହିନ୍ଦୀ ସାହିତ୍ୟର ଜଣେ ଖ୍ୟାତିସଂପନ୍ନ ଭାଷାବିତ୍ ହେଉଛନ୍ତି ଶ୍ୟାମ ସୁନ୍ଦର ଦାସ । ତାଙ୍କର ଭାଷା ବିଜ୍ଞାନ ରତ୍ନ ପରୀକ୍ଷାରେ ଚଳୁଥାଏ । ମୁଁ ସେଥିରୁ ଗୋଟିଏ ଅନୁଚ୍ଛେଦ ଉତ୍ତାରିଲି । ସେଦିନ ସନ୍ଧ୍ୟାବେଳେ ଗୋଏଲଙ୍କୁ କହିଲି, "ଆଜି ବିଶେଷ କିଛି ଲେଖି ପାରିଲି ନାହିଁ । କେବଳ ଅଳ୍ପ ଲେଖିଛି ।"

ବନ୍ଧୁ ଗୋଏଲ  ଆଗ୍ରହର ସହିତ ଖାତାଟିକୁ ମୋ ହାତରୁ ନେଲା । ନାଲି କଲମ ଧରି ପୂର୍ବବତ୍ ବାକ୍ୟଗୁଡ଼ିକୁ କ୍ଷତାକ୍ତ ଓ ରକ୍ତାକ୍ତ କଲା । ମୁଁ ଆଉ ଧୈର୍ଯ୍ୟଧରି ପାରିଲି ନାହିଁ । ହସି ହସି ଉତ୍ତାରି ଥିବା ଶ୍ୟାମ ସୁନ୍ଦର ଦାସଙ୍କ ଅନୁଚ୍ଛେଦଟି ମୁଁ ବନ୍ଧୁ ଗୋଏଲକୁ ଦେଖାଇ କହିଲି, "ଗୋଏଲ ଭାଇ ! ସବୁଠାରୁ ଚମତ୍କାର କଥା ହେଲା ହିନ୍ଦୀ ସାହିତ୍ୟର ଭାଷାବିତ୍‌ଙ୍କୁ ମଧ୍ୟ ହିନ୍ଦୀ ଭାଷା ଜଣା ନାହିଁ ।"

ବନ୍ଧୁ ଗୋଏଲ; ମୋ କଥା ଶୁଣି ନୀରବ ରହିଲେ । କିଛିକ୍ଷଣ ପରେ ସେ ସ୍ଥାନ ଛାଡ଼ି ଚାଲିଗଲେ ।

ସେଇଦିନଠାରୁ ମୋ ଲେଖାକୁ ନେଇ ମୋତେ ଆଉ ବନ୍ଧୁ ଗୋଏଲଙ୍କୁ ଦେବାକୁ ପଡ଼ିଲା ନାହିଁ । ରେଭେନ୍ସାରେ ପଢୁଥିବା ବେଳେ ୧୯୬୬ ମସହାରେ ମୋର ପ୍ରଥମ କବିତା ପୁସ୍ତକ "ପ୍ରଭାତୀ ତାରା" ପ୍ରକାଶ ପାଇଥିଲା । ୧୯୬୯ ମସିହାରେ ପ୍ରଥମ ଉପନ୍ୟାସ "ସେ ମନ ବିହଙ୍ଗୀ" ଦିନର ଆଲୋକ ଦେଖିଥିଲା । ୧୯୭୦ ମସିହାରେ

"ମହାପୁରୁଷ ହାଡ଼ିଦାସ" ନାମକ ଏକ କ୍ଷୁଦ୍ରପୁସ୍ତକ ପ୍ରକାଶିତ ହୋଇଥିଲା । ଏହାକୁ ମୋର ପୂଜ୍ୟ ପ୍ରଧାନଶିକ୍ଷକ ଧନେଶ୍ୱର ସାମଲ ଆବଶ୍ୟକସ୍ଥଳେ ସଂଶୋଧନ କରିଥିଲେ । ମୁଖବନ୍ଧ ଲେଖିଥିଲେ ପଣ୍ଡିତ ପ୍ରବୋଧ ମିଶ୍ର ।

**କଲେଜ ଜୀବନର ଯବନିକା**

୧୯୭୦ ମସିହା ମେ ମାସରେ ମୋର ବି.ଏ (ଇତିହାସରେ ସମ୍ମାନ) ପରୀକ୍ଷା ଶେଷ ହୋଇଥିଲା । ସେ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ପରିଚାଳିତ ବି.ଏ ପରୀକ୍ଷାର ଇଂରାଜୀ ପ୍ରଶ୍ନପତ୍ର ବହୁତ କଠିନ ଓ କେତେକ ପ୍ରଶ୍ନ ସିଲାବସ ବହିର୍ଭୁକ୍ତ ଥିଲା । ତେଣୁ ଇଂରାଜୀରେ ଫେଲ ହୋଇଯିବା ଆଶଙ୍କା ଅଧିକାଂଶ ପିଲାମାନଙ୍କର ଥିଲା । ଇଂରାଜୀରେ ଉତ୍ତୀର୍ଣ୍ଣ ହୋଇଯିବି ବୋଲି ମୋର ପୂର୍ଣ୍ଣ ବିଶ୍ୱାସ ଥିଲା ।

ପରୀକ୍ଷା ସରିବା ପରେ ପରେ ଆମେ ପୂର୍ବଛାତ୍ରାବାସରୁ ବିଦାୟ ନେଲୁ । ଇତିହାସରେ ରେଭେନ୍ସାରେ ଏମ୍.ଏ. ନ ଥିବା ହେତୁ ମୋର ଆଉ ରେଭେନ୍ସା ଫେରିବାର ସମ୍ଭାବନା ନ ଥିଲା । ତେଣୁ ରେଭେନ୍ସା ଛାଡ଼ିବା ପରେ ପରେ କଲେଜ ଜୀବନର ପରିସମାପ୍ତି ଘଟିଲା ।

ସେ ବର୍ଷ ଡିଗ୍ରୀସ୍ତରୀୟ ଇଂରାଜୀ ପରୀକ୍ଷାର ପ୍ରଶ୍ନପତ୍ର ଅତି କଠିନ ଓ ସିଲାବସ୍ ବହିର୍ଭୁକ୍ତ ହୋଇଥିବା ହେତୁ ଅଧିକାଂଶ ପିଲା ଯେ ପରୀକ୍ଷାରେ ଅନୁତ୍ତୀର୍ଣ୍ଣ ହେବେ ଏକଥା ବିଭିନ୍ନ ସମ୍ବାଦପତ୍ରରେ ବାହାରିଲା । କାଳେ ମୁଁ ପରୀକ୍ଷାରେ ଫେଲ୍ ହୋଇଯିବି, ସେଥିପାଇଁ ପରୀକ୍ଷାଫଳ ପ୍ରକାଶନ ପୂର୍ବରୁ ବାପା ମୋତେ ବାରମ୍ବାର କହୁଥିଲେ, "ଯଦି ପରୀକ୍ଷାରେ ଫେଲ୍ ହୋଇଯାଉ ତେବେ ବ୍ୟସ୍ତ ହେବୁ ନାହିଁ । ସପ୍ଲିମେଣ୍ଟାରୀରେ ପରୀକ୍ଷା ଦେବୁ ।"

ମୁଁ ପରୀକ୍ଷାରେ ପାଶ୍ କଲେ କେଉଁଠି ପଢ଼ିବି ବୋଲି ଯଦି କେହି କେହି ବାପାଙ୍କୁ କଥା ପ୍ରସଙ୍ଗରେ ତାଙ୍କର ସାଙ୍ଗସାଥୀ ଓ ଶିକ୍ଷକ ବନ୍ଧୁ ପ୍ରଶ୍ନ କରୁଥିଲେ, ତେବେ ସେ କହୁଥିଲେ, "ସେ ଆଗେ ପାଶ୍ କରୁ । ପରେ ଦେଖିବା ।"

୧୯୭୦ ମସିହା ଜୁଲାଇ ମାସ ପରୀକ୍ଷାଫଳ ପ୍ରକାଶନର ସମୟ ଆସିଗଲା । ମୁଁ ଯାଇ ପୂର୍ବ ଛାତ୍ରବାସର ମୋର ପୂର୍ବ ପରିଚିତ ଜଣେ ଅନ୍ତେବାସୀଙ୍କ ପାଖରେ ପହଞ୍ଚିଲି । ସେଠାରେ ମଧ୍ୟ ପରୀକ୍ଷାଫଳକୁ ଅପେକ୍ଷା କରି ରହିଥିବା ଅନ୍ୟ କେତେକ ବନ୍ଧୁ ଥିଲେ । ସେମାନେ ମୋତେ କହିଲେ, "ଦିଗରାଜ ! ତୁମେ ଆସିଲ ଭଲ ହେଲା । ଆଗାମୀ କାଲି ସିଣ୍ଡିକେଟ୍ ଅଧିବେଶନ ବସିବ ଓ ଆମ ପରୀକ୍ଷା ଫଳ ପ୍ରକାଶିତ ହେବ । ଆମେ

ସମସ୍ତେ ଦିନ ନଅଟା ବେଳେ କଟକ ଷ୍ଟେସନରୁ ତାଳଚେର ଗାଡ଼ିରେ ବାଣୀବିହାର ଷ୍ଟେସନ ଯିବା । ସିଣ୍ଡିକେଟ୍ ମିଟିଙ୍ଗ୍ ଦେଖିବା ଓ ପରୀକ୍ଷା ଫଳ ଜାଣିବା ।"

ମୁଁ ଏ ମଉକାକୁ ହାତଛଡ଼ା କଲି ନାହିଁ । ପରଦିନ ସେମାନଙ୍କ ସହିତ କଟକ ଷ୍ଟେସନ୍‌ରୁ ବାଣୀବିହାର ଷ୍ଟେସନ ଗଲି । ସେଠାରୁ ଚାଲିଚାଲି ଆମେ ସିଣ୍ଡିକେଟ ହଲ ନିକଟରେ ପହଞ୍ଚିଲୁ । ଦିନ ପ୍ରାୟ ୧୧ଟା୩୦ ମିନିଟ୍‌ରେ ସିଣ୍ଡିକେଟ୍‌ର ଅଧିବେଶନ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଆରମ୍ଭ ହେଲା । ଆମେ ସିଣ୍ଡିକେଟ୍ ଆଲୋଚନାର ଦୃଶ୍ୟ କୋଠରିର ବାହାରେ ଥାଇ ଝରକା ନିକଟରେ ଦେଖିଲୁ ।

ଆଲୋଚନାର ପ୍ରାରମ୍ଭରେ ରାଜନୀତି ବିଜ୍ଞାନର ପ୍ରଫେସର ତଥା ସିଣ୍ଡିକେଟ୍ ମେମ୍ବର ପ୍ରଫେସର ଶ୍ରୀରାମ ଚନ୍ଦ୍ର ଦାଶ ରେଜିଷ୍ଟ୍ରାର ଡ଼ି.ପି ବରାଇଙ୍କୁ ଲକ୍ଷ୍ୟ କରି କେତୋଟି ପ୍ରଶ୍ନ ପଚାରିଲେ । ପ୍ରଥମ ପ୍ରଶ୍ନ ହେଲା – "ବିଶ୍ୱବିଦ୍ୟାଳୟର ଜଣେ କର୍ମକର୍ତ୍ତା ତାଙ୍କ ନାତୁଣୀ ଯିଏ କି ଗୋଟିଏ ବିଷୟରେ ଫେଲ୍ ହୋଇଥିଲେ, ଟାବୁଲେଟରଙ୍କୁ ଧରି ତା'ର ନମ୍ବର ବଦଳେଇ ଦେଇଥିଲେ । ତାର ଅନୁସନ୍ଧାନ ପାଇଁ ସେ ଲେଖିଥିଲେ । ସେ ଅନୁସନ୍ଧାନର ଫଳାଫଳ କ'ଣ ହେଲା ?"

ଝରକା ପାଖରେ କିଛି ଛାତ୍ରନେତା ସଙ୍ଗେ ସଙ୍ଗେ ଚିତ୍କାର କଲେ, "ତୁମ ନାତୁଣୀ ଫେଲ ହେଲେ ପାଶ୍ କରିବ, ଆମ ପଛରେ କେହି ନାହାଁନ୍ତି ବୋଲି କ'ଣ ଆମେ ଫେଲ ହେବୁ ?"

ପ୍ରଫେସର ଦାଶଙ୍କ ପରବର୍ତ୍ତୀ ପ୍ରଶ୍ନ ଥିଲା, "ଗଲାବର୍ଷ ବି.ଏ ଇଂରାଜୀ ପରୀକ୍ଷାରେ ସିଲାବସ ବହିର୍ଭୁକ୍ତ ପ୍ରଶ୍ନ ପଡ଼ିଥିଲା । ଏ ବର୍ଷ ଜଣେ ପ୍ରଫେସରଙ୍କୁ ସିଲାବସ ବହିର୍ଭୁକ୍ତ ପ୍ରଶ୍ନ ଆସିନାହିଁ ବୋଲି ପ୍ରଶ୍ନପତ୍ର ତନଖି ପ୍ରମାଣପତ୍ର ଦେବାକୁ କୁହାଯାଇଥିଲା । ସେ ଦାୟିତ୍ୱ ପ୍ରଫେସର ବିଧୁଭୂଷଣ ଦାସ ନେଇଥିଲେ । ସେଥିପାଇଁ ତାଙ୍କୁ ବିଶ୍ୱବିଦ୍ୟାଳୟ ତରଫରୁ ପଚାଶ ଟଙ୍କା ଦିଆଯାଇଅଛି । ସେ ପଇସା ନେଇ କ'ଣ ଦେଖିଥିଲେ ? ସେ ଅର୍ଥକୁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ତାଙ୍କଠାରୁ ଫେରସ୍ତ ଆଣିବାକୁ କି ପଦକ୍ଷେପ ନେବେ ?"

ତାଙ୍କର ପ୍ରଶ୍ନ ଶୁଣି ସିଣ୍ଡିକେଟ ହଲର ଦରଜା ଓ ଝରକା ପାଖରେ ଠିଆ ହୋଇଥିବା ପିଲାମାନେ ଚିତ୍କାର କଲେ, "ଆପଣମାନେ ଚୁପ ହୋଇ ବସିଛନ୍ତି କାହିଁକି ? କ'ଣ ପ୍ରଫେସର ଦାଶଙ୍କ ଉତ୍ତର ଦେବାକୁ ସାହସ ନାହିଁ ?"

ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶଙ୍କ ତୃତୀୟ ପ୍ରଶ୍ନ ଅତୀବ ବାସ୍ତବିକ ଓ ଗୁରୁତ୍ୱପୂର୍ଣ୍ଣ ଥିଲା । ତାଙ୍କର ଅଭିଯୋଗ ହେଲା "ରେଭେନ୍ସା ମହାବିଦ୍ୟାଳୟର ଜଣେ ପ୍ରଫେସର

ବିଶ୍ୱବିଦ୍ୟାଳୟ ପରିଚାଳିତ ପ୍ରଥମ ବାର୍ଷିକ ବିଜ୍ଞାନ ପରୀକ୍ଷାର ଗଣିତ ପ୍ରଶ୍ନ କରି ରାଜ୍ୟର ଏକ ସୁନାମଧନ୍ୟ ମହାବିଦ୍ୟାଳୟର ଅଧ୍ୟକ୍ଷଙ୍କ ପୁଅ ପାଇଁ ଏକ କିତା ନକଲ ତାଙ୍କ ଘରକୁ ପଠାଇଥିଲେ । ସେ ପିଲା ପୂର୍ବରୁ ପ୍ରଶ୍ନ ଜାଣି ଓ ତଦନୁଯାୟୀ ପ୍ରସ୍ତୁତ ହୋଇ ସମଗ୍ର ଓଡ଼ିଶାରେ ସେ ବର୍ଷ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲା । ଏହାର ଅନୁସନ୍ଧାନ ନିମନ୍ତେ ଯେଉଁ ଅଭିଯୋଗ ଆସିଥିଲା ସେ ସଂପର୍କରେ ବିଶ୍ୱବିଦ୍ୟାଳୟ ତରଫରୁ କି କାର୍ଯ୍ୟାନୁଷ୍ଠାନ ନିଆଗଲା ?"

ଏହିପରି ଗଣ୍ଡଗୋଳ ଚାଲିଥିବା ବେଳେ ବିଶ୍ୱବିଦ୍ୟାଳୟର ଜଣେ ଚତୁର୍ଥ ଶ୍ରେଣୀ କର୍ମଚାରୀ ପିଲାଙ୍କଠାରୁ ଦଶ ଦଶ ଟଙ୍କା ନେଇ କାହାର ପରୀକ୍ଷାଫଳ କ'ଣ ହୋଇଛି କାର୍ଯ୍ୟାଳୟରୁ ବୁଝି କହିଲା । ମୁଁ ଯେତେବେଳେ ମୋ ପରୀକ୍ଷାଫଳ ବୁଝିବାକୁ ଚେଷ୍ଟାକଲି, ସେତେବେଳକୁ ଦଳେ ପିଲା ଜୋର ଜବରଦସ୍ତ ସିଣ୍ଡିକେଟ୍ ହଲ ମଧ୍ୟକୁ ପଶିଗଲେ । ଜନୈକ ଛାତ୍ରନେତା ପ୍ରଫେସର ଦାଶଙ୍କୁ ପ୍ରଶ୍ନ କଲେ, "ସାର୍ ! ଆମେ କ'ଣ ଆଜି ଏମାନଙ୍କୁ ଘେରାଉ କରିବୁ ?"

ପ୍ରଫେସର ଦାଶ କିଛି କହିଲେ ନାହିଁ । ସେ ସଙ୍ଗେ ସଙ୍ଗେ ସିଣ୍ଡିକେଟ୍ ହଲ ଛାଡ଼ି ଚାଲି ଆସିଲେ । ଆମେ ରେଭେନ୍ସାରୁ ଯାଇଥିବା ପରୀକ୍ଷାର୍ଥୀମାନେ କଟକ ଫେରି ଆସିଲୁ ।

ସେଦିନ ପରୀକ୍ଷାଫଳ ପ୍ରକାଶିତ ହେଲା ନାହିଁ । ତା'ପର ଦିନ ସକାଳୁ ସକାଳୁ ଆମେ ଶୁଣିଲୁ ଯେ ରାତିରେ ସିଣ୍ଡିକେଟ୍ ଅନୁମୋଦନ କ୍ରମେ ଆମ ପରୀକ୍ଷାଫଳ ପ୍ରକାଶିତ ହୋଇଅଛି ।

ପ୍ରଫେସର ଦାଶ ସିଣ୍ଡିକେଟ ସଦସ୍ୟ ହୋଇଥିବା ହେତୁ ତାଙ୍କ ପାଖରେ ଫଳାଫଳ ସଂପର୍କୀୟ ବିଜ୍ଞପ୍ତି ଥିବ ବୋଲି ଆମେ ତାଙ୍କ ଘରକୁ ପ୍ରାୟ ସକାଳ ୮.୩୦ରେ ଯାଇ ପହଞ୍ଚିଲୁ ।

ସେ ପରୀକ୍ଷାଫଳ ବାହାରି ନାହିଁ ବୋଲି କହିଲେ । ଏହି ସମୟରେ ସିଣ୍ଡିକେଟ୍ ମେମ୍ବରମାନଙ୍କୁ ବାଣୀବିହାରରେ ଘେରାଉ କରିବା ପାଇଁ ଯେଉଁ ଛାତ୍ରନେତା ପ୍ରଫେସର ଦାଶଙ୍କ ଅନୁମତି ଲୋଡ଼ୁଥିଲେ, ସେ ଯାଇଁ ସେଠାରେ ପହଞ୍ଚିଲେ ।

ତାଙ୍କୁ ଦେଖି ପ୍ରଫେସର ଦାଶ ବିନା ବିରକ୍ତିରେ କହିଲେ, "ପଞ୍ଚାନନ ! ତୁ କ'ଣ ସିଣ୍ଡିକେଟ ମେମ୍ବରଙ୍କୁ ଘେରାଉ କରିବୁ କି ନ କରିବୁ ମୋତେ ପଚାରୁଛୁ ଅଧିବେଶନ ଛାଡ଼ିଲାବେଳେ ? ଶ୍ରୀରାମ ଦାଶ ଯେଉଁଠି ଯେଉଁ ପରିସ୍ଥିତିରେ ଠିଆ ହୁଏ ସେ ତାର ନିଜ ବୁଦ୍ଧି ଓ ବିବେକ ଅନୁଯାୟୀ ଠିଆ ହୋଇଥାଏ ଓ କଥା କହୁଥାଏ ।"

ସେଦିନ ପରୀକ୍ଷାଫଳ ପ୍ରକାଶନ ହେବାର ସମ୍ଭାବନା ନ ଥିବାରୁ ମୁଁ ଘରକୁ ଫେରି ଆସିଲି । ତା'ର ଦିନ ଦୁଇ ଦିନ ପରେ ପରୀକ୍ଷାଫଳ ପ୍ରକାଶିତ ହେଲା । ଏହି ପରୀକ୍ଷାଫଳ ଏତେ କମ୍ ହୋଇଥିଲା ଯେ, ଅଧିକାଂଶ ପିଲା ଇଂରାଜୀ ଯୋଗୁଁ ଫେଲ୍ ହୋଇଗଲେ । ଆମ ଇତିହାସ ସମ୍ମାନ (History Honours)ର ୩୨ ଜଣ ପିଲାଙ୍କ ମଧ୍ୟରୁ ପ୍ରାୟ ୧୫/୧୬ ଜଣ ଉତ୍ତୀର୍ଣ୍ଣ ହୋଇଥିଲେ ।

ମୁଁ ଇତିହାସ ସମ୍ମାନରେ ଦ୍ୱିତୀୟ ଶ୍ରେଣୀ ରଖି ବି.ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲି । ପ୍ରକାଶ ଥାଉକି ସେ ବର୍ଷ କଦର୍ଯ୍ୟ ପରୀକ୍ଷାଫଳକୁ ଆଖି ଆଗରେ ରଖି ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ପୁନଃ ବିଚାର କରି ଦ୍ୱିତୀୟ ଥର ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକ ପରୀକ୍ଷାଫଳ ପ୍ରକାଶ କରିଥିଲେ । ଏହା ହୁଏତ ବିଶ୍ୱବିଦ୍ୟାଳୟ ଇତିହାସରେ ପ୍ରଥମ ଥିଲା ।

ମାତ୍ର ସେଦିନର ସିଣ୍ଡିକେଟ୍ ସଭାରୁ ରେଜିଷ୍ଟାର ଡ଼ି.ପି ବରାଇଙ୍କ ପ୍ରତି ପ୍ରଫେସର ଦାଶଙ୍କ ପ୍ରଶ୍ନ ଓ ତାଙ୍କର ଶେଷ ପର୍ଯ୍ୟନ୍ତ ନୀରବତାରୁ ମୋଭଳି ଅନେକ ଛାତ୍ରଙ୍କର ସ୍ପଷ୍ଟ ଧାରଣା ହେଲା ଯେ ପ୍ରଫେସର ଦାଶଙ୍କ ଭଳି ସ୍ପଷ୍ଟବାଦୀ ମଣିଷ ନ ଥିଲେ, ବିଶ୍ୱବିଦ୍ୟାଳୟର କେତେକ କାର୍ଯ୍ୟନିର୍ବାହୀଙ୍କ ଆଚରଣ ଅଧିକରୁ ଅଧିକତର କଳୁଷିତ ହୋଇଥାନ୍ତା ।

ତାଙ୍କର ନିର୍ଭୀକ ଓ ସ୍ପଷ୍ଟ କଥା ଯୋଗୁଁ ସେ ଜୀବନରେ ଅନେକ ଲୋକଙ୍କର ଶତ୍ରୁ ମଧ୍ୟ ହୋଇଥିଲେ । ସମଗ୍ର ଭାରତ ବର୍ଷରେ ଆଇ.ଏ.ଏସ୍ ପରୀକ୍ଷାରେ ପ୍ରଥମ ହୋଇ ମଧ୍ୟ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବଙ୍କ ପ୍ରତିକୂଳ ମନ୍ତବ୍ୟ ଯୋଗୁଁ ସର୍ବଭାରତୀୟ ପ୍ରଶାସନିକ ସେବାରୁ ବଞ୍ଚିତ ହୋଇଥିଲେ ।

**ଜୀବନ ସଂଗ୍ରାମର ଅଥମାରମ୍ଭ**

ପ୍ରତ୍ୟେକ ମଣିଷର ଜୀବନ ହେଉଛି ଗୋଟିଏ ଗୋଟିଏ ସଂଗ୍ରାମର କ୍ଷେତ୍ର । ଯେଉଁମାନେ ଛାତ୍ରାବସ୍ଥାରେ ପିତାମାତାଙ୍କ ସାମାଜିକ ଓ ଆର୍ଥିକ ସ୍ଥିତିର ଛାୟାତଳେ ରହିଥାନ୍ତି, ହୁଏତ ସେମାନେ ସେତେବେଳେ ବଞ୍ଚିବାର ସଂଗ୍ରାମକୁ ସେତେ ପାଖରୁ ଦେଖି ନାହାଁନ୍ତି । ମାତ୍ର ଯେଉଁମାନେ ପିଲାଦିନୁ ଆଗାମୀ ଜୀବନର ସ୍ୱପ୍ନ ଦେଖି ନିଜର ସ୍ଥିତି ସହିତ ସଂଗ୍ରାମ କରି ଆଗେଇ ଆଗେଇ ଚାଲିଥାନ୍ତି, ସେମାନେ ଜୀବନ ଯେ କେତେ ଦୁଃଖମୟ ତାହା ଅନୁଭବ କରିଥାନ୍ତି ।

ତାହାହିଁ ଘଟିଥିଲା ମୋର ଜୀବନରେ । ସ୍ୱଳ୍ପ ବେତନଭୋଗୀ ବାପାଙ୍କ କରଛାୟା ତଳେ ବଢ଼ି ଆସୁଥିବା ମୋର ଜୀବନର ସଂଗ୍ରାମ ଉତ୍କଟ ହେଲା, ଯେତେବେଳେ ସେ

ରେଭେନ୍‌ସାରେ ମୁଁ ପ୍ରଥମ ବର୍ଷ ପଢୁଥିଲାବେଳେ ପ୍ରାଥମିକ ଶିକ୍ଷକ ପଦରୁ ଅବସର ନେଲେ । ଏ ପ୍ରକାରର ପରିସ୍ଥିତିକୁ ଲକ୍ଷ୍ୟ କରି ଦିନେ ବାପାଙ୍କୁ କହିଲି, "ମୁଁ ଜାତୀୟ ଋଣ ବୃତ୍ତି (National Loan Scholarship) ପାଇଁ ଦରଖାସ୍ତ କରିବି, ସେ ମୋତେ ସାଙ୍ଗେ ସାଙ୍ଗେ ମନା କଲେ । କହିଲେ, "ଆମ ପରିବାରର ପୂର୍ବପୁରୁଷ ଜମିଦାର ଥିଲେ । ଏମାନେ କେବେ କାହାଠାରୁ ଋଣ ନିଅନ୍ତି ନାହିଁ । ତେଣୁ ଆମେ କାହିଁକି ସରକାରଙ୍କଠାରୁ ଋଣ ଆଣିବା ?"

ମୁଁ ନୀରବ ରହିଲି, ଯେଉଁ ଅଳ୍ପ ପଇସା ଘରୁ ଆଣୁଥିଲି ସେଥିରେ ମେସ୍ ଖର୍ଚ୍ଚ ଦେଇ ବହିପତ୍ର କିଣିବା କଷ୍ଟକର ଥିଲା । ତେଣୁ ମୁଁ ତାଙ୍କ ଅଗୋଚରରେ ଜାତୀୟ ଋଣ ବୃତ୍ତି ପାଇଁ ଦରଖାସ୍ତ କଲି । ଏଇ ଋଣବୃତ୍ତି ନେଉଥିବା ଛାତ୍ରଛାତ୍ରୀ ଶିକ୍ଷକତା କଲେ ଋଣ ଫେରେଇବେ ନାହିଁ ବୋଲି ଏକ ସର୍ତ୍ତ ଥିଲା । ତେଣୁ ଦରଖାସ୍ତ କରିବା ଦିନ ଶିକ୍ଷକତା କରିବା ନିମନ୍ତେ ମୁଁ ମନସ୍ଥ ମଧ୍ୟ କରିଥିଲି ।

ମୋ ସପକ୍ଷରେ ଭାରତ ସରକାରଙ୍କଠାରୁ ଋଣବୃତ୍ତି ଚାରିବର୍ଷ ପାଇଁ ମିଳିଥିଲା । ପ୍ରତିବର୍ଷ ମୁଁ ସାତଶହ କୋଡ଼ିଏ ଟଙ୍କା ହିସାବରେ ସର୍ବମୋଟ ଟ୨୮୮୦ଙ୍କା ପାଇଥିଲି । ଏହା ଫଳରେ ବାପାଙ୍କ ଉପରେ ବିଶେଷ ଆର୍ଥିକ ଚାପ ପଡ଼ି ନ ଥିଲା । ବାପା ମୋତେ ପ୍ରଥମ ଦୁଇବର୍ଷ ମାସିକ ସତୁରୀ ଟଙ୍କା ହିସାବରେ ପାଠ ପଢ଼ିବାକୁ ଦେଇଥିଲେ । ଅନ୍ୟ ଦୁଇବର୍ଷ ମୁଁ ଜାତୀୟ ଋଣ ବୃତ୍ତି ଟଙ୍କାରେ ପାଠ ପଢ଼ିଥିଲି ।

୧୯୭୦ ମସିହାରେ ଇତିହାସରେ ବିଏ (ଅନର୍ସ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ମୁଁ ବାଣୀବିହାରରେ ଇତିହାସରେ ଏମ୍.ଏ ଅଧ୍ୟୟନ ନିମନ୍ତେ ମନସ୍ଥ କରିଥିଲି । ଦିନେ ମୋର ଉଦ୍ଦେଶ୍ୟ ବାପାଙ୍କୁ କହିଲି । ବି.ଏ. ପାଶ୍ କଲେ ଏମ୍.ଏ ପଢ଼େଇବା ପାଇଁ ବାପା ମଧ୍ୟ ଅନେକ ସମୟରେ ମତେ କହିଥିଲେ । ସେଦିନ କିନ୍ତୁ ସେ ମୋତେ କହିଲେ, "ତୁ ଏତିକିରେ ସନ୍ତୁଷ୍ଟ ରହ । ତୋତେ ଆଉ ଅଧିକ ପଢ଼ାଇବାର ସାମର୍ଥ୍ୟ ମୋର ନାହିଁ । ଯଦି କହିବୁ, କିଛି ଜମି ବିକି ତୋତେ ପଢ଼ାଇବି ।" ବାପାଙ୍କ ମୁହଁରୁ ଏପରି କଥା ଶୁଣି ସେଦିନ ଉତ୍କଳ ବିଶ୍ୱବିଦ୍ୟାଳୟର ବାଣୀବିହାରରୁ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିବାକୁ ମୁଁ ଦୀର୍ଘଦିନରୁ ଯେଉଁ ସ୍ୱପ୍ନ ଦେଖୁଥିଲି, ତାହା କ୍ଷଣିକ ମଧ୍ୟରେ ଭାଙ୍ଗି ଚୁରମାର ହୋଇଗଲା ।

ମୁଁ ବାପାଙ୍କୁ କିଛି କହିଲି ନାହିଁ । ମୋ ଆଖିରୁ ଆପେ ଆପେ ଦୁଇବୁନ୍ଦା ଲୁହ ନିଗିଡ଼ି ଆସିଲା । ମୁଁ ସେ ସ୍ଥାନରୁ ଚାଲି ଆସିଲି । ମନେ ମନେ ଭାବିଲି ହୁଏତ ତାଙ୍କର ଆର୍ଥିକ ପରିସ୍ଥିତି ଅନୁକୂଳ ହୋଇନଥିବା ହେତୁ ସେ ଏପରି ନିଷ୍ପତ୍ତି ନେଇଛନ୍ତି ।

## ହରଭଙ୍ଗା ଅଭିମୁଖେ

ଆମ ଗାଁକୁ ଲାଗି ଗଣେଶ୍ୱରପୁର ଗ୍ରାମ । ସେଇ ଗ୍ରାମର ସନ୍ଧିଆସୀ ପରିବାରର ଯଥେଷ୍ଟ ସୁନାମ ରହିଅଛି । ସେଇ ପରିବାରରେ ଫୁଲବାଣୀ ଅଞ୍ଚଳର ଜଣେ ବିଦ୍ୱାନ ବ୍ୟକ୍ତି ପୂର୍ଣ୍ଣଚନ୍ଦ୍ର ପଣ୍ଡା ଘର ଜୋଇଆଁ ହୋଇ ଗଣେଶ୍ୱରପୁରରେ ରହୁଥିଲେ । ସେ ବି.ଏସି., ବି.ଏଡ୍ ଯୋଗ୍ୟତା ସଂପନ୍ନ ଥିଲେ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଶିକ୍ଷକତା କରିବାରେ ସେ ଆନନ୍ଦ ପାଉଥିଲେ । ସେ ଏତେ ସତ୍‌ଚରିତ୍ର ଓ ନ୍ୟାୟବାନ୍ ଥିଲେ ଯେ କୌଣସି ସ୍ଥାନରେ କର୍ତ୍ତୃପକ୍ଷଙ୍କ ସହିତ ନ ପଡ଼ିଲେ ଚାକିରି ଛାଡ଼ି ଘରେ ବସୁଥିଲେ । ଏପରିକି ସରକାରୀ ଉଚ୍ଚବିଦ୍ୟାଳୟର ଚାକିରିକୁ ମଧ୍ୟ ପରିତ୍ୟାଗ କରୁଥିଲେ । ସେ ସମୟରେ ରାଜ୍ୟରେ ତାଲିମପ୍ରାପ୍ତ ଶିକ୍ଷକଙ୍କର ଘୋର ଅଭାବ ଥିବାରୁ ତାଙ୍କୁ ନୂତନ ଭାବେ ଉଚ୍ଚବିଦ୍ୟାଳୟ ଖୋଲୁଥିବା କର୍ତ୍ତୃପକ୍ଷ ପ୍ରଧାନଶିକ୍ଷକ ପଦବୀରେ ଅବସ୍ଥାପିତ କରି ନେଇଯାଉଥିଲେ ।

ଆମେ ଗାନ୍ଧିଶିକ୍ଷାଶ୍ରମରେ ପଢୁଥିଲାବେଳେ ଅନେକ ସମୟରେ ତାଙ୍କ ସହିତ ରାସ୍ତାଘାଟରେ ଦେଖା ହେଉଥିଲା । ଆମେ ତାଙ୍କୁ ନମସ୍କାର କରିବା ମାତ୍ରେ ସେ ସାଇକେଲରୁ ସାଙ୍ଗେ ସାଙ୍ଗେ ଓହ୍ଲାଇ ଆମ ସହିତ ଆମ ପାଠପଢ଼ା ସଂପର୍କରେ ଆଲୋଚନା କରୁଥିଲେ ।

ମାଧ୍ୟମିକ ଶିକ୍ଷା ସ୍ତରରେ ପଢୁଥିଲାବେଳେ ଗଣିତ (Mathematics) ମୋର ଇଚ୍ଛାଧୀନ ବିଷୟ ଥିଲା । ଡିଡ଼କ୍‌ସନ (Deduction) ଭଲ ହେଉ ନ ଥିବା ହେତୁ ତାଙ୍କୁ ଦିନେ ମୁଁ କହିଥିଲି, "ସାର୍ ! ଆପଣ ମୋତେ ଟିକିଏ ଗଣିତ ବୁଝେଇ ଦେଲେ ଭଲ ହୁଅନ୍ତା ।"

ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଦଶହରା, ଖ୍ରୀଷ୍ଟମାସ ଓ ଖରାଦିନ ଛୁଟିରେ ମୁଁ ଯାଇ ତାଙ୍କ ଗଣେଶ୍ୱରପୁରସ୍ଥିତ ଘରେ ପହଞ୍ଚି ଯାଉଥିଲି । ତାଙ୍କର ସହଧର୍ମିଣୀଙ୍କୁ ଆମେ ନାନୀ ବୋଲି ଡାକୁଥିଲୁ । ସେ ମୋତେ ଦେଖିଲେ ନିଜର ଭାଇ ଭଳି ବ୍ୟବହାର କରୁଥିଲେ । ମୁଁ ଅନେକ ସମୟରେ ଗଣିତର ଅନେକ ଜଟିଳ ପ୍ରଶ୍ନର ସମାଧାନ ତାଙ୍କଠାରୁ ବୁଝି ଆସୁଥିଲି । ବିନା ଅର୍ଥରେ ଓ ପାରିଶ୍ରମିକରେ ଜ୍ଞାନ ବିତରଣ କରିବା ଏଇ ମହତ ହୃଦୟସଂପନ୍ନ ଶିକ୍ଷକଙ୍କର ଜୀବନାଦର୍ଶ ଥିଲା ।

ମୁଁ ରେଭେନ୍‌ସାର ପୂର୍ବ ଛାତ୍ରାବାସରେ ଥିଲାବେଳେ ଅନେକ ସମୟରେ ଶ୍ରୀଯୁକ୍ତ ପଣ୍ଡା ମୋ ପାଖରେ ଯାଇ ହଷ୍ଟେଲରେ ପହଞ୍ଚୁଥିଲେ । କେବଳ ପଢ଼ିବା ତାଙ୍କ ଜୀବନର ଲକ୍ଷ୍ୟ ଥିବା ହେତୁ ସେ ବିଜ୍ଞାନରେ ସ୍ନାତକ ହେଲେ ମଧ୍ୟ ଇଂରାଜୀ ବିଷୟରେ ଏମ୍.ଏ

ପରୀକ୍ଷା ଉତ୍କଳ ବିଶ୍ୱବିଦ୍ୟାଳୟ ଅଧିନରେ ଘରୋଇ ପରୀକ୍ଷାର୍ଥୀ ଭାବେ ଦେବାକୁ ମନସ୍ଥ କରିଥିଲେ । ମଝିରେ ମଝିରେ ରେଭେନ୍ସା ପରିସରରେ ଥିବା ଇଂରାଜୀ ବିଭାଗର ପ୍ରଫେସର ସର୍ବେଶ୍ୱର ଦାଶଙ୍କ ଘରେ ପହଞ୍ଚି ଇଂରାଜୀ ସାହିତ୍ୟର ଜଟିଳ ବିଷୟଗୁଡ଼ିକୁ ପ୍ରଫେସର ଦାଶଙ୍କଠାରୁ ବୁଝି ଆସୁଥିଲେ । ମୋ ସହିତ ଉଇଲିୟମ୍ ୱାଡ଼ର୍ସ ୱାର୍ଥ ଓ ଟି.ଏସ୍.ଇଲିଅଟଙ୍କ କବିତା ଓ ଲେଖାର ଶୈଳୀ ସଂପର୍କରେ ସ୍ୱତପ୍ରବୃତ୍ତ ଆଲୋଚନା କରୁଥିଲେ । ଜଣେ ବିଜ୍ଞାନର ସ୍ନାତକ ହୋଇ ଇଂରାଜୀ ସାହିତ୍ୟ ସଂପର୍କରେ ସେ ଯେପରି ଆଲୋଚନା କରୁଥିଲେ, ତାହା ମୋତେ ବିସ୍ମିତ କରିଥିଲା । ପାଠପଢ଼ାର ଆହ୍ୱାନ ତାଙ୍କର ଏତେ ଥିଲା ଯେ ସେ ନିଜର ବୟସ ସଂପୂର୍ଣ୍ଣ ଭାବେ ଭୁଲି ଯାଇଥିଲେ । ମୋର ପାଠପଢ଼ାର ନିଶା ଓ ସ୍ୱପ୍ନ ଭାଙ୍ଗିଯିବା ପରେ ମୁଁ ଦିନେ ଖବର ପାଇଲି ଯେ ସେ କର୍ମକ୍ଷେତ୍ରରୁ ଗଣେଶ୍ୱରପୁର ଆସିଛନ୍ତି । ସେତେବେଳେ ସେ ବୌଦ୍ଧ ଜିଲ୍ଲାସ୍ଥ ହରଭଙ୍ଗା ଉଚ୍ଚବିଦ୍ୟାଳୟର ପ୍ରଧାନଶିକ୍ଷକ ଥାଆନ୍ତି ।

ମୁଁ ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଗଲି । ସେ ମୋର ଭଲମନ୍ଦ ପଚାରିଲେ । ମୋ ପାଇଁ ଆଉ ପଢ଼ିବା ସମ୍ଭବ ହେଉନାହିଁ ଓ ମୁଁ ଶିକ୍ଷକତା କରିବାକୁ ଚାହୁଁଚି ବୋଲି କହିଲି । ସେ ସଙ୍ଗେ ସଙ୍ଗେ ମୋତେ କହିଲେ, “ମୋ ସ୍କୁଲରେ ଗୋଟିଏ ପୋଷ୍ଟ ଖାଲି ଅଛି । ତୁ ଯିବୁ?” ତାଙ୍କର ଏଇ କେଇପଦ କଥା କୂଳଥଳ ପାଉନଥିବା ନାବିକ କୂଳରେ ପହଞ୍ଚିଲା ଭଳି ମୋତେ ଲାଗିଲା ।

ମୁଁ ସାଥେ ସାଥେ ରାଜି ହୋଇଗଲି । ତିନି, ଚାରିଦିନ ପରେ ତାଙ୍କ ସହିତ ହରଭଙ୍ଗା ଗଲି । ବୌଦ୍ଧ ଜିଲ୍ଲାର ଚାରିଛକଠାରୁ ପ୍ରାୟ ପନ୍ଦର କୋଡ଼ିଏ କିଲୋମିଟର ଦୂରରେ ମହାନଦୀ କୂଳରେ ହରଭଙ୍ଗା ଗ୍ରାମ ଅବସ୍ଥିତ । ଆମେ ଯିବା ଦିନ ରାତିରେ ଚାରିଛକରେ ରହି ପରଦିନ ସକାଳେ ହରଭଙ୍ଗା ଅଭିମୁଖେ ଚାଲିଲୁ । ସେଦିନ ହରଭଙ୍ଗାରେ ଆମେ ପ୍ରାୟତଃ ସନ୍ଧ୍ୟାବେଳକୁ ସ୍କୁଲରେ ପହଞ୍ଚିଲୁ ।

ମୁଁ ଗଲାପରେ ଜାଣିଲି ଯେ ସେ ସ୍କୁଲର ସଂସ୍କୃତ ଶିକ୍ଷକଙ୍କ ସହିତ ପ୍ରଧାନଶିକ୍ଷକଙ୍କର ପଡୁ ନଥିଲା । ତେଣୁ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ପଣ୍ଡା ସେକ୍ରେଟାରୀ ସନ୍ତୁବାବୁଙ୍କୁ କହି ମୋତେ ଏକ ନିଯୁକ୍ତି ପତ୍ର ଦେଲେ । ମୋତେ କିଛି ଦିନ ସଂସ୍କୃତ ପଢ଼ାଇ ଚଳାଇ ନେବାକୁ କହିଲେ । ମାଧ୍ୟମିକ ସ୍ତରରେ ଜଣେ ଭଲଛାତ୍ର ହୋଇଥିବାରୁ ଏବଂ ମୋର କୌଣସି କାର୍ଯ୍ୟ କରିବାର ବିକଳ୍ପ ନଥିବାରୁ ମୁଁ କିଛି ଦିନ ସଂସ୍କୃତ ପଢ଼େଇଲି । ସଂସ୍କୃତ ସହିତ ମଧ୍ୟ ଇତିହାସ, ସାମାଜିକ ବିଜ୍ଞାନ ଶିକ୍ଷାଦାନରେ ନିୟୋଜିତ ହେଲି ।

ପହଞ୍ଚିବା ଦିନ ସନ୍ଧ୍ୟାବେଳେ ମୁଁ ହରଭଙ୍ଗା ହାଇସ୍କୁଲ ହଷ୍ଟେଲରେ ଜଣେ ଉଦୀୟମାନ ସୌମ୍ୟ ପ୍ରଶାନ୍ତଚେତ୍ତା ଶିକ୍ଷକଙ୍କୁ ଦେଖିଲି । ସେ କଟକର ନରସିଂହପୁର ଅଞ୍ଚଳର ଏକଡ଼ାଳ ଗ୍ରାମର ବାସିନ୍ଦା ଥିଲେ । ମୋତେ ଦେଖି ଖୁସି ହୋଇ କହିଲେ, "ଆପଣ ଆସିଲେ ଭଲ ହେଲା । ଆମେ ଦୁହେଁ କିଛି ଦିନ ଏଠାରେ ମିଳିମିଶି ରହିଯିବା ।"

ସେ ଶିକ୍ଷକ ଜଣଙ୍କ ହେଉଛନ୍ତି ଘନଶ୍ୟାମ ପାଣି । ତାଙ୍କର ବାପା ଡ଼ାକ୍ତର ସନାତନ ରଥଙ୍କ ମାମୁଁ ଥିଲେ । ତାଙ୍କର ବଡ଼ ଭାଇ କୃଷ୍ଣଚନ୍ଦ୍ର ପାଣି ସେତେବେଳେ ଚାରିବାଟିଆରେ ଇଞ୍ଜିନିୟର ଥିଲେ । ଉଭୟ ଘନଶ୍ୟାମ ବାବୁ ଓ ତାଙ୍କର ବଡ଼ଭାଇ ଲେଖକ ଥିବାର ଜାଣି ମୁଁ ଖୁସି ହେଲି ।

ଏଇ ସମ୍ଭ୍ରାନ୍ତ ବଂଶଜ ଶିକ୍ଷକଙ୍କ ହଷ୍ଟେଲରେ ଥିବା କୋଠରିରେ ମୁଁ ରହିଲି । ଏହା ଚାଳଘର ଥିଲା । ବାହାରେ କୌଣସି କବାଟ ନ ଥିଲା । ଆମେ ଦୁହେଁ ଏକ ବାଉଁଶ ତିଆରି ତାଟିକୁ ରାତିରେ କବାଟ ରୂପେ ବ୍ୟବହାର କରୁଥିଲୁ । ମୁଁ ରାତି ନଅଟା ମଧ୍ୟରେ ଓ ହଷ୍ଟେଲରେ ଖିଆପିଆ ସରିବା ପରେ ସାଧାରଣତଃ ଶୋଇଯାଏ ।

ଦିନେ ଦିନେ ସାପ ରାତି ଅଧରେ ସେ କୋଠରି ମଧ୍ୟକୁ ପଶେ । ପାଣିବାବୁ ମୋତେ ଡାକନ୍ତି । ନିଦରୁ ଉଠି କହନ୍ତି, "ଦିଗ ବାବୁ ! ଉଠନ୍ତୁ, ସାପ ଆସିଛି ।" ସେ ବେଳେ ବେଳେ ତାଙ୍କର ମଧୁର ଭାଷା କହି ଓ ବାଡ଼ି ଦେଖାଇ ସାପଟିକୁ ବିଦା କରିଦିଅନ୍ତି । କେବେ ସାପକୁ ମାରିବା ମୁଁ ଦେଖି ନାହିଁ ।

ହରଭଙ୍ଗା ହେଉଛି ଏକ ଆଦିବାସୀ ବହୁଳ ଅଞ୍ଚଳ । ରାସ୍ତାର ଦୁଇ ପାଖରେ ଅନେକ ମହୁଲ ଗଛ । ଅନେକ ସମୟରେ ଭାଲୁ ମହୁଲ ଖାଇବାକୁ ଆସେ । ଥରେ ଗୋଟିଏ ଭାଲୁ ଛୁଆକୁ କିଛି ଲୋକ ପିଟିପିଟି ମାରିଦେଇଥିଲେ । ପରେ ତା'ର ମା' ଆସି ସେଠାରେ ପହଞ୍ଚିଲା । ମୃତ ଭାଲୁ ଛୁଆ ପାଖରେ ଦୁଃଖରେ ମ୍ରିୟମାଣ ହୋଇ ମା' ଭାଲୁଟି ଆଖିରୁ ଲୁହ ଗଡ଼ାଉଥିଲା । ଏ ଦୃଶ୍ୟ ଅତୀବ ମର୍ମନ୍ତୁଦ ଓ ଦୁଃଖଦାୟକ ଥିଲା ।

ମୁଁ ହରଭଙ୍ଗାରେ ସେ ବର୍ଷ ପୂଜାଛୁଟି ପର୍ଯ୍ୟନ୍ତ ଥିଲି । ମୋର ସମଧର୍ମୀ ବନ୍ଧୁଭାବରେ ମୁଁ ବାସୁଦେବ ପ୍ରହରାଜ, ବି.ଏସି., ବି.ଇଡ଼ି କୁ ପାଇଥିଲି । ଅନ୍ୟ ଯେଉଁ ଶିକ୍ଷକମାନେ ସେଠାରେ ଥିଲେ ସେମାନେ ହେଲେ ସୁବାସ ମହାକୁଳ, ଦୋଳଗୋବିନ୍ଦ ଗାଇଗଉରିଆ ଓ ଆଉ ଜଣେ ଅଧେ ଶିକ୍ଷକ । ଏଇ ହାଇସ୍କୁଲଟି ୮ମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଥିବା ହେତୁ ଅଳ୍ପ ସଂଖ୍ୟକ ପିଲା (ପ୍ରାୟ ଶହେ ଜଣ) ପଢୁଥିଲେ । ଦୂର ଦୂରାନ୍ତର ପିଲାମାନେ ହଷ୍ଟେଲରେ ରହୁଥିଲେ ।

ହଷ୍ଟେଲରେ ରହୁଥିବା ଦୁଇଜଣ ପିଲାଙ୍କର ଆଚାର ଓ ବ୍ୟବହାର ମୋତେ ମୁଗ୍ଧ କରିଥିଲା । ସେମାନେ ହେଲେ ଦିବାକର ଓ ରାଜନ । ଅନେକ ଦିନ ପରେ ମୋର ଦିବାକର ସହିତ ଦେଖା ହୋଇଥିଲା । ସେ ଫୁଲବାଣୀ ତହସିଲ ଅଫିସରେ କାର୍ଯ୍ୟ କରୁଥିବାର ସମ୍ବାଦ ମୋତେ ଦେଇଥିଲା । ରାଜନ ଅତି ଶାନ୍ତଶିଷ୍ଟ ଥିଲା । ପରବର୍ତ୍ତୀ ସମୟରେ ତା'ର ଖବର କିଛି ମୁଁ ପାଇ ପାରି ନ ଥିଲି ।

ପାଣିବାବୁ ଜଣେ ସାହିତ୍ୟିକ ହୋଇଥିବା ହେତୁ ତାଙ୍କ ସହିତ ଛୁଟିଦିନ ଓ ଅବସର ସମୟ ସାହିତ୍ୟ ଚର୍ଚ୍ଚାରେ କଟିଯାଉଥିଲା ।

ଦିନେ ସନ୍ଧ୍ୟାବେଳେ ମୁଁ ହଷ୍ଟେଲରେ ବସିଛି । ମୋତେ ଡାକବାଲା ଏକ ଅନ୍ତର୍ଦେଶୀୟ ପତ୍ର ଦେଲେ । ସେଇ ପତ୍ରଟିକୁ କଟକ ଜିଲ୍ଲାର ମାହାଙ୍ଗା ଅଞ୍ଚଳର ମଉଦା ଗ୍ରାମରେ ଥିବା ମଧୁସୂଦନ ଜଗନ୍ନାଥ ବିଦ୍ୟାପୀଠର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବଂଶୀଧର ଭଳ ମୋ ପାଖକୁ ଲେଖିଥିଲେ ।

ସେ ଚିଠିରେ ସେ ଲେଖିଥିଲେ, "ଶ୍ରଦ୍ଧେୟ ଦିଗରାଜ ! ତୁମେ ଏତେ ଦୂରକୁ ଶିକ୍ଷକତା କରିବାକୁ ଚାଲିଗଲ । ମୋତେ ଟିକିଏ ଜଣାଇଲ ନାହିଁ । ଏ ବର୍ଷ ଆମ ସ୍କୁଲକୁ ଭାରତ ସରକାରଙ୍କ ମଂଜୁରୀ ପ୍ରାପ୍ତ ଗୋଟିଏ ହିନ୍ଦୀ ଶିକ୍ଷକ ପୋଷ୍ଟ ଆସିଛି । ଆମେ ସିନା ମ୍ୟାନେଜମେଣ୍ଟ ଅଧୀନରେ ରହି କମ୍ ଦରମା ପାଉଛୁ, ମାତ୍ର ତୁମକୁ ପୋଷ୍ଟ ଅନୁଯାୟୀ ଶତକଡ଼ା ଶହେଭାଗ ଦରମା ମିଳିବ । ତୁମେ ଏତେ ଦୂରରେ କାହିଁକି ରହିବ ? ଏଠାକୁ ଚାଲିଆସ ।"

ଚିଠିଟି ପଢ଼ିସାରିଲା ପରେ ମୁଁ ଟିକିଏ ଆଶ୍ୱସ୍ତ ହେଲି । ଉଚ୍ଚ ଶିକ୍ଷା ପାଇଁ ସ୍ୱପ୍ନ ଥିଲା, ମାତ୍ର ଅର୍ଥ ନ ଥିଲା । ମୁଁ ମନେ ମନେ ସ୍ଥିର କରିନେଲି ଯେ ଆଗାମୀ ଦଶହରା ଛୁଟିରେ ଶ୍ରୀଯୁକ୍ତ ଭଳଙ୍କୁ ଦେଖା କରିବି । ସେଠାରେ ଚାକିରି କରିବା ପାଇଁ ସମ୍ମତି ଦେବି । କିଛି ଟଙ୍କା ହେଲେ ପୁଣି ନିଜସ୍ୱ ଚେଷ୍ଟାରେ ଉଚ୍ଚ ଶିକ୍ଷା ଲାଭ କରିବା ନିମନ୍ତେ ଚେଷ୍ଟା କରିବି ।

ଦଶହରା ଛୁଟି ଉପନୀତ ହେବାରୁ ପ୍ରଧାନଶିକ୍ଷକ ପଣ୍ଡା ଓ ମୁଁ ଦିନେ ସନ୍ଧ୍ୟାବେଳକୁ ବିଦ୍ୟାଳୟର ସେକ୍ରେଟାରୀ ସନ୍ତୁବାବୁଙ୍କୁ ତାଙ୍କ ବାସଭବନରେ ଭେଟିଲୁ । ତିନିମାସର ଦରମା ପୂଜାପୂର୍ବରୁ ଶିକ୍ଷା ଇନ୍‌ସ୍‌ପେକ୍‌ଟରଙ୍କ ଅଫିସରୁ ଆସିନାହିଁ ବୋଲି ସେ କହିଲେ । ପ୍ରଧାନଶିକ୍ଷକଙ୍କ ପ୍ରସ୍ତାବ କ୍ରମେ ମୋତେ ମୋର ଆଂଶିକ ପ୍ରାପ୍ୟ ହିସାବରେ ଦୁଇଶହ ଟଙ୍କା ମାତ୍ର ଦେଲେ । ମୋର ତ ଆଉ ଫେରିବାର ନ ଥିଲା । ବାକି ପ୍ରାପ୍ୟ ଟଙ୍କାରେ ତାଙ୍କ ଦୋକାନରେ ଥିବା କିଛି ସମ୍ବଲପୁରୀ ଶାଢ଼ି ଦେବାକୁ କହିଲି । ଏଥିରେ ତାଙ୍କର

କିଛି କ୍ଷତି ହେଉ ନ ଥିଲା । ତେଣୁ ମୁଁ ବାଛି ବାଛି ଚାରି ପାଞ୍ଚଖଣ୍ଡ ସମ୍ବଲପୁର ଶାଢ଼ି ଆମ ଘରକୁ ଆଣିଲି ଓ ସମସ୍ତ ପ୍ରାପ୍ୟ ନେଲି ବୋଲି ଦରମା ଖାତାରେ ଦସ୍ତଖତ କଲି ।

ଆମେ ଦୁହେଁ ଦଶହରା ଛୁଟିରେ ଫୁଲବାଣୀର ଚାରିଛକରୁ ଭୁବନେଶ୍ୱର ଅଭିମୁଖେ ଗାଁକୁ ଆସିବା ପାଇଁ ଫେରିଲୁ । ସେତେବେଳକୁ ରାତି ହୋଇଯାଇଥାଏ । ଫେରୁ ଫେରୁ ବାଟରେ ମୁଁ ବସରେ ଶୋଇ ପଡ଼ିଲି । ରାତିରେ ଉଠି ଦେଖିଲି ଯେ ମୋ ପ୍ୟାଣ୍ଟ ପକେଟରେ ଥିବା ଦୁଇଶହ ଟଙ୍କାର ନୋଟ ସବୁ ହଜି ଯାଇଛି । ମୁଁ ବସିଥିବା ସିଟ୍‌ର ତଳେ କାଳେ ନୋଟଗୁଡ଼ିକ ପଡ଼ିଯାଇଥିବ ସେଥିପାଇଁ ସିଟ୍ ତଳକୁ ବାରମ୍ବାର ଚାହିଁଲି ।

କିନ୍ତୁ ଟଙ୍କାଟିଏ ବି ପାଇଲି ନାହିଁ । ମୋ ସିଟ୍‌ର ପଛ ପଟକୁ ଚାହିଁଲି । ଦେଖିଲି ଚାରି ପାଞ୍ଚଜଣ ଆଦିବାସୀ ମହିଳା ବସିଛନ୍ତି । ସେମାନେ ମୋ ମନର ଅବସ୍ଥାକୁ ଲକ୍ଷ୍ୟ କରୁଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଭଦ୍ର ମହିଳା ମୋତେ ପଚାରିଲେ, "ପୁଅ ! ତୋର କ'ଣ ହୋଇଛି ? ତୁ କାହିଁକି ଏଣିକି ତେଣିକି ଚାହିଁ କ'ଣ ଖୋଜୁଛୁ ?"

ମୁଁ କହିଲି, "ମୋ ପକେଟରୁ ଦୁଇଶହ ଟଙ୍କାର ନୋଟ କିଛି ହଜି ଯାଇଛି ।"

ସେ ସଙ୍ଗେ ସଙ୍ଗେ କହିଲେ, "ଆମେ ସେ ସବୁ ଟଙ୍କା ପାଇଛୁ ।" ଏହା କହି ସେ ମୋତେ ଦୁଇଶହ ଟଙ୍କାର ନୋଟବିଡ଼ା ଫେରାଇ ଦେଲେ ।

କେତେ ଭଦ୍ର, ଶାନ୍ତ ଓ ସରଳ ସେମାନେ ଥିଲେ । ଗରିବ ଅବହେଳିତ ହେଲେ ମଧ୍ୟ ସେମାନେ ମନରେ କେତେ ଧନୀ ଥିଲେ, ତାହା ସେଦିନ ମୁଁ କଳ୍ପନା କରି ପାରି ନ ଥିଲି ।

**ମଧୁସୂଦନ ଜଗନ୍ନାଥ ବିଦ୍ୟାପୀଠରେ ଯୋଗଦାନ ଓ ହିନ୍ଦୀ ଏମ୍.ଏ. ପରୀକ୍ଷା ଦେବା ପ୍ରସଙ୍ଗ**

ଦଶହରା ଛୁଟିରେ ମୁଁ ହରଭଙ୍ଗା ହାଇସ୍କୁଲର ପ୍ରଧାନଶିକ୍ଷକ ପୂର୍ଣ୍ଣଚନ୍ଦ୍ର ପଣ୍ଡାଙ୍କୁ ତାଙ୍କ ଗଣେଶ୍ୱରପୁରସ୍ଥିତ ବାସଭବନରେ ଭେଟିଲି । ମଧୁସୂଦନ ଜଗନ୍ନାଥ ବିଦ୍ୟାପୀଠ, ମଉଦାର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ବଂଶୀଧର ଭଳଙ୍କ ପ୍ରସ୍ତାବ ବିଷୟରେ କହିଲି । ଏଇ ପ୍ରସ୍ତାବ ସହିତ ମୋର ଆର୍ଥିକ ସ୍ଥିତି ଓ ଭବିଷ୍ୟତ ପାଠପଢ଼ା ନିର୍ଭର କରୁଛି ବୋଲି କହିବାରୁ ସେ କୌଣସି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ ।

ଅଗତ୍ୟା ମୋତେ ହରଭଙ୍ଗା ଛାଡ଼ି ମଉଦାରେ କାର୍ଯ୍ୟ କରିବାକୁ ପଡ଼ିଲା ।

ମୁଁ ମଉଦାରେ ୧୯୭୦ ମସିହା ନଭେମ୍ବର ମାସରେ ଯୋଗଦାନ କଲି ।

ସେଠାକାର ସମସ୍ତ ଶିକ୍ଷକ ଧୂରୀଣ ଥିଲେ । ପ୍ରଧାନଶିକ୍ଷକ ବଂଶୀଧର ଭଳ ବି.ଏ(ଅର୍ଥନୀତି ସମ୍ମାନ) ଓ ବି.ଏଡ୍ ଥିଲେ । ଦ୍ୱିତୀୟ ଶିକ୍ଷକ ଯତୀନ୍ଦ୍ର ମୋହନ ବିଶ୍ୱାଳ, ବି.ଏ(ଶିକ୍ଷା ସମ୍ମାନ) ଓ ବି.ଏଡ୍ ଥିଲେ । ଇଂରାଜୀ ଶିକ୍ଷକ ପୂର୍ଣ୍ଣବାବୁଙ୍କର ଇଂରାଜୀ ଭାଷାରେ ଦକ୍ଷତା ଥିଲା । ସ୍ଥାନୀୟ ପଡ଼ୋଶୀ ଗ୍ରାମର ନରେନ୍ଦ୍ର ଶତପଥୀ, ଆଇ.ଏସି ପାଶ୍ କରିଥିଲେ । ସେ ଜଣେ ଦକ୍ଷ ଗଣିତ ଓ ବିଜ୍ଞାନ ଶିକ୍ଷକ ଥିଲେ । ଭେଡ଼ା ସାଲେପୁର ଗ୍ରାମନିବାସୀ ଓ ସେ ଅଞ୍ଚଳର ବିଦ୍ୱାନ ପଣ୍ଡିତ ବ୍ରହ୍ମାନନ୍ଦ ଷଡ଼ଙ୍ଗୀ ସାହିତ୍ୟାଚାର୍ଯ୍ୟ, ସଂସ୍କୃତ ଶିକ୍ଷକ ଭାବରେ ଏଠାରେ ଅବସ୍ଥାପିତ ଥିଲେ । କିଛିଦିନ ପାଇଁ ଆମ ଗାଁ ରୁଦ୍ରପୁର ନିକଟସ୍ଥ କେରୁଆଳ ଗ୍ରାମର କୁଶାସନ ଲେଙ୍କା ଏଠାରେ ଖେଳ ଶିକ୍ଷକ ଭାବେ କାର୍ଯ୍ୟ କରୁଥିଲେ ମଧ୍ୟ ତାଙ୍କର ଇଂରାଜୀ ଓ ଅନ୍ୟାନ୍ୟ ବିଷୟରେ ଦକ୍ଷତା ଥିବା ହେତୁ ଉଚ୍ଚଶ୍ରେଣୀରେ ସାମୟିକ ଶିକ୍ଷାଦାନର ସୁଯୋଗ ପାଉଥିଲେ ।

ଯେଉଁ ଏମ୍.ଏ ପଢ଼ାରୁ ମୁଁ ବଂଚିତ ହୋଇଥିଲି, ସେହି ଏମ୍.ଏ ଡିଗ୍ରୀ ହାସଲ କରିବା ମୋର ଲକ୍ଷ୍ୟ ହୋଇଥିବା ହେତୁ ଘରୋଇ ଭାବେ କେମିତି ଏମ.ଏ ପରୀକ୍ଷା ଦେଇ ପାରିବି ସେ ସଂପର୍କରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ବିଜ୍ଞପ୍ତି ଉପରେ ନଜର ରଖିଥିଲି । ଥରେ ଏଇ ବିଜ୍ଞପ୍ତି ପଢ଼ି ଜାଣିଲି ଯେ ଜଣେ ସ୍ନାତକ ହେଲାର ଦୁଇବର୍ଷ ମଧ୍ୟରେ ସାଧାରଣ ପ୍ରଶାସନ ଓ ହିନ୍ଦୀ ବିଷୟରେ ଏମ୍.ଏ ପରୀକ୍ଷା ଦେଇପାରିବ । ମୋର ରେଭେନ୍ସାର ସାଥୀମାନେ ବାଣୀବିହାରରେ ଦୁଇବର୍ଷପଢ଼ି ୧୯୭୨ ମସିହାରେ ଏମ୍.ଏ ଡ଼ିଗ୍ରୀ ହାସଲ କରିବେ । ତେଣୁ ମୁଁ ୧୯୭୨ ମସିହାରେ ସେମାନଙ୍କ ସହିତ ଏମ୍.ଏ ପରୀକ୍ଷା ଦେବା ନିମନ୍ତେ ମନେ ମନେ ସ୍ଥିର କଲି । ହିନ୍ଦୀରେ ରାଷ୍ଟ୍ରଭାଷା ରତ୍ନ ଯୋଗ୍ୟତା ଥିବାରୁ ମୁଁ ହିନ୍ଦୀରେ ଏମ୍.ଏ ପାଶ୍ କଲେ ଜଣେ ଅଧ୍ୟାପକ ହୋଇ ପାରିବି ବୋଲି ହିନ୍ଦୀ ଏମ୍.ଏର ପ୍ରଥମ ଭାଗର ସମସ୍ତ ବହି କିଣି ପଢ଼ିଲି ।

୧୯୭୧ ମସିହାରେ ପ୍ରଥମ ଭାଗ ପରୀକ୍ଷା ଦେଇ ପାରିବି କି ନାହିଁ, ସେ କଥା ବୁଝିବା ପାଇଁ ମୁଁ ତତ୍କାଳୀନ ସିଣ୍ଡିକେଟ ସଦସ୍ୟ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶଙ୍କୁ ତାଙ୍କ କଟକସ୍ଥ କୁକୁରିଆପଦାର ସତ୍ୟାଳୟରେ ଭେଟି ଜାଣିବାକୁ ଚାହିଲି । ପ୍ରଫେସର ଦାଶ କହିଲେ, "ତୁମେ ୧୯୭୧ରେ ହିନ୍ଦୀରେ ପ୍ରଥମ ଭାଗ ପରୀକ୍ଷା ଦେଇ ପାରିବ ନାହିଁ । ୧୯୭୨ରେ ଦେଇପାରିବ ।"

ମୁଁ ପ୍ରଫେସର ଦାଶଙ୍କୁ କହିଲି, "ସାର୍ ! ଆପଣଙ୍କର ବିଶ୍ୱବିଦ୍ୟାଳୟର ନିୟମ ଅଛି ଯେ ଜଣେ ସ୍ନାତକ ହେବାର ଦୁଇବର୍ଷ ମଧ୍ୟରେ ସାଧାରଣ ପ୍ରଶାସନ ଓ ହିନ୍ଦୀରେ ଏମ୍.ଏ ପରୀକ୍ଷା ଦେଇ ପାରିବ ।"

ପ୍ରଫେସର ଦାଶ ମୋ କଥା ଶୁଣି ହସିଲେ । କିଛିକ୍ଷଣ ପରେ କହିଲେ, "ପୂର୍ବରୁ ଥିବା ସେ ବ୍ୟବସ୍ଥା ନିକଟରେ ବଦଳି ଯାଇଛି ।"

୧୯୭୧ ମସିହାରେ ହିନ୍ଦୀ ଏମ୍.ଏ ପରୀକ୍ଷା ଦେବାର ଆଶା ମୋର ମଉଳି ଗଲା । ମୁଁ ପଢ଼ିଥିବା ଜ୍ଞାନ ସିନା ମୋ ପାଖରେ ରହିଲା, ମାତ୍ର ତାକୁ ନେଇ ଆଉ ଏମ୍.ଏ ପରୀକ୍ଷା ଦେବା ସମ୍ଭବ ହେଲା ନାହିଁ । ମାତ୍ର ହିନ୍ଦୀ ସାହିତ୍ୟର ମଧ୍ୟଯୁଗୀୟ କବି ନନ୍ଦ ଦାସ କୃତ "ଭ୍ରମର ଗୀତ" ମୋତେ ବିଶେଷ ଆକର୍ଷଣ କରିଥିଲା । ମୁଁ ସେଇ ସମୟରେ ଏହି କାବ୍ୟର ଓଡ଼ିଆ ପଦ୍ୟାନୁବାଦ କରିଥିଲି । ତାହା ୨୦୦୭ ମସିହାରେ ପ୍ରକାଶିତ ହୋଇଅଛି ।

ବି.ଏଡ୍ ନାମ ଲେଖା ପ୍ରସଙ୍ଗ

ଶିକ୍ଷକତା କରିବାକୁ ହେଲେ ସେ ବିଷୟରେ ତାଲିମ୍ ପାଇବା ଯେ କେତେ ଜରୁରୀ ମୁଁ ବାପାଙ୍କ ଜୀବନର ଏକ ଘଟଣାରୁ ଜାଣିଥିଲି । ସେ ପରିଣତ ବୟସରେ ଭଗତପୁରଠାରେ ପରିଚାଳିତ ମୌଳିକ ପ୍ରଶିକ୍ଷଣ ଅନୁଷ୍ଠାନକୁ ପାଠ ପଢ଼ିବାକୁ ଯାଇଥିଲେ । ସେତେବେଳେ ମୁଁ ଖୁବ୍ ସାନ ଥିଲି । ବାପାଙ୍କ ଅନୁପସ୍ଥିତି ସେ ବର୍ଷ ମୋ ଶିଶୁ ସୁଲଭ ହୃଦୟକୁ ଆନ୍ଦୋଳିତ କରିଥିଲା ।

ବେଳେବେଳେ ଦିନେ ଦୁଇଦିନ ଛୁଟିରେ ବାପା ଘରକୁ ଆସିଲେ ତାଙ୍କ ପ୍ରଶିକ୍ଷଣ ପାଠ୍ୟକ୍ରମ ସଂପର୍କରେ କହୁଥିଲେ । ତାଙ୍କର ପ୍ରଶିକ୍ଷଣ ଅନୁଷ୍ଠାନର ପ୍ରଧାନ ଗୁରୁଜୀ ଥିଲେ ସେ ସମୟର ବିଶିଷ୍ଟ ଶିକ୍ଷାବିତ୍ ନଟବର ଦେବତା । ତାଙ୍କର ଆଚରଣ ଯେତିକି ଭଦ୍ର ଥିଲା, ପ୍ରଶିକ୍ଷଣ କାଳୀନ ତାଲିମ ମଧ୍ୟ ସେତିକି କଠୋର ଥିଲା । ଯଦି କେହି ଘରକୁ ଯିବା ପାଇଁ କହୁଥିଲେ, ତେବେ ସେ ହାତରେ ପିନ୍ଧିଥିବା ଏକ ସୁନାମୁଦିର ଏନାମେଲ ଖୋଦିତ ଲେଖାକୁ ଦେଖାଇ କହୁଥିଲେ, "ଏଥିରେ ଲେଖାଅଛି ନ. ଦେ। ଅର୍ଥାତ୍ କାହାକୁ କିଛି ନ ଦେବା ପାଇଁ । ତେବେ ମୁଁ ତୁମକୁ ଛୁଟି ଦେବି କେମିତି ?"

ମୁଁ ଥରେ ମୋର ଭିଣୋଇ ଗାନ୍ଧିଶିକ୍ଷାଶ୍ରମର ଶିକ୍ଷକ ବଂଶୀଧର ମିଶ୍ର ଓ ମୋର ବଡ଼ଭାଇ ଚତୁର୍ଭୁଜ ବ୍ରହ୍ମାଙ୍କ ସହିତ ଭଗତପୁର ଯାଇଥିଲି । ମୋର ବଡ଼ ଭିଣୋଇ ହାଇସ୍କୁଲର ଶିକ୍ଷକ ଥିବା ହେତୁ ଓ ବାପାଙ୍କର ସ୍ୱତନ୍ତ୍ର ଖାତିର ଥିବା ହେତୁ ଶ୍ରୀଯୁକ୍ତ ଦେବତା ଆମକୁ ଆଦର କଲେ । ମଧ୍ୟାହ୍ନଭୋଜନ ସମୟରେ ସେ ପ୍ରସ୍ତୁତ ଖାଦ୍ୟ ଦେଖାଇ କହିଲେ, "ଏଠି ବନ୍ତଳ କଦଳୀ ଚୋପା ଛଡ଼େଇ ଫୋପଡ଼ା ଯାଏ ନାହିଁ । ଭାତରୁ ପେଜ ଗଳାଯାଏ ନାହିଁ । ଖାଦ୍ୟ ସାମଗ୍ରୀର ମୌଳିକତା ବଜାୟ ରଖି ରନ୍ଧନ କାର୍ଯ୍ୟ କରାଯାଏ । ମୋର ବୟସ ସେତେବେଳେ ବୋଧହୁଏ ସାତ ଆଠ ବର୍ଷ ହୋଇଥିଲା ।

ଆମେ ସେଦିନ ସେଠାରେ ମଧ୍ୟାହ୍ନଭୋଜନ କଲୁ । ଅପରାହ୍ନରେ ଆମ ଗ୍ରାମ ରୁଦ୍ରପୁରକୁ ଫେରି ଆସିଲୁ ।

ପରିବାର ଛାଡ଼ି ପରିଣତ ବୟସରେ ବାପାଙ୍କର ପ୍ରଶିକ୍ଷଣ ନେବା କଥାରୁ ମୋର ଅନୁଭୂତି ହୋଇଥିଲା ଯେ ଯଦି ପାଠପଢ଼ିବ, ତେବେ ତାହା ପାଠପଢ଼ା ବୟସରେ ହେବା ଉଚିତ୍ । ପରିବାରକୁ ଛାଡ଼ି ପାଠ ପଢ଼ିବା କିମ୍ବା ପ୍ରଶିକ୍ଷଣ ନେବା ଯେ କେତେ କଷ୍ଟକର, ତାହା କେବଳ ଭୁକ୍ତଭୋଗୀମାନେ ହିଁ ଅନୁଭବ କରିଛନ୍ତି ।

୧୯୭୧ ମସିହାର ଜୁନ୍ ମାସ । ମୁଁ ଆମ ଘର ଆଗରେ ଥିବା ପିଣ୍ଡାରେ ପଡ଼ିଥିବା ସାବକ ଅମଳର ଏକ ବଡ଼ କାଠପଟାରେ ବସିଥିଲି । ଏଇ ସମୟରେ ନୂତନ ଭାବେ ବି.ଏଡ୍ ପଢ଼ି ଆସିଥିବା ଆମ ଅଞ୍ଚଳର ଜନୈକ ଶିକ୍ଷକ ସୂର୍ଯ୍ୟମଣି ଲେଙ୍କା ସେଠାରେ ଆସି ପହଞ୍ଚିଲେ । ସେ ସମୟରେ ଶ୍ରୀଯୁକ୍ତ ଲେଙ୍କା ବୈରୀ ହାଇସ୍କୁଲର ଜଣେ ତାଲିମପ୍ରାପ୍ତ ଡିଗ୍ରୀଧାରୀ ଶିକ୍ଷକ ଥିଲେ । ସେ ମୋତେ ଦେଖିବା ମାତ୍ରେ ମୋ ପାଖକୁ ଆସି ଆମ ପିଣ୍ଡାରେ ବସି ପଡ଼ିଲେ ।

ମୁଁ ତାଙ୍କୁ କହିଲି, "ମୁଁ ଏ ବର୍ଷ ବି.ଏଡ୍ ପଢ଼ିବା ପାଇଁ ମନେ ମନେ ସ୍ଥିର କରିଛି ।" ସେ ମୋତେ କହିଲେ, "ଆରେ ତୁ ପାଗଳା ହୋଇଗଲୁ କିରେ ? ସାତ ଆଠ ବର୍ଷର ଶିକ୍ଷାଦାନ ଅଭିଜ୍ଞତା ନ ଥିଲେ ଓଡ଼ିଶାର କେଉଁ ବି.ଏଡ୍ କଲେଜ ତୋତେ ପଢ଼ିବାକୁ ବାଛିବ ?"

ମୁଁ ତାଙ୍କ କଥା ଶୁଣି ନୀରବ ରହିଲି । ସେ ଯେ ତାଙ୍କ ଅଭିଜ୍ଞତା କହୁଛନ୍ତି, ଏହା ବୁଝିବାକୁ ମୋତେ ବାକି ରହିଲା ନାହିଁ । ସେତେବେଳେ ଓଡ଼ିଶାରେ ଚାରିଗୋଟି ବି.ଏଡ୍ କଲେଜ ଥିଲା । ସେଗୁଡ଼ିକ ହେଲା କଟକସ୍ଥିତ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ, ଅନୁଗୁଳସ୍ଥିତ ବେସିକ୍ ଟ୍ରେନିଙ୍ଗ୍ କଲେଜ, ସମ୍ବଲପୁରସ୍ଥିତ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ ଓ ବ୍ରହ୍ମପୁରସ୍ଥିତ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ ।

ମୁଁ ସଂପୃକ୍ତ କଲେଜଗୁଡ଼ିକର ବି.ଏଡ୍. ଭର୍ତ୍ତି ବିଜ୍ଞାପନ ବାହାରିଲା ପରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ ଓ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ବି.ଏଡ୍ ପଢ଼ିବା ନିମନ୍ତେ ଆବେଦନ କରିଥିଲି ।

୧୯୭୧ ମସିହା ଜୁନ୍ ମାସରେ ମୁଁ କଟକସ୍ଥିତ ଆୟକର କାର୍ଯ୍ୟାଳୟକୁ କ୍ଲର୍କ ପଦବୀ ପାଇଁ ଆବେଦନ କରିଥିଲି । ଏଥିପାଇଁ ଲିଖିତ ପରୀକ୍ଷା ହୋଇଥିଲା । ଲିଖିତ ପରୀକ୍ଷାର ଫଳାଫଳ ଅନୁଯାୟୀ ମୋତେ ମୌଖିକ ପରୀକ୍ଷା ପାଇଁ ଡ଼କା ଯାଇଥିଲା । ମୌଖିକ ପରୀକ୍ଷାରେ ମୋର ସମସ୍ତ ପ୍ରଶ୍ନର ଉତ୍ତର ସନ୍ତୋଷଜନକ ଥିଲା ।

ସ୍ୱୟଂଆୟକରକମିଶନର ଶ୍ରୀଯୁକ୍ତ ଚାନ୍ଦ ମଧ୍ୟ ପ୍ରକାଶ୍ୟରେ ବୋର୍ଡ଼ରେ ମୋ ସପକ୍ଷରେ ଅନୁକୂଳ ମତ ଦେଇଥିଲେ ।

ସେଇ ଜୁନ୍ ମାସରେ ମୁଁ ବି.ଏଡ୍ ପାଇଁ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ ଓ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟରେ ସାକ୍ଷାତକାର ଦେଇଥିଲି । ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟ ସାକ୍ଷାତକାରରେ ମୋ ସହିତ ମଉଦା ହାଇସ୍କୁଲର ବରିଷ୍ଠ ଶିକ୍ଷକ ଶ୍ରୀଯୁକ୍ତ କ୍ଷେତ୍ରମୋହନ ପାଢ଼ୀ ମଧ୍ୟ ସାକ୍ଷାତକାର ଦେଇଥିଲେ ।

ଜୁଲାଇ ମାସ ଶେଷରେ ଆମ ଘରକୁ ଆସିଥିବା ଏକ ରେଜିଷ୍ଟ୍ରି ଡ଼ାକ ବାପା ପ୍ରାପ୍ତି ସ୍ୱୀକାର କରି ମୋ ପାଖକୁ ତୁରନ୍ତ ପଠାଇ ଦେଇଥିଲେ । ସେ ବର୍ଷ ଯେ ମୋର ବି.ଏଡ୍ ହେବ ମୁଁ ସେ ଆଶା ଛାଡ଼ି ଦେଇଥିଲି । କାରଣ ଅନେକ ଅଭିଜ୍ଞ ଶିକ୍ଷକ ଏଥିପାଇଁ ସାକ୍ଷାତକାର ଦେଇଥିଲେ । ତେଣୁ ମୁଁ ସରକାରୀ ମାଟିଆ ଲଫାପା ଦେଖି ମନେ ମନେ ଭାବିନେଇଥିଲି ଯେ ତାହା କଟକସ୍ଥିତ ଆୟକର କମିଶନଙ୍କ କାର୍ଯ୍ୟାଳୟରୁ ଆସିଥିବା ମୋର ନିଯୁକ୍ତିପତ୍ର । ମାତ୍ର ଯେତେବେଳେ ଚିଠିଟିକୁ ଖୋଲି ପଢ଼ିଲି ସେତେବେଳେ ମୋ ମନରେ ଦେଖାଯାଇଥିବା ଅତ୍ୟଧିକ ଆତ୍ମବିଶ୍ୱାସ ଆପେ ଆପେ ଲୋପ ପାଇଗଲା । ସେ ଚିଠିଟି ଥିଲା ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ନାମଲେଖାଇବା ପାଇଁ ଆସିଥିବା ପ୍ରଜ୍ଞାପନ ପତ୍ର ।

ମୁଁ ସପ୍ତାହକ ମଧ୍ୟରେ ମଧୁସୂଦନ ଜଗନ୍ନାଥ ବିଦ୍ୟାପୀଠରୁ ଇସ୍ତଫା ଦେଲି ଓ ସେଠାରୁ କାର୍ଯ୍ୟମୁକ୍ତ ହେଲି । ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟରେ ନାମ ଲେଖାଇବା ନିମନ୍ତେ ପ୍ରସ୍ତୁତ ମଧ୍ୟ ହେଲି ।

**ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟ ଅଭିମୁଖେ**

ଆଜିକାଲି ଭଳି ସମ୍ବଲପୁର ଯିବା ନିମନ୍ତେ ରେଳପଥ ନ ଥିଲା । ବସରେ କଟକଠାରୁ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ଯାତ୍ରୀମାନଙ୍କୁ ଯିବାକୁ ପଡୁଥିଲା । ୧୯୭୨ ମସିହାରେ ମଧ୍ୟ କଟକର ବାଦାମବାଡ଼ି ବସଷ୍ଟାଣ୍ଡ ନ ଥିଲା । କଟକରୁ ରାଜ୍ୟର ପ୍ରମୁଖ ସହରକୁ ଯିବା ନିମନ୍ତେ କଟକର ଚାନ୍ଦିନୀଚୌକଠାରୁ ଆମକୁ ବସ୍ ଧରିବାକୁ ପଡ଼ିଥିଲା । ସେଇ ସବୁ ବସ୍ ଚାନ୍ଦିନୀଚୌକ ଛାଡ଼ି ରେଭେନ୍‌ସା କଲେଜ ଛକ, ଓ.ଏମ୍.ପି ଦେଇ ଚୌଦ୍ୱାର, ଅନୁଗୁଳ ଓ ରେଢ଼ାଖୋଲ ଅତିକ୍ରମ କରି ସମ୍ବଲପୁରରେ ପହଞ୍ଚୁଥିଲା ।

ନାମଲେଖା ପୂର୍ବଦିନ ମୁଁ ଟ୍ରଙ୍କପତ୍ର ଧରି ଚାନ୍ଦିନୀଚୌକ ଛକରେ ପହଞ୍ଚିଲି । ରାତି ନଅଟା ବେଳେ ସମ୍ବଲପୁର ଯିବା ପାଇଁ କଟକ-ସମ୍ବଲପୁର ଏକ୍ସପ୍ରେସ୍ ଆସି ବସ୍ ଷ୍ଟାଣ୍ଡରେ ପହଞ୍ଚିଲା । ଆମେ ଆମର ଟ୍ରଙ୍କ-ପତ୍ର ଗାଡ଼ି ଉପରକୁ ଉଠାଇଲୁ ।

ସେଦିନ ମୋ ଭଳି ଅନେକ ପିଲା ବି.ଏଡ୍ ପଢ଼ିବା ପାଇଁ ସମ୍ବଲପୁର ଅଭିମୁଖେ ଆସି ସେଠାରେ ପହଞ୍ଚିଥିଲେ । ସେସବୁ ପିଲାମାନଙ୍କ ମଧ୍ୟରେ ଅନେକ ବୟସ୍କ ଓ ପ୍ରାକ୍-ପ୍ରଶିକ୍ଷଣ ଅଭିଜ୍ଞତା ସଂପନ୍ନ ବ୍ୟକ୍ତି କଟକ, ବାଲେଶ୍ୱର, ପୁରୀ ଜିଲ୍ଲାର କାର୍ଯ୍ୟରତ ଶିକ୍ଷକ ଥିଲେ ।

ବସ୍ ଛାଡ଼ିବାର ଅଳ୍ପ ସମୟ ପୂର୍ବରୁ ମୋ ସହିତ ବାଲେଶ୍ୱରର ଅନନ୍ତପୁର ଅଞ୍ଚଳର ଜଣେ ଯୁବକ ଦେଖା ହେଲେ । ସେ ଅଳ୍ପ ବୟସ୍କ ହେଲେ ମଧ୍ୟ ଧୋତି ଓ ନୀଳ ଫୁଲ ସାର୍ଟଟିଏ ପିନ୍ଧିଥିଲେ । ତାଙ୍କ ସହିତ କଥାବାର୍ତ୍ତାରୁ ମୁଁ ଜାଣିଲି ଯେ ସେ ଜଣେ ମେଧାବୀ ଛାତ୍ର । ଅର୍ଥଶାସ୍ତ୍ର (Economics)ରେ ସମ୍ମାନ ରଖି ବି.ଏ ପାଶ କରିଛନ୍ତି । ତାଙ୍କର ବୟସ ଓ ମୋର ବୟସ ମଧ୍ୟ ସମାନ । ମୋର ବି.ଏ.ରେ ଇତିହାସ ଅନର୍ସ ଥିବା କଥା ଶୁଣି ସେ ଖୁସି ହେଲେ ଓ ମୋତେ କହିଲେ, "ଦିଗରାଜ ବାବୁ ! ଆମେ ଦୁହେଁ ଅଳ୍ପ ବୟସର ହେଲେ ମଧ୍ୟ ଆମର ପାଠପ୍ରତି ସ୍ୱତନ୍ତ୍ର ଅଭିରୁଚି ରହିଅଛି । ଆମେ ଦୁହେଁ ବୟସ୍କ ଶିକ୍ଷକମାନଙ୍କ ସହିତ ନ ରହି ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଛାତ୍ରାବାସର ଏକ କୋଠରିରେ ରହିବା ।"

ମୁଁ ତାଙ୍କ କଥାରେ ସମ୍ମତି ଜଣାଇଲି । ଯେ ଯୁବକ ଜଣକ ହେଉଛନ୍ତି ଶ୍ରୀଯୁକ୍ତ ଶଚୀନ୍ଦ୍ର ନାଥ ପାଣିଗ୍ରାହୀ । ଯିଏ କି ବି.ଏଡ୍ ଡିଗ୍ରୀ ପରେ ପରେ ଓଡ଼ିଶା ପ୍ରଶାସନିକ ସେବା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରାଜ୍ୟର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ ଦାୟିତ୍ୱ ତୁଲାଇ ୨୦୦୭ ମସିହାରେ ସରକାରୀ ଚାକିରିରୁ ଅବସର ନେଇଛନ୍ତି ।

କଟକରୁ ରାତି ନଅଟାରେ ସମ୍ବଲପୁର ଅଭିମୁଖେ ବାହାରିଥିବା ବସ୍‌ଟି ସମ୍ବଲପୁରରେ ଭୋରୁ ଭୋରୁ ପହଞ୍ଚିଲା । ସଚୀ ଓ ମୁଁ ରିକ୍ସାଟିଏ କରି ସକାଳୁ ସକାଳୁ ସମ୍ବଲପୁରର ମୋତିଝରଣରେ ଅବସ୍ଥିତ ଧନକଉଡ଼ା ଯିବା ରାସ୍ତା କଡ଼ରେ ଅବସ୍ଥିତ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ତିନିତାଲା ବିଶିଷ୍ଟ ବି.ଏଡ୍. ଛାତ୍ରାବାସରେ ପହଞ୍ଚିଲୁ ।

ପୂର୍ବକଥା ମୁତାବକ ମୁଁ ଓ ଶଚୀ ଦ୍ୱିତୀୟ ମହଲାସ୍ଥିତ ପୂର୍ବପାର୍ଶ୍ୱର ଏକ କୋଠରିରେ ଝରକା ପାଖାପାଖି ଦୁଇଟି ଖଟ ପଡ଼ିଥିବା ସ୍ଥାନରେ ଆମର ବିଛଣାପତ୍ର ଖୋଲି ପକାଇଲୁ । ଶଚୀ ଗୋଟିଏ ଖଟକୁ ଅଧିକାର କଲା ଓ ଅନ୍ୟଟି ମୁଁ । ପରେ ଯେଉଁମାନେ ଆସିଲେ ସେମାନେ କୋଠରିର ବାରଣ୍ଡା ପାଖାପାଖି ଦୁଇଟି ଖଟରେ ରହିଲେ । ଗୋଟିଏ ଖଟରେ ରହିଲେ ବାଲେଶ୍ୱରର ଗୋପାଳ ବାବୁ ଓ ଅନ୍ୟ ଖଟରେ ସମ୍ବଲପୁର ଅଞ୍ଚଳର ନବୀନ ପଟେଲ ।

ନାମଲେଖା ପରଦିନ ଶିକ୍ଷାଦାନ ନ ଥିଲା । ହୁଏତ ସେଦିନ ରବିବାର ଥିଲା । ଆମେ ସକାଳୁ ସକାଳୁ ନିଦ ଭାଙ୍ଗିଛୁ କି ନାହିଁ, ତଳେ ଜଣେ ଛାତ୍ର ଡାକ ଛାଡ଼ିଲା, "ଯିଏ ଯେଉଁଠି ଅଛ, ତଳକୁ ଚାଲିଆସ । ସାର୍, ଡ଼ାକୁଛନ୍ତି ।"

ଆମେ ତଳକୁ ଗଲୁ । ଦେଖିଲୁ ଜଣେ ଭଦ୍ରବ୍ୟକ୍ତି ଠିଆ ହୋଇଛନ୍ତି । ସେ ନିଜକୁ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ବୋଲି ପରିଚୟ ଦେଲେ ଓ ଆମକୁ କହିଲେ, "ଚାଲ, ଆମେ ହଷ୍ଟେଲ ପରିସର ସଫା କରିବା ।" ଏହା କହି ସେ ନିଜେ ଆଗେ ଅଳିଆ ଆବର୍ଜନା ସଫା କଲେ ।

କାମ ନ କରିବାକୁ ଆମର ଆଉ ଚାରା ନ ଥିଲା । ଆମେ ମଧ୍ୟ ସମସ୍ତେ ମନପ୍ରାଣ ଦେଇ ଅଳିଆ ଆବର୍ଜନା ସଫା କଲୁ । ଅନାବନା ଘାସଗୁଡ଼ିକୁ ହଷ୍ଟେଲ ପରିସରରୁ ଉପାଡ଼ି ପକାଇଲୁ ।

ଆମ ଭିତରୁ କେହି କେହି କର୍ମକୁଣ୍ଠ ପଛରେ କୁହାକହି ହେଲେ, "ଆମର ଦୁର୍ଭାଗ୍ୟ ଯେ ଆମେ ବି.ଏଡ୍ ପଢ଼ିଲୁ । ଶେଷରେ ଆସି ମୂଲିଆଙ୍କ ଭଳି କାମ କରିବାକୁ ପଡ଼ିଲା ।"

ସେଦିନ ଘାସ ଉପାଡ଼ି ମୋର ହାତ ଫୋଟକା ହୋଇଗଲା । ଆମେ ପରେ ଜାଣିଲୁ ଯେ ସେ ବ୍ୟକ୍ତି ଜଣକ ହେଉଛନ୍ତି ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ।

କଲେଜର ଜାତୀୟ ସେବା ସଂସ୍ଥା (N.S.S) ଦାୟିତ୍ୱରେ ସେ ଅଛନ୍ତି ।

**ପ୍ରଶିକ୍ଷଣ ମହାବିଦ୍ୟାଳୟ ସଂପର୍କୀୟ ଅନୁଭୂତି**

ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ୧୯୭୧-୭୨ ଶିକ୍ଷାବର୍ଷର ଛାତ୍ର ମୁଁ । ଏଇ ପ୍ରଶିକ୍ଷଣ ପ୍ରତିଷ୍ଠାନର ଅଧ୍ୟକ୍ଷ ଥିଲେ ପ୍ରଫେସର ଭୋଳାନାଥ ମିଶ୍ର । ସେ ଓଡ଼ିଆରେ ଏମ୍.ଏ ଓ ଶିକ୍ଷା ସଂପର୍କରେ ଆମେରିକାର ୱିଇସ୍କନସିନ୍ (Wisconcin) ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ପ୍ରଥମ ସହକର୍ମୀଭାବେ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ, ଏମ୍.ଏ (ଇତିହାସ), ଏମ୍.ଏଡ୍ କାର୍ଯ୍ୟ କରୁଥିଲେ ଓ ଅନ୍ୟ ପ୍ରବୀଣ ଅଧ୍ୟାପକ ଭାବେ ଅଧ୍ୟାପକ ନିରଞ୍ଜନ ଦ୍ୱିବେଦୀ, ଅଧ୍ୟାପକ ସର୍ବେଶ୍ୱର ସାମଲ କାମ କରୁଥିଲେ । ବର୍ଷର ଶେଷଭାଗରେ ଅଧ୍ୟାପକ ଆଦିକନ୍ଦ ମହାପାତ୍ର ଓ ଅଧ୍ୟାପକ ସୁନୀଲ ବିହାରୀ ମହାନ୍ତି ଯୋଗଦାନ କରିଥିଲେ । ଉଭୟ ଶିକ୍ଷକ ଓ ପ୍ରଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଥିଲା ।

## ଅଧ୍ୟାପକମାନଙ୍କ ପ୍ରଦର୍ଶନମୂଳକ ଶିକ୍ଷା

ଶିକ୍ଷକ ପ୍ରଶିକ୍ଷଣ ପାଠ୍ୟକ୍ରମରେ ଅଧ୍ୟାପକମାନଙ୍କ ପ୍ରଦର୍ଶନମୂଳକ ଶିକ୍ଷାଦାନର ଅନନ୍ୟ ଭୂମିକା ରହିଅଛି । ସେମାନେ ବିଦ୍ୟାଳୟର ଶ୍ରେଣୀଗୃହରେ ବିଭିନ୍ନ ବିଷୟ କେମିତି ପଢ଼ାଯିବ, ତାହା ସମସ୍ତଙ୍କ ଆଗରେ ପ୍ରଦର୍ଶନ କରୁଥିଲେ ।

ସେ ବର୍ଷ ଆମ ପ୍ରତିଷ୍ଠାନରେ ଏହା ପୂଜାଛୁଟି ପରେ ପରେ ଆରମ୍ଭ ହୋଇଥିଲା ।

ଶିକ୍ଷାଦାନ ଦିନ ସମ୍ବଲପୁର ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲର ଶିକ୍ଷାଦାନ ହେବାକୁ ଥିବା ଶ୍ରେଣୀର ଛାତ୍ରମାନେ ଆମ ମହାବିଦ୍ୟାଳୟକୁ ଚାଲି ଚାଲି ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଆସୁଥିଲେ । ବିଭିନ୍ନ ବିଷୟରେ ଶିକ୍ଷାଦାନ କିପରି ହେବ, ତାହା ଅଧ୍ୟାପକମାନେ ପ୍ରଦର୍ଶିତ କରୁଥିଲେ । ପଢ଼ାଶେଷରେ ପିଲାମାନେ ସେମାନଙ୍କ ଶିକ୍ଷାଦାନ ସଂପର୍କୀୟ ବିଭିନ୍ନ ନୀତିଗତ ପ୍ରଶ୍ନ ପଚାରି ବୁଝୁଥିଲେ । ସେ ସବୁର ସେ ଯଥାର୍ଥ ଉତ୍ତର ଦେଉଥିଲେ । ଆମକୁ ପୂର୍ବରୁ କୁହାଯାଇଥିଲା ଯେ ପ୍ରଦର୍ଶନ-ତଥା-ସମାଲୋଚନା ମୂଳକ (Demonstration-cum-Criticism) ଶିକ୍ଷାଦାନ ଓ କେବଳ ପ୍ରଦର୍ଶନ (Demonstration) ମୂଳକ ଶିକ୍ଷାଦାନ ମଧ୍ୟରେ ଶିକ୍ଷା-ଶାସ୍ତ୍ରଗତ ପାର୍ଥକ୍ୟ ଅଛି । ଜଣେ ଅଧ୍ୟାପକମାନଙ୍କ ପ୍ରଦର୍ଶନ ଭିତ୍ତିକ ଶିକ୍ଷାଦାନ ସଂପର୍କରେ ସମାଲୋଚନା କରିପାରିବ ନାହିଁ । ଏହାର କାରଣ ସ୍ୱରୂପ ଶିକ୍ଷା ଶାସ୍ତ୍ର ବିଶେଷଜ୍ଞଗଣ କହନ୍ତି ଯେ ଅଧ୍ୟାପକଙ୍କ ପ୍ରଦର୍ଶିତ ଶିକ୍ଷାଦାନର ସଫଳତା ତୁଳନାରେ ବିଫଳତା ବା ଦୋଷତ୍ରୁଟି ଖୁବ୍ କମ୍‌ଥାଏ । ତେଣୁ ଜଣେ ବିଶେଷଜ୍ଞଙ୍କ ଦୋଷତ୍ରୁଟି ନ ସୂଚାଇ ତାଙ୍କଠାରୁ ଆବଶ୍ୟକସ୍ଥଳେ ସ୍ପଷ୍ଟୀକରଣ (clarification) ମାଗିଥାନ୍ତି ।

ଆମେ ମାଧ୍ୟମିକ ସ୍ତରର ବିଭିନ୍ନ ବିଷୟ କିପରି ଶ୍ରେଣୀ ଗୃହରେ ପଢ଼ାଯାଇପାରିବ; ତାହା ଅଧ୍ୟାପକମାନଙ୍କ ପ୍ରଦର୍ଶନମୂଳକ ଶିକ୍ଷାରୁ ଉପଲବ୍ଧି କଲୁ । ସେମାନେ ସମସ୍ତେ ହାରବାର୍ଟଙ୍କ ଶିକ୍ଷାଦାନ ସଂପର୍କୀୟ ପଞ୍ଚସୋପାନ ପଦ୍ଧତି ଅନୁଯାୟୀ ଶିକ୍ଷାଦାନ କରୁଥିଲେ । ପଞ୍ଚସୋପାନ ପଦ୍ଧତି ମଧ୍ୟରେ ତିନୋଟି ସୋପାନ ଯଥା : ଉପକ୍ରମ (Introduction), ଉପସ୍ଥାପନ (Presentation) ଏବଂ ପ୍ରୟୋଗ (Application) ମୁଖ୍ୟ ଥିଲା ।

ବିଷୟ ବିଶେଷଜ୍ଞ ଅଧ୍ୟାପକମାନଙ୍କ ଦ୍ୱାରା ଶ୍ରେଣୀଗୃହ ଶିକ୍ଷାଦାନ ମୁଖ୍ୟତଃ ବୈଜ୍ଞାନିକ ପଦ୍ଧତିମୂଳକ ଓ ଛାତ୍ର-କୈନ୍ଦ୍ରିକ ଥିଲା । ସେସବୁ ଦେଖି ସାରିଲାପରେ ଆମ ଶିକ୍ଷାଦାନରେ ଶିକ୍ଷା ବିଜ୍ଞାନର ପ୍ରୟୋଗ ଯେ କେତେ ଯଥାର୍ଥ ଓ ଆବଶ୍ୟକ ତାହା ବେଶ୍ ଭଲଭାବେ ଆମେ ବୁଝି ପାରିଥିଲୁ ।

ଅଧ୍ୟାପକମାନଙ୍କ ଶିକ୍ଷାଦାନ ପରେ ପରେ ଆମ୍ଭେମାନେ ପ୍ରତ୍ୟେକ ପ୍ରଦର୍ଶନ-ତଥା-ସମାଲୋଚନାମୂଳକ (Demonstration-cum-Criticism) କ୍ଲାସ ନେଇଥିଲୁ । ସେଥିପାଇଁ ଆମକୁ ପ୍ରାକ୍ ପ୍ରସ୍ତୁତି ପୂର୍ବକ ଏକ ପାଠ-ଯୋଜନା (Lesson Plan) ପ୍ରସ୍ତୁତ କରିବାକୁ ପଡୁଥିଲା । ପଢ଼ା ସମୟରେ ଜନୈକ ଅଧ୍ୟାପକ ଆମର ଶିକ୍ଷାଦାନ ଦେଖୁଥିଲେ ଏବଂ ଆବଶ୍ୟକ ସ୍ଥଳେ ନିଜର ମତାମତ ପାଠ-ଯୋଜନାରେ ଲିପିବଦ୍ଧ କରୁଥିଲେ ।

ପ୍ରତିବର୍ଷ ଭଳି ଜାନୁୟାରୀ ମାସରେ ଆମର ଅଭ୍ୟାସ ଶିକ୍ଷା (Practice Lesson) ସମ୍ବଲପୁରସ୍ଥ ଚନ୍ଦ୍ରଶେଖର ବେହେରା ଜିଲ୍ଲାସ୍କୁଲ, ଟାଉନ ଉଚ୍ଚ ବିଦ୍ୟାଳୟ, ଲେଡ଼ିଲୁଇସ୍ ବାଳିକା ଉଚ୍ଚ ବିଦ୍ୟାଳୟ, ମ୍ୟୁନିସ୍‌ପାଲଟି ବାଳିକା ଉଚ୍ଚ ବିଦ୍ୟାଳୟ, ପୁଲିସ ଏମ୍.ଇ ସ୍କୁଲ ଓ ଅନ୍ୟାନ୍ୟ କେତେକ ହାଇସ୍କୁଲରେ ଅନୁଷ୍ଠିତ ହୋଇଥିଲା ।

**ଶିକ୍ଷାଦାନରେ ଯଶୋଦା ପ୍ରସଙ୍ଗ**

ସେତେବେଳେ ଆମ୍ଭମାନଙ୍କ ସହିତ ଜଣେ ଦଶ ବାର ବର୍ଷର ଅଭିଜ୍ଞ ଶିକ୍ଷକ ବି.ଏଡ୍ ପଢୁଥିଲେ । ସେ ପୂର୍ବରୁ ନାଚପାର୍ଟିରେ ଅଭିନୟ କରୁଥିଲେ । ମୁଖ୍ୟତଃ ମହିଳା ଭୂମିକାରେ ଅଭିନୟ କରିବା ପାଇଁ ତାଙ୍କୁ ବଛାଯାଉଥିଲା । ସେ ବେଳେବେଳେ ଛାତ୍ରାବାସରେ ଗାମୁଛାକୁ ଓଢ଼ଣୀ କରି ଅନ୍ତେବାସୀମାନଙ୍କ ସମ୍ମୁଖରେ ଡୁଏଟ୍ ଅଭିନୟ ପ୍ରଦର୍ଶନ କରୁଥିଲେ । ତାଙ୍କର ଅଭିନୟ, ବେଶ ପରିପାଟୀ ସମସ୍ତଙ୍କୁ ଆମୋଦିତ କରୁଥିଲା ।

ସେ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲରେ ଓଡ଼ିଆ ଭାଷା ବିଷୟ ଶିକ୍ଷାଦାନ କରିବାକୁ ଯାଇଥିଲେ । ସେତେବେଳେ ଯଶୋଦା ବିଳାପ ନାମକ ଏକ କବିତା ମାଧ୍ୟମିକ ସ୍ତରରେ ପଢ଼ାଯାଉଥିଲା । କବିତାର ପ୍ରଥମ ଧାଡ଼ି ଥିଲା "ଆରେ ବାବୁ ଶ୍ୟାମଘନ ! ତୁ ଗଲେ ମଧୁଭୁବନ, କାହା ମୁଖ ଅନାଇ ବଞ୍ଚିବି .... ।"

ରାଧାଶ୍ୟାମ ବାବୁ ଏଇ କବିତାଟିକୁ ପଢ଼ାଇବାକୁ ଗଲାବେଳେ ନିଜେ ଶାଢ଼ି ଆଣି, ବେଣୀ ପିନ୍ଧି, ପାଉଡ଼ର ମାଖି, ହାତରେ କାଚ ଆଦି ପିନ୍ଧି ପଢ଼ାଇବାକୁ ଯାଉଥିଲେ । ତାଙ୍କର ଉପସ୍ଥିତି ହାଇସ୍କୁଲ ପରିସରରେ କୌତୂହଳ ସୃଷ୍ଟି କରୁଥିଲା ।

ସେ ସମୟରେ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ ଥିଲେ ଶ୍ରୀଯୁକ୍ତ ଶଶୀଭୂଷଣ ତ୍ରିପାଠୀ । ସେ ଜଣେ ବିଜ୍ଞ ପ୍ରଧାନଶିକ୍ଷକ ଥିଲେ ଓ ତିନୋଟି ବିଷୟରେ ଏମ୍.ଏ. କରିଥିଲେ । ଆମ କଲେଜର ଅଧ୍ୟକ୍ଷ ଚନ୍ଦ୍ରଶେଖର ବେହେରା ଜିଲ୍ଲାସ୍କୁଲର ପରିଦର୍ଶକ ଥିବା ହେତୁ, ସେ ଶିକ୍ଷାଦାନର ସମସ୍ତ କାର୍ଯ୍ୟରେ ପ୍ରଶିକ୍ଷାର୍ଥୀମାନଙ୍କୁ

ସାହାଯ୍ୟ କରୁଥିଲେ । ରାଧାଶ୍ୟାମ ବାବୁଙ୍କ ବେଶ ଓ ପୋଷାକ ଗ୍ରହଣୀୟ ନ ହେଲେ ମଧ୍ୟ ସେ ଏଥିରେ ହସ୍ତକ୍ଷେପ କରି ନ ଥିଲେ ।

ଓଡ଼ିଆ ଶିକ୍ଷାଦାନର ଦାୟିତ୍ୱ ନିଜେ ଅଧ୍ୟକ୍ଷ ନେଇଥିଲେ । ଦିନେ ଅଧ୍ୟକ୍ଷ ବି.ଏଡ୍ ପ୍ରଶିକ୍ଷାର୍ଥୀମାନଙ୍କ ବିଭିନ୍ନ ଶ୍ରେଣୀରେ ଶିକ୍ଷାଦାନ ଦେଖୁ ଦେଖୁ ଯାଇ ରାଧାଶ୍ୟାମ ବାବୁଙ୍କ ଶ୍ରେଣୀରେ ପହଞ୍ଚିଲେ । ସେତେବେଳେ ରାଧାଶ୍ୟାମବାବୁ ନିଜେ ଯଶୋଦା ହୋଇ, ଗୋଟିଏ ପିଲାକୁ ବାଳକ କୃଷ୍ଣ ଭୂମିକାରେ ଅବତୀର୍ଣ୍ଣ କରାଇ ବିଭିନ୍ନ ଅଙ୍ଗଭଙ୍ଗୀରେ ନାଚି ନାଚି ଗାଉଥିଲେ, "ଆରେ ବାବୁ ଶ୍ୟାମଘନ, ତୁ ଗଲେ ମଧୁଭୁବନ .... ।" ତାଙ୍କର ଏପରି ଶିକ୍ଷାଦାନ ଦେଖି ଅଧ୍ୟକ୍ଷ ମିଶ୍ର ତାଙ୍କ ଉପରେ ବିରକ୍ତି ପ୍ରକାଶ କଲେ । ରାଧାଶ୍ୟାମ ବାବୁ ଜଣେ ବୟସ୍କ ଶିକ୍ଷକ ହୋଇଥିବା ହେତୁ ତାଙ୍କୁ ସେ ବୁଝାଇ କହିଲେ, "ଏପରି ପୋଷାକ ପିନ୍ଧି ଶ୍ରେଣୀ ଗୃହକୁ ଆସିଲେ ପିଲାମାନେ ଶିକ୍ଷକଙ୍କ ପୋଷାକପତ୍ର ଉପରେ ପାଠ ଅପେକ୍ଷା ଅଧିକ ନଜର ଦେବେ । ତେଣୁ ଆସନ୍ତା ଥରକୁ ତୁମେ ନିଜର ଶିକ୍ଷକ ସୁଲଭ ପୋଷାକ ପିନ୍ଧି ଆସିବ ।" କିନ୍ତୁ ରାଧାଶ୍ୟାମ ବାବୁଙ୍କ ଉପରେ ଅଧ୍ୟକ୍ଷ ମିଶ୍ରଙ୍କ କଥାର କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ ପ୍ରତିଦିନ ନାଚ ପାର୍ଟିର ପୋଷାକପତ୍ର ପିନ୍ଧି ବିଦ୍ୟାଳୟକୁ ଗଲେ ଓ ପୂର୍ବବତ୍ ପାଠ ପଢ଼ାଇଲେ ।

ଦିନେ ଆମେ ଶୁଣିବାକୁ ପାଇଲୁ ଯେ ଅଧ୍ୟକ୍ଷ ମିଶ୍ର ରାଧାଶ୍ୟାମ ବାବୁଙ୍କ ଅନାବଶ୍ୟକ ନାଟତାମସା ଦେଖି ଜିଲ୍ଲାସ୍କୁଲରେ ତାଙ୍କ ଉପରେ ଭୀଷଣ ବିରକ୍ତି ପ୍ରକାଶ କଲେ ଓ କହିଲେ, "ତୁମେ ଯଦି ଆଉ ଦିନେ ଶାଢ଼ି ଚୁଡ଼ି ଆଦି ପିନ୍ଧି ଏ ଶ୍ରେଣୀକୁ ଶିକ୍ଷାଦାନ କରିବାକୁ ଆସିବ, ତେବେ ମୁଁ ତୁମକୁ କଲେଜରୁ ବାହାର କରିଦେବି ।" ତା'ପର ଦିନଠାରୁ ରାଧାଶ୍ୟାମବାବୁଙ୍କୁ ଆଉ କେହି କେବେ ନାଚ ପାର୍ଟି ପୋଷାକ ପତ୍ର ପିନ୍ଧି ସ୍କୁଲକୁ ଯିବାର ଦେଖିଲେ ନାହିଁ ।

ଦିନେ ସନ୍ଧ୍ୟାବେଳେ ରାଧାଶ୍ୟାମବାବୁ ମୋ ସହିତ ଦୁଃଖସୁଖ ହେଉଥିଲେ । ମୁଁ ରାଧାଶ୍ୟାମବାବୁଙ୍କୁ ଘଟଣା ପ୍ରସଙ୍ଗରେ ପଚାରିଲି, "ଆପଣଙ୍କ ଉପରେ କାହିଁକି ଅଧ୍ୟକ୍ଷ ଜିଲ୍ଲା ସ୍କୁଲରେ ରାଗିଲେ ?" ସେ ମୋତେ ଏକ ସରଳ ଉତ୍ତର ଦେଲେ, "ଅଧ୍ୟକ୍ଷ ମୋତେ ଇର୍ଷା କରୁଛନ୍ତି । "କାହିଁକି", "ମୁଁ ପଚାରିଲି । ସେ ମୋତେ ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ କହିଲେ, "ତୁ ତ ଜାଣିଛୁ ! ଶିକ୍ଷାଦାନ ସମୟରେ ଅଭିନୟ (Dramatisation) ର ସ୍ୱତନ୍ତ୍ର ଭୂମିକା ରହିଛି । ଅଙ୍ଗଭଙ୍ଗୀ ପ୍ରଦର୍ଶନ ମାଧ୍ୟମ ଅବଲମ୍ବନ କରି ଶିକ୍ଷାଦାନ କଲେ ପିଲାଟି ସହଜରେ ବିଷୟଟିର ଭାବ ଗ୍ରହଣ କରେ । ଏହିସବୁ ଦୃଷ୍ଟିକୋଣରୁ ମୋର ଶିକ୍ଷାଦାନ ଯଥାର୍ଥ । କାରଣ ମୁଁ ନିଜେ ଯଶୋଦା ହୋଇ ଗୋଟିଏ ପିଲାକୁ କୃଷ୍ଣ କରି ପଢ଼ାଉ ଥିଲି ।"

"ତେଣୁ ଅଧ୍ୟକ୍ଷ ଆପଣଙ୍କ ଉପରେ ଖୁସି ହେବା କଥା, କିନ୍ତୁ ଇର୍ଷାର କାରଣ କ'ଣ ?", ମୁଁ ପଚାରିଲି । ସେ କହିଲେ, "କାଳେ ବିଶ୍ୱବିଦ୍ୟାଳୟର ଶିକ୍ଷାଦାନ ପରୀକ୍ଷାରେ ମୁଁ ଅଧିକ ନମ୍ବର ରଖି ଡ଼ିଷ୍ଟିଂସନ ପାଇଯିବି ।" ତାଙ୍କର ଏ ଅଦ୍ଭୁତ ଯୁକ୍ତି ମୋତେ ସେଦିନ ଆଶ୍ଚର୍ଯ୍ୟ କରିଥିଲା । ଅଧ୍ୟକ୍ଷ ପ୍ରଫେସର ଭୋଳାନାଥ ମିଶ୍ରଙ୍କ ପ୍ରତି ଏପରି ଆକ୍ଷେପ ଓ ସନ୍ଦେହ ନିରାଧାର ଥିଲା । ରାଧାଶ୍ୟାମବାବୁ ଜଣେ ବୟସ୍କ ବ୍ୟକ୍ତି ହୋଇଥିବା ହେତୁ ସେଦିନ ମୁଁ ଏ ପ୍ରସଙ୍ଗରେ କୌଣସି ମନ୍ତବ୍ୟ ଦେବାକୁ ଉଚିତ ମନେ କଲି ନାହିଁ ।

ଅଳ୍ପ କେଇଦିନ ପରେ ବିଶ୍ୱବିଦ୍ୟାଳୟ ଦ୍ୱାରା ଶିକ୍ଷାଦାନର ପ୍ରାକ୍‌ଟିକାଲ ପରୀକ୍ଷା କରାଗଲା । ସେ ବର୍ଷ ଓଡ଼ିଆ ଶିକ୍ଷାଦାନ ଦେଖିବା ପାଇଁ କଟକର ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ବିବେକାନନ୍ଦ ପତି ଆସିଥିଲେ ।

ରାଧାଶ୍ୟାମବାବୁ ସମ୍ବଲପୁର ଜିଲ୍ଲାସ୍କୁଲରେ ଓଡ଼ିଆରେ ସେଇ ପୂର୍ବ ବିଷୟ "ଯଶୋଦା ବିଳାପ" ପଢ଼ାଇଥିଲେ । ତାଙ୍କ ଉପରେ ଅଧ୍ୟକ୍ଷଙ୍କ ଶାଢ଼ି ପିନ୍ଧା ପ୍ରସଙ୍ଗରେ ପୂର୍ବ ପରାମର୍ଶର କିଛି ପ୍ରଭାବ ପଡ଼ି ନ ଥିଲା । ସେ ପ୍ରାକ୍‌ଟିକାଲ ପରୀକ୍ଷା ଦିନ ଶାଢ଼ି ଓ ହାତରେ କାଚ ପିନ୍ଧି ମୁହଁରେ ପାଉଡ଼ର ମାଖି ଯଶୋଦା ହୋଇ ପାଠ ପଢ଼ାଇବାକୁ ଯାଇଥିଲେ । କୃଷ୍ଣଙ୍କ ଅନୁପସ୍ଥିତିରେ ଯଶୋଦାଙ୍କ ମନର ଅବସ୍ଥା କବି ତାଙ୍କର କାବ୍ୟିକ ଭାଷାରେ ଉଲ୍ଲେଖ କରିଥିଲେ, "ଜଳ ବିହୁନେ ଯେଣୁ ଝଷ" । ରାଧାଶ୍ୟାମ ବାବୁ "ଜଳ ବିହୁନେ ଯେଣୁ ଝଷ' ବୁଝାଇବା ପାଇଁ ଗୋଟିଏ କାଚ ଜାର ମଧ୍ୟରେ ଗୋଟିଏ ଚେଙ୍ଗମାଛ ନେଇଥିଲେ । ପିଲାମାନଙ୍କୁ ପ୍ରଶ୍ନ କରିଥିଲେ, "ପିଲାମାନେ ! ଜାର୍‌ଟି ଭିତରେ ପାଣିରେ କ'ଣ ଦେଖୁଛ ? ଚେଙ୍ଗ ମାଛଟିଏ; ପିଲାମାନେ ଉତ୍ତର ଦେଲେ । ସେ ସଙ୍ଗେ ସଙ୍ଗେ କହିଲେ, "ଏ ଚେଙ୍ଗ ମାଛ ନୁହେଁ । ଏ ହେଉଛି 'ଝଷ' । 'ମାଛ'ର ଅନ୍ୟ ସମାର୍ଥକ ଶବ୍ଦ ହେଉଛି 'ଝଷ' ।

ତା'ପରେ ସେ କହିଲେ, "ଦେଖ, ଜଳ ବିହୁନେ 'ଝଷ' ର ଅବସ୍ଥା କ'ଣ ହେଉଛି ।" ଏହା କହି ସେ ଜାର ମଧ୍ୟରୁ ମାଛଟିକୁ କାଢ଼ି ଟେବୁଲ ଉପରେ ଥୋଇ ଦେଲେ ।

ନିରିହ ମାଛଟି ଟେବୁଲ ଉପରେ ପଡ଼ି ଛଟପଟ ହେବାକୁ ଲାଗିଲା । ଏ ଦୃଶ୍ୟକୁ ପ୍ରଦର୍ଶିତ କରି ରାଧାଶ୍ୟାମ ବାବୁ କହିଲେ, "ଦେଖୁଛ ତ ପାଣି ବିହୁନେ କେମିତି ମାଛଟି ଛଟପଟ ହେଉଛି । ସେମିତି କୃଷ୍ଣଙ୍କ ଅନୁପସ୍ଥିତିରେ ମା' ଯଶୋଦା ଏଇ ଝଷ ବା ମାଛଟି ଭଳି ଛଟପଟ ହେଉଥିଲେ ।"

ରାଧାଶ୍ୟାମ ବାବୁଙ୍କର ଯଶୋଦାଙ୍କ ଅଭିନୟ ଓ ବେଶଭୂଷା ଶିକ୍ଷାଦାନ ଦେଖି ସେଦିନ ଅଧ୍ୟକ୍ଷ ବିବେକାନନ୍ଦ ପତି ଓ ଅଧ୍ୟକ୍ଷ ଭୋଳାନାଥ ମିଶ୍ର ହସି ହସି ଶ୍ରେଣୀ ଗୃହରୁ ବାହାରି ଆସିଥିଲେ । ସେମାନେ ସେଦିନ ରାଧାଶ୍ୟାମବାବୁଙ୍କ ଶିକ୍ଷାଦାନ ଉପରେ କୌଣସି ପ୍ରଶ୍ନ ପଚାରି ନ ଥିଲେ କିମ୍ବା କୌଣସି ମନ୍ତବ୍ୟ ଦେଇ ନ ଥିଲେ ।

**ମୋ ପରୀକ୍ଷକ : ପ୍ରଫେସର ବୈଦ୍ୟନାଥ ରଥ**

ଓଡ଼ିଶା ଶିକ୍ଷା ଇତିହାସରେ ଯେଉଁମାନଙ୍କ ଅବଦାନ ଆଜି ପର୍ଯ୍ୟନ୍ତ ଆଲୋଚିତ ହୁଏ, ସେମାନଙ୍କମଧ୍ୟରୁ ପ୍ରଫେସର ବୈଦ୍ୟନାଥ ରଥ ହେଉଛନ୍ତି ଅନ୍ୟତମ । ସେ ଥିଲେ ପ୍ରଶିକ୍ଷଣ ଶିକ୍ଷା ଇତିହାସର ଜଣେ କିମ୍ବଦନ୍ତୀ ପୁରୁଷ । ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ସେ ଦୀର୍ଘଦିନ ଅଧ୍ୟକ୍ଷ ପଦରେ ଅବସ୍ଥାପିତ ଥିଲେ । ତାଙ୍କ ସମୟରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରତିବର୍ଷର କାର୍ଯ୍ୟସୂଚୀ (Calendar of Activities) ଶିକ୍ଷାଦାନ ମଧ୍ୟରେ ସୀମିତ ନ ରହି ସହ ପାଠ୍ୟକ୍ରମ ଭିତ୍ତିକ କାର୍ଯ୍ୟକ୍ରମ ମାଧ୍ୟମରେ ଚଳଚଞ୍ଚଳ ଓ କର୍ମମୁଖର ହେଉଥିଲା ।

୧୯୭୨ ମସିହାରେ ସେ ଓଡ଼ିଶାର ସ୍କୁଲ ବିଭାଗର ନିର୍ଦ୍ଦେଶକ ଥିଲେ । ଆମ ମହାବିଦ୍ୟାଳୟକୁ ଇତିହାସ ଶିକ୍ଷାଦାନର ବାହ୍ୟ ପରୀକ୍ଷକ (External Examiner) ହୋଇ ଆସିଥିଲେ । ଏହାର ଆନ୍ତଃ ପରୀକ୍ଷକ (Internal Examiner) ଥିଲେ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ । ଅଧ୍ୟାପକ ଶତପଥୀ ପ୍ରଫେସର ରଥଙ୍କ ଛାତ୍ର ଥିଲେ । ପ୍ରଫେସର ରଥ ବାହ୍ୟ ପରୀକ୍ଷକ ହେବା କଥା ଶୁଣି ଇତିହାସ ମେଥଡ୍‌ର ଛାତ୍ରଛାତ୍ରୀମାନଙ୍କର ମାନସିକ ଚାପ ବଢ଼ିଗଲା । ଆମର ପାଠ-ଯୋଜନାଗୁଡ଼ିକ ଆନ୍ତଃ ପରୀକ୍ଷକ ଅଧ୍ୟାପକ ଶତପଥୀ ବଡ଼ ନିଷ୍ଠାର ସହିତ ସଂଶୋଧନ କରିଥିଲେ । କାରଣ କିଛି ଦୋଷ ଦୁର୍ବଳତା ଧରା ପଡ଼ିଲେ ହୁଏତ ପ୍ରଫେସର ରଥ ବିରକ୍ତି ପ୍ରକାଶ କରିବେ ।

ମାତ୍ର ପ୍ରଫେସର ରଥ ଯେଉଁ ତିନି ଚାରିଦିନ ରହି ପରୀକ୍ଷା କଲେ ସେମିତି କିଛି ଘଟିଲା ନାହିଁ । ପ୍ରାକ୍‌ଟିକାଲ ପରୀକ୍ଷା ଦିନ ଶ୍ରେଣୀ ଶ୍ରେଣୀ ବୁଲି କିଛି ସମୟ ବସି ପ୍ରଫେସର ରଥ ଓ ଅଧ୍ୟାପକ ଶତପଥୀ ଶିକ୍ଷାଦାନ ଓ ପାଠଯୋଜନା (Lesson Planning) ଦେଖିବା ପରେ ପରେ ନିଜେ ବସିବା ସ୍ଥାନରୁ ଉଠି ଚାଲି ଯାଉଥିଲେ । ଯଦି କେହି ଭୁଲ ତଥ୍ୟ ଉପସ୍ଥାପନ କରିଥିଲା, ତେବେ ତା' ପାଖକୁ ଆସି ଭଦ୍ରଭାବେ ସୂଚାଇ ସେ ଶ୍ରେଣୀ ଗୃହଛାଡ଼ି ବାହାରକୁ ଚାଲି ଯାଉଥିଲେ ।

ମୁଁ, ମୋର ଇତିହାସ ଶିକ୍ଷାଦାନ ପ୍ରାକ୍‌ଟିକାଲ୍ ପରୀକ୍ଷାରେ "ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାର" ବିଷୟଟିକୁ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲର ନବମଶ୍ରେଣୀରେ

ପଢ଼ାଇଥିଲି । ତତ୍‌କାଳୀନ ଭାରତ ବର୍ଷର ଇତିହାସ ମାନଚିତ୍ର, ସୁଦୂର ଗ୍ରୀସ୍‌ରୁ ଆଲେକ୍‌ଜାଣ୍ଡାର ଭାରତକୁ ଆସିଥିବା ପଥ ଓ ତତ୍ ସଂପର୍କୀୟ ହସ୍ତଅଙ୍କିତ ମାନଚିତ୍ର, ସମୟରେଖା, ଆଲେକ୍‌ଜାଣ୍ଡାରଙ୍କ ଛବି ଆଦି ସାହାଯ୍ୟରେ ସମଗ୍ର ପାଠ୍ୟଦାନ ବିଷୟଟିକୁ ବର୍ଣ୍ଣନା-ତଥା-ଆଲୋଚନା ପ୍ରଣାଳୀ (Narration-cum-Discussion Method) ମାଧମରେ ଉପସ୍ଥାପନ କରିଥିଲି । ପ୍ରଫେସର ରଥ ମୋର ଶିକ୍ଷାଦାନ ଦେଖି ସାରିଲା ପରେ ପଛରୁ ଉଠି ଗଲାବେଳେ ମୋ ଛବିଗୁଡ଼ିକୁ ଦେଖିଲେ । ମାତ୍ର କୌଣସି ମନ୍ତବ୍ୟ ନ ଦେଇ ଚାଲିଗଲେ । ସେ ପଦାକୁ ଚାଲିଗଲା ପରେ ଅଧ୍ୟାପକ ଶତପଥୀ ମୋ ପାଖକୁ ଆସି କହିଲେ, "କି ପାଠ ପଢ଼ାଇଲୁ ଯେ ତୋତେ ଆମେ କେତେ ନମ୍ବର ଦେବୁ ?"

ଇତିହାସ ପରୀକ୍ଷା ସରିଗଲା ମୁଁ ଯେ ଇତିହାସ ଶିକ୍ଷାଦାନରେ ଭଲ କରି ନାହିଁ ଏକଥା ମଧ୍ୟ ସ୍ପଷ୍ଟ ହୋଇଗଲା ।

ସେଦିନ ମୋର ମାନସିକ ସ୍ଥିତି ଏତେ ଖରାପ ହୋଇଗଲା ଯେ ମୁଁ ରାତିରେ ଭଲରେ ଶୋଇ ପାରିଲି ନାହିଁ । ମାତ୍ର ଫଳ ପ୍ରକାଶିତ ହେଲାପରେ ମୁଁ ଜାଣିବାକୁ ପାଇଲି ଯେ ଇତିହାସ ଶିକ୍ଷାଦାନ ପରୀକ୍ଷାରେ ମୁଁ ଖୁବ୍ ଭଲ ନମ୍ବର ରଖିଅଛି ।

ସେ ବର୍ଷ ମୋର ଶିକ୍ଷାଦାନର ଅନ୍ୟତମ ବିଷୟ ଥିଲା 'ଇଂରାଜୀ' । ଇଂରାଜୀ ଶିକ୍ଷାଦାନ ଦେଖିବାକୁ ବାହ୍ୟ ପରୀକ୍ଷକଭାବେ ବ୍ରହ୍ମପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ଦୁର୍ଲଭ ଚନ୍ଦ୍ର ଚୌଧୁରୀ ଆସିଥିଲେ । ସେ ଭଦ୍ର ଓ ଅମାୟିକ ବ୍ୟକ୍ତି ଥିଲେ । ମୁଁ ଇଂରାଜୀର ଗଦ୍ୟ ବିଭାଗରୁ ଗୋଟିଏ ବିଷୟ ପଢ଼ାଇଥିଲି । ଶିକ୍ଷାଦାନ ଭଲ ହୋଇଥିଲେ ମଧ୍ୟ ମୋତେ ସେଥିରେ ଆଶାନୁରୂପ ସଫଳତା ମିଳି ନ ଥିଲା । ଏହି ପରୀକ୍ଷାର ଆନ୍ତଃ ପରୀକ୍ଷକ (Internal Examiner) କଲେଜର ଅଧ୍ୟାପକ ଡକ୍ଟର ମୋହନ ଚରଣ ନାୟକ ଥିଲେ ।

**ପ୍ରଶିକ୍ଷଣ ମହାବିଦ୍ୟାଳୟର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ**

ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ୧୯୭୧-୭୨ ଶିକ୍ଷାବର୍ଷରେ ସ୍ୱାଧୀନତା ଦିବସ, ଶିକ୍ଷକ ଦିବସ, ରକ୍ଷାବନ୍ଧନ ଉତ୍ସବ, ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଜନ୍ମ ଦିବସ, ବୀର ସୁରେନ୍ଦ୍ର ସାଏଙ୍କ ଜନ୍ମ ଦିବସ, ଅଗଷ୍ଟ ୧୫, ଜାନୁୟାରୀ ୨୬ ଆଦି ପାଳନ କରାଯାଇଥିଲା । ଅଧିକାଂଶ ପାଳିତ ଉତ୍ସବର ଆଲୋଚନା ଚକ୍ରମାନ ସାଂସ୍କୃତିକ କାର୍ଯ୍ୟକ୍ରମ ଦାୟିତ୍ୱରେ ଥିବା ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀଙ୍କ ଉଦ୍ୟମକ୍ରମେ ଆୟୋଜିତ କରାଯାଉଥିଲା ।

ସେ ବର୍ଷ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆନ୍ତଃ କଲେଜ ନାଟ୍ୟ ପ୍ରତିଯୋଗିତା ଏଇ ମହାବିଦ୍ୟାଳୟ ମୁକ୍ତାକାଶ ମଞ୍ଚରେ ଅନୁଷ୍ଠିତ କରା ଯାଇଥିଲା ।

ଏହାକୁ ମନଭରି ଆମ୍ଭେମାନେ ଉପଭୋଗ କରିଥିଲୁ । ଏଇ ଆନ୍ତଃ ମହାବିଦ୍ୟାଳୟ ନାଟ୍ୟ ପ୍ରତିଯୋଗିତାରେ ଗଙ୍ଗାଧର ମେହର କଲେଜ ଦ୍ୱାରା ଅଭିନୀତ ନାଟକ ପ୍ରଥମ ହୋଇଥିଲା ।

ବର୍ଷ ଶେଷରେ ଆମ ମହାବିଦ୍ୟାଳୟର ବାର୍ଷିକ ଅଭିନୟ ଅଧ୍ୟାପକ ନିରଞ୍ଜନ ଦ୍ୱିବେଦୀଙ୍କ ନିର୍ଦ୍ଦେଶନାରେ ପ୍ରଦର୍ଶିତ କରାଯାଇଥିଲା । ସେ ବର୍ଷ ନାଟ୍ୟ ସଂସଦର ପ୍ରତିନିଧି ଥିଲେ ବି.ଏଡ୍ ଛାତ୍ର ଅନାଦି ଚରଣ ଦାସ । ଆମର ବାର୍ଷିକ କ୍ଷେତ୍ର ପରିଦର୍ଶନ ପଦ୍ମପୁର ନିକଟବର୍ତ୍ତୀ ନୃସିଂହନାଥଠାରେ ଅନୁଷ୍ଠିତ ହୋଇଥିଲା । ଏହାଦ୍ୱାରା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆସୁଥିବା ଛାତ୍ରଛାତ୍ରୀଗଣ ପ୍ରଭୁ ନୃସିଂହନାଥଙ୍କ ଦର୍ଶନ କରିବାର ସୁଯୋଗ ପାଇଥିଲେ ।

ଆମର ବିଶ୍ୱବିଦ୍ୟାଳୟର ବି.ଏଡ୍ ପରୀକ୍ଷା ୧୯୭୨ ମସିହା ମାର୍ଚ୍ଚ ମାସରେ ଅନୁଷ୍ଠିତ ହୋଇଥିଲା ଓ ଏପ୍ରିଲ ମାସରେ ଶେଷ ହୋଇଥିଲା । ଲିଖିତ ପରୀକ୍ଷା ସରିବା ପରେ ସମ୍ବଲପୁର ଛାଡ଼ି ଘରକୁ ଫେରିବା ପର୍ବ ଆରମ୍ଭ ହୋଇଥିଲା । ଯେଝା ସୁବିଧା ଦେଖି ହଷ୍ଟେଲ ଛାଡ଼ି ଅନ୍ତେବାସୀମାନେ ନିଜ ନିଜର ଘର ଅଭିମୁଖରେ ଚାଲିଲେ ।

**ବି.ଏଡ୍. ଉତ୍ତୀର୍ଣ୍ଣ ହେବାର ପରବର୍ତ୍ତୀ ସମୟ**

ବି.ଏଡ୍. ପରୀକ୍ଷା ପରେ ମୁଁ ଆମ ଗ୍ରାମ ରୁଦ୍ରପୁରକୁ ଫେରିଲି । ମଉଦା ହାଇସ୍କୁଲରୁ ଇସ୍ତଫା ଦେଇ ଚାଲିଯାଇଥିବାରୁ ସେଠାକୁ ଆଉ ଫେରିବାର ସମ୍ଭାବନା ନ ଥିଲା । ଆମ ପାଖ ହାଇସ୍କୁଲରେ ମଧ୍ୟ କୌଣସି ଶିକ୍ଷକ ପଦ ଖାଲି ନ ଥିଲା ।

ଏଇ ସମୟରେ ଦିନେ ମୋର ପୂର୍ବ ପରିଚିତ ହଂସିଣାବାଦ ଗ୍ରାମ ତଥା ବୈରୀ ହାଇସ୍କୁଲର ଶିକ୍ଷକ ଶ୍ରୀଯୁକ୍ତ ସୂର୍ଯ୍ୟମଣି ଲେଙ୍କାଙ୍କ ସହିତ ଆମ ଗ୍ରାମରେ ଦେଖା ହେଲା । ସେ ମୋତେ କହିଲେ, ଆମେ ଚୌଦ୍ୱାର ନିକଟବର୍ତ୍ତୀ ଶଙ୍କରପୁର ଯିବା । ସେଠାକାର ଉଚ୍ଚ ବିଦ୍ୟାଳୟର ସେକ୍ରେଟେରୀ ମୋର ପୂର୍ବ ପରିଚିତ ବ୍ୟକ୍ତି । ଅତୀତରେ ମୁଁ କିଛିଦିନ ପାଇଁ ସେଠାରେ ଚାକିରି କରିଥିଲି । ମୁଁ କହିଲେ ସେ ତୋତେ ସେଠାରେ ରଖିବାରେ ଦ୍ୱିଧାବୋଧ କରିବେ ନାହିଁ ।''

ସୂର୍ଯ୍ୟମଣି ବାବୁ ଅତି ସରଳ ଓ ଭଦ୍ର ମଣିଷ । ତାଙ୍କ କହିବା ଅନୁସାରେ ମୁଁ ଦିନେ ତାଙ୍କ ଘରେ ପହଞ୍ଚିଲି । ଦୁହେଁ ସାଇକେଲରେ ଶଙ୍କରପୁରରେ ପହଞ୍ଚିଲୁ । ସେତେବେଳକୁ ସନ୍ଧ୍ୟା ନଇଁ ଆସିଥାଏ । ପୁରାତନ ଶିକ୍ଷକ ସୂର୍ଯ୍ୟମଣି ବାବୁ ଆସିଛନ୍ତି ବୋଲି ଶଙ୍କରପୁର ଗ୍ରାମର ତତ୍କାଳୀନ ସଂପାଦକଙ୍କ ପାଖକୁ ଖବର ଗଲା ।

ସେ ଖବର ପାଇ ଯଥାଶୀଘ୍ର ଆସିଲେ । ସୂର୍ଯ୍ୟମଣିବାବୁଙ୍କ ସହିତ ଔପଚାରିକ ଦୃଷ୍ଟିକୋଣରୁ ଦୁଇଚାରିପଦ କଥାବାର୍ତ୍ତା ହୋଇ ଆମେ ସେଠାକୁ ଆସିବାର କାରଣ

ପଚାରିଲେ । ସୂର୍ଯ୍ୟମଣି ବାବୁ ତାଙ୍କ ଅନୁଷ୍ଠାନରେ ମୋତେ ଶିକ୍ଷକ ପଦବୀରେ ରଖିବାକୁ କହିଲେ । ସେକ୍ରେଟେରୀ ମହାଶୟ ଦୁଃଖ ପ୍ରକାଶ କରି କହିଲେ, "କ'ଣ କରିବି ? ଆମ ସ୍କୁଲରେ କୌଣସି ପଦ ଖାଲି ନାହିଁ । ପଦ ଖାଲି ହେଲେ ଆପଣଙ୍କୁ ଖବର ଦେବି ।"

ସେଦିନ ରାତ୍ରିରେ ଆମେ ଦୁହେଁ ଶଙ୍କରପୁର ସ୍କୁଲରେ ଅବସ୍ଥାନ କଲୁ । ସେକ୍ରେଟେରୀ ମହୋଦୟ ଆମ ଦୁଇଜଣଙ୍କ ପାଇଁ ରାତ୍ରଭୋଜନ ପଠାଇ ଦେଇଥିଲେ ।

ପରିଦିନ ସକାଳୁ ଆମେ ଦୁହେଁ ଶଙ୍କରପୁରରୁ ଫେରି ଆସିଲୁ । ହଂସିଣାବାଦରେ ସୂର୍ଯ୍ୟମଣି ବାବୁ ରହିଲେ । ମୁଁ ଆମ ଗାଁ ରୁଦ୍ରପୁରକୁ ଫେରି ଆସିଲି ।

ସେ ବର୍ଷ ବି.ଏଡ୍ ପରୀକ୍ଷାଫଳ ପ୍ରକାଶନ ଅସ୍ୱାଭାବିକ ଭାବେ ବିଳମ୍ବ ହେଲା । ଖରାଦିନ ଛୁଟିରେ ବିଭିନ୍ନ ବେସରକାରୀ ସ୍କୁଲକୁ ଚାକିରି ପାଇଁ ଦରଖାସ୍ତ ପକାଇ ମୁଁ ସାକ୍ଷାତକାର ନିମନ୍ତେ ଅପେକ୍ଷା କରି ରହିଲି ।

୧୯୭୨ ମସିହା ଜୁଲାଇ ମାସରେ ଦିନେ ମୁଁ କଟକ ଜିଲ୍ଲାସ୍ଥ ରାମେଶ୍ୱର ନିକଟବର୍ତ୍ତୀ ନବ ପ୍ରତିଷ୍ଠିତ ରେବା ଉଚ୍ଚ ବିଦ୍ୟାଳୟକୁ ତତ୍‌କାଳୀନ ଶିକ୍ଷକ ଜନାର୍ଦ୍ଦନ ଦାଶଙ୍କୁ ସାକ୍ଷାତ କରିବାକୁ ଯାଇଥିଲି । ସେଠି ଶିକ୍ଷକମାନଙ୍କ ପ୍ରକୋଷ୍ଠରେ ବସିଥିବାବେଳେ 'ସମାଜ' ଖବରକାଗଜ ଆସି ପହଞ୍ଚିଲା । ପୃଷ୍ଠା ଲେଉଟାଉ ଲେଉଟାଉ ଦେଖିଲି ଯେ ଖବର କାଗଜରେ ସମ୍ବଲପୁର ବି.ଏଡ୍ ପରୀକ୍ଷାଫଳ ପ୍ରକାଶିତ ହୋଇଅଛି । ମୁଁ ଡିଷ୍ଟିଙ୍ଗସନ୍ ସହିତ ବି.ଏଡ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛି । ମୋର ବଡ଼ ଭିଣୋଇ ବିବେକାନନ୍ଦ ବିଦ୍ୟାପୀଠର ଶିକ୍ଷକ ଶ୍ରୀଯୁକ୍ତ ଇନ୍ଦ୍ରମଣି ପାଣିଗ୍ରାହୀ ୧୯୬୫ ମସିହା ମେ ମାସରେ ବି.ଏଡ୍ ପରୀକ୍ଷା ଡିଷ୍ଟିଂସନ୍ ସହ ଉତ୍ତୀର୍ଣ୍ଣ ହୋଇଥିଲେ । ସେଥିପାଇଁ ମୋ ବାପା ଅନେକ ସମୟରେ ମୋତେ କହୁଥିଲେ, "ଇନ୍ଦ୍ରମଣି ଆମର କେତେ କଷ୍ଟରେ ମାଟ୍ରିକ, ଆଇ.ଏ, ବି.ଏ ପଢ଼ି ଶେଷରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରୁ ଡିଷ୍ଟିଂସନ ସହ ବି.ଏଡ୍ ପାଶ୍ କରିଛି ।"

ମୁଁ ପରୀକ୍ଷାଫଳ ବାପାଙ୍କୁ ଜଣାଇବା ପାଇଁ ସାଇକେଲ ମାରି ବିରୂପା ନଇ ପାର ହୋଇ ଆଠ ଦଶ କିଲୋମିଟର ଅତିକ୍ରମ କରି ଗାଁରେ ପହଞ୍ଚିଲି । ଡିଷ୍ଟିଂସନ୍ ସହ ବି.ଏଡ୍ ପାଶ କରିଥିବା ଖବର ବାପାଙ୍କୁ ଜଣାଇଲି । ସେ ମୋ ପରୀକ୍ଷାଫଳ ଶୁଣି ଖୁସି ହେଲେ ।

**ସରକାରୀ ଚାକିରିରେ ପ୍ରବେଶ**

୧୯୭୨ ମସିହାରେ ଓଡ଼ିଶାକୁ କେନ୍ଦ୍ର ସରକାରଙ୍କ ଯୋଜନାରେ ଶହ ଶହ ହିନ୍ଦୀ ପୋଷ୍ଟ ଆସିଥିଲା । ରାଷ୍ଟ୍ରଭାଷା ରତ୍ନ ଯୋଗ୍ୟତା ଥାଇ ନିଯୁକ୍ତି ସଂସ୍ଥା (Employ-

ment Exchange)ରେ ମୋର ନାମ ରେଜିଷ୍ଟ୍ରି ହୋଇଥିବା ହେତୁ ମୋ ପାଖକୁ ଅନେକ ଜିଲ୍ଲା ଶିକ୍ଷା ଅଧିକାରୀ ଓ ସର୍କଲ ଇନିସ୍‌ପେକ୍ଟରଙ୍କ କାର୍ଯ୍ୟାଳୟରୁ ସାକ୍ଷାତାକାର ଦେବା ନିମନ୍ତେ ଚିଠି ଆସୁଥିଲା । ଛତିଆରୁ ଯାଜପୁର ଯିବା ପାଇଁ ସହଜ ହେବ ବୋଲି ମୁଁ ଯାଜପୁରରେ ଅବସ୍ଥିତ ଯାଜପୁର ଜିଲ୍ଲା ଶିକ୍ଷା ଅଧିକାରୀ (D. I of Schools, Jajpur) ଙ୍କ ନିକଟରେ ନିର୍ଦ୍ଧାରିତ ସାକ୍ଷାତକାର ଦେଇଥିଲି । ତତ୍‌କାଳୀନ ଶିକ୍ଷା ଅଧିକାରୀ ବାଞ୍ଛାନିଧି ମହାନ୍ତି ମୋର ଉଚ୍ଚ ଯୋଗ୍ୟତା ଦେଖି ବିରକ୍ତି ସୂଚକ ଭାଷାରେ କହିଲେ, "ତୁମେ ମୋ ପାଇଁ ସମସ୍ୟା ହେବ, ତେଣୁ ତୁମକୁ ମୁଁ କସ୍ମିନ୍‌କାଳେ ନିଯୁକ୍ତି ପତ୍ର ଦେବିନାହିଁ ।"

ଅନେକ ପୋଷ୍ଟ ଆସିଛି । ସେଥିପାଇଁ ପ୍ରାର୍ଥୀ ସଂଖ୍ୟା ମଧ୍ୟ କମ୍ । ମାତ୍ର "ମୁଁ ଦେବି ନାହିଁ" ବୋଲି ସେ ନିଜର କର୍ତ୍ତୃତ୍ୱ ଜାହିର କରି କହିଲେ । ଏହା ଥିଲା ସେତେବେଳେର କତିପୟ ତଥାକଥିତ ଶିକ୍ଷାବିତ୍‌ଙ୍କ ଅଗଣତାନ୍ତ୍ରିକ ଚିନ୍ତାଧାରା ।

ମୁଁ ତତ୍‌କ୍ଷଣାତ୍ ସେ ସ୍ଥାନ ଛାଡ଼ି ଆସିଲି । 'ଜାଗରଣ'ର ସଂପାଦକ ଥିଲାବେଳେ ୧୯୭୦ ମସିହାରେ ପୌରୁଷର ସଂପାଦକ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହିତ ମୋର ଚିହ୍ନା ପରିଚୟ ଥିଲା । ସେ ମୋ ସହିତ ଅନେକ ସମୟରେ ତାଙ୍କ ସାହିତ୍ୟିକ ବାପା ସ୍ୱର୍ଗତଃ ଗୋକୁଳାନନ୍ଦ ପଟ୍ଟନାୟକଙ୍କ ସଂପର୍କରେ କହୁଥିଲେ । ଏତଦ୍‌ବ୍ୟତୀତ ରେଭେନ୍ସା କଲେଜର ସ୍ମୃତି ମଧ୍ୟ ଚାରଣ କରୁଥିଲେ । ତେଣୁ ତାଙ୍କ ସହିତ ମୋର ଏକ ପ୍ରକାରର ଆନ୍ତରିକ ସଂପର୍କ ଗଢ଼ି ଉଠିଥିଲା ।

ମୁଁ ବି.ଏ ପରୀକ୍ଷା ସରିବା ପରେ ରେଭେନ୍ସାରୁ ବିଦାୟ ନେଇ ଆମ ଗ୍ରାମକୁ ଯାଉଛି ବୋଲି ତାଙ୍କୁ କହିବା ପାଇଁ ତାଙ୍କ ପୌରୁଷ କାର୍ଯ୍ୟାଳୟକୁ ଦିନେ ଯାଇଥିଲି । ସେଦିନ ପୌରୁଷ କାର୍ଯ୍ୟାଳୟର ପରିଚାଳକ ହରିବାବୁ ମୋତେ କହିଲେ ଯେ ପଥର ଉଠାଇବା ସମୟରେ ସେ ଆଘାତ ପ୍ରାପ୍ତ ହୋଇଛନ୍ତି ଓ ତାଙ୍କର ଗୋଟିଏ ଗୋଡ଼ ଭାଙ୍ଗି ପ୍ଲାଷ୍ଟର ହୋଇଅଛି । ଗୋଡ଼ଟି ପ୍ଲାଷ୍ଟର କରାଯାଇଥିବା ହେତୁ ସେ ଉପର ମହଲାରେ ଶୋଇ ରହୁଛନ୍ତି ।

ପୌରୁଷ ଯିବାଆସିବା ସମୟରେ ମୋର ହରିବାବୁଙ୍କ ସହିତ ଏକ ରକମ ବନ୍ଧୁତ୍ୱ ହୋଇ ଯାଇଥିଲା । ମୁଁ ଜାନକୀବାବୁଙ୍କୁ ଦେଖାକରି ଚାଲିଯିବି କହିବାରୁ ଉପର ମହଲାକୁ ଗଲେ । କିଛି ସମୟ ପରେ ଆସି ଉପରକୁ ଯିବାକୁ କହିଲେ । ମୁଁ ଗଲି । ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ସହିତ କିଛି ସମୟ ଆଲୋଚନା ହେଲା । ମୁଁ ତାଙ୍କୁ ନମସ୍କାର ଜଣାଇ ଫେରିବା ସମୟରେ ସେ ମୋତେ କହିଥିଲେ, "ବ୍ରହ୍ମାବାବୁ, ଭବିଷ୍ୟତରେ

ଯଦି କେବେ ଅସୁବିଧାରେ ପଡ଼ ବା ଚାକିରି ବାକେରି ପାଇଁ ମୋର ସାହାଯ୍ୟ ଦରକାର ପଡ଼େ ମୋତେ କହିବାକୁ ଦ୍ୱିଧାବୋଧ କରିବ ନାହିଁ ।"

ସେଦିନ ପୌରୁଷ ପ୍ରେସ୍‌ରୁ ଫେରିଲା ସମୟରେ ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ଏଇ କଥା ଦୁଇପଦ ମୋ ମନ୍‌ରେ କିଛିଟା ଆଶାର ସଞ୍ଚାର କରିଥିଲା । ତେଣୁ ୧୯୭୨ ମସିହା ଜୁଲାଇ ମାସରେ ମୁଁ ତାଙ୍କୁ ଯାଇ ସାକ୍ଷାତ୍ କଲି । ରାଜ୍ୟରେ ବହୁତ ହିନ୍ଦୀ ଶିକ୍ଷକ ଚାକିରି ଆସିଥିବା ହେତୁ, ଯେ କୌଣସି ସର୍କଲ ପରିଦର୍ଶକଙ୍କୁ କହି ମୋତେ ରଖିଦେଲେ ଭଲ ହେବ ବୋଲି କହିଲି ।

ସେ ସାଙ୍ଗେ ସାଙ୍ଗେ କାଳ ବିଳମ୍ବ ନ କରି କଟକ ସର୍କଲର ତତ୍‌କାଳୀନ ବିଦ୍ୟାଳୟ ସମୂହର ପରିଦର୍ଶକ ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ରଙ୍କ ସହିତ ଫୋନରେ ମୋ ସପକ୍ଷରେ ବାର୍ତ୍ତାଳାପ କଲେ । ଇନ୍ଦୁବାବୁ ସଙ୍ଗେ ସଙ୍ଗେ ତାଙ୍କୁ ମୋତେ ସେଠାକୁ ପଠାଇ ଦେବା ନିମନ୍ତେ କହିଲେ । ତେଣୁ ଜାନକୀବାବୁଙ୍କ ନିର୍ଦ୍ଦେଶକ୍ରମେ ମୁଁ ଯାଇ ଇନ୍ଦୁବାବୁଙ୍କୁ ଦେଖାକଲି ।

ମୁଁ ଶ୍ରୀଯୁକ୍ତ ମିଶ୍ରଙ୍କୁ ସାକ୍ଷାତ କଲି । ଜାନକୀ ବାବୁ ମୋତେ ପଠାଇଛନ୍ତି ବୋଲି କହିଲି । ସେ ମୋ ଉପରେ ବିରକ୍ତି ପ୍ରକାଶ କରି କହିଲେ, "କାହିଁକି ସେ ବାଜେ କଥା କହୁଛ । ଏଠାରେ କୌଣସି ଚାକିରି ପାଇଁ ପଦପଦବୀ ଖାଲି ନାହିଁ ।" ଅଗତ୍ୟା ଶୂନ୍ୟ ହସ୍ତରେ ମୋତେ ସେଠାରୁ ଫେରିବାକୁ ପଡ଼ିଲା । ଶିକ୍ଷା ପରିଦର୍ଶକ ଇନ୍ଦୁଭୂଷଣ ମିଶ୍ରଙ୍କ ଏତାଦୃଶ ବ୍ୟବହାର ସଂପର୍କରେ ମଧ୍ୟ ମୁଁ ଜାନକୀ ବାବୁଙ୍କୁ କହିବା ଉଚିତ ମନେ କଲି ନାହିଁ । କଟକରୁ ସିଧା ସିଧା ଆମ ଗ୍ରାମ ରୁଦ୍ରପୁରକୁ ଫେରିଗଲି ।

ପରବର୍ତ୍ତୀ ସମୟରେ ମୁଁ ଏସ୍.ସି.ଇ.ଆର.ଟିର ଅଧ୍ୟାପକ ଥିଲାବେଳେ ଶ୍ରୀଯୁକ୍ତ ମିଶ୍ରଙ୍କ ସହିତ ଅନେକ ସେମିନାର ଓ କର୍ମଶାଳାରେ ଦେଖା ସାକ୍ଷାତ ହୋଇଅଛି । ତାଙ୍କର ବହୁବାର ବ୍ୟକ୍ତିଗତ ନିମନ୍ତ୍ରଣ ପାଇ ଥରେ ଅଧେ ତାଙ୍କର ଭୁବନେଶ୍ୱରସ୍ଥିତ ବାପୁଜୀନଗର ବାସଭବନରେ ଆତିଥ୍ୟର ସୁଯୋଗ ନେଇଛି । ମାତ୍ର ଦିନକ ପାଇଁ ଜୀବନର ସଂଗ୍ରାମ ପଥରେ ଆଗେଇ ଯାଉଥିଲାବେଳେ ତାଙ୍କର ନକାରାତ୍ମକ ବାଣୀ ସଂପର୍କରେ କହି ନାହିଁ । କହିଥିଲେ ଶିକ୍ଷାବିତ୍ ମିଶ୍ରଙ୍କୁ ବାଧିଥାନ୍ତା ଓ ମୋର ଆତ୍ମମର୍ଯ୍ୟାଦା ମଧ୍ୟ କ୍ଷୁଣ୍ଣ ହୋଇଥାନ୍ତା ।

ତେଣୁ ଚାକିରିରେ ଭର୍ତ୍ତି ହେବାର ସମସ୍ତ ଆଶା ଓ ଆଶ୍ୱାସନା ଉଭେଇ ଯିବା ପରେ ସମୟ ଯେ ସବୁ ସମାଧାନ କରିଦେବ, ଏହା ଭାବି ମୁଁ ନିଜକୁ ବିଭିନ୍ନ ସମୟରେ ସାନ୍ତ୍ୱନା ଦେଇଥିଲି ।

କଟକ ଶିକ୍ଷା ସର୍କଲ ପରିଦର୍ଶକ ଇନ୍ଦୁଭୂଷଣ ମିଶ୍ରଙ୍କ ବଦଳି ହେଲା ପରେ ସେଠାରେ ବାଲେଶ୍ୱର ଜିଲ୍ଲାର ସ୍କୁଲ ସମୂହର ଇନ୍‌ସ୍‌ପେକ୍ଟର ଶିକ୍ଷାବିତ୍-ତଥା - ସାହିତ୍ୟିକ ଜୀବାନନ୍ଦ ଆଚାର୍ଯ୍ୟ ଯୋଗଦାନ କଲେ । ସେତେବେଳେ ମୋର ବି.ଏଡ୍ ପରୀକ୍ଷାଫଳ ପ୍ରକାଶିତ ହୋଇ ସାରିଥାଏ ଓ ମୁଁ ଡିଷ୍ଟିଂସନ୍ ସହିତ ବି.ଏଡ୍ ପାଶ୍ କରିଥାଏ । ମୋର ବି.ଏ (ଅନର୍ସ), ରାଷ୍ଟ୍ରଭାଷା ରତ୍ନ ଓ ବି.ଏଡ୍ (ଡିଷ୍ଟିଂସନ୍)ର ସାର୍ଟିଫିକେଟ୍ ଧରି ମୁଁ ତାଙ୍କୁ ଦିନେ ତାଙ୍କ କାର୍ଯ୍ୟାଳୟରେ ସାକ୍ଷାତ କଲି । ସେ ମୋ କଥାକୁ ଶୁଣିଲେ ଓ ମୋତେ କହିଲେ, "ଭଲ ପଢୁଥିବା ପିଲାମାନଙ୍କ ପାଇଁ ମୋ ମନରେ ଦୁର୍ବଳତା ଅଛି । ତେଣୁ ତୁମେ ନିଶ୍ଚିତ ଭାବେ ନ୍ୟାୟ ପାଇବ । କାରଣ ମୋ ପାଖକୁ ଯେଉଁମାନେ ଆସୁଛନ୍ତି, ସେମାନଙ୍କ ମଧ୍ୟରୁ ଖୁବ୍ କମ୍ ପ୍ରାର୍ଥୀଙ୍କର ଏପରି ଯୋଗ୍ୟତା ଅଛି ।"

**ସରକାରୀ ଟାଉନ ଏମ୍.ଇ. ସ୍କୁଲ**

ଶିକ୍ଷକତା ପାଇଁ ଦରଖାସ୍ତ ଦେବାର କିଛିଦିନ ପରେ ମୁଁ ଶ୍ରୀଯୁକ୍ତ ଜୀବାନନ୍ଦ ଆଚାର୍ଯ୍ୟଙ୍କୁ ତାଙ୍କ କାର୍ଯ୍ୟାଳୟରେ ଦେଖାକଲି । ମୋତେ ଦେଖି ସେ ସଙ୍ଗେ ସଙ୍ଗେ ଆଠଗଡ଼ସ୍ଥିତ ସରକାରୀ ଟାଉନ୍ ଏମ୍.ଇ. ସ୍କୁଲରେ ନିଯୁକ୍ତି ଦେବାର ଆଦେଶନାମା ବାହାର କରିବାକୁ କହିଲେ !

ସେ ସମୟରେ ଟାଉନ ଏମ୍.ଇ. ସ୍କୁଲଟି ଆଠଗଡ଼ ଡି.ଆଇଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ଥାଏ । ସେଦିନ ଆଠଗଡ଼ ଶିକ୍ଷା ଜିଲ୍ଲାର ଡ଼ି.ଆଇ. ଶ୍ରୀଯୁକ୍ତ ରାମଚନ୍ଦ୍ର ରଥ ପରିଦର୍ଶକଙ୍କ ପାଖରେ ବସିଥାନ୍ତି । ମୋତେ ତାଙ୍କ ସହିତ ପରିଚୟ କରାଇ ଦେବାକୁ ଯାଇ ଶ୍ରୀଯୁକ୍ତ ଆଚାର୍ଯ୍ୟ କହିଲେ, "ଶ୍ରୀଯୁକ୍ତ ରଥ ହେଉଛନ୍ତି ଆଠଗଡ଼ର ଡି.ଆଇ । ମୁଁ ସିନା ସେଠାରେ ତୁମର ନିଯୁକ୍ତି କରିଦେଲି, ମାତ୍ର ସେ ହେଉଛନ୍ତି ତୁମର ପ୍ରକୃତ ହାକିମ । ସମସ୍ତ ଭଲମନ୍ଦ କଥା ସେ ବୁଝିବେ । ପରେ ନିଯୁକ୍ତି ପତ୍ର ନେଇ ଆଠଗଡ଼ ଅଭିମୁଖେ ବାହାରିଲି ।

୧୯୭୨ ମସିହା ସେପ୍ଟେମ୍ବର ମାସ ୨୫ ତାରିଖ । ସେଦିନ ଆଠଗଡ଼ ତହସିଲ ଅଫିସ ନିକଟସ୍ଥ ଏକ ଜରାଜୀର୍ଣ୍ଣ ଘରେ ଚାଲୁଥିବା ତିନୋଟି କୋଠରି ବିଶିଷ୍ଟ ଟାଉନ୍ ଏମ୍.ଇ ସ୍କୁଲରେ ମୋ ପ୍ରଥମ ସରକାରୀ ଚାକିରି ଆରମ୍ଭ ହେଲା । ଏହାର ପ୍ରଧାନ ଶିକ୍ଷକ ଥିଲେ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମୁଦୁଲି, ବି.ଏ. ବି.ଏଡ୍ । ଗୁରୁଡ଼ିଝାଟିଆର ଗୋପବନ୍ଧୁ ଆଚାର୍ଯ୍ୟ ଓ ବାଙ୍କୀର ହାଡ଼ିବନ୍ଧୁ ବାବୁ ସହକାରୀ ଶିକ୍ଷକ ଥିଲେ ।

ଦୈବାତ୍ ଉପର ଶ୍ରେଣୀରେ ପଢୁଥିବା ଗାନ୍ଧିଶିକ୍ଷାଶ୍ରମର ପୂର୍ବତନ ଛାତ୍ର ଗଉଡ଼ପାଟଣା ଗ୍ରାମର ଶ୍ରୀଯୁକ୍ତ କରୁଣାକର ରାଉଳଙ୍କ ସହିତ ମୋର ଆଠଗଡ଼ରେ

ଦେଖାହେଲା । ସେ ଆଠଗଡ଼ ଏସ୍.ଡ଼ି.ଓ ଅଫିସର ଏକ ବଡ଼ ସରକାରୀ ନିବାସରେ ରହୁଥିବା ତାଙ୍କର ବନ୍ଧୁମାନଙ୍କ ଗହଣରେ ମୋପାଇଁ ରହିବାର ବ୍ୟବସ୍ଥା କରିଦେଲେ । ତାଙ୍କର ବନ୍ଧୁମାନେ ସେଇ କ୍ୱାଟର୍ସର ଗୋଟିଏ ରୁମ୍ ମୋତେ ଦେଲେ । ମୁଁ ସେଠାର ସେପ୍ଟେମ୍ବର ମାସରୁ ମେ ମାସ ପର୍ଯ୍ୟନ୍ତ ରହିଲି । ସେଠାରେ ରହିଥିବା ନାଥବାବୁ, ଶରତ ବାବୁ, ବାବାଜୀ ବାବୁ ଆଦିଙ୍କର ମୁଁ ଜଣେ ଶିକ୍ଷକ ହୋଇଥିବା ହେତୁ ମୋ ପ୍ରତି ଅସୀମ ସମ୍ମାନ ଓ ଶ୍ରଦ୍ଧା ଥିଲା । ସେମାନେ କୌଣସି ସମୟରେ ମୋର ସମ୍ମାନ ଉପରେ ଟିକିଏ ହେଲେ ଆଞ୍ଚ ଆଣି ନ ଥିଲେ ।

ମୁଁ ଅଧ୍ୟାପକ ହେଲା ପରେ ସେମାନଙ୍କୁ କଟକ ଜିଲ୍ଲାପାଳ କାର୍ଯ୍ୟାଳୟରେ ସାକ୍ଷାତ କରିଥିଲି । ସେମାନେ ଆଠଗଡ଼ରୁ ପରବର୍ତ୍ତୀ ସମୟରେ ସ୍ଥାନାନ୍ତରିତ ହୋଇ ଆସିଥିଲେ । ଆଠଗଡ଼ରେ ମୋର ରହଣି ସମୟରେ ମୁଁ ସେଠାକାର ଜନଜୀବନ ସହିତ ପରିଚିତ ହେବାର ସୁଯୋଗ ଲାଭ କରିଥିଲି । ସେତେବେଳେ ମୋର 'ସ୍ରଷ୍ଟା' କବିତାଟି 'ସମାଜ'ର ଶିଶୁ ରାଇଜ ପୃଷ୍ଠାରେ ଦିଗରାଜ ବ୍ରହ୍ମା, ଆଠଗଡ଼ ଛପା ହୋଇ ପ୍ରକାଶିତ ହୋଇଥିଲା । ସମାଜର ବରେଣ୍ୟ ସଂପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଆଠଗଡ଼ର ବାସିନ୍ଦା ହୋଇଥିବା ହେତୁ କେହି କେହି ପ୍ରଚାର କଲେ ଯେ ମୋର ସଂପାଦକଙ୍କ ସହିତ ପରିଚୟ ଅଛି ।

ଆଠଗଡ଼ର ଟାଉନ ଏମ୍.ଇ.ସ୍କୁଲର ଅପର ପାର୍ଶ୍ୱରେ ଜଗନ୍ନାଥ ମନ୍ଦିର । ଦିନେ ମୁଁ ବିଦ୍ୟାଳୟ କାର୍ଯ୍ୟାଳୟରେ ବସିଛି । ହଠାତ୍ ଜଗନ୍ନାଥ ମନ୍ଦିରରୁ ଭାସି ଆସିଲା ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କ କଣ୍ଠସ୍ୱର ସହିତ ଜଗନ୍ନାଥଙ୍କ ଭଜନ ।

ସୁଲଳିତ କଣ୍ଠର ତାଳେତାଳେ ଓଡ଼ିଶାର ଭକ୍ତସମାଜର ତନୁମନକୁ ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ବିଭିନ୍ନ ଭଜନ କାର୍ଯ୍ୟକ୍ରମ, ଗ୍ରାମଫୋନ ଓ ରେଡ଼ିଓ ମାଧ୍ୟମରେ ରସାଣିତ କରୁଥିବା ଜଗନ୍ନାଥଙ୍କର ପରମଭକ୍ତ ଥିଲେ ଓଡ଼ିଶାର ବାଣୀକଣ୍ଠ ନିମାଇଁ ହରିଚନ୍ଦନ । ସେଦିନ ବାଣୀକଣ୍ଠଙ୍କ ଭଜନ ଶୁଣି ମୋତେ ପ୍ରଧାନଶିକ୍ଷକ ପୂର୍ଣ୍ଣବାବୁ କହିଲେ, "ବ୍ରହ୍ମାବାବୁ ! ଆପଣ ଜାଣିଥିବେ କି ନାହିଁ ବାଣୀକଣ୍ଠ ନିମାଇଁ ହରିଚନ୍ଦନ ହେଉଛନ୍ତି ଆମ ଆଠଗଡ଼ର ବାସିନ୍ଦା । ସେ ଏବେ ପ୍ରାୟତଃ ଆଠଗଡ଼ ଛାଡ଼ି ପୁରୀଠାରେ ରହୁଛନ୍ତି । ଯେଉଁଦିନ ଆଠଗଡ଼ ଆସନ୍ତି, ଜଗନ୍ନାଥଙ୍କ ନିକଟରେ ଭଜନ ବୋଲନ୍ତି । ତାଙ୍କର ସୁଲଳିତ ଭଜନର ମୂର୍ଚ୍ଛନା ଶୁଣି ଆମେ ଜାଣୁ ଯେ ବାଣୀକଣ୍ଠ ଆଠଗଡ଼ ଆସିଛନ୍ତି ।"

ସେ ସମୟରେ ଜଗନ୍ନାଥ ମନ୍ଦିରରେ ପ୍ରସାଦ ସେବନର ବ୍ୟବସ୍ଥା ଥିଲା । ମୁଁ ଗୁରୁଡ଼ଝାଟିଆରୁ ପ୍ରତିଦିନ ସ୍କୁଲକୁ ଆସୁଥିବା ଗୋପବାବୁଙ୍କ ସହିତ ଅନେକ ଥର

ସେଠାରେ ପ୍ରସାଦ ସେବନ କରିଛି । ସର୍ବେଶ୍ୱର ମନ୍ଦିରରେ ଭୋଗରାଗ କରିଛି । ନିଜସ୍ୱ ଆୟୋଜନରେ ଏସ୍.ଡ଼ି.ଓ ଅଫିସର କ୍ୱାଟର୍ସରେ ରହିଥିବା ବନ୍ଧୁମାନଙ୍କ ସାହାଯ୍ୟରେ ସତ୍ୟନାରାୟଣ ପୂଜା ମଧ୍ୟ କରି ବନ୍ଧୁମାନଙ୍କୁ ଆପ୍ୟାୟିତ କରିଅଛି ।

**ଦେଖିଥିବା ଏକ ଆଧ୍ୟାତ୍ମିକ ସ୍ୱପ୍ନ**

ସମଗ୍ର ବିଶ୍ୱର ଆଧ୍ୟାତ୍ମିକ ଜଗତର ଅନ୍ୟତମ ଗୁରୁ ହେଉଛନ୍ତି ଭଗବାନ ସତ୍ୟସାଇ ବାବା । ସେ ସମୟରେ ସତ୍ୟସାଇଙ୍କ ପ୍ରଦର୍ଶିତ ଅନେକ ଅଦ୍ଭୁତ ଘଟଣାବଳୀ (Miracle) ସଂପର୍କରେ କେବଳ ଭାରତବର୍ଷରେ କାହିଁକି ସାରା ବିଶ୍ୱରେ ମଧ୍ୟ ଆଲୋଚିତ ହେଉଥିଲା । 'ବ୍ଲିଜ୍' ପତ୍ରିକାର ସଂପାଦକ କରଞ୍ଜିଆ ଏସବୁ କଥାକୁ ସ୍ୱୀକାର ନ କରି ସତ୍ୟସାଇଙ୍କ ବିରୋଧରେ ଅନେକ ପ୍ରତିକୂଳ ମନ୍ତବ୍ୟ ସେଇ ବ୍ଲିଜ୍‌ରେ ପ୍ରକାଶିତ କରୁଥିଲେ । ସେସବୁ ପଢ଼ି ମୋର ତରୁଣ ମନ ମଧ୍ୟ ସତ୍ୟସାଇଙ୍କ ପ୍ରତି ତିକ୍ତ ହୋଇ ଉଠିଥିଲା । କାରଣ ସେତେବେଳେ ତାଙ୍କର ଆଧ୍ୟାତ୍ମିକ ଚିନ୍ତା, ଚେତନା ସମ୍ବଳିତ ବାର୍ତ୍ତା ଓ ସାହିତ୍ୟ ପଢ଼ିବାର ସୁଯୋଗ ଓ ଅଧ୍ୟୟନ ମୋର ନ ଥିଲା । ଦିନେ କ୍ୱାଟର୍ସରେ ନିଦ୍ରିତ ଅବସ୍ଥାରେ ଥିଲାବେଳେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲି । ସ୍ୱପ୍ନଟି ହେଉଛି ଏଇପରି :

ମୁଁ ଲକ୍ଷ୍ୟହୀନ ଭାବେ କୌଣସି ଏକ ଦୂରଗାମୀ ଟ୍ରେନ୍‌ରେ ବସି ଯାଉଛି । ଟ୍ରେନ୍‌ଟି ରେଳପଥର ଦୁଇପାର୍ଶ୍ୱରେ ଥିବା ସବୁଜ ବନାନୀର ବୁକୁ ଚିରି ଆଗେଇ ଆଗେଇ ଚାଲିଛି କେଉଁ ଏକ ଅଜଣା ଅଶୁଣା ଗନ୍ତବ୍ୟ ପଥରେ । ମୁଁ ମଧ୍ୟ ସେ ସମୟରେ ଟ୍ରେନ୍‌ରେ ଥାଇ ସେହି ଗତିଶୀଳ ଟ୍ରେନ୍‌ର ଝରକା ଦେଇ ବାହାରର ଅନୁପମ ଦୃଶ୍ୟ ଉପଭୋଗ କରୁଛି ।

ଏଇ ସମୟରେ ଯାତ୍ରୀମାନଙ୍କ ମଧ୍ୟରୁ ମୋତେ କେହି ଜଣେ କହିଲେ, "ଏଇ ସବୁଜ ବନାନୀର ଅନତି ଦୂରରେ ଭଗବାନ ସତ୍ୟସାଇଙ୍କ ଆଶ୍ରମ ।" ମୁଁ ତାଙ୍କୁ କହିଲି, "ବାବାଙ୍କୁ କ'ଣ ଟିକିଏ ଦେଖି ହୁଅନ୍ତା ନାହିଁ ?"

ମୋର ପ୍ରଶ୍ନର ପରେ ପରେ ହଠାତ୍ ମୁଁ ଦେଖୁଥିବା ସ୍ୱପ୍ନର ଦୃଶ୍ୟପଟ୍ଟରେ ଏକ ନୈସର୍ଗିକ ପରିବର୍ତ୍ତନ ଘଟିଲା । ମୁଁ ଟ୍ରେନ୍‌ସ୍ଥିତ ଝରକା ଦେଇ ବାହାରକୁ ଚାହିଁଲି । ଦେଖିଲି ସବୁଜ ବନାନୀର ଦିଗ୍‌ବଳୟ ଛୁଇଁ ଏକ ରକ୍ତିମ ଆଭା ବିଚ୍ଛୁରିତ ହେଉଅଛି । ସମଗ୍ର ଆକାଶ ସତେ ଯେମିତି ଇନ୍ଦ୍ରଧନୁର ସପ୍ତରଙ୍ଗରେ ଉଦ୍‌ଭାସିତ ହେଉଅଛି । ପ୍ରକୃତିର ଏଇ ଅପୂର୍ବ ଓ ଅଦୃଶ୍ୟମାନ ପରିବର୍ତ୍ତନ ଦେଖି ହଠାତ୍ ମୋର ସର୍ବାଙ୍ଗ ଶିହରିତ ହୋଇ ଉଠିଲା । ମୋର ସମସ୍ତ ଆଶା ଆକାଂକ୍ଷା, କାମନା, ବାସନା ମିଳେଇ ଯାଇ ମୋତେ ସତେ ଯେମିତି ଦିବ୍ୟ ଚିନ୍ତା ଓ ଚେତନାର ଏକ ମୂର୍ତ୍ତିମନ୍ତ ମଣିଷ

ରୂପରେ ରୂପାନ୍ତରିତ କରିଦେଲା । ସେଦିନର ସେଇ ବ୍ରାହ୍ମ ମୁହୂର୍ତ୍ତରେ ଦୂର ଦିଗ୍‌ବଳୟରୁ ହସି ହସି ଆଶୀର୍ବାଦାତ୍ମକ ହସ୍ତ ପ୍ରସାରିତ କରି ଭଗବାନ ସତ୍ୟସାଇ ମୋତେ ଆଶୀର୍ବାଦ କଲେ । ହଠାତ୍ ମୋର ନିଦ ଭାଙ୍ଗିଗଲା । ସ୍ୱପ୍ନ ତ ସ୍ୱପ୍ନ । ମାତ୍ର ଆଜି ପର୍ଯ୍ୟନ୍ତ ଏ ସ୍ୱପ୍ନର ରହସ୍ୟ ଉନ୍ମୋଚନ କରିବା ମୋ ପକ୍ଷରେ ସମ୍ଭବ ହୋଇନାହିଁ । ହୁଏତ ଆଧ୍ୟାତ୍ମିକ ଜଗତକୁ ବୁଝିବାକୁ ମୋର ଅଧିକ ଯୋଗ୍ୟତାର ଆବଶ୍ୟକତା ଅଛି । ସେଇ ଯୋଗ୍ୟତାର ଅଭାବରୁ ସଂପ୍ରତି କେହି କେହି ସତ୍ୟସାଇଙ୍କ ଅଲୌକିକ କାର୍ଯ୍ୟକଳାପକୁ ତଥାକଥିତ ଠକମାନଙ୍କ କାର୍ଯ୍ୟକଳାପ ସହିତ ତୁଳନା କରୁଛନ୍ତି ।

ଆଠଗଡ଼ରେ ଥିଲାବେଳେ ମୁଁ ଅନେକଥର ଆମ ଗ୍ରାମ ରୁଦ୍ରପୁରଠାରୁ ଛତିଆ, ଟାଙ୍ଗୀ, ଚୌଦ୍ୱାର ଓ ଖୁଣ୍ଟୁଣୀ ଅତିକ୍ରମ କରି ଆଠଗଡକୁ ସାଇକେଲରେ ଯାଇଛି । ଏହାର ଦୂରତ୍ୱ ପ୍ରାୟ ସତୁରୀ କିଲୋମିଟରରୁ ଅଧିକ ହେବ । ଆଜି ପର୍ଯ୍ୟନ୍ତ ମୁଁ ସାଇକେଲ୍‌ରେ ଯେତେବାଟ ଯାଇଛି ଏଇ ଦୂରତ୍ୱ ହିଁ ସର୍ବାଧିକ ।

ଆଠଗଡ଼ରେ ଥିଲାବେଳେ ମୋର ଅନେକ କ୍ଷୁଦ୍ରଗଳ୍ପ ଦୈନିକ ମାତୃଭୂମିର କଳା- ସାହିତ୍ୟ-ସଂସ୍କୃତି ବିଭାଗ ପୃଷ୍ଠାରେ ପ୍ରକାଶିତ ହେଉଥିଲା । ସେ ସମୟରେ ମୁଁ କ୍ଷୁଦ୍ରଗଳ୍ପ ରଚନାରେ ମନୋନିବେଶ କରିଥିଲି । ଅନେକ ନୂତନ ନୂତନ ବିଷୟବସ୍ତୁକୁ ନେଇ ମଧ୍ୟ ପରୀକ୍ଷା ନିରୀକ୍ଷା କରୁଥିଲି । ମାତୃଭୂମିରେ ପ୍ରକାଶିତ ମୋର ଗୋଟିଏ, ଗଳ୍ପର ଶୀର୍ଷକ ଥିଲା, ପ୍ରେମ-ଦେହ-ମାଂସ । ଏ ଶୀର୍ଷକ ଥିବା ଲେଖା ଯେ ରବିବାସରୀୟ ସାହିତ୍ୟ ପୃଷ୍ଠା ମଣ୍ଡନ କରିବ, ଏ ବିଶ୍ୱାସ ମୋର ନ ଥିଲା । ମାତ୍ର ଦେଖିଲି ମୋର ଲେଖା ଓ ଶୀର୍ଷକରେ କୌଣସି ପରିବର୍ତ୍ତନ ହୋଇନାହିଁ । କ୍ଷୁଦ୍ରଗଳ୍ପଟି ସେଇ ଶୀର୍ଷକ ଥାଇ ପ୍ରକାଶିତ ହୋଇଅଛି ।

ସେଦିନ ବିଚିତ୍ରାନନ୍ଦ କରଙ୍କ ସଂପାଦିତ 'ମାତୃଭୂମି' ପ୍ରତି ମୋର ଯଥେଷ୍ଟ ସମ୍ମାନବୋଧ ଆସିଲା । ପରେ ଜାଣିଲି ଏଇ ସାହିତ୍ୟ ବିଭାଗଟିକୁ ପଣ୍ଡିତ ପ୍ରବୋଧ ମିଶ୍ର ଦେଖନ୍ତି । ସେ ଲେଖାର ସର୍ଜନାତ୍ମକ ଦିଗ ଦେଖନ୍ତି ଓ ସେଥିରେ କୌଣସି ମୂଳଚାଳ କରନ୍ତି ନାହିଁ । ଏକଥା ପରେ ମୁଁ ବନ୍ଧୁମାନଙ୍କଠାରୁ ଶୁଣିଥିଲି ।

ଏଇ ସମୟରେ ଦିନେ ମୋତେ ଆଠଗଡ଼ ଜିଲ୍ଲା ଶିକ୍ଷାଧିକାରୀ ଶ୍ରୀଯୁକ୍ତ ରାମଚନ୍ଦ୍ର ରଥ ତାଙ୍କ କାର୍ଯ୍ୟାଳୟକୁ ଡ଼କାଇଲେ । ମୋତେ କହିଲେ, "ତୁମେ ତ ତିନିମାସ ପାଇଁ ଆଡ଼ହକ ଚାକିରି ପାଇଥିଲ । ତିନି ମାସ ଅତିକ୍ରମ କରି ଛଅମାସ ହେଲାଣି । ମାତ୍ର ତୁମର ପ୍ରଧାନଶିକ୍ଷକ ତୁମକୁ ଦରମା ଦେଇ ଚାଲିଛନ୍ତି । ଏକଥା ମୁଁ ଏବେ ଜାଣିଲି । ଶୀଘ୍ର ନିଜେ ଲାଗି ଚାକିରିକୁ ନିୟମିତ କରିବାକୁ ଚେଷ୍ଟା କର ।"

ଚାକିରିଟି ନିୟମିତ ନ ହୋଇଥିବାର କାରଣ ହେଲା ମୁଁ ସାକ୍ଷାତକାର ନ ଦେଇ ନିଯୁକ୍ତିପତ୍ର ଆଡ଼୍‌ହକ୍ (ad hoc) ଶିକ୍ଷକ ଭାବେ ପାଇଥିଲି । ସାକ୍ଷାତକାର ଦେବାକୁ ହେଲେ ନିଯୁକ୍ତି କାର୍ଯ୍ୟାଳୟରୁ (Employment Exchange) ନାମ ଆସିଥାଏ । ଅନ୍ୟ ପ୍ରାର୍ଥୀମାନଙ୍କ ସହିତ ସାକ୍ଷାତକାର ନିଆଯାଇ ସାକ୍ଷାତକାର କମିଟି ଦ୍ୱାରା ମନୋନୀତ ହେବାକୁ ପଡ଼ିଥାଏ ।

ସେଇ ସମୟରେ ଶୁଣିବାକୁ ପାଇଲି ଯେ ମୁଁ ଥିବା କଟକ ଶିକ୍ଷା ସର୍କଲର ସମସ୍ତ ସଦୃଶ (Similar) ପୋଷ୍ଟଗୁଡ଼ିକୁ ପୂରଣ କରିବା ପାଇଁ ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜରୁ ପ୍ରାର୍ଥୀମାନଙ୍କ ନାମ ମଗାଯାଇଅଛି । ମୁଁ କାଳବିଳମ୍ବ ନ କରି କଟକ ଆସିଲି । ଛୁଟି ଦରଖାସ୍ତ ଦିଅନ୍ତେ, ପ୍ରଧାନଶିକ୍ଷକ ମୋତେ କହିଲେ, "ବର୍ଷର ପ୍ରଥମ ତିନିମାସ ମଧ୍ୟରେ ଆପଣ ଅନେକ ଆକସ୍ମିକ ଛୁଟି (Casual Leave) ନେଲେଣି । ଏଣିକି ଆଉ ଛୁଟି ଦେବା ସମ୍ଭବ ନୁହେଁ । ନିୟମ ଅନୁଯାୟୀ ଦରମା କଟାଯିବ ।"

ମୁଁ ପ୍ରଧାନଶିକ୍ଷକଙ୍କୁ ମୋ ସ୍ଥିତି ସଂପର୍କରେ ଜଣାଇଲି । ତାଙ୍କୁ ଦରଖାସ୍ତଟିଏ ଦେଇ କଟକ ଅଭିମୁଖେ ଆସିଲି । କଟକରେ ମୋର ପୂର୍ବ ପରିଚିତ ବନ୍ଧୁ କରୁଣାକର ରାଉଳ ରହୁଥିଲେ । ମୁଁ ତାଙ୍କ ପାଖରେ ପହଞ୍ଚିଲି । ସେ ମୋର ଅବସ୍ଥା ଓ ମାନସିକ ସ୍ଥିତି ଦେଖି ପଚାରିଲେ, "ଦିଗ, ତୁ ଖାଇଛୁ ?" ସେତେବେଳକୁ ମୁଁ ଭୋକ ଓ ଶୋଷ ଉଭୟ ଭୁଲି ଯାଇଥିଲି । କହିଲି, "ହଁ, ଆସିଲାବେଳେ ବାଟରେ ଖାଇକରି ଆସିଛି ।"

ସେ ରାଣ ନିୟମ ପକାଇଲେ । ସତରେ ମୁଁ ଖାଇଛି କି ନାହିଁ । ସେଦିନ ମୁଁ ତାଙ୍କ ମୁହଁକୁ ଦେଖିଲି । ସେ ଥିଲେ ଗାନ୍ଧିଶିକ୍ଷାଶ୍ରମର ଆମର ଦୁଇ ତିନିବର୍ଷର ବରିଷ୍ଠ-ତଥା-ସମ୍ମାନସ୍ପଦ ବଡ଼ଭାଇ ସଦୃଶ । ଦାରିଦ୍ର୍ୟର କଷାଘାତରେ ସେ କଲେଜ ଶିକ୍ଷା ବହୁତ କଷ୍ଟରେ କରିଥିଲେ । ପ୍ରତିଦିନ ପାଠପଢ଼ା ଦିବସଗୁଡ଼ିକରେ ଦୀର୍ଘ ୩୦/୩୫ କିଲୋମିଟର ସାଇକେଲ ଚଲାଇ କଟକ ଯାଉଥିଲେ ଓ ପଢ଼ାଶେଷରେ ପୂର୍ବବତ୍ ଘରକୁ ଫେରି ଆସୁଥିଲେ । ମାତ୍ର କେତେବେଳେ ତାଙ୍କ ମନରେ କେହି କେବେ ହେଲେ ଦୁଃଖର ଛାପଟିଏ ମଧ୍ୟ ଦେଖିବାକୁ ପାଉ ନ ଥିଲେ ।

ମୁଁ ତାଙ୍କୁ କହିଲି, "ଆପଣଙ୍କ ପରିଚିତିକୁ ଆଧାର କରି ମୁଁ ଆଠଗଡ଼ରେ ଆପଣଙ୍କ ସାଥୀମାନଙ୍କ ଗହଣରେ ରହିଲି । ଏବେ ଗୋଟିଏ ବଡ଼ ସଂକଟ ଆସି ଦେଖାଯାଇଛି ।"

ସେ ମୋତେ ପଚାରିଲେ, "କ'ଣ ? ମୁଁ କହିଲି, "ମୋ ଚାକିରିଟି ନିୟମିତ ନୁହେଁ । ଏବେ କଟକ ଶିକ୍ଷା ସର୍କଲରୁ ନିୟମିତ ଶିକ୍ଷକ ନିଯୁକ୍ତ ପାଇଁ କଟକ ନିଯୁକ୍ତି

କାର୍ଯ୍ୟାଳୟ (Employment Exchange)କୁ ନାମ ମଗାଯାଇଅଛି । ମୋତେ ପରିଦର୍ଶକଙ୍କ କାର୍ଯ୍ୟାଳୟର ଜନୈକ କର୍ମଚାରୀ ମଲ୍ଲବାବୁ କହିଛନ୍ତି, "ମୋ ନାମ ଯଦି ଏଠାକୁ ନିଯୁକ୍ତି କାର୍ଯ୍ୟାଳୟରୁ ଆସି ପାରିବ, ତେବେ ମୋ ଚାକିରି ସବୁଦିନ ପାଇଁ ଚିରସ୍ଥାୟୀ ହୋଇଯିବ ।"

ସେ ମୋତେ ସଙ୍ଗେ ସଙ୍ଗେ କହିଲେ, "ତୁ ସେଥିପାଇଁ ଆଦୌ ବ୍ୟସ୍ତ ହେବାର ଆବଶ୍ୟକତା ନାହିଁ । ରେଭେନ୍ସା ମହାବିଦ୍ୟାଳୟ କାର୍ଯ୍ୟାଳୟର ଜନୈକ ଭଦ୍ରବ୍ୟକ୍ତି ମୋର ଚିହ୍ନା ପରିଚୟ ଅଛନ୍ତି । ସେ ବାଦମବାଡ଼ିସ୍ଥିତ ଏମ୍ପ୍ଲୟମେଣ୍ଟ ଅଫିସର ଜନୈକ ଅଫିସରଙ୍କ ପିଲାଙ୍କୁ ରେଭେନ୍ସାରେ ନାମ ଲେଖାଇଲାବେଳେ ସାହାଯ୍ୟ କରିଥିଲେ । ଆମେ ତାଙ୍କୁ କହିବା ।"

ସେଦିନ ଉପରବେଳା ତାଙ୍କୁ ରେଭେନ୍ସା କଲେଜର କାର୍ଯ୍ୟାଳୟରେ ସାକ୍ଷାତ କଲୁ । କରୁଣାକର ବାବୁ ତାଙ୍କ ଆଗରେ ମୋ କଥା କହିଲେ । ସେ ସବୁକଥା ଆଗ୍ରହର ସହିତ ଶୁଣିଲେ । ଆମକୁ କହିଲେ, "ଆପଣ ଦୁଇଜଣ ଆଗାମୀ କାଲି ଦିନ ଏଗାରଟାବେଳେ ବାଦମବାଡ଼ିସ୍ଥ ନିଯୁକ୍ତି କାର୍ଯ୍ୟାଳୟରେ ଅପେକ୍ଷା କରିଥିବେ । ମୁଁ ଯାଇ ପହଞ୍ଚିବି ।"

ଆମେ ଏଗାରଟାବେଳେ ସେଠାରେ ପହଞ୍ଚିଲୁ । କରୁଣାକର ବାବୁ କାର୍ଯ୍ୟାଳୟ ପାଖ ଦରଭଙ୍ଗା କାନ୍ଥ ଉପରେ ବସି ଏଣିକି ତେଣିକି ଚାହିଁ ରହିଲେ । କାମ ମୋର । ମୋ ପାଇଁ ଆଉ ଜଣେ ଡହଳ ବିକଳ ହୋଇ ଯେମିତି ବସିଥାନ୍ତି; ତାହା ଦେଖି ମୋତେ ଦୁଃଖ ଲାଗିଲା । ସେ ଭଦ୍ରବ୍ୟକ୍ତିଙ୍କ ଆସିବା ଯେତିକି ଡେରି ହେଲା, ମନର ଉତ୍କଣ୍ଠା ମଧ୍ୟ ସେତିକି ସେତିକି ବଢ଼ି ଚାଲିଲା ।

ଯାହାହେଉ, ସେ ସେଦିନ ସାଢ଼େ ବାରଟା ସମୟରେ ସେଠାରେ ଆସି ପହଞ୍ଚିଲେ । କହିଲେ, "କଲେଜରେ ଟିକିଏ କାମ ପଡ଼ିଗଲା । ଡେରି ହେଲା । ତା'ପରେ ସେ କରୁଣାକର ବାବୁଙ୍କଠାରୁ ମୋର ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜର ରେଜିଷ୍ଟ୍ରେସନ ନମ୍ବର ନେଲେ ଓ ସିଧାସିଧା ଏମ୍ପ୍ଲୟମେଣ୍ଟ ଅଫିସରଙ୍କ ପାଖକୁ ଗଲେ । ଫେରି କହିଲେ, "ଦିନ ତିନିଟା ମଧ୍ୟରେ କଟକ ଶିକ୍ଷା ସର୍କଲରେ ଇଣ୍ଟରଭ୍ୟୁ ଦେବାର ସୂଚନାପତ୍ର ମିଳିଯିବ । ଆପଣମାନେ ସିଧା ଯାଇ ଅଫିସରଙ୍କୁ ଦେଖା କରିବେ ।"

ତାଙ୍କ କଥାନୁସାରେ ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜ ଅଫିସର ସୂଚନା ପତ୍ର (Intimation Letter) ଆମକୁ ହାତେ ହାତେ ଦେଇଦେଲେ । କରୁଣାକର ବାବୁ ତାଙ୍କ କଟକସ୍ଥିତ ବସାକୁ ଗଲେ ଓ ମୁଁ ଆମ ଗ୍ରାମ ରୁଦ୍ରପୁରକୁ ଫେରି ଆସିଲି ।

## ଆଠଗଡ଼ରୁ ବହୁଗ୍ରାମ ଅଭିମୁଖେ

କଟକ ଶିକ୍ଷା ପରିଦର୍ଶକଙ୍କ ଅଫିସରେ ସାକ୍ଷାତକାର ଦେବାର କେଇଦିନ ମଧ୍ୟରେ ମୋର ଅସ୍ଥାୟୀ ଚାକିରିଟି ସ୍ଥାୟୀ ହୋଇଗଲା । ଏମ୍.ଏ ପରୀକ୍ଷା ଦେବା ପାଇଁ ମୋର ଯୋଜନା ଥିବା ହେତୁ ମୁଁ ଦିନେ ଆମର ବଦଳି ଓ ପୋଷ୍ଟିଂ କରୁଥିବା ସର୍କଲ ଅଫିସର ବରିଷ୍ଠ କିରାଣି ମଲ୍ଲବାବୁଙ୍କୁ କହିଲି । ମୋତେ ଟିକେ ସାହାଯ୍ୟ କଲେ ମୁଁ କଟକ ନିକଟବର୍ତ୍ତୀ କୌଣସି ମାଧ୍ୟମିକ ଶିକ୍ଷା ଉଚ୍ଚ ବିଦ୍ୟାଳୟକୁ ଆଠଗଡ଼ରୁ ବଦଳି ହୋଇ ଆସି ପାରିବି ।"

ମୋ କଥା ଶୁଣି ମଲ୍ଲବାବୁ ମୋତେ ସଙ୍ଗେ ସଙ୍ଗେ କହିଲେ, "ଆପଣତ ସାହେବଙ୍କୁ କହିଗଲେ । ସାହେବ କ'ଣ ଜାଣିଛନ୍ତି କେଉଁ ବିଦ୍ୟାଳୟରେ କେତେ ପୋଷ୍ଟ ଖାଲି ଅଛି । ମୋତେ କହିଥିଲେ ମୁଁ ପ୍ରଥମରୁ ହାଇସ୍କୁଲରେ ଆପଣଙ୍କୁ ଅବସ୍ଥାପିତ କରିବା ନିମନ୍ତେ ଫାଇଲ ଦେଇଥାନ୍ତି ।"

ମୁଁ ତାଙ୍କୁ କହିଲି, "ଗଲାକଥା ଗଲାଣି ।" ଆପଣ ମୋତେ ଟିକିଏ ସାହାଯ୍ୟ କରନ୍ତୁ । କଟକ ପାଖାପାଖି ହାଇସ୍କୁଲଟିଏ ହେଲେ ମୁଁ ଏମ୍.ଏ ପରୀକ୍ଷା ବାଣୀବିହାର ଯାଇ ସହଜରେ ଦେଇ ପାରିବି ।"

ମୋ କଥା ଶୁଣି ମଲ୍ଲବାବୁ କହିଲେ, "କୁହନ୍ତୁ, ଆପଣ କେଉଁଠାରେ ପୋଷ୍ଟିଂ ଚାହୁଁଛନ୍ତି ।" ମୁଁ କହିଲି, "ମୋତେ କଟକ ନିକଟସ୍ଥ ଟାଙ୍ଗୀ ହାଇସ୍କୁଲରେ ଦିଅନ୍ତୁ । ସେଠାରୁ ମୁଁ ସହଜରେ କଟକ ଆସି ପାରିବି ଓ ଏମ୍.ଏ ପରୀକ୍ଷା ପାଇଁ ବାଣୀବିହାର ସହିତ ମଧ୍ୟ ଯୋଗାଯୋଗ କରିପାରିବି ।"

ସେ ମୋତେ କହିଲେ, "ଆପଣ ପରା କହୁଛନ୍ତି ଏମ୍.ଏ ପରୀକ୍ଷା ଦେବେ । ଟାଙ୍ଗୀ ହାଇସ୍କୁଲରେ ରହି ଏମ୍.ଏ ପରୀକ୍ଷା ଦେବା କ'ଣ ସମ୍ଭବ ହେବ ?" ମୁଁ ପଚାରିଲି, "କାହିଁକି ?"

ସେ କହିଲେ, "ଟାଙ୍ଗୀ ଉଚ୍ଚ ବିଦ୍ୟାପୀଠର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଭଗବାନ ରଥ ଜଣେ କଠୋରପନ୍ଥୀ ଲୋକ । ତାଙ୍କ ପାଖରେ ହଁ ମାରୁଥିବା ଶିକ୍ଷକହିଁ କାମ କରିପାରିବେ । ମୁଁ ଆପଣଙ୍କ ସ୍ୱଭାବ ଓ ଶିକ୍ଷାଦୀକ୍ଷା ସଂପର୍କରେ ଯାହା ଜାଣୁଛି ଆପଣ ସେଠାରେ କାମ କରି ପାରିବେ ନାହିଁ । ଆଉ ଏମ୍.ଏ ପରୀକ୍ଷା ଦେବେ କ'ଣ ?" ମୁଁ ତାଙ୍କ କଥା ଶୁଣି ନୀରବ ରହିଲି ।

କିଛିକ୍ଷଣ ପରେ ସେ ମୋତେ କହିଲେ, "ଆପଣ କହିଲେ ବି ମୁଁ ଆପଣଙ୍କୁ ସେଠାରେ ଦେବି ନାହିଁ । ନିକଟରେ ସାଲେପୁର ରାସ୍ତାରେ ବହୁଗ୍ରାମସ୍ଥିତ ବିବେକାନନ୍ଦ

ବିଦ୍ୟାପୀଠରେ ଏକ ଶିକ୍ଷକ ପଦ ଖାଲି ଅଛି । ସେଠାକାର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଦାଶ ହେଉଛନ୍ତି ଜଣେ ଜ୍ଞାନୀ ଓ ଗୁଣଗ୍ରାହୀ ଲୋକ । ଆପଣ ସେଠାକୁ ଯାଆନ୍ତୁ ଓ ସୁରୁଖୁରୁରେ ଏମ୍.ଏ ପରୀକ୍ଷା ଦିଅନ୍ତୁ ।"

ଶେଷରେ କୋଡ଼ିଏ ପଚିଶଦିନ ମଧ୍ୟରେ ମେ ମାସରେ ଖରାଦିନ ଛୁଟିପୂର୍ବରୁ ମୋର ଆଠଗଡ଼ରୁ ବହୁଗ୍ରାମକୁ ବଦଳି ହେଲା । ମୁଁ ଆଠଗଡ଼ରୁ ବିଦାୟ ନେଇ ବହୁଗ୍ରାମରେ ୧୯୭୩ ମସିହା ମେ ମାସ ୧୬ ତାରିଖରେ ଯୋଗଦାନ କଲି ।

ବିବେକାନନ୍ଦ ବିଦ୍ୟାପୀଠ, ବହୁଗ୍ରାମର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଦାଶ

ମୋ ଜୀବନଯାତ୍ରାରେ ମୁଁ ଅନେକ ଜ୍ଞାନୀ, ମାନୀ ଓ ବିଦ୍ୱାନ ଲୋକଙ୍କୁ ଦେଖିଛି । ମାତ୍ର ନିଜର ସ୍ୱାତନ୍ତ୍ର୍ୟ ରଖି ଶିକ୍ଷା ଜଗତକୁ ଜ୍ଞାନଦୀପରେ ଆଲୋକିତ କରିଥିବା ନିଷ୍ପାପ, ନିରପେକ୍ଷ ଖୁବ୍ କମ୍ ବ୍ୟକ୍ତିତ୍ୱ ଦେଖିଛି । ସେଇଭଳି ଜଣେ ବ୍ୟକ୍ତିତ୍ୱ ଥିଲେ ବିବେକାନନ୍ଦ ବିଦ୍ୟାପୀଠ, ବହୁଗ୍ରାମର ତଦାନୀନ୍ତନ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଦାଶ । ଶ୍ରୀଯୁକ୍ତ ଦାଶ ଜଣେ ଦକ୍ଷ ଗଣିତ ଓ ଇଂରାଜୀ ଶିକ୍ଷକ ଥିଲେ । ବିଭିନ୍ନ ସମୟରେ ସେ ଅଧ୍ୟୟନରତ ଥିଲେ ଓ ଆବଶ୍ୟକସ୍ଥଳେ ଶିକ୍ଷକମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ । କେବେ କାହା ମନରେ ଆଘାତ ଦେବାକୁ ପସନ୍ଦ କରୁ ନ ଥିଲେ । ତେଣୁ ସେ ଶିକ୍ଷକ, ଛାତ୍ରଛାତ୍ରୀ ଓ ଜନସାଧାରଣଙ୍କର ଅଶେଷ ଶ୍ରଦ୍ଧା ଭାଜନ ହୋଇପାରିଥିଲେ ।

ତାଙ୍କର ପ୍ରଥମ ସହକର୍ମୀ ଥିଲେ ସ୍ୱାଧୀନତା ସଂଗ୍ରାମୀ ଗଦାଧର ଦତ୍ତଙ୍କ ଜାମାତା ଶ୍ରୀଯୁକ୍ତ ନିତ୍ୟାନନ୍ଦ ସିହ୍ନା । ସେ ସବୁବେଳେ ଖଦଡ଼ ବସ୍ତ୍ର, ଧୋତି ପିନ୍ଧୁଥିଲେ ଓ ଚଦର ଦେହରେ ପକାଉଥିଲେ ।

ପ୍ରତିଦିନ ବିଦ୍ୟାଳୟର କାର୍ଯ୍ୟକ୍ରମ ପ୍ରାର୍ଥନା ପରେ ପରେ ଆରମ୍ଭ ହୋଇଥାଏ । କେହି ଆସନ୍ତୁ ନ ଆସନ୍ତୁ, ନିତ୍ୟାନନ୍ଦ ବାବୁ ଆସି ପ୍ରାର୍ଥନାସ୍ଥଳରେ ଠିଆ ହୋଇଯାଆନ୍ତି । ପ୍ରାର୍ଥନା ଘଣ୍ଟି ବାଜିବା ମାତ୍ରେ କାର୍ଯ୍ୟାଳୟ ସାମନାରେ ଥିବା ଆମ୍ରକାନନରେ ଛାତ୍ରଛାତ୍ରୀମାନେ ଶ୍ରେଣୀ ଅନୁସାରେ ଠିଆ ହୋଇ ଯାଆନ୍ତି । ସମବେତ ପ୍ରାର୍ଥନା ବୋଲାଯାଏ । ଆଜିର ବାଣୀ ପିଲାମାନଙ୍କୁ କହି ଶୁଣାଯାଇଥାଏ । ଏହା ପରେ ପ୍ରତ୍ୟେକ ପିଲା ନିଜ ନିଜର ଶ୍ରେଣୀକୁ ଧାଡ଼ିବାନ୍ଧି ଚାଲି ଯାଇଥାନ୍ତି ।

ସେ ସମୟରେ ବହୁଗ୍ରାମର ଜନଜୀବନ ଓ ଇତିହାସରେ ଶ୍ରୀଯୁକ୍ତ ନିତ୍ୟାନନ୍ଦ ସିହ୍ନାଙ୍କ ସ୍ଥାନ ଅନନ୍ୟ ଥିଲା । ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ଓ ଆହ୍ୱାନରେ ସ୍ୱାଧୀନତା ସଂଗ୍ରାମରେ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟକୁ ତିଳତିଳ କରି ଜାଳିଥିବା ଏଇ କୃତୀ ଶିକ୍ଷକ ଜଣକ ଯେତେବେଳେ ବହୁଗ୍ରାମର ରାସ୍ତାଘାଟରେ ଚାଲି ଯାଆନ୍ତି, ସେତେବେଳେ

ସମସ୍ତଙ୍କ ମାନସପଟ୍ଟରେ ଦ୍ୱିତୀୟ ଗାନ୍ଧୀଙ୍କ ଏକ ପ୍ରତିକଳ୍ପ ଉଙ୍କିମାରି ଦେଖାଯାଏ । ସେଥିପାଇଁ ସେ ଆଜି ମଧ୍ୟ ତାଙ୍କର ଅବର୍ତ୍ତମାନରେ ବହୁଗ୍ରାମର ଗାନ୍ଧୀ ରୂପେ ପୂଜିତ ।

ସତ୍ୟ, ଅହିଂସା, ଆସ୍ତେୟ, ବ୍ରହ୍ମଚର୍ଯ୍ୟ ଆଦି ସଦାଚାର ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ସେଥିପାଇଁ ସେ ନିଜେ ହିଁ ଅନ୍ୟମାନଙ୍କ ପାଇଁ ଯେଉଁ ଆଦର୍ଶ ଓ ପରମ୍ପରା ଛାଡ଼ି ଯାଉଥିଲେ, ତା'ର ପ୍ରତିଫଳନ ବିବେକାନନ୍ଦ ବିଦ୍ୟାପୀଠରେ ଘଟିଥିଲା ।

ସେତେବେଳେ ବିବେକାନନ୍ଦ ବିଦ୍ୟାପୀଠର ଅନ୍ୟତମ ଶିକ୍ଷକ ଥିଲେ ଶ୍ରୀଯୁକ୍ତ ଇନ୍ଦ୍ରମଣି ପାଣିଗ୍ରାହୀ । ୧୯୫୬ ମସିହାରେ ସେ ତାଙ୍କର ଶିକ୍ଷକତା ଜୀବନ ଉକ୍ତ ବିଦ୍ୟାଳୟରେ ଆରମ୍ଭ କରିଥିଲେ । ଶିକ୍ଷାଗତ ଯୋଗ୍ୟତାର ପାହାଚ ପରେ ପାହାଚ ଚଢ଼ି ସେ ମାଟ୍ରିକରୁ ବି.ଏ, ବି.ଏଡ଼ (ଡିଷ୍ଟିଂସନ) ଡ଼ିଗ୍ରୀ ହାସଲ କରିବାକୁ ସମର୍ଥ ହୋଇଥିଲେ । ତାଙ୍କର ଉଦ୍ୟମ ଓ ସାଧନା ବଳରେ ବିବେକାନନ୍ଦ ବିଦ୍ୟାପୀଠର ଶ୍ରୀବୃଦ୍ଧି ସାଧନ ହୋଇଥିଲା । ଇଂରାଜୀ, ଓଡ଼ିଆ, ଭୂଗୋଳ ଆଦି ବିଷୟରେ ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ।

ଅନ୍ୟସବୁ ପ୍ରବୀଣ ଶିକ୍ଷକଙ୍କ ମଧ୍ୟରେ ଯେଉଁମାନେ ବିବେକାନନ୍ଦ ବିଦ୍ୟାପୀଠରେ ସେତେବେଳେ ଶିକ୍ଷକତା କରୁଥିଲେ ସେମାନେ ହେଲେ ସର୍ବଶ୍ରୀ ହୃଦାନନ୍ଦ ଚୌଧୁରୀ, ଅଲେଖ ଚନ୍ଦ୍ର ଶତପଥୀ, ତ୍ରିଲୋଚନ ଦାଶ, ମହେଶ୍ୱର ମହାକୁଳ, ସୂର୍ଯ୍ୟମଣି ସାମନ୍ତରାୟ, ବାସୁଦେବ ମହାପାତ୍ର, ବିଭୂତି ଭୂଷଣ ରଥ, ପଣ୍ଡିତ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ, ହିନ୍ଦୀ ଶିକ୍ଷକ ଯୋଗେନ୍ଦ୍ର ନାରାୟଣ ଝା, ଖେଳ ଶିକ୍ଷକ ଗଣେଶ୍ୱର ସାହୁ, କାଷ୍ଠ ଶିକ୍ଷକ ରତ୍ନାକର ଭୂୟାଁ । ସମସ୍ତ ଶିକ୍ଷକମାନଙ୍କ ମଧ୍ୟରେ ମୁଁ ସର୍ବକନିଷ୍ଠ ଥିବା ହେତୁ ମୋ ପ୍ରତି ସମସ୍ତଙ୍କର ନମନୀୟ ମନୋଭାବ ଥିଲା ।

**ବହୁଗ୍ରାମର ଅଭୂଲା ଅନୁଭୂତି**

ବହୁଗ୍ରାମରେ ମୁଁ ୧୯୭୩-୭୪ ଓ ୧୯୭୪-୭୫ ଓ ୧୯୭୬-୭୭ ଶିକ୍ଷା ବର୍ଷରେ ଶିକ୍ଷକତା କରିଥିଲି । ଏଥି ମଧ୍ୟରୁ ୧୯୭୪-୭୫ ଶିକ୍ଷାବର୍ଷ ଏମ୍.ଏଡ୍. ପଢ଼ିବାରେ ଅତିବାହିତ ହୋଇଥିଲା । ଏମ୍.ଏଡ୍. ପରୀକ୍ଷା ପରେ ମତେ ପୁଣି ଏଠାରେ ଅବସ୍ଥାପିତ କରାଯାଇଥିଲା ।

ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଦାଶଙ୍କର ମୋ ପ୍ରତି ଯଥେଷ୍ଟ ଆସ୍ଥା ଓ ବିଶ୍ୱାସ ଥିଲା । ଯଦିଓ ମୁଁ ନୂତନଭାବେ ସେଠାରେ ଯୋଗଦାନ କରିକରି ଓ ଶିକ୍ଷକମାନଙ୍କ ମଧ୍ୟରେ ସର୍ବକନିଷ୍ଠ ଥିଲି, ତଥାପି ସେ ମୋତେ ଉଚ୍ଚ ଶ୍ରେଣୀରେ ଗୁରୁତ୍ୱପୂର୍ଣ୍ଣ ବିଷୟମାନ ପଢ଼ାଇବାକୁ ଦେଇଥିଲେ । ଏପରିକି ଥରେ ମୋତେ ସେ ନବମ ଶ୍ରେଣୀ ଇଚ୍ଛାଧୀନ

ଗଣିତ ପଢ଼ାଇବାର ଦାୟିତ୍ୱ ଦେଇଥିଲେ । ମୋର କଲେଜ ସ୍ତରରେ ଗଣିତ ନ ଥିବାରୁ ମୁଁ ପ୍ରଧାନଶିକ୍ଷକଙ୍କୁ ସେଥିରୁ ଅବ୍ୟାହତି ଦେବା ପାଇଁ କହିଥିଲି । ମାତ୍ର ସେ ମୋତେ ସେତେବେଳେ କହିଥିଲେ, "ତୁମେ ଅନେକ ସମୟରେ ବିଦ୍ୟାଳୟର ପିଲାମାନଙ୍କୁ ଜ୍ୟାମିତି, ପରିମିତି ଓ ତ୍ରିକୋଣମିତି ବୁଝାଇବାର ମୁଁ ଲକ୍ଷ୍ୟ କରିଛି । ଏ ବିଷୟଟିକୁ ଅନ୍ୟମାନଙ୍କ ଅପେକ୍ଷା ଭଲ ପଢ଼ାଇ ପାରିବ ବୋଲି ସେ ବିଶ୍ୱାସ ମୋର ଅଛି ।"

ପ୍ରଧାନଶିକ୍ଷକଙ୍କର ମୋ ଉପରେ ଏଭଳି ଆସ୍ଥା ଥିବା ହେତୁ, ମୁଁ ବିନା ଦ୍ୱିଧାରେ ଇଚ୍ଛାଧୀନ ଗଣିତ ପଢ଼ାଇଲି । ବହୁଗ୍ରାମରେ ମୁଁ ଥିଲାବେଳେ ବିଦ୍ୟାଳୟର ଛାତ୍ରାବାସରେ ରହୁଥିଲି । ସେତେବେଳେ ଛାତ୍ରାବାସରେ ଅବସ୍ଥାନ କରୁଥିବା ଶିକ୍ଷକମାନଙ୍କ ମଧ୍ୟରୁ ଅଧିକାଂଶ ଶିକ୍ଷକ ଟିଉସନ କରୁଥିଲେ । ସେ ସମୟରେ ମୁଁ ଓ.ଏ.ଏସ୍ ଓ ଇତିହାସରେ ଏମ୍.ଏ (ପ୍ରଥମ ଭାଗ) ପରୀକ୍ଷା ଘରୋଇଭାବେ ଦେବା ନିମନ୍ତେ ପ୍ରସ୍ତୁତ ହେଉଥିଲି । ତେଣୁ ଟିଉସନ ପ୍ରତି ବିମୁଖ ଥିଲି ।

ଦିନେ ବିଦ୍ୟାଳୟର ପଣ୍ଡିତ ମହାଶୟ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ ମୋ ପାଖକୁ ଆସିଲେ । ଜଣେ ସ୍ଥାନୀୟ ଭଦ୍ରବ୍ୟକ୍ତିଙ୍କ ଘରେ ଯାଇ ତାଙ୍କ ପିଲାମାନଙ୍କୁ ପଢ଼ାଇବା ନିମନ୍ତେ କହିଲେ । ମୁଁ ତାଙ୍କୁ ସଙ୍ଗେ ସଙ୍ଗେ ମନା କଲି ।

ସେ ମୋତେ କହିଲେ, "ବ୍ରହ୍ମାବାବୁ ! ଆପଣ କାହିଁକି ଟିଉସନ କରୁନାହାଁନ୍ତି ? ଆପଣଙ୍କୁ ଟିଉସନ ପାଇଁ ପ୍ରବର୍ତ୍ତାଇବାରେ ମୋର କୌଣସି ସ୍ୱାର୍ଥ ନାହିଁ । ଆପଣ ଯଦି ଟିଉସନ କରନ୍ତେ, ତେବେ ଆପଣଙ୍କର ଅତିକମ୍‌ରେ ଖାଦ୍ୟ ଗଣ୍ଡାକର ଖର୍ଚ୍ଚ ଉଠିଯାଆନ୍ତା ।"

ପଣ୍ଡିତ ମହାଶୟଙ୍କର ଏ ଅଯାଚିତ ଓ ଅପ୍ରତ୍ୟାଶିତ ଯୁକ୍ତି ଶୁଣି ମୁଁ ବିସ୍ମିତ ହୋଇଥିଲି ।

କିନ୍ତୁ ପଣ୍ଡିତ ମହାଶୟଙ୍କୁ ବାଧିଲା ଭଳି କୌଣସି ମନ୍ତବ୍ୟ ଦେଇ ନ ଥିଲି । ମୁଁ ବହୁଗ୍ରାମରେ ଥାଇ ଓ.ଏ.ଏସ୍ ପରୀକ୍ଷା ଦେଲି । ଲିଖିତ ପରୀକ୍ଷାରେ ତିନି ନମ୍ବର ପାଇଁ ମୌଖିକ ପାଇଁ ଯୋଗ୍ୟ ବିବେଚିତ ହେଲି ନାହିଁ । ଇତିହାସ ବିଷୟରେ ପରୀକ୍ଷା ଦେଇ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୭୪ ମସିହା ଏମ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ଏଇ ପରୀକ୍ଷା ସେ ବର୍ଷ ନଭେମ୍ବର ମାସରେ ଅନୁଷ୍ଠିତ ହୋଇଥିଲା ।

ଆଜିକାଲି ଶିକ୍ଷା ସଂପର୍କୀୟ ପରାମର୍ଶ ଓ ଉପଦେଶନ (Guidance & Counselling) ଦେବା ପାଇଁ ସରକାରୀ ଓ ବେସରକାରୀ ସ୍ତରରେ ବିଭିନ୍ନ ସଂସ୍ଥା ରହିଅଛି । ଏପରିକି ରାଜ୍ୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ପରାମର୍ଶ ଦେବାର ବିଧିବ୍ୟବସ୍ଥା ରହିଅଛି ।

ଆମେ ପାଠ ପଢୁଥିଲାବେଳେ ସେପରି ସୁବିଧା ଓ ସୁଯୋଗ ନ ଥିଲା । ପାଠ କହିଲେ ହାଇସ୍କୁଲ ସ୍ତରରେ ଆମେ ବିଜ୍ଞାନ, କଳା, ଡାକ୍ତରୀ ଓ ଇଞ୍ଜିନିୟରିଂ ପାଠ୍ୟକ୍ରମ ସଂପର୍କରେ ଜାଣୁଥିଲୁ । କାରଣ ଆମ ବିଦ୍ୟାଳୟର ପୂର୍ବତନ ଛାତ୍ରମାନେ ସେ ସବୁ ପଢୁଥିଲେ । ସେ ସଂପର୍କରେ ଶିକ୍ଷକମାନେ ସେମାନଙ୍କ ଉଦାହରଣ ଦେଇ କହୁଥିଲେ ।

ମୁଁ ବି.ଏଡ୍ ପଢ଼ିଲାବେଳେ ସମ୍ବଲପୁରରେ ଜାଣିଲି ଯେ ଏମ୍.ଏଡ୍ ପାଠ୍ୟକ୍ରମ ବି.ଏଡ୍ ପରବର୍ତ୍ତୀ ଶିକ୍ଷକ ପ୍ରଶିକ୍ଷଣ ପାଠ୍ୟକ୍ରମ ହିସାବରେ ଅଛି । ତା' ପୂର୍ବରୁ ଆମ ମଧ୍ୟରୁ ଅଧିକାଂଶଙ୍କର ଧାରଣା ଥିଲା ଏମ୍.ଏ ପରବର୍ତ୍ତୀ ପାଠ୍ୟକ୍ରମ ହେଉଛି ଏମ୍.ଏଡ୍ । ଆମର ଅଧିକାଂଶ ଶିକ୍ଷକଙ୍କର ଏମ୍.ଏ. ଏମ୍.ଏଡ୍ ଯୋଗ୍ୟତା ଥିଲା । କେବଳ ଏମ୍.ଏଡ୍ ପଢ଼ିବା ପାଇଁ ଓଡ଼ିଶାର ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଳ୍ପ ସଂଖ୍ୟକ (ପ୍ରାୟ ଚବିଶିଟି) ସିଟ୍ ଥିଲା । ତେଣୁ ଜଣକର ଶିକ୍ଷାଗତ ସଫଳତା ଉଚ୍ଚଧରଣର ନ ହେଲେ ସେ ଏମ୍.ଏଡ୍ ପଢ଼ିବା ନିମନ୍ତେ ଯୋଗ୍ୟ ବିବେଚିତ ହେବ ନାହିଁ ।

ମୋର ବି.ଏରେ ଅନର୍ସ ଥିଲା । ବିବେକାନନ୍ଦ ବିଦ୍ୟାପୀଠ ବହୁଗ୍ରାମରେ ସ୍ୱଳ୍ପରହଣି ମଧରେ ଏମ୍.ଏ. ଡିଗ୍ରୀ ହାସଲ କଲି । ସେତେବେଳେ ଏମ୍.ଏଡ୍ ଭର୍ତ୍ତି ନିମନ୍ତେ ସ୍କୁଲ ବିଷୟର ଏମ୍.ଏକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ବି.ଏଡ୍‌ରେ ଡ଼ିଷ୍ଟିଂସନ ଥିବା ହେତୁ ଓ ମୋର ଶିକ୍ଷାଗତ ଯୋଗ୍ୟତା ଅଧିକ ଥିବା ହେତୁ ମୁଁ ଏମ୍.ଏଡ୍ ପାଇଁ ଆବେଦନ କଲି ।

ପୂର୍ବରୁ ଏମ୍.ଏଡ୍ ପାଇଁ ସାକ୍ଷାତକାର ବ୍ୟବସ୍ଥା ଥିଲା । ଆମେ ଶୁଣୁଥିଲୁ ଯେ ଦୀର୍ଘ ବର୍ଷ ଧରି ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ଥିବା ପ୍ରଫେସର ଗୌରୀଶ୍ୟାମ ମହାନ୍ତି ସାକ୍ଷାତକାର ସମୟରେ ଯେଉଁମାନଙ୍କୁ ଏମ୍.ଏଡ୍ ସିଟ୍ ଦେବାକୁ ଚାହୁଁଥିଲେ ସେମାନଙ୍କୁ ସାକ୍ଷାତକାର ପାଇଁ ଥିବା କୋଡ଼ିଏ ମାର୍କରୁ ଉଣେଇଶ ନମ୍ବର ଦେଇ ଦେଉଥିଲେ । ଏହା ଫଳରେ ଅଧିକ ଶିକ୍ଷାଗତ ଯୋଗ୍ୟତା ଥିବା ପ୍ରାର୍ଥୀମାନଙ୍କର ଏମ୍.ଏଡ୍‌ରେ ସିଟ୍‌ଟିଏ ପାଇବାର ଆଶା ଖୁବ୍ କମ୍ ଥିଲା ।

ମାତ୍ର ସେ ବର୍ଷ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ଶିକ୍ଷା ଇତିହାସର ରଥଚକ୍ର ଏପରି ମୋଡ଼ ନେଲା ଯେ ରାଜ୍ୟ ସରକାର ପ୍ରଫେସର ଗୌରୀଶ୍ୟାମ ମହାନ୍ତିଙ୍କୁ ଅନ୍ୟତ୍ର ବଦଳି କଲେ ଓ ପରେ ସରକାରୀ ଚାକିରିରୁ ବାଧ୍ୟତାମୂଳକ ଅବସର ଦେଲେ । ତାଙ୍କ ସ୍ଥାନରେ ଠିକ୍ ଆମର ଏମ୍.ଏଡ୍ ଆବେଦନର ବିଚାର ପୂର୍ବରୁ ୧୯୭୪-୭୫ ଶିକ୍ଷାବର୍ଷରେ କଲେଜର ଅଧ୍ୟକ୍ଷ ପଦରେ ପ୍ରଫେସର ରାମକୃଷ୍ଣ କର ଅବସ୍ଥାପିତ ହେଲେ ।

ସେ ସମୟରେ ଆମ ରାଜ୍ୟର ଶିକ୍ଷା ପ୍ରଶାସନରେ ପ୍ରଫେସର ରାମକୃଷ୍ଣ କର ଜଣେ ସଚ୍ଚୋଟ, ଦକ୍ଷ, ପ୍ରଶାସକ ଭାବେ ସର୍କଲସ୍ତରରେ ଶିକ୍ଷା ପରିଦର୍ଶକ (Inspector of Schools) ଭାବେ ସୁନାମ ଅର୍ଜନ କରିଥିଲେ । ପ୍ରଶାସନରେ ନିରପେକ୍ଷତା ଅବଲମ୍ବନ କରିବା ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ତେଣୁ ସେ ସେବର୍ଷ ବି.ଏଡ୍ ଓ ଏମ୍.ଏଡ୍ ଛାତ୍ରଛାତ୍ରୀମାନଙ୍କ ମନୋନୟନ ମୁଖ୍ୟତଃ ଯୋଗ୍ୟତା ଭିତ୍ତିରେ କରିଥିଲେ । ଏହା ଫଳରେ ଆମ ବ୍ୟାଚ୍‌ରେ ଉଚ୍ଚ ଯୋଗ୍ୟତା ସଂପନ୍ନ ପ୍ରାର୍ଥୀମାନେ ଏମ୍.ଏଡ୍‌ରେ ଭର୍ତ୍ତି ହେବାର ସୁଯୋଗ ପାଇଥିଲେ ।

୧୯୭୪ ମସିହା ଜୁନ୍‌ମାସ । ସେତେବେଳେ ମୁଁ ଗ୍ରୀଷ୍ମାବକାଶ ଯୋଗୁଁ ଗାଁରେ ଥିଲି । ବାପା କୌଣସି କାମରେ କଟକ ଜିଲ୍ଲାପାଳ ଅଫିସ୍‌କୁ ଯାଉଥିଲେ । ଏକଥା ଜାଣି ବାପାଙ୍କୁ କହିଲି, "ମୁଁ ଏବର୍ଷ ଏମ୍.ଏଡ୍‌ରେ ଭର୍ତ୍ତି ହେବା ପାଇଁ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ, କଟକକୁ ଆବେଦନ କରିଛି । ତେଣୁ ମୁଁ ଏମ୍.ଏଡ୍ ପଢ଼ିବା ପାଇଁ ବଛାଯାଇଛି କି ନାହିଁ କଲେଜ କାର୍ଯ୍ୟାଳୟରୁ ଟିକେ ବୁଝି ଆସିବା ପାଇଁ ।

ବାପା ସେଦିନ ସନ୍ଧ୍ୟାବେଳକୁ କଟକରୁ ଫେରି ଆସିଲେ । କହିଲେ ଯେ ଏମ୍.ଏଡ୍ ପଢ଼ିବାର ବଛାବାଛି ତାଲିକା ବାହାରିଛି । ଯେଉଁ କେତେଜଣ ସରକାରଙ୍କଠାରୁ ଷ୍ଟାଇପେଣ୍ଡ ପାଇ ପଢ଼ିବାକୁ ବଛା ଯାଇଛନ୍ତି ସେଥି ମଧ୍ୟରେ ମୋର ନାମ ଅଛି ।

ଜୁଲାଇ ମାସରେ ଗ୍ରୀଷ୍ମାବଶେଷ ପରେ ବିବେକାନନ୍ଦ ବିଦ୍ୟାପୀଠ ଖୋଲିଲା । ଏମ୍.ଏଡ୍ ପଢିବା କଥା ସମସ୍ତେ ଜାଣିଲେ । ମୁଁ ସେ ବର୍ଷ ଏମ୍.ଏଡ୍ ପଢ଼ିବି କି ନାହିଁ ସ୍ଥିର କରି ପାରିଲି ନାହିଁ । କାରଣ ପ୍ରଶିକ୍ଷଣ ସମୟରେ ଯେତିକି ଅର୍ଥର ଆବଶ୍ୟକତା ଥିଲା, ତାହା ମୋ ପାଖରେ ନ ଥିଲା ।

ଦିନେ ମୋତେ ପ୍ରଧାନଶିକ୍ଷକ କୃଷ୍ଣବାବୁ ପଚାରିଲେ, "ଦିଗବାବୁ ! କାହିଁକି ଏମ୍.ଏଡ୍ ପଢ଼ିବା ପାଇଁ ଅଧ୍ୟୟନ ଛୁଟି (Study leave) ନିମନ୍ତେ ଆପଣ ପରିଦର୍ଶକ କାର୍ଯ୍ୟାଳୟକୁ (Inspector Office) ଦରଖାସ୍ତ କରୁନାହାଁନ୍ତି ? ବସି ରହିଲେ କ'ଣ ଚଳିବ ?"

ମୁଁ କହିଲି, "ସାର୍ ! ଏ ବର୍ଷ ବହୁଗ୍ରାମ ଛାଡ଼ି ଯିବାକୁ ଇଚ୍ଛା ହେଉନି । ପୁଣି ପରବର୍ଷ ମୋତେ ସେଠାରେ ପଢ଼ିବାକୁ ସୁଯୋଗ ମିଳିବ କି ନାହିଁ ସେ କଥା ଭାବି ଟିକେ ଦ୍ୱିଧାରେ ପଡ଼ିଯାଇଛି । କିଛି ସ୍ଥିର କରିପାରୁ ନାହିଁ ।"

ମୋ କଥା ଶୁଣି ସଙ୍ଗେ ସଙ୍ଗେ ପ୍ରାଜ୍ଞ ଅନୁଭୂତି ସଂପନ୍ନ ପୂଜ୍ୟ ପ୍ରଧାନଶିକ୍ଷକ କୃଷ୍ଣଚନ୍ଦ୍ର ଦାଶ କହିଲେ, ଆସନ୍ତା ବର୍ଷକୁ ସିଟ୍ ମିଳିଯିବ, ହେଲେ ଅଧ୍ୟାପକ ଚାକିରିଟି ପାଇବା ବିଳମ୍ବ ହୋଇଯିବ ।"

ସେ ପିତୃ ସଦୃଶ ଥିଲେ । ତାଙ୍କ କଥାର ଗୁରୁତ୍ୱ ଯେ କେତେ ସୁଦୂର ପ୍ରସାରୀ, ତାହା ମୁଁ ବୁଝିପାରିଲି । ପରଦିନ ବର୍ଷକ ପାଇଁ ଶିକ୍ଷା ଛୁଟି ଦେବା ନିମନ୍ତେ ମୁଁ କଟକ ସ୍କୁଲ ସମୂହର ପରିଦର୍ଶକଙ୍କୁ ଆବେଦନ କଲି । ମୋର ଆବେଦନପତ୍ରକୁ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଦାସ ଶିକ୍ଷାପରିଦର୍ଶକଙ୍କ କଟକ କାର୍ଯ୍ୟାଳୟକୁ ପଠାଇ ଦେଲେ । ଯଦି ପଢ଼ା ସମୟରେ ଅର୍ଥ ଅଭାବ ହେବ, ତେବେ କୌଣସି ସୂତ୍ରରୁ ଯୋଗାଡ଼ କରି ଦେବି ବୋଲି ମନେ ମନେ ସ୍ଥିର କଲି ।

**ଏମ୍.ଏଡ୍. ଅଧ୍ୟୟନ (୧୯୭୪-୭୫)**

ଏମ୍.ଏଡ୍. ଛାତ୍ରମାନଙ୍କ ପାଇଁ କଲେଜ ପରିସର ମଧ୍ୟରେ ଥିବା ଛାତ୍ରାବାସରେ ଦଶଟି ସ୍ୱତନ୍ତ୍ର କୋଠରି (Singleroom) ଥିଲା । ମୋର ଦଶଜଣଙ୍କ ମଧ୍ୟରେ ମନୋନୟନ ହୋଇଥିବା ଯୋଗୁଁ ମୁଁ ଛାତ୍ରାବାସରେ ସ୍ୱତନ୍ତ୍ର କୋଠରିଟିଏ ପାଇଥିଲି । ସେ ବର୍ଷ ଏମ୍.ଏଡ୍. ପଢ଼ିବା ପାଇଁ ସର୍ବମୋଟ ୨୪ଟି ସିଟ୍ ଥିଲା । ମହିଳାମାନେ ତତ୍‌କାଳୀନ କାଠଯୋଡ଼ି ଛାତ୍ରାବାସରେ ରହୁଥିଲେ । ଅନ୍ୟମାନେ ବାହାରେ ରହୁଥିଲେ ।

ମୁଁ ପରିଦର୍ଶକଙ୍କ ଆଦେଶ ଅନୁଯାୟୀ ସିନା ଏକବର୍ଷ ପାଇଁ ଅଧ୍ୟୟନ ଛୁଟି ନେଇ ଚାଲି ଆସିଲି, ମାତ୍ର ସେଇ ଏକ ବର୍ଷ ଅବଧି ମଧ୍ୟରେ ମୁଁ ବିଦ୍ୟାଳୟର ସହପାଠ୍ୟକ୍ରମ ଭିତ୍ତିକ କାର୍ଯ୍ୟକ୍ରମରେ ଯୋଗ ଦେଉଥିଲି । ଏପରିକି କଲେଜରେ ଥିବାବେଳେ ମଧ୍ୟ ବିଦ୍ୟାଳୟର ଭ୍ରମଣ କାର୍ଯ୍ୟକ୍ରମରେ ଯୋଗ ଦେବା ନିମନ୍ତେ ମୋତେ ନିମନ୍ତ୍ରିତ କରାଯାଇଥିଲା । ମୁଁ ମଧ୍ୟ ସହକର୍ମୀ ଓ ପିଲାମାନଙ୍କ ସହିତ ଓଡ଼ିଶାର ବିଭିନ୍ନ ସ୍ଥାନ ଭ୍ରମଣରେ ଯାଉଥିଲି ।

ମୋତେ ବିଦ୍ୟାଳୟର ମୁଖପତ୍ର 'ପୀଠପୁଷ୍ପ'ର ସଂପାଦକ ରଖାଯାଇଥିଲା । ମୁଁ ସେତେବେଳେ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଦାଶଙ୍କୁ କହିଥିଲି, "ସାର୍ । ବିଦ୍ୟାଳୟରେ ଅନେକ ପ୍ରବୀଣ ଓ ଅନୁଭୂତିସଂପନ୍ନ ଶିକ୍ଷକ ଅଛନ୍ତି । ଆପଣ କାହିଁକି ମୋତେ ସେ ଗୁରୁ ଦାୟିତ୍ୱ ଦେଉଛନ୍ତି ?"

ସେତେବେଳେ ସେ ମୋତେ କହିଥିଲେ "ଆପଣ କେବଳ ହିଁ ଏ ଦାୟିତ୍ୱରେ ରହିବେ । ପୀଠପୁଷ୍ପ ପାଇଁ ସଂପାଦନା ମଣ୍ଡଳୀର ଆବଶ୍ୟକତା ନାହିଁ ।" ଏହା ତାଙ୍କର ପ୍ରଶାସନିକ ନିଷ୍ପତ୍ତି ଥିଲା । ମୋର କିଛି କହିବାର ନ ଥିଲା ।

ମୁଁ ଏମ୍.ଏଡ୍. ପଢ଼ିବା ପାଇଁ ସ୍କୁଲ ଛାଡ଼ିବା ସମୟରେ ପୁଣି ମୋତେ ଆଦେଶ ମିଳିଲା, "ଦିଗବାବୁ ! ଆପଣ ତ କଟକରେ ରହିବେ । ତେଣୁ ଏକ ପ୍ରେସ୍ ମନୋନୟନ କରି ପୀଠପୁଷ୍ପ ଯେମିତି ଏ ବର୍ଷ ପ୍ରକାଶିତ ହୁଏ, ସେଥିପାଇଁ ଦୃଷ୍ଟି ଦେବେ ।"

ପାଠପୁସ୍ତକର ପ୍ରକାଶନ ପାଇଁ ୧୯୭୪-୭୫ ଶିକ୍ଷାବର୍ଷରେ ଖଟବିନ୍ ସାହିତ୍ୟ ବିନାୟକ ପ୍ରିଣ୍ଟର୍ସର ସତ୍ତ୍ୱାଧିକାରୀ ଗୋଲକ ବାବୁଙ୍କୁ ଦାୟିତ୍ୱ ଦିଆଗଲା । ସେ ବର୍ଷ ପ୍ରଧାନଶିକ୍ଷକଙ୍କ ଶୁଭେଚ୍ଛା ଓ ସଦିଚ୍ଛାର ବାର୍ତ୍ତାବହନ କରି ପାଠପୁସ୍ତ ପ୍ରକାଶିତ ହେଲା ।

ସେଇ ଶିକ୍ଷାବର୍ଷରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ମୁଖପତ୍ର 'କ୍ଷଣିକା'ର ସଂପାଦନା ଦାୟିତ୍ୱ ପ୍ରଫେସର ରାମକୃଷ୍ଣ କର ମହାବିଦ୍ୟାଳୟର ଅଭିଜ୍ଞ ଅଧ୍ୟାପକ ପ୍ରଫେସର ଭି.ବି ଶାସ୍ତ୍ରୀଙ୍କ ଉପରେ ନ୍ୟସ୍ତ କରିଥିଲେ । ସଂପାଦନା ମଣ୍ଡଳୀରେ ବି.ଏଡ୍ ପ୍ରତିନିଧି ଭାବେ ବାସୁଦେବ ଦାସ ଓ ଏମ୍.ଏଡ୍ ପ୍ରତିନିଧିଭାବେ ମୋତେ ଓ ବି.ଏଡ୍‌ର ଛାତ୍ରୀ ଲଳିତା ସାହୁଙ୍କୁ ଦିଆଯାଇଥିଲା । ମାତ୍ର ପ୍ରଫେସର ଶାସ୍ତ୍ରୀଙ୍କ ପରାମର୍ଶ କ୍ରମେ ସଂପାଦନାର ଅଧିକାଂଶ ଦାୟିତ୍ୱ ମୋତେ ଦିଆଯାଇଥିଲା ଓ ପ୍ରତ୍ୟେକ ଲେଖାକୁ ଶୈକ୍ଷିକ ରୂପରେଖ ମଧ୍ୟ ଦିଆଯାଇଥିଲା । ଏହା ଫଳରେ 'କ୍ଷଣିକା' କେବଳ ଗତାନୁଗତିକ କବିତା, ଗଳ୍ପ ଓ ପ୍ରବନ୍ଧର ରୂପରେଖ ନ ନେଇ ଶିକ୍ଷା ବିଷୟ ଭିତ୍ତିକ ଗଳ୍ପ, କବିତା ଓ ପ୍ରବନ୍ଧର ନବକଳେବରରେ ସମୃଦ୍ଧ ହୋଇଥିଲା । ଏହାକୁ ନବଜୀବନ ପ୍ରେସର ମାଲିକ ଶ୍ରୀଯୁକ୍ତ କୃଷ୍ଣ ମିଶ୍ର ଯତ୍ନର ସହିତ ଛପାଇ ଥିଲେ । ଏହା ଫଳରେ 'କ୍ଷଣିକା' ଶିକ୍ଷାର୍ଥୀ ଓ ଶିକ୍ଷାବିତ୍‌ଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲା ।

ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଯେଉଁ ଅଧ୍ୟାପକମାନଙ୍କ ଶିକ୍ଷାଦାନ ଛାତ୍ରମାନଙ୍କୁ ବିଶେଷ ପ୍ରଭାବିତ କରିଥିଲା ସେମାନେ ହେଲେ ପ୍ରାଧ୍ୟାପକ ଅଭିମନ୍ୟୁ ସ୍ୱାଇଁ, ଅଧ୍ୟାପକ କୈଳାସ ଚନ୍ଦ୍ର ଦାସ, ଅଧ୍ୟାପକ ଭେଦୁଲା ଭୀମଶଙ୍କର ଶାସ୍ତ୍ରୀ, ଅଧ୍ୟାପକ ଗୌରୀଶଙ୍କର ମହାପାତ୍ର, ଅଧ୍ୟାପିକା ଦୀପାଳି ସିହ୍ନା ରାୟ ଓ ଅଧ୍ୟାପିକା ଇନ୍ଦିରା ନନ୍ଦ । ନବାଗତ ଅଧ୍ୟାପକ ହିସାବରେ ସେ ବର୍ଷ ଅଧ୍ୟାପକ ଶ୍ରୀବତ୍ସ ଲାଞ୍ଛନ ଜେନା, ଅଧ୍ୟାପକ ଗଦାଧର ଷଡ଼ଙ୍ଗୀ, ଅଧ୍ୟାପକ ପ୍ରଭାକର ରାଉତ ପ୍ରମୁଖ ଯୋଗଦାନ କରିଥିଲେ ।

## ମୋ ବିବାହ

ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଏମ୍.ଏଡ୍ ପଢୁଥିବା ସମୟରେ ଅପ୍ରତ୍ୟାଶିତ ଭାବେ ମୋର ବିବାହ ସମସରପୁର ଗ୍ରାମ ନିବାସୀ ତଥା କଟକ ଜିଲ୍ଲାସ୍ଥ ଏକାମ୍ର ରସୁଲ ଉଚ୍ଚବିଦ୍ୟାଳୟ, ରାଇସୁଙ୍ଗୁଡ଼ାର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ସୁରେନ୍ଦ୍ର କୁମାର ଆଚାର୍ଯ୍ୟ ଓ ଶ୍ରୀମତୀ ସ୍ୱର୍ଣ୍ଣଲତା ଦେବୀଙ୍କ ଜ୍ୟେଷ୍ଠା କନ୍ୟା ଜ୍ୟୋତ୍ସ୍ନାରାଣୀଙ୍କ ସହିତ ୧୯୭୫ ମସିହା ଫେବୃୟାରୀ ମାସରେ ଅନୁଷ୍ଠିତ ହୋଇଥିଲା । ସେତେବେଳେ ତାଙ୍କର ବଡ଼ଭାଇ ପ୍ରଦୀପ ଆଚାର୍ଯ୍ୟ ଶ୍ରୀରାମଚନ୍ଦ୍ର ଭେଷଜ ମହାବିଦ୍ୟାଳୟରେ ଏମ୍.ବି.ବି.ଏସ୍ ଅଧ୍ୟୟନ କରୁଥିଲେ । ତାଙ୍କ ସହିତ ମୋର ପୂର୍ବରୁ କଟକରେ ପରିଚୟ ହୋଇଥିଲା ।

୧୯୬୬ ମସିହାରେ ମୁଁ କଟକସ୍ଥ ମିଶନ ହାଇସ୍କୁଲରେ ରାଷ୍ଟ୍ରଭାଷା କୋବିଦ ପରୀକ୍ଷା ଦେଉଥିଲି । କଲେଜିଏଟ୍ ସ୍କୁଲର କେତେକ ଛାତ୍ରଙ୍କ ସହିତ ସେ ରାଷ୍ଟ୍ରଭାଷା ପରୀକ୍ଷା ଦେଉଥିଲେ ଏବଂ ଏଇ ପରିଚୟ ନିହାତି ଆକସ୍ମିକ ଥିଲା ।

ପରୀକ୍ଷାଦେବା ସମୟରେ ମୋତେ ଶୋଷ ହେଲା । ମୁଁ ନିରୀକ୍ଷକଙ୍କୁ କହିଲି, "ସାର୍ ! ପାଣି ।" ସଙ୍ଗେ ସଙ୍ଗେ ହାଇସ୍କୁଲ ସ୍ତରରେ ଅଧ୍ୟୟନ କରୁଥିବା ଓ କୈଶୋର ଅବସ୍ଥାରେ ପହଞ୍ଚୁଥିବା ଏଇ ପିଲାମାନେ ସମସ୍ୱରରେ ମୋତେ ପ୍ରଶ୍ନ କଲେ, "ସାର୍ ! କେମିତି ପାଣି ହେଲେ ?"

ମୁଁ ସେମାନଙ୍କୁ ପଚାରିଲି, "ତୁମ୍ଭେମାନେ କେଉଁ ସ୍କୁଲରେ ପାଠ ପଢ଼ ?" ସେମାନେ ଉତ୍ତର ଦେଲେ କଲେଜିଏଟ୍ ଉଚ୍ଚ ବିଦ୍ୟାଳୟରେ ।"

ମୁଁ କହିଲି ମୋ ପ୍ରଶ୍ନରେ "ଆଣ" କ୍ରିୟାଟି ଉହ୍ୟ ଅଛି । ଏକଥା କ'ଣ ତୁମଭଳି ବୁଦ୍ଧିମାନ ପିଲାମାନଙ୍କୁ ବୁଝାଇବାକୁ ପଡ଼ିବ ।"

ପରୀକ୍ଷା ପରେ ସେ ପିଲାମାନେ ମୋର ପରିଚୟ ଓ ଘର କେଉଁଠି ବୋଲି ପଚାରିଥିଲେ । ମୁଁ ଛତିଆ କହିଲା ପରେ ଶ୍ରୀମାନ୍ ଆଚାର୍ଯ୍ୟ ମୋତେ ତାଙ୍କର ପରିଚୟ ଦେଇଥିଲେ । ଏବେ ସେ ମୋର ମାନ୍ୟରେ ବଡ଼ । ଆମ ପିଲାମାନଙ୍କର ଆଦରଣୀୟ ମାମୁ ଓ ମୋର ପୂଜ୍ୟ ଭାଇନା ହେବାର ମର୍ଯ୍ୟାଦା ଲାଭ କରିଛନ୍ତି ।

## ଆମ ପରିବାରର ପ୍ରଥମ ଅତିଥି

ମୁଁ ବହୁଗ୍ରାମରେ ଥିଲାବେଳେ ମୋର ପ୍ରଥମପୁତ୍ର ଜ୍ୟୋତିପ୍ରକାଶ (ବାପି)ର ଜନ୍ମ ୧୯୭୬ ମସିହା ମେ ମାସ ୧୫ ତାରିଖରେ କଟକସ୍ଥିତ ମାତୃମଙ୍ଗଳ କେନ୍ଦ୍ରରେ ହୋଇଥିଲା । ସେ ଥିଲା ଆମ ପରିବାରର ପ୍ରଥମ ଅତିଥି ।

ତା'ର ଜନ୍ମପୂର୍ବରୁ ଶ୍ରୀମତୀ ବ୍ରହ୍ମା କଟକର ଯୋବ୍ରାସ୍ଥିତ ମୋ ବାପାଙ୍କ ଭାଣିଜୀ ଜାନିକା ନାନୀ ପାଖରେ ରହୁଥିଲେ । ଜାନିକାନାନୀ ଓ ତାଙ୍କର ବର ଶ୍ରୀଯୁକ୍ତ ଇନ୍ଦ୍ରମଣି ମିଶ୍ର, ତାଙ୍କର ଝିଅ ରାଣୀ (ତିଳୋତ୍ତମା ମିଶ୍ର), ପୁଅ ଟୁନା (ରାଧାନାଥ ମିଶ୍ର) ନବଜାତ ସନ୍ତାନ ବାପିର ଖୁବ୍ ଯତ୍ନ ନେଇଥିଲେ ।

ବାପିର ଜନ୍ମ ସମୟରେ ମୁଁ ବହୁଗ୍ରାମରେ ଥିଲି । ମୋତେ ତା'ର ଜନ୍ମହେବା ସମ୍ବାଦ ବଂଶୀଭାଇ (ମଉଦା ମଧୁସୂଦନ ଜଗନ୍ନାଥ ବିଦ୍ୟାପୀଠର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ବଂଶୀଧର ଭଳ) ମେ ମାସ ୧୬ ତାରିଖ ସକାଳେ ଦେଇଥିଲେ । ଆମ ଘରେ ଜନ୍ମ ଦିବସ ପାଳନର ବିଧିବିଧାନ ନଥିବା ହେତୁ ଆମେ ସେ ବର୍ଷ ଗ୍ରୀଷ୍ମାବକାଶ ସମୟରେ ନବଜାନ ସନ୍ତାନର ସତ୍ୟନାରାୟଣ ପୂଜା ଆମ ଗାଁ ରୁଦ୍ରପୁରରେ କରିଥିଲୁ ।

ସେ ବର୍ଷ ମୁଁ ଶିକ୍ଷା ବିଷୟରେ ଆଡ଼ହକ ଅଧ୍ୟାପକ ଚାକିରି ନିମନ୍ତେ ଭୁବନେଶ୍ୱରସ୍ଥ ଡ଼ି.ପି.ଆଇ କାର୍ଯ୍ୟାଳୟରେ ଏକ ସାକ୍ଷାତକାର ଦେଇଥିଲି । ଏହି ସାକ୍ଷାତକାର ବେଳେ ମାଟ୍ରିକ ପରୀକ୍ଷାଠାରୁ ଆରମ୍ଭ କରି ଏମ୍.ଏଡ୍ ପର୍ଯ୍ୟନ୍ତ ସମସ୍ତ ଯୋଗ୍ୟତାଗତ ପ୍ରମାଣପତ୍ର ତଦାରଖ ମଧ୍ୟରେ ସୀମିତ ଥିଲା । ତେଣୁ କହିବାକୁ ଗଲେ ଏହା ଜଣେ ପ୍ରାର୍ଥୀଙ୍କର ପାଠପଢ଼ା ସମୟର ନମ୍ବର ଓ କ୍ୟାରିୟର (Career) ଉପରେ ନିର୍ଭର କରୁଥିଲା ।

ସେ ବର୍ଷ ମୋର ଅଧ୍ୟାପକ ଭାବେ ଆଡ଼ହକ୍ ନିଯୁକ୍ତି ବହୁ ବିଳମ୍ବ ହେଲା । ସେତେବେଳେ ତତ୍‌କାଳୀନ ଡ଼ି.ପି.ଆଇ ଅଫିସର ଏଷ୍ଟାବ୍ଲିସ୍‌ମେଣ୍ଟ ଅଫିସର ଜାଣିଶୁଣି ଏସବୁ ନିଯୁକ୍ତିରେ କ୍ୟାରିୟର ମାର୍କ ବଦଳାଇ ହେରଫେର କରୁଥିଲେ । ଅଭିଯୋଗ ହେଲେ ପ୍ରାର୍ଥୀଙ୍କର ଯୋଗ୍ୟତା ଭିତ୍ତିକ ଆସ୍ଥାନ ବଦଳୁଥିଲା ମାତ୍ର ଏସବୁ କଥା ଆମ ଭଳି ସାଧାରଣ ସ୍ତରର ପ୍ରାର୍ଥୀମାନେ ସହଜରେ ଜାଣିପାରୁ ନ ଥିଲେ ।

ଇତି ମଧ୍ୟରେ ମୁଁ କାମ କରୁଥିବା ବିବେକାନନ୍ଦ ବିଦ୍ୟାପୀଠର ମୋର ଏମ୍.ଏଡ୍ ସହପାଠୀ ତଥା ବିବେକାନନ୍ଦ ବିଦ୍ୟାପୀଠର ବିଜ୍ଞାନ ଶିକ୍ଷକ ଶ୍ରୀଯୁକ୍ତ ନିରଞ୍ଜନ ଜେନା ଅଧ୍ୟାପକ ଭାବେ ଆଡ଼ହକ ନିଯୁକ୍ତ ପାଇ ବଲାଙ୍ଗୀର ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ଚାଲିଗଲେ । ଏହା ହେଉଛି ୧୯୭୬ ମସିହା ନଭେମ୍ବର ମାସର ଘଟଣା । ଦିନେ ଡ଼ିସେମ୍ବର ମାସର ସନ୍ଧ୍ୟାବେଳେ ମୁଁ ବିଦ୍ୟାପୀଠର ବାହାରେ ଥିବା ପ୍ରବେଶଦ୍ୱାର ନିକଟସ୍ଥ ସିମେଣ୍ଟ ବେଞ୍ଚରେ ବସିଅଛି । ସେଦିନ ଛୁଟି ଦିନ ଥାଏ । ହଠାତ୍ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଦାଶ ସେଠାରେ ଆସି ପହଞ୍ଚିଲେ ଓ ମୋ ପାଖରେ ବସି ପଡ଼ିଲେ ।

ଶ୍ରୀଯୁକ୍ତ ଦାଶ ସାଧାରଣତଃ ବେଶୀ କଥାବାର୍ତ୍ତା କରନ୍ତି ନାହିଁ । ତାଙ୍କ ମନରେ ମୋ ପ୍ରତି ଗଭୀର ସ୍ନେହ ଓ ଶ୍ରଦ୍ଧା ଥାଏ ବୋଲି ମୁଁ ଅନେକ ସମୟରେ ଲକ୍ଷ୍ୟ କରିଥାଏ । ସେ କିଛି ସମୟ ନୀରବ ରହି ମୋତେ ପଚାରିଲେ, "ଦିଗବାବୁ । ଆପଣଙ୍କର ଅଧ୍ୟାପକ ନିଯୁକ୍ତି କ'ଣ ହେବ ନାହିଁ ? ମୁଁ ଭାବିଥିଲି ଆପଣଙ୍କର ନିରଞ୍ଜନ ବାବୁଙ୍କ ଆଗରୁ ହୋଇଯିବ ବୋଲି ।"

ମୁଁ କହିଲି "ସାର୍ ! ଡ଼ିସେମ୍ବର ମାସ ତ ସରି ସରି ଆସୁଛି । ଆଉ ଦିନ କେଇଟାରେ ଜାନୁୟାରୀ ମାସ ଆରମ୍ଭ ହୋଇଯିବ । ପୁରୁଣା ପ୍ୟାନେଲ୍ କଟିଯିବ । ତେଣୁ ଆଡ଼ହକ୍ ନିଯୁକ୍ତି ପାଇବାର ଆଶା ଆଉ ନାହିଁ ।" ସେ ମୋତେ କିଛି କହିଲେ ନାହିଁ । କିଛି ସମୟ ନୀରବରେ ବସି ସେ ସ୍ଥାନ ଛାଡ଼ି ଚାଲିଗଲେ । ଏଇ ସମୟରେ ମୋର ଗଉରିଆନା (ରମେଶ ଚନ୍ଦ୍ର ବ୍ରହ୍ମା)ଙ୍କ କଥା ମନେ ପଡ଼ିଲା । ମୁଁ ତାଙ୍କ ପାଖକୁ ପରଦିନ ଗଲି । ଭୁବନେଶ୍ୱରସ୍ଥ ଡି.ପି.ଆଇ ଅଫିସରେ ଭେଟି କହିଲି, "ମୋ ଠାରୁ

କ୍ୟାରିୟରରେ କମ୍ ଥିବା ଏମ୍.ଏଡ୍ ସହପାଠୀମାନେ ଆଡ୍‌ହକ ନିଯୁକ୍ତି ପାଇଗଲେ । ମୋର କ'ଣ ହେବ ନାହିଁ ?"

ସେ ମୋ ମନର ଅବସ୍ଥା ଭଲଭାବେ ଜାଣି ପାରିଲେ । ସଙ୍ଗେ ସଙ୍ଗେ ମୋତେ ଏସବୁ ନିଯୁକ୍ତି କଥା ବୁଝୁଥିବା ସିନିୟର ଆସଷ୍ଟାଣ୍ଟ୍‌ଙ୍କ ନିକଟକୁ ନେଇଗଲେ । ତାଙ୍କୁ ମୋର ସ୍ଥିତି କ'ଣ ଅଛି ବୋଲି ପଚାରିଲେ ?

ସେତେବେଳେ ସେ ଭଦ୍ରବ୍ୟକ୍ତି ବିଭାଗୀୟ ପଦୋନ୍ନତି ପାଇ ବି.ଡ଼ି.ଓ ହୋଇ କେଉଁଠାରେ ଯୋଗ ଦେବାରେ ଥିଲା । ଦଶବାର ଦିନ ମଧ୍ୟରେ ନିଜ ପଦରୁ ବିଦାୟ ନେଇ ଯିବାକୁ ଥିବାରୁ ପ୍ରଫୁଲ୍ଲିତ ଥିଲେ । ସେ ମୋ ଫାଇଲ କାଢ଼ିଲେ । ଗଉରିଆ ନନାଙ୍କୁ କହିଲେ, "ମୁଁ ଯିବା ପୂର୍ବରୁ ତା' ନିଯୁକ୍ତି କରାଇ ଯିବି ।"

ତାଙ୍କ କଥାକୁ ସେଦିନ ମୁଁ ପାଣିର ଗାର ବୋଲି ମନେ କରି ଫେରି ଆସିଲି ଓ ସବୁଦିନ ପାଇଁ ଅଧ୍ୟାପକ ହେବାର ଆଶା ଛାଡ଼ି ଦେଲି । ବିବେକାନନ୍ଦ ବିଦ୍ୟାଳୟର ପିଲାମାନଙ୍କ ସହିତ ମିଶି ପ୍ରଧାନଶିକ୍ଷକ କୃଷ୍ଣବାବୁଙ୍କ ଅନୁମତି ନେଇ 'ଉନ୍ମେଷ' ନାମକ ଏକ ପ୍ରାଚୀରପତ୍ର ପ୍ରସ୍ତୁତ କଲି ।

ସେଦିନ ହୋଇଥାଏ ୧୯୭୭ ମସିହା ଜାନୁୟାରୀ ମାସ ଦଶ ତାରିଖ । ବିଦ୍ୟାଳୟ ନିକଟସ୍ଥ ପିଣ୍ଡିରେ ବସି କେତେକ ପିଲା ଓ ମୁଁ ପ୍ରାଚୀର ପତ୍ରର ମିନିଗଳ୍ପ, କବିତା ଓ ଚିତ୍ର ଆଦିକୁ ଶେଷସ୍ପର୍ଶ ଦେଉଥାଉ । ଏଇ ସମୟରେ ବହ୍ନୁଗ୍ରାମ ଡାକଘରର ପିଅନ ଆସି ମୋତେ ଗୋଟିଏ ରେଜେଷ୍ଟ୍ରି ଡାକ ଧରେଇ ଦେଲେ । ମୁଁ ଦସ୍ତଖତ କରି ଲଫାପାଟିକୁ ଖୋଲିଲି । ତାହା ଥିଲା ଡି.ପି.ଆଇ. (ଉଚ୍ଚଶିକ୍ଷା ବିଭାଗ) ଚିଠି ନଂ - ୧୧୭୧ତା ୧୦।୧।୭୭ର ଆଦେଶନାମା । ସେଥିରେ ମୁଁ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଜାନୁୟାରୀ ୧୫ ମଧ୍ୟରେ ଅଧ୍ୟାପକ ପଦରେ ଯୋଗଦେବା ପାଇଁ ନିର୍ଦ୍ଦେଶ ଥିଲା ।

ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ବି.ଏଡ୍ ଛାତ୍ର ମୁଁ ଥିଲି । ସଙ୍ଗେ ସଙ୍ଗେ ମୋ ଆଖି ଆଗରେ ନାଚି ଉଠିଲା ସେଇ ପବିତ୍ର ଅନୁଷ୍ଠାନ, ମୋତି ଝରଣ, ମା' ସମଲାଇ ମନ୍ଦିର, ବୁଢ଼ାରାଜା ଆଦିର ସ୍ମୃତି ।

ସେଦିନ ଯଦି ଗଉରିଆନାଙ୍କ ସାହାଯ୍ୟ ନ ଥାନ୍ତା, ତେବେ ମୁଁ ସେ ନିଯୁକ୍ତିରୁ ବଞ୍ଚିତ ହୋଇଥାନ୍ତି । ମୋତେ ପ୍ରଧାନଶିକ୍ଷକ କୃଷ୍ଣବାବୁ ଜାନୁୟାରୀ ମାସ ଚଉଦ ତାରିଖରେ ବିବେକାନନ୍ଦ ବିଦ୍ୟାପୀଠ ବହ୍ନୁଗ୍ରାମରୁ କାର୍ଯ୍ୟମୁକ୍ତ କଲେ । ସେଦିନ ମୋ ପାଇଁ ବିଦ୍ୟାଳୟ ତରଫରୁ ଏକ ବିଦାୟକାଳୀନ ସଭାର ଆୟୋଜନ କରାଯାଇଥଲା । ବିଦାୟ ସଭାରେ

ଶିକ୍ଷକ ଓ ଛାତ୍ରଛାତ୍ରୀମାନେ ମୋ ସପକ୍ଷରେ ସେମାନଙ୍କ ବକ୍ତବ୍ୟ ରଖି ମୋର ଉତ୍ତରୋତ୍ତର ଉନ୍ନତି କାମନା କରିଥିଲେ । ବିଦ୍ୟାଳୟର ଜନୈକ ଶିକ୍ଷକ ସାର୍ଥବାବୁ କହିଥିଲେ, "ଏଣିକି ବ୍ରହ୍ମାବାବୁ ଚାରିଅଙ୍କ ବିଶିଷ୍ଟ ଦରମା ପାଇବେ ।"

ଶେଷରେ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଦାଶ କହିଥିଲେ, "କିଏ କେତେ ଦରମା ପାଇବ ବଡ଼ କଥା ନୁହେଁ । କିଏ କ'ଣ କର୍ତ୍ତବ୍ୟ କରୁଛି ତାହାହିଁ ବଡ଼ କଥା । ମୁଁ ଏଠାରେ ତାଙ୍କ ଚାକିରି କାଳରେ ତାଙ୍କର କୌଣସି ଅବଗୁଣ ଦେଖିନାହିଁ । ସେ ନିଷ୍ଠାର ସହିତ ତାଙ୍କର କର୍ତ୍ତବ୍ୟ ସଂପାଦନ କରୁଥିଲେ । ଶ୍ରେଣୀ ଶିକ୍ଷକ ହିସାବରେ ସେ ପ୍ରତି ଶନିବାର ଦିନ ଷଷ୍ଠ ଶ୍ରେଣୀର ପିଲାଙ୍କ ମଧ୍ୟରେ ତର୍କ ପ୍ରତିଯୋଗିତା (Debate Competition) କରାଉଥିଲେ । ଯେଉଁ ପିଲାଟି ପଦଟିଏ କହିପାରୁ ନ ଥିଲା ସେ ମଧ୍ୟ କହିପାରିବାର ଦକ୍ଷତା ହାସଲ କଲା । ମାତ୍ର ଆଜି ସେଇ ପିଲାମାନଙ୍କ ମଧ୍ୟରୁ ଜଣେ କିଏ ତାଙ୍କ ପାଇଁ ଆଜିର ସଭାରେ ପଦଟିଏ କହି ପାରିଲେ ନାହିଁ । ବୋଧହୁଏ ସେମାନେ ଦୁଃଖରେ ମ୍ରିୟମାଣ ହୋଇଯାଇଛନ୍ତି । ମୁଁ ମୋ ଜୀବନରେ ଅନେକଙ୍କର ବିଦାୟକାଳୀନ ସଭାରେ ଯୋଗ ଦେଇଛି । କିନ୍ତୁ କାହିଁକି କେଜାଣି ଆଜି ତାଙ୍କ ବିଦାୟ ସମ୍ବର୍ଦ୍ଧନା ସଭାରେ ମୋ ଆଖିରେ ଲୁହ ଆସି ଯାଉଅଛି ।"

ଏତକ କହି ସେ ତାଙ୍କର ବକ୍ତବ୍ୟ ଶେଷ କରିଥିଲେ । ସେଦିନର ବିଦାୟ ସଭା ତାଙ୍କ ବକ୍ତବ୍ୟ ପରେ ପରେ ଶେଷ ହୋଇଥିଲା । ମୁଁ ସିନା କର୍ମପ୍ରବାହରେ ସମ୍ବଲପୁର ଚାଲି ଆସିଲି, ମାତ୍ର ଏଇ ମହାନୁଭବ ବ୍ୟକ୍ତି ଜଣଙ୍କ ପାଖରେ କିଛି ଦିନ କାମକରିବାର ସୁଯୋଗ ପୂର୍ବ ଜନ୍ମର ସୁକୃତି ଯୋଗୁଁ ପାଇଥିଲି ବୋଲି ଏବେ ମଧ୍ୟ ପରିଣତ ବୟସରେ ମୋର ସେ ଧାରଣା ପୂର୍ବବତ୍ ବଳବତ୍ତର ରହିଅଛି ।

**ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଯୋଗଦାନ**

ନୂତନ ବର୍ଷର ନୂତନ ଶୁଭେଚ୍ଛା ନେଇ ୧୯୭୭ ମସିହା ଜାନୁୟାରୀ ମାସ ୧୫ ତାରିଖରେ ମୁଁ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗଦାନ କଲି । ମହାବିଦ୍ୟାଳୟରେ ଯୋଗଦାନ ସମୟରେ ଅଧକ୍ଷ ପ୍ରଫେସର ଶରତଚନ୍ଦ୍ର ଦାଶଙ୍କ ବ୍ୟତୀତ ଅନ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ମୋର ଶିକ୍ଷକ । ପ୍ରଫେସର ଦେବେନ୍ଦ୍ର ନାଥ ରାଉତ, ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ, ଅଧ୍ୟାପକ ଡକ୍ଟର. ମୋହନ ଚରଣ ନାୟକ, ଅଧ୍ୟାପକ କୈଳାସ ଚନ୍ଦ୍ର ଦାସ ଓ ଅଧ୍ୟାପକ ସୁନୀଲ ବିହାରି ମହାନ୍ତିଙ୍କର ମୁଁ ଛାତ୍ର ଥିଲି । ଏତଦ୍‌ବ୍ୟତୀତ ଅଧ୍ୟାପକ ଦୈତାରୀ ପଣ୍ଡା, ଅଧ୍ୟାପକ ଶରତ କୁମାର ମହାନ୍ତି ମଧ୍ୟ ସେଠାରେ ସେ ସମୟରେ କାର୍ଯ୍ୟରତ ଥିଲେ ।

ମୋ ଯୋଗଦାନର କିଛି ମାସ ପୂର୍ବରୁ ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ବାଘ ସିଂହ ଓ ଡକ୍ଟର ଚାରୁବାଳା ମହାନ୍ତି, ସେଠାରେ ଯୋଗଦାନ କରିଥିଲେ । ପରବର୍ତ୍ତୀ ସମୟରେ ଅଧ୍ୟାପକ ଡମ୍ବରୁଧର ପରିଡ଼ା, ଅଧ୍ୟାପକ ଆର୍ତ୍ତତ୍ରାଣ ମହାନ୍ତି, ଅଧ୍ୟାପିକା ଭାରତୀ ଶାସ୍ତ୍ରୀ ସେଠାରେ ଯୋଗଦାନ କରିଥିଲେ । ଆମର ସୌଭାଗ୍ୟ ଯେ ଆମ୍ଭମାନଙ୍କର ଅନ୍ୟତମ ଶିକ୍ଷାଗୁରୁ ପ୍ରଫେସର ଭି.ବି. ଶାସ୍ତ୍ରୀ ସେଠାରେ ଆସି ପରବର୍ତ୍ତୀ ସମୟରେ ଯୋଗ ଦେଇଥିଲେ ।

କଲେଜର ଅଧ୍ୟକ୍ଷ ପ୍ରଫେସର ଡକ୍ଟର ଶରତଚନ୍ଦ୍ର ଦାଶ ମୋ ଯୋଗଦାନର କିଛି ମାସ ପୂର୍ବରୁ ପ୍ରଫେସର ତଥା ଅଧ୍ୟକ୍ଷ ପଦରେ ଅବସ୍ଥାପିତ ହୋଇଥିଲେ । ସେ ଜଣେ କର୍ତ୍ତବ୍ୟନିଷ୍ଠ ବ୍ୟକ୍ତି ଥିଲେ । ଯୁବ ଅଧ୍ୟାପକମାନଙ୍କ ପାଇଁ ପ୍ରେରଣାର ଉତ୍ସ ରୂପେ ବିବେଚିତ ହେଉଥିଲେ ।

ପ୍ରଫେସର ଦାଶ ମହାବିଦ୍ୟାଳୟରେ ନୂତନ ଭାବେ ଯୋଗଦାନ କରିଥିବା ଅଧ୍ୟାପକମାନଙ୍କ ଉପରେ ଯଥେଷ୍ଟ ଆସ୍ଥା ସ୍ଥାପନ କରୁଥିଲେ । ସେ ଆମ୍ଭମାନଙ୍କୁ ବି.ଏଡ୍. ଓ ଏମ୍.ଏଡ୍. ଶିକ୍ଷାଦାନ ସହିତ ଗବେଷଣାତ୍ମକ କାର୍ଯ୍ୟରେ ଅଧିକ ନିୟୋଜିତ କରୁଥିଲେ । ତାଙ୍କର ଦିଗ୍‌ଦର୍ଶନ ଅନୁଯାୟୀ କାର୍ଯ୍ୟ କରିବା ଏକ କଷ୍ଟକର ବିଷୟ ଥିଲେ ମଧ୍ୟ ସେ ବେଳେବେଳେ ଆମକୁ କହୁଥିଲେ "ତୁମେ ସବୁ ପାଞ୍ଚ ବର୍ଷ ପାଇଁ ପରିଶ୍ରମ କର । ଅଧ୍ୟୟନ ଓ ଅଧ୍ୟାପନା କର । ଏହାର ସୁଫଳ ଜୀବନଯାକ ଭୋଗ କରିବ ।" ଆଜି ପରିଣତ ବୟସରେ ଚିନ୍ତାକଲେ ମନ ମଧ୍ୟକୁ ଆସେ ଯେ ଏଇ ଶିକ୍ଷାବିତ୍ ଜଣକ କିପରି ନିଖୁଣଭାବେ ଆମର ଭବିଷ୍ୟତକୁ ଦେଖିପାରିଥିଲେ ଓ ତଦନୁଯାୟୀ ଆମକୁ ପ୍ରଶାସନିକ ଓ ବୃତ୍ତିଗତ ନେତୃତ୍ୱ ଦେଇ ଗଢ଼ିଥିଲେ । ଆମର ଭବିଷ୍ୟତ ଶୈକ୍ଷିକ ଜୀବନର ମୂଳଦୁଆ ପକାଇବାରେ ତାଙ୍କର ଯଥେଷ୍ଟ ଅବଦାନ ଥିଲା ।

୧୯୭୭ ମସିହା ଏପ୍ରିଲ ମାସର ଶେଷ ସପ୍ତାହର ଗୁରୁବାର ଦିନ ସେ କଲେଜ ପରିସର ମଧ୍ୟରେ ଶିକ୍ଷା ସଂପର୍କୀୟ ଏକ ଆଲୋଚନା ଚକ୍ରର ଆୟୋଜନ କରିଥିଲେ । ମୁଖ୍ୟ ଅତିଥି ଭାବେ ସମ୍ବଲପୁରର ଜଣେ ବିଶିଷ୍ଟ ଶିକ୍ଷାବିତ୍‌ଙ୍କୁ ଡ଼ାକିବାର ଦାୟିତ୍ୱ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀଙ୍କୁ ଦିଆଯାଇଥିଲା । ମାତ୍ର ସେଦିନ ଆଲୋଚନା ଚକ୍ର ଆରମ୍ଭ ହେବାର କିଛି ସମୟ ପୂର୍ବରୁ ଅଧ୍ୟାପକ ଶତପଥୀ ପ୍ରଫେସର ଦାଶଙ୍କୁ ଜଣାଇଲେ ଯେ ମୁଖ୍ୟବକ୍ତା ଜଣକ ଆସି ପାରିବେ ନାହିଁ । ତତ୍‌କ୍ଷଣାତ୍ ହସି ହସି ପ୍ରଫେସର ଦାଶ କହିଲେ, "ଆମେ ହୁଏତ ଭୁଲି ଯାଇଛୁ ଯେ ଆମର ଏ ଅନୁଷ୍ଠାନରେ ଏପରି ଜଣେ ବିଶିଷ୍ଟ ବ୍ୟକ୍ତି ଅଛନ୍ତି ଯେ କି ଆଜିର କାର୍ଯ୍ୟକ୍ରମରେ ମୁଖ୍ୟବକ୍ତା ହେବା ପାଇଁ ଉପଯୁକ୍ତ । ସେ ଥାଉ ଥାଉ ଆମେ ଆଉ ମୁଖ୍ୟବକ୍ତା ଖୋଜିବା ଆବଶ୍ୟକ ନାହିଁ ?"

"ସେ ବ୍ୟକ୍ତି ଜଣକ କିଏ ?", ଅଧ୍ୟାପକ ଶତପଥୀ ପଚାରିଲେ । ପ୍ରଫେସର ଦାସ ତାଙ୍କୁ ହସି ହସି କହିଲେ "ସେ ହେଉଛନ୍ତି ଏଇ ମହାବିଦ୍ୟାଳୟର ପୁରାତନ ବି.ଏଡ୍ ଛାତ୍ର ଯେ କି ସର୍ବ ପ୍ରଥମେ ବି.ଏଡ୍ ଛାତ୍ର ହିସାବରେ ଏଇ ମହାବିଦ୍ୟାଳୟରେ ଅଧ୍ୟାପକ ହେବାର ସୌଭାଗ୍ୟ ପାଇ ପାରିଛନ୍ତି । ମହାଶୟ ଜଣକ ହେଉଛନ୍ତି ଦିଗରାଜ ବ୍ରହ୍ମା । ସେ ହିଁ ହେବେ ଆଜି କାର୍ଯ୍ୟକ୍ରମର ମୁଖ୍ୟବକ୍ତା ।"

ଅଧ୍ୟାପକ ଶତପଥୀ ସଙ୍ଗେ ସଙ୍ଗେ ମୋ ପାଖକୁ ଆସି କହିଲେ, "ଦିଗରାଜ, ଆଜିର ସନ୍ଧ୍ୟା ସମୟରେ ଆଲୋଚନା ହେବାକୁ ଥିବା କାର୍ଯ୍ୟକ୍ରମରେ ତୁମକୁ ଅଧକ୍ଷ ମୁଖ୍ୟବକ୍ତା କରିଛନ୍ତି, ଯେହେତୁ ତୁମେ କଲେଜର ପ୍ରାକ୍ତନ ଛାତ୍ର ତଥା ପ୍ରଥମ ଅଧ୍ୟାପକ ।"

ମୁଁ ଅଧକ୍ଷଙ୍କ ନିଷ୍ପତ୍ତି ଶୁଣି ଆଶ୍ଚର୍ଯ୍ୟ ହେଲି । ଏହାକୁ ଏକ ଆହ୍ୱାନ ମନେକରି ମୁଖ୍ୟବକ୍ତା ହିସାବରେ ସେଦିନ ମୋର ବକ୍ତବ୍ୟ ରଖିଥିଲି । ମୋର ବକ୍ତବ୍ୟ ସମସ୍ତ ଛାତ୍ର ଓ ଅଧ୍ୟାପକମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । କୌଣସି ନୂତନ ତଥ୍ୟ ଓ ବିଷୟବସ୍ତୁକୁ ସ୍ୱତନ୍ତ୍ର ଶୈଳୀରେ ଉପସ୍ଥାପନ କଲେ, ତାହା ସାଧାରଣତଃ ସମସ୍ତଙ୍କ ପକ୍ଷେ ଗ୍ରହଣୀୟ ହୋଇଥାଏ ।

ଜର୍ମାନର ଲୌହ ମାନବ ବିସମାର୍କଙ୍କ ଗୋଟିଏ ଉକ୍ତି ମୁଁ ଶିକ୍ଷା ଦର୍ଶନ ସଂପର୍କୀୟ ଆଲୋଚନାରୁ ଜାଣିବାକୁ ପାଇଥିଲି । ସେ ଏକଦା କହିଥିଲେ, "କେବଳ ନିର୍ବୋଧମାନେ କହନ୍ତି ଯେ ସେମାନେ ଅନ୍ୟର ଅଭିଜ୍ଞତାରୁ କିଛି ଶିଖନ୍ତି ନାହିଁ । କିନ୍ତୁ ମୁଁ ଅନ୍ୟମାନଙ୍କ ଅଭିଜ୍ଞତାରୁ ଅନେକ କିଛି ଶିଖିଛି ।" ଏଇ ଉକ୍ତି କେତେଦୂର ସତ୍ୟ ଉପରେ ଆଧାରିତ, ତାହା ମୁଁ ମୋର ସମ୍ବଲପୁର ରହଣି ମଧ୍ୟରେ ଅନୁଭବ କରିଥିଲି ।

ପ୍ରଫେସର ଦାଶଙ୍କ ସମ୍ବଲପୁର କାର୍ଯ୍ୟକାଳ ମଧ୍ୟରେ ଦଶଟି ଉଚ୍ଚ ମାଧ୍ୟମିକ ବିଦ୍ୟାଳୟକୁ ପ୍ରଶିକ୍ଷଣ ମହାବିଦ୍ୟାଳୟର ପାଠ୍ୟ ନିୟନ୍ତ୍ରଣ (Academic Centre) ମଧ୍ୟକୁ ଅଣାଯାଇଥିଲା । ସେଇ ସବୁ ବିଦ୍ୟାଳୟରେ ବିଦ୍ୟାଳୟ-ସଙ୍ଗମ (School Complex) କାର୍ଯ୍ୟକ୍ରମ କରାଯାଇଥିଲା । ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ଥିବା ସମ୍ବଲପୁରର ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲକୁ ପରିଦର୍ଶନ ସମୟରେ ଗଲାବେଳେ ଅଧକ୍ଷ ଦାଶ ବିଷୟ-ବିଶେଷଜ୍ଞ (Subject Expert)ମାନଙ୍କୁ ସାଥୀରେ ନେଇ ଯାଉଥିଲେ । ଏହା ଫଳରେ ପରିଦର୍ଶନ ସୃଜନାତ୍ମକ ହୋଇ ପାରୁଥିଲା । ଏହିଭଳି ପରିଦର୍ଶକମାନେ ପରିଦର୍ଶନ କରିବାକୁ କୋଠାରି କମିଶନ ମଧ୍ୟ ମତବ୍ୟକ୍ତ କରିଛନ୍ତି ।

ପ୍ରଫେସର ଦାଶ ନିଜସ୍ୱ ପ୍ରଚେଷ୍ଟାରେ ଅନେକ ଗୁଡ଼ିଏ ସେମିନାର ଆୟୋଜନ କରିଥିଲେ । ସେଥିମଧ୍ୟରୁ ଶ୍ରୀ ଅରବିନ୍ଦଙ୍କ ଶିକ୍ଷା ଦର୍ଶନ ଉପରେ ଆୟୋଜିତ ସେମିନାର ଥିଲା ଅନ୍ୟତମ । ସେଇ ସେମିନାରରେ ରାଜ୍ୟର ବହୁ ବିଦ୍ୱାନ ବ୍ୟକ୍ତି ଓ ଅଧ୍ୟାପକ ଯୋଗଦାନ କରିଥିଲେ । ଏହା ଫଳରେ ଶିକ୍ଷାର୍ଥୀମାନଙ୍କର ସେମିନାର ସଂପର୍କୀୟ ଜ୍ଞାନର ଉତ୍ତୋରଣ ଘଟିଥିଲା ।

ପ୍ରତ୍ୟେକ ବ୍ୟକ୍ତିଙ୍କ ପକ୍ଷରେ କର୍ତ୍ତବ୍ୟ ସଂପାଦନା କରିବା ଏକ ସାଧାରଣ ଓ ମାମୁଲି କଥା ବୋଲି ଅନେକ ସମୟରେ ପ୍ରଫେସର ଦାଶ ମତବ୍ୟକ୍ତ କରିଥାନ୍ତି । କର୍ତ୍ତବ୍ୟଠାରୁ ଅଧିକ କରିବା ହେଉଛି ପୁଣ୍ୟ । ଯେଉଁ ଅଧ୍ୟାପକ କେବଳ ଶ୍ରେଣୀ ଗୃହରେ ଶିକ୍ଷାଦାନ ମଧ୍ୟରେ ସୀମାବଦ୍ଧ ରୁହନ୍ତି, ତାହା ହେଉଛି ତାଙ୍କର କର୍ତ୍ତବ୍ୟ, ଯଦି ନିଜ ଜୀବନରେ ଶିକ୍ଷା ସହ ଗବେଷଣା, ସମାଜସେବା, ପର ଉପକାର ଆଦି କରନ୍ତି, ତେବେ ସେ କର୍ତ୍ତବ୍ୟ ସହ ପୁଣ୍ୟ ଅର୍ଜନ କରନ୍ତି । ପୁଣ୍ୟ ଅର୍ଜନ କରିବା ପ୍ରତ୍ୟେକଙ୍କର ଧ୍ୟେୟ ହେବା ଉଚିତ୍ ବୋଲି ପ୍ରଫେସର ଦାଶ ଅନେକ ସମୟରେ ପ୍ରକାଶ କରିଥାନ୍ତି ।

ମୁଁ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତରଫରୁ ଏନ୍.ଏସ୍.ଏସ୍ କାର୍ଯ୍ୟକ୍ରମ ପରିଚାଳନା କରାଯାଇଥିଲା । ଏନ୍.ଏସ୍.ଏସ୍ ଦାୟିତ୍ୱରେ ଥିଲେ ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର । ଅଧ୍ୟାପକ ମହାପାତ୍ର ଜଣେ ଉଦୀୟମାନ ଅଫିସର ଭାବେ ମହାବିଦ୍ୟାଳୟରେ ଏନ୍.ଏସ୍.ଏସ୍ କାର୍ଯ୍ୟକ୍ରମକୁ ବହୁଭାବେ ଫଳପ୍ରଦ କରିଥିଲେ । ଆମ୍ଭେମାନେ ଛାତ୍ର ହିସାବରେ ଅନେକ ପରିଶ୍ରମ କରି ନୂତନ ଭାବେ ଖୋଲା ଯାଇଥିବା ଜ୍ୟୋତିବିହାରରେ ଅବସ୍ଥିତ ସମ୍ବଲପୁର ବିଶ୍ୱବିଦ୍ୟାଳୟର ରାସ୍ତା, ଘାଟ, ମାଟିକୁ ସମତୁଲ କରିବାର ସୁଯୋଗ ପାଇଥିଲୁ । ମୁଁ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଯୋଗଦାନ କଲାପରେ ଦେଖିଲି ଯେ ପୂର୍ବବତ୍ ସେଠାରେ ଏକ ଏନ୍.ଏସ୍.ଏସ୍ ସଂସ୍ଥା ଅଛି ଓ ତା'ର ଦାୟିତ୍ୱରେ ଜଣେ ମାତ୍ର ଅଧ୍ୟାପକ ଅଛନ୍ତି । ଦିନେ କଲେଜରେ ପହଞ୍ଚିଲା ପରେ ପରେ ମୋତେ ଅଧ୍ୟକ୍ଷଙ୍କ ଏକ ଆଦେଶନାମା ଦିଆଗଲା । ସେ ଆଦେଶନାମାରେ ଉଲ୍ଲେଖ ଥିଲା ଯେ, କଲେଜର ଏନ୍.ଏସ୍.ଏସ୍ ସଂସ୍ଥାକୁ ଚାରିଗୋଟି ଭାଗରେ ବିଭକ୍ତ କରାଯାଇ ଚାରିଜଣ ଅଫିସରଙ୍କୁ ଦାୟିତ୍ୱରେ ରଖାଯାଇଅଛି । ସେ ଚାରିଜଣ ବ୍ୟକ୍ତି ହେଲେ ଅଧ୍ୟାପକ ସୁନୀଲ ବିହାରୀ ମହାନ୍ତି, ଅଧ୍ୟାପକ ଶରତ ଚନ୍ଦ୍ର ମହାନ୍ତି, ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ବାଘସିଂହ ଓ ଅଧ୍ୟାପକ ଦିଗରାଜ ବ୍ରହ୍ମା ।

ଏହାଥିଲା ଦୂରଦୃଷ୍ଟିସଂପନ୍ନ ଅଧ୍ୟକ୍ଷ ପ୍ରଫେସର ଦାଶଙ୍କ ଏକ କାର୍ଯ୍ୟକ୍ରମର ବିକେନ୍ଦ୍ରୀକରଣ (decentralisation) । ଏହା ଫଳରେ ସେ ବର୍ଷର କଲେଜର

ଏନ୍.ଏସ୍.ଏସ୍ କାର୍ଯ୍ୟକ୍ରମର ପରିଚାଳନା ସମ୍ବଲପୁର ଜିଲ୍ଲାର ବିଭିନ୍ନ ସ୍ଥାନରେ ସହଜରେ କରାଯାଇ ପାରିଥିଲା ।

୧୯୭୮-୭୯ ଶିକ୍ଷାବର୍ଷରେ ସମ୍ବଲପୁରର ଶାସନ ଅଞ୍ଚଳରେ ଥିବା କେତେକ ପତିତ ଜମିର ଉଦ୍ଧାର ନିମନ୍ତେ ଏକ କାର୍ଯ୍ୟକ୍ରମ କରାଯାଇଥିଲା । ପ୍ରାୟ ଦଶଦିନ ବ୍ୟାପି ହୋଇଥିବା ଏଇ କାର୍ଯ୍ୟକ୍ରମରେ ସମସ୍ତ ଏନ୍.ଏସ୍.ଏସ୍ ୟୁନିଟ୍‌ର ଛାତ୍ରଛାତ୍ରୀ ଓ ଅଧ୍ୟାପକମାନେ ଲାଗି ଗଛର ଚେର ମୂଳ କାଢ଼ି ପାହାଡ଼ିଆ ଜମିକୁ ସମତୁଲ କରିଥିଲେ । କାର୍ଯ୍ୟକ୍ରମର ଶେଷଦିନ ଯେଉଁମାନଙ୍କୁ ସେ ଜମି ସରକାରଙ୍କ ତରଫରୁ ବଣ୍ଟନ କରାଯାଇଛି, ସେମାନଙ୍କୁ ଡ଼ାକି ଏକ ସଭାର ଆୟୋଜନ କରିବାକୁ ଅଧକ୍ଷ ଦାଶ ଆମକୁ ଆଗରୁ ପରାମର୍ଶ ଦେଇଥିଲେ । ଆମେ ଦୁଇ ଚାରିଦିନ କାମ କଲାପରେ ଦେଖିଲୁ ଯେ ସେ ଜମିକୁ କୌଣସି ହିତାଧିକାରୀ ଆସୁ ନାହାନ୍ତି । ଯା'ର ଜମି ଅଛି, ସେ ଦୂରରୁ ଥାଇ ଆମକୁ ନିରୀକ୍ଷଣ କରୁଛି ଓ କିଛି ସମୟ ପରେ ସେ ସ୍ଥାନ ଛାଡ଼ି ଚାଲି ଯାଉଛି । ଶେଷରେ ଜଣେ ସ୍ଥାନୀୟ ଲୋକଙ୍କ ସହାଯ୍ୟରେ ସେ ଲୋକଙ୍କୁ ବୁଝାଇ ଶୁଝାଇ ଆମ କାର୍ଯ୍ୟକ୍ରମରେ ସାମିଲ କରାଗଲା । ସେମାନଙ୍କୁ ଏତାଦୃଶ ଅସହଯୋଗର କାରଣ ପଚାରିବାରୁ ଜାଣିବାକୁ ପାଇଲୁ ଯେ ସରକାର ସିନା ମାଗଣାରେ ସେମାନଙ୍କୁ ଜମି ଦେଲେ, ମାତ୍ର ଯେଉଁଦିନଠାରୁ ଜମି ପାଇଲେ, ସେବେଠାରୁ ସେମାନଙ୍କର ଦୁଃଖ ବଢ଼ିଗଲା । ସ୍ଥାନୀୟ ଆର୍.ଆଇ. ଆସି ମଝିରେ ମଝିରେ ଟଙ୍କା ମାଗିଲେ ଏବଂ ସରକାର ତାଙ୍କୁ କରଜ ସୂତ୍ରରେ ଏସବୁ ଜମି ଦେଇଛନ୍ତି ବୋଲି କହିଲେ । କରଜ ପାଉଣା ଫେରସ୍ତ ନ ଦେଲେ ସେମାନଙ୍କ ଘରବାଡ଼ି କୋରକ ହୋଇଯିବ ବୋଲି ମଧ୍ୟ ମଝିରେ ମଝିରେ ଆସି ଧମକ ଦେଲେ । ତେଣୁ ସେମାନଙ୍କ ମନରେ ଡର ଥିଲା ଯେ ସେ ଜମିକୁ ସମତୁଲ କରି କାଳେ ଆମେ ସେମାନଙ୍କୁ ସଂପୃକ୍ତ ଆର୍.ଆଇଙ୍କ ଭଳି ପଇସା ମାଗିବୁ । ବାରମ୍ବାର ହଇରାଣ ହରକତ କରିବୁ ।

ଏହାଥିଲା ଆମ ସ୍ୱାଧୀନ ଭାରତର ଅଶୀ ଦଶକର ଏକ ଘଟଣା । ଗରିବ ଲୋକମାନଙ୍କ ପାଇଁ ସରକାର କରୁଥିବା ବିଭିନ୍ନ ଜନହିତ କାର୍ଯ୍ୟକ୍ରମର ଏକ ଦୁଃଖଦ ଉଦାହରଣ । ପୂର୍ବ କାର୍ଯ୍ୟକ୍ରମ ଅନୁଯାୟୀ କାର୍ଯ୍ୟକ୍ରମ ଉଦ୍‌ଯାପନର ଶେଷଦିନ ଅଧକ୍ଷ ପ୍ରଫେସର ଶରତଚନ୍ଦ୍ର ଦାଶ ସେ ପାହାଡ଼ିଆ ଅଞ୍ଚଳକୁ ଏନ୍.ଏସ୍.ଏସ୍ କାର୍ଯ୍ୟକ୍ରମର ସଫଳତା ଦେଖିବାକୁ ଯାଇଥିଲେ । ସେଦିନ ସନ୍ଧ୍ୟାରେ ସେଠାରେ ଏକ ସଭାର ଆୟୋଜନ କରାଯାଇଥିଲା । ସଭାରେ ଆମ କାର୍ଯ୍ୟକ୍ରମରେ ଉପକୃତ ହୋଇଥିବା ଭୂମିହୀନ ଲୋକେ ନିଜ ନିଜର ବକ୍ତବ୍ୟ ରଖିଥିଲେ । ସେମାନେ ଆମର କାର୍ଯ୍ୟପାଇଁ କୃତଜ୍ଞତା ଜ୍ଞାପନ କରିଥିଲେ ।

## ଗୁରୁଦିବସରେ 'ଗୁରୁ' ଶବ୍ଦର ବ୍ୟାଖ୍ୟା

୧୯୭୮ ମସିହା ସେପ୍ଟେମ୍ବର ମାସ ୫ ତାରିଖରେ ମହାବିଦ୍ୟାଳୟରେ ସନ୍ଧ୍ୟା ସାତଟାବେଳେ ଗୁରୁଦିବସ ସଂପର୍କରେ ଏକ ଆଲୋଚନା ଚକ୍ର ହେବ ବୋଲି ଅଧ୍ୟକ୍ଷ ଦାଶ ନିଷ୍ପତ୍ତି ନେଇଥିଲେ । ଠିକ୍ ସମୟରେ ଅଧ୍ୟକ୍ଷ ଓ ସମସ୍ତ ଅଧ୍ୟାପକ ଆସି ସଭାଗୃହରେ ପହଞ୍ଚି ଯାଇଥିଲେ । କଲେଜ ନିକଟସ୍ଥ ଛାତ୍ରାବାସରେ ଶତାଧିକ ଛାତ୍ରଛାତ୍ରୀ ରହୁଥିଲେ ମଧ୍ୟ ସେଦିନ ଖୁବ୍ କମ୍ ସଂଖ୍ୟକ ଛାତ୍ର ଆସି ଶ୍ରେଣୀଗୃହରେ ଉପସ୍ଥିତ ହୋଇଥିଲେ । ପ୍ରଥମେ ଛାତ୍ରମାନଙ୍କ ତରଫରୁ ଦିବସର ତାତ୍ପର୍ଯ୍ୟ ସଂପର୍କରେ ଭାଷଣ ଦିଆଗଲା । କଲେଜ ଛାତ୍ରସଂଘରେ ତତ୍କାଳୀନ ସାଧାରଣ ସଂପାଦକ ନିଗମାନନ୍ଦ ପାଣିଗ୍ରାହୀ ତାଙ୍କର ଭାଷଣ ଦେଲାବେଳେ କଥା ପ୍ରସଙ୍ଗରେ କହି ପକାଇଲେ, "ଆଜି ଏ ଆଲୋଚନାଚକ୍ରରେ ଯୋଗ ନ ଦେଇ ସମ୍ବଲପୁର ଗୋଲବଜାରରେ କିଛି ଛାତ୍ର ବୁଲୁଛନ୍ତି । କିଛି ଛାତ୍ର ମଧ୍ୟ ସିନେମା ହଲରେ ଅଛନ୍ତି । ଏହାଠାରୁ ଆଉ ଦୁଃଖଦାୟକ ଘଟଣା କ'ଣ ଅଛି ?"

ଅଧ୍ୟକ୍ଷ ଦାଶ ତାଙ୍କର ଅଭିଭାଷଣରେ ଗୁରୁ ଦିବସର ତାତ୍ପର୍ଯ୍ୟ ବିଭିନ୍ନ ଦୃଷ୍ଟିକୋଣରୁ ଅଲୋଚନା କରିଥିଲେ । ଭାଷଣର ଉପସଂହାର ଦେଇ ଶ୍ରୀମାନ୍ ପାଣିଗ୍ରାହୀଙ୍କ ବକ୍ତବ୍ୟ ପରିପ୍ରେକ୍ଷୀରେ କହିଥିଲେ, "ସମସ୍ତ ଛାତ୍ର ଯେ ଆଜିର ଏ କାର୍ଯ୍ୟକ୍ରମରେ ଯୋଗଦେବେ ତା'ର କିଛି ମାନେ ନାହିଁ । ମୁଁ ଭାରି ଖୁସି ଯେ ଯେଉଁ ଛାତ୍ରମାନେ ନିଜକୁ ଶିକ୍ଷକ ଅବସ୍ଥାରେ ଅଛନ୍ତି ବୋଲି ମନେ କରୁଛନ୍ତି, ଶିକ୍ଷଣର ମହତ୍ୱ ବୁଝିଛନ୍ତି, ସେମାନେ ଆଜି ଏଠାରେ ଅଛନ୍ତି । ଆମର ଗୁରୁଦିବସ ସଂପର୍କୀୟ ଆଲୋଚନାରେ ଅଂଶଗ୍ରହଣ କରିଛନ୍ତି । ଯେଉଁମାନେ ନିଜକୁ ଗୁରୁ ବୋଲି ମନେ କରୁଛନ୍ତି ସେମାନେ ଏଠାକୁ ନ ଆସି ସମ୍ବଲପୁରର ଗୋଲ ବଜାରରେ ଏଣେତେଣେ ବୁଲୁଛନ୍ତି, ଆଉ ଯେଉଁମାନେ ସ୍ୱୟଂ ଆଚାର୍ଯ୍ୟ ଅବସ୍ଥାରେ ଅଛନ୍ତି, ସେମାନଙ୍କର ତ ଆଉ ଶିଖିବାର କିଛି ନାହିଁ । ତେଣୁ ସେମାନେ ସିନେମା ହଲରେ ଚଳଚ୍ଚିତ୍ର ଦେଖି ମନୋରଞ୍ଜନ କରୁଛନ୍ତି ।"

ସେଦିନ ପ୍ରଫେସର ଦାଶଙ୍କ ଲଘୁ ମନ୍ତବ୍ୟ ସଭାଗୃହରେ ହାସ୍ୟରୋଳ ସୃଷ୍ଟି କରିଥିଲା ।

## ଅଧ୍ୟକ୍ଷ ଶରତ ଚନ୍ଦ୍ର ଦାଶଙ୍କ ବିଦାୟ ଓ ନୂତନ ଅଧ୍ୟକ୍ଷ ଅମାନ୍ତଙ୍କ ଯୋଗଦାନ

ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ନିଜ କାର୍ଯ୍ୟଦକ୍ଷତାରେ ଚଳଚଞ୍ଚଳ କରି ଅଧ୍ୟକ୍ଷ ଦାଶ ସମ୍ବଲପୁରରୁ ବିଦାୟ ନେଲେ ଓ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଭୁବନେଶ୍ୱରରେ ୧୯୭୯ ମସିହା ଜାନୁୟାରୀ ମାସ ୫ ତାରିଖରେ ଯୋଗଦାନ କଲେ । ତାଙ୍କ ସ୍ଥାନରେ ବଲାଙ୍ଗୀର ପ୍ରଶିକ୍ଷଣ ମହାବିଦ୍ୟାଳୟରୁ ସ୍ଥାନାନ୍ତରିତ ହୋଇ ଅଧ୍ୟକ୍ଷ ଭାବେ କ୍ଷୀରୋଦ ବିହାରୀ ଅମାନ୍ତ ଯୋଗଦାନ କଲେ ।

ଅଧ୍ୟକ୍ଷ ଅମାନ୍ତ ଅତୀବ ଭଦ୍ର ଓ ଶାନ୍ତ ସ୍ୱଭାବର ବ୍ୟକ୍ତି ଥିଲେ । ରାଜ୍ୟର ଜଣେ ଦକ୍ଷ ଶିକ୍ଷକ-ପ୍ରଶିକ୍ଷକ ହିସାବରେ ତାଙ୍କର ଯଥେଷ୍ଟ ସୁନାମ ଥିଲା । ବିଦ୍ୟାଳୟ ପାଠ୍ୟକ୍ରମର ଅଧିକାଂଶ ବିଷୟରେ ଶିକ୍ଷାଦାନ କରିବାରେ ସେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ । ଥରେ ସେ ଭୂଗୋଳ ଶିକ୍ଷାଦାନ ପଦ୍ଧତି ପ୍ରଦର୍ଶନ କରୁଥିଲେ। କ୍ଷଣିକ ମଧ୍ୟରେ କଳାପଟାରେ ପୃଥିବୀର ମାନଚିତ୍ର ଆଙ୍କି ସେଥିରେ ବିଭିନ୍ନ ସ୍ଥାନ ପ୍ରଦର୍ଶନ କରିଥିଲେ । ସମୟର ବିନା ଅପଚୟରେ ଶିକ୍ଷାଦାନକୁ ସେ ଆଗେଇ ନେଇଥିଲେ । ଏହା ସମସ୍ତଙ୍କୁ ଚକିତ କରିଥିଲା । ତାଙ୍କର ହସ୍ତାକ୍ଷର ମଧ୍ୟ ସ୍ୱତନ୍ତ୍ର ଥିଲା । ସେ ଇଂରାଜୀରେ ଯେମିତି ଅକ୍ଷରରେ ସ୍ପଷ୍ଟଭାବେ ଲେଖୁଥିଲେ, ତାହା ଅନ୍ୟମାନଙ୍କ ମଧ୍ୟରେ କ୍ୱଚିତ୍ ଦେଖାଯାଏ ।

ଜଣେ ଛାତ୍ରବତ୍ସଳ ଅଧ୍ୟକ୍ଷଭାବେ ଅଧ୍ୟକ୍ଷ ଅମାନ୍ତ ସମସ୍ତଙ୍କ ସହିତ ମିଶିଯାଉଥିଲେ । ଅଧ୍ୟାପକମାନଙ୍କ ସହିତ ସେ ଉତ୍ତମ ସଂପର୍କ ମଧ୍ୟ ରଖୁଥିଲେ ।

**ଦୈନିକ ସଂବାଦପତ୍ର ହୀରାଖଣ୍ଡ ଓ ଡକ୍ଟର ମହତାବଙ୍କ ସହ ସଂପର୍କ**

ମୁଁ ସମ୍ବଲପୁରରେ ଥିବାବେଳେ ୧୯୮୦ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ସମ୍ବଲପୁରଠାରେ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ହୀରାଖଣ୍ଡ ନାମକ ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେଲା । ଏହାର ପ୍ରଥମ ସଂପାଦକ ହେଲେ ସମ୍ବଲପୁରର ସମାଜସେବୀ ତଥା ଭୂତପୂର୍ବ ସାଂସଦ ଶ୍ରଦ୍ଧାକାର ସୁପକାର । ଡ଼କ୍ଟର ମହତାବଙ୍କ ପରାମର୍ଶ କ୍ରମେ 'ହୀରାଖଣ୍ଡ'ରେ ଶିଶୁମାନଙ୍କ ପାଇଁ 'କଳିକା' ଶୀର୍ଷକ ଥାଇ ଏକ ସାପ୍ତାହିକ ଶିଶୁ ବିଭାଗ ପ୍ରକାଶିତ ହେବାକୁ ସ୍ଥିର ହେଲା । ସେ ସମୟରେ ହୀରାଖଣ୍ଡର ମୁଦ୍ରାକର ଥାଆନ୍ତି ଶ୍ରୀଯୁକ୍ତ ଗୌରାଙ୍ଗ ଚରଣ ହୋତା । ସେ ଓଡ଼ିଶାର ଜଣେ ପୂର୍ବତନ ଛାତ୍ରନେତା ହିସାବରେ ବେଶ ଜଣାଶୁଣା ଥିଲେ । ମୋତେ ଏଇ 'କଳିକା' ବିଭାଗର ସଂପାଦନାର ଦାୟିତ୍ୱ ନେବାକୁ ଅନୁରୋଧ କରାଗଲା । ସେତେବେଳେ ମୁଁ ଶିଶୁସାହିତ୍ୟ ପ୍ରତି ବିଶେଷ ଅନୁରକ୍ତ ଥିଲି ଓ ଶିଶୁ ସାହିତ୍ୟର ଶୈକ୍ଷିକ ରୂପରେଖ ସଂପର୍କରେ ଗବେଷଣା ଆରମ୍ଭ କରିଥିଲି । ତେଣୁ ମୁଁ ରାଜି ହେଲି । ମୋର ଦାୟିତ୍ୱ ଥିଲା କଳିକା ପାଇଁ ଏକ ସଂପାଦକୀୟ ଲେଖିବା ଏବଂ କଳିକାର ପ୍ରକାଶନ ନିମନ୍ତେ ସମସ୍ତ ଲେଖାଗୁଡ଼ିକୁ ସଂପାଦନା କରି ସପ୍ତାହରେ ଥରେ ପ୍ରକାଶନ ନିମନ୍ତେ ସଂପାଦକଙ୍କୁ ନେଇ ଦେବା ।

ଶ୍ରଦ୍ଧାକର ବାବୁ ମୋତେ ହୀରାଖଣ୍ଡ ପରିସରରେ ଦେଖିଲେ ଖୁସି ହୋଇଯାଉଥିଲେ ଓ ମୋ ସହିତ ବିଭିନ୍ନ ଶିକ୍ଷଣୀୟ କଥାମାନ ଆଲୋଚନା କରୁଥିଲେ । 'କଳିକା'ର ଯେଉଁ ସଂପାଦକୀୟ ବାହାରୁଥିଲା ତାହା 'ଜିତୁଭାଇ' ଛଦ୍ମ ନାମରେ ପ୍ରକାଶିତ ହେଉଥିଲା । ତେଣୁ ମୁଁ ଯେ ଏଥିରେ ସଂଶ୍ଳିଷ୍ଟ, ତାହା କେହି ଜାଣିବାର ଅବକାଶ ନଥିଲା ।

କଥାରେ ଅଛି : ସତ କେବେ ଲୁଚି ରହେନା । 'କଳିକା ବିଭାଗ'ଟି ଅତି ସୁନ୍ଦର ହେଉଥିବା କଥା ଡକ୍ଟର ମହତାବ ବିଭିନ୍ନ ସମୟରେ କଥା ପ୍ରସଙ୍ଗରେ ଆଲୋଚନା କଲେ । ପ୍ରଜାତନ୍ତ୍ର ପ୍ରଚାର ସମିତିରେ ମଧ୍ୟ ଆଲୋଚନା ହେଲା । ଦିନେ ହୀରାଖଣ୍ଡର ତତ୍‌କାଳୀନ ମ୍ୟାନେଜର ଜାନକୀ ବଲ୍ଲଭ ପାଣିଗ୍ରାହୀ ରାତି ଦଶଟାରେ ମୁଁ ସମ୍ବଲପୁରରେ ରହୁଥିବା 'ସାବିତ୍ରୀ ନିବାସ'ରେ ପହଞ୍ଚିଲେ । ମୋତେ କହିଲେ, "ଡକ୍ଟର ମହତାବ ଖବର ଦେଇଛନ୍ତି ଆପଣଙ୍କ ସହିତ କଥାବାର୍ତ୍ତା ହେବା ପାଇଁ । କାଲି ସକାଳେ ଯାଇ ଆପଣ ହୀରାଖଣ୍ଡ ଅଫିସରେ ଦେଖା କରିବେ ।"

ମୁଁ ତା'ର କାରଣ ଜାନକୀବାବୁଙ୍କଠାରୁ ଜାଣିବାକୁ ଚାହିଁଲି । ସେ କହିଲେ, "ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ପ୍ରକାଶିତ ହେଉଥିବା 'ମୀନାବଜାର' ବର୍ତ୍ତମାନ ସଙ୍କଟ ଅବସ୍ଥାରେ ଅଛି । ସେ ଚାହୁଁଛନ୍ତି ଆପଣଙ୍କୁ ଏଠାରୁ ବଦଳି କରି ରେଭେନ୍ସା କଲେଜକୁ ନେବେ । ଆପଣ ହଁ କହିଲେ ଏ କାମଟି ଅତି ସହଜରେ ହୋଇଯିବ । ଆପଣ ଏଠାରେ ଯେମିତି କଳିକା ବିଭାଗ ପାଇଁ କାମ କରୁଛନ୍ତି, ସେଠାରେ ସେମିତି ମୀନାବଜାର ପାଇଁ କାମ କରିବେ । ଏଠାକାର 'ଜିତୁଭାଇ' ସେଠାରେ 'ଜହୁରୀ ଭାଇ' ହୋଇ ମୀନାବଜାର ପାଇଁ ସଂପାଦନା ଦାୟିତ୍ୱ ନେବେ ?"

ମୁଁ ଜାନକୀ ବାବୁଙ୍କ କଥା ଶୁଣି ହସିଲି । କହିଲି, "ଜାନକୀ ବାବୁ ! ଏ ଦାୟିତ୍ୱ ମୁଁ ନେଇ ପାରିବି ନାହିଁ । ମୁଁ ଯେ କଳିକା ବିଭାଗ ସଂପାଦନା କରୁଛି ଏକଥା ସମ୍ବଲପୁର ଅଞ୍ଚଳର ଅନେକ ସାହିତ୍ୟିକ ଜାଣି ଗଲେଣି । ଅନେକ ସମୟରେ ମୋ ନାମ ପଛରେ ଜିତୁଭାଇ ଲେଖା ଥାଇ ଅନେକ ସାହିତ୍ୟିକ ବନ୍ଧୁ କଲେଜ ଠିକଣାରେ ଲେଖାମାନ ପଠାଉଛନ୍ତି । ଏହା ମୋପ୍ରତି ଯେତିକି ଅରୁଚିକର ହେଉଛି, ତାହାଠାରୁ ଅଧିକ ଅରୁଚିକର ହେଉଛି ମୁଁ କାମ କରୁଥିବା କଲେଜର ଅଧ୍ୟାପକ ବନ୍ଧୁମାନଙ୍କ ପାଇଁ । ସେମାନେ ମୋତେ ଭିନ୍ନ ଦୃଷ୍ଟିରେ ଦେଖୁଛନ୍ତି । ଏହାଛଡ଼ା ନିକଟରେ ଅଧ୍ୟୟନ ନିମନ୍ତେ ଛୁଟି (Study leave) ନେଇ ଶିଶୁ ସାହିତ୍ୟ ଉପରେ ଗବେଷଣା କରିବା ନିମନ୍ତେ ମୁଁ ସ୍ଥିର କରିଛି । ତେଣୁ ମୁଁ ଡଃ ମହତାବଙ୍କ ପ୍ରସ୍ତାବଠାରୁ ନିଜକୁ ଦୂରେଇ ରଖିବାକୁ ଚାହୁଁଛି ।"

ମୋ କଥା ଶୁଣି ଜାନକୀ ବାବୁ ସେଦିନ ସାବିତ୍ରୀ ନିବାସରୁ ଫେରି ଆସିଲେ ।

୧୯୮୦ ମସିହାରେ ଦେଶର ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପାଇଁ ଭାରତ ସରକାର ଓ ରାଜ୍ୟ ସରକାରଙ୍କ ଆନୁକୂଲ୍ୟରେ ଓଡ଼ିଶାରେ ସଂବ୍ୟାପକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ (Massive Orientation Programme) ଚାଲିଲା । ଏହି ପାଠ୍ୟକ୍ରମର ନେତୃତ୍ୱ ନେଲେ ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ (NCERT), ନୂଆଦିଲ୍ଲୀ । ରାଜ୍ୟସ୍ତରରେ

ଏହାର ସଫଳ ରୂପାୟନ ନିମନ୍ତେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଭୁବନେଶ୍ୱର ଦାୟିତ୍ୱ ନେଲେ । ସେ ବର୍ଷ ଖରାଦିନେ ରାଜ୍ୟର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନଗୁଡ଼ିକୁ ସେବାକାଳୀନ ଶିକ୍ଷକମାନଙ୍କ ପ୍ରଶିକ୍ଷଣ ଦେବା ନିମନ୍ତେ ଦାୟିତ୍ୱ ଦିଆଗଲା । ଖରାଦିନ ଛୁଟି ବାତିଲ କରାଗଲା ଓ ସମସ୍ତ ଅଧ୍ୟାପକ ଓ ଅଧ୍ୟାପିକା ଏହି ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ନିୟୋଜିତ ହେଲେ ।

ଏଇ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ହୀରାକୁଦ ଉଚ୍ଚ ବିଦ୍ୟାଳୟର ଜଣେ ଯୁବ ଉଦୀୟମାନ ତଥା ଓଷ୍ଟାର କର୍ମକର୍ତ୍ତା ହିସାବରେ ପରିଚିତ ଶିକ୍ଷକ ଶ୍ରୀଯୁକ୍ତ ରବିନାରାୟଣ ସାମଲ ଯୋଗଦେଲେ । ସେ ଏଇ ସମୟରେ ବିଭିନ୍ନ କାର୍ଯ୍ୟକ୍ରମରେ ନେତୃତ୍ୱ ନେଲେ ଓ ବିଭିନ୍ନ ସମୟରେ ସତ କଥା କହି ଅଧ୍ୟକ୍ଷଙ୍କର ଚକ୍ଷୁଶୂଳ ହେଲେ ।

ଏଇ ସେବାକାଳୀନ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଶେଷ ହେବା ପାଇଁ ଅଳ୍ପଦିନ ବାକିଥାଏ । ଅଧ୍ୟକ୍ଷ ପ୍ରତି ଶିକ୍ଷକଙ୍କଠାରୁ କିଛି ଅର୍ଥ ଆଦାୟ କରିବାର ଅଭିଯୋଗ ଆସିଲା । ଏହା ଶ୍ରୀଯୁକ୍ତ ସାମଲଙ୍କ କାନକୁ ଗଲା । ସେ ଦିନେ କିଛି ଛାତ୍ରନେତାଙ୍କୁ ଧରି ଅଧ୍ୟକ୍ଷଙ୍କ କାର୍ଯ୍ୟାଳୟକୁ ଗଲେ ଏବଂ ଅଧ୍ୟକ୍ଷଙ୍କୁ ଚାରି ପାଞ୍ଚଦିନ ମଧ୍ୟରେ ଶିକ୍ଷକମାନଙ୍କୁ ସମସ୍ତ ଟଙ୍କା ଫେରାଇ ଦେବାକୁ କହିଲେ । ଯଦି ନ ଦିଅନ୍ତି, ତେବେ ସେ ସଂପର୍କରେ ଖବର କାଗଜରେ ତାଙ୍କ ବିରୋଧରେ ସମ୍ବାଦ ବାହାର କରିବେ ବୋଲି କହିଲେ ।

ସବୁଠାରୁ ବଡ଼ ଦୁର୍ଭାଗ୍ୟପୂର୍ଣ୍ଣ କଥା ହେଲା ଯେ ଯେଉଁଦିନ ଅଧ୍ୟକ୍ଷ ଟଙ୍କା ଫେରାଇ ଦେଲେ ସେଇଦିନ ସ୍ଥାନୀୟ ସମ୍ବାଦପତ୍ର 'ହୀରାଖଣ୍ଡ'ରେ ଅଧ୍ୟକ୍ଷଙ୍କ ବିରୋଧରେ ରବିନାରାୟଣ ସାମଲଙ୍କ ଅଭିଯୋଗ ପତ୍ର ପ୍ରକାଶିତ ହେଲା । ଏହା କଲେଜର ସହକର୍ମୀମାନଙ୍କ ମଧ୍ୟରେ ଆଲୋଚନାର ବିଷୟବସ୍ତୁ ହେଲା ।

ମୋତେ ଜଣେ ବନ୍ଧୁ ଜଣାଇଲେ ଯେ ଜଣେ ଅଧେ ଅଧ୍ୟାପକ ଯେଉଁମାନେ କି ମୋର ରଚନାତ୍ମକ ଦିଗକୁ ଭଲ ପାଉ ନ ଥିଲେ, ସେମାନେ ଅଧ୍ୟକ୍ଷଙ୍କୁ କହିଲେ, "ବ୍ରହ୍ମାବାବୁଙ୍କ ଏଥିରେ ହାତ ଅଛି । 'ହୀରାଖଣ୍ଡ' ସହିତ ତାଙ୍କର ସଂପର୍କ ଅଛି । ନିଶ୍ଚିତ ଭାବେ ସଂପାଦକ ତାଙ୍କୁ ପଚାରି ଏ ସମ୍ବାଦ ଦେଇଥିବେ ।" ଏହା ହେଉଛି ୧୯୮୦ ମସିହା ଜୁନ୍ ମାସର କଥା ।

ଏହି ଘଟଣା ପରେ ଅଧ୍ୟକ୍ଷ ଅମାନ୍ତଙ୍କର ମୋ ପ୍ରତି ଥିବା ମନୋଭାବ ବଦଳି ଗଲା । ସେ ତାଙ୍କ ମନର କଥା ମନରେ ରଖିଲେ । ମୋତେ କିଛି କହିଲେ ନାହିଁ । ମାତ୍ର କାର୍ଯ୍ୟତଃ ମୋ ପ୍ରତି ବିମୁଖଭାବ ପ୍ରଦର୍ଶନ କଲେ । ମୋର କ୍ଷତି ହେଲାଭଳି କେତେକ କାର୍ଯ୍ୟ କଲେ ।

ସେ ବର୍ଷ ଦଶହରା ଛୁଟିରେ ମୁଁ ସମ୍ବଲପୁରରୁ ଆମ ଗାଁ କଟକ ଜିଲ୍ଲାସ୍ଥ ରୁଦ୍ରପୁରକୁ ଯାଇଥିଲି । ମୋତେ ବାପା କହିଲେ, "ଆରେ, ମୋତେ ଗୌରାଙ୍ଗ (ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ବ୍ରହ୍ମା, ଡିପିଆଇ କାର୍ଯ୍ୟାଳୟରେ କାମ କରୁଥିବା, ଆମ ଗ୍ରାମର ଦଦେଇ ପୁଅ ଭାଇ) କହୁଥିଲା, ତୋ ବିରୋଧରେ କ'ଣ ବଦଳି ପାଇଁ ତୁମ ଅଧକ୍ଷ ବାରମ୍ବାର ଲେଖୁଛନ୍ତି ।" ଏତିକି କହି ବାପା ନୀରବ ରହିଲେ ।

ମୋର ଦିନେ ଗଉରିଆ ନନାଙ୍କ ସହ ଦେଖା ହେଲା । ସେ କହିଲେ, "ଅଧକ୍ଷ ପ୍ରତ୍ୟକ୍ଷ ଭାବେ ଆମ କାର୍ଯ୍ୟାଳୟକୁ କିଛି ନ କହି ଓଡ଼ିଶା ସରକାରଙ୍କ ଉଚ୍ଚଶିକ୍ଷା ବିଭାଗକୁ ଲେଖିଛନ୍ତି । ଓଡ଼ିଶା ସରକାର ଏ ସଂପର୍କରେ ତତ୍‌କାଳୀନ ଡି.ପି.ଆଇ ଡକ୍ଟର ଶ୍ରୀନିବାସ ସାହୁ, ଆଇ.ଏ.ଏସ୍‌ଙ୍କ ମତାମତ ଲୋଡ଼ି ଚିଠି ଲେଖିଥିଲେ । ଏଥିରେ ବିରକ୍ତି ପ୍ରକାଶ କରି ଡକ୍ଟର ସାହୁ କହିଲେ "ଯଦି ଜଣେ ଅଧାପକ କଲେଜରେ ଅଧକ୍ଷଙ୍କ ବିରୋଧରେ ଛାତ୍ରମାନଙ୍କୁ ଷ୍ଟ୍ରାଇକ କରିବାକୁ ମତାଉଛି ଓ ବିଶୃଙ୍ଖଳିତ ଆଚରଣ କରୁଛି, ତେବେ ସେ କଥା ପ୍ରଥମେ ମୁଁ ଜାଣିବା କଥା । ସେ କଥାର ସତ୍ୟାସତ୍ୟ ମଧ ତଦନ୍ତ ହେବା କଥା । ମାତ୍ର ମୋତେ ନ ଜଣାଇ ଯଦି ସେ ଅଧକ୍ଷ ଜଣଙ୍କ ମୋତେ ଏଡ଼ାଇ ସିଧା ସିଧା ସରକାରଙ୍କୁ ଲେଖିଛନ୍ତି, ତେବେ ସରକାର ତା'ର ବଦଳି ସଂପର୍କରେ ନିଷ୍ପତ୍ତି ନିଅନ୍ତୁ । ମୁଁ ସେ ସଂପର୍କରେ କୌଣସି ମତାମତ ଦେବି ନାହିଁ କିମ୍ବା ପଦକ୍ଷେପ ନେବି ନାହିଁ ।"

ବାସ୍, ଏତିକିରେ ସେ ବର୍ଷ ମୋର ବଦଳି ବର୍ଷ ମଝିରେ ଅଟକି ଗଲା ।

ଦିନକର କଥା । ମୋତେ ଜଣେ ଅଧାପକ କହିଲେ, "ବ୍ରହ୍ମାବାବୁ ! ଆପଣଙ୍କ ସାଙ୍ଗ ତହସିଲଦାର ଅଛନ୍ତି । ଆପଣ ଅଧକ୍ଷ ଅମାନ୍ତଙ୍କର ଏକ ଆବଶ୍ୟକ ପ୍ରମାଣପତ୍ର ତାଙ୍କଠାରୁ କରାଇ ଦେବେ ।"

ମୁଁ କହିଲି ଆପଣ ଦରଖାସ୍ତ ଫର୍ମଟି ଅଧକ୍ଷଙ୍କଠାରୁ ଆଣନ୍ତୁ, ମୁଁ ତହସିଲଦାରଙ୍କୁ କହି ଚେଷ୍ଟା କରିବି ।"

ସେ ସମୟରେ ସମ୍ବଲପୁର ତହସିଲଦାର ଥାଆନ୍ତି ଶ୍ରୀଯୁକ୍ତ ବୃନ୍ଦାବନ ରଥ, ଓ.ଏ.ଏସ୍(୧) । ମୁଁ ରେଭେନ୍ସା କଲେଜରେ ପଢୁଥିଲାବେଳେ ସେ ମୋର ସହପାଠୀ ଥିଲେ । ବୃନ୍ଦାବନ ବାବୁ ଜଣେ ସାହିତ୍ୟିକ ଓ ଉଚ୍ଚ ମିଜ୍ଞାସର ଲୋକ । ମୁଁ ଅଧକ୍ଷଙ୍କ ଦରଖାସ୍ତ ଧରି ତାଙ୍କ କାର୍ଯ୍ୟାଳୟରେ ପହଞ୍ଚିଲି । ସେତେବେଳେ ସେ ନିଜ କାର୍ଯ୍ୟାଳୟ କୋଠରିର ତଳେ ବସି ମଧାହ୍ନଭୋଜନ କରୁଥିଲେ । ମୋତେ ଦେଖି କହିଲେ, "କି କାଗଜ ଆଣିଛୁ ଦେ ।" ମୁଁ ସଙ୍ଗେ ସଙ୍ଗେ ଅଧକ୍ଷଙ୍କ କଥା କହି ତାଙ୍କ ହାତକୁ ସେ ଦରଖାସ୍ତ ଖଣ୍ଡିକ ବଢ଼ାଇ ଦେଲି । ସେ ଖାଇବା ଅବସ୍ଥାରେ ବାମ ହାତରେ ଦରଖାସ୍ତ

ଖଣ୍ଡକ ନେଇ ଦେଖିଲେ ଓ ହସି ହସି ମୋତେ କହିଲେ, "ତୁ କ'ଣ ଜାଣିନୁ ତହସିଲଦାରଙ୍କ ଅଫିସରେ ପଇସାପତ୍ର ନ ଦେଲେ କିଛି କାମ ହୁଏ ନାହିଁ ।" ମୁଁ ତାଙ୍କ ଆଡ଼କୁ ଚାହିଁଲି । ସେ ମୋତେ ଗୋଲକ ଧନ୍ଦାରେ ପକାଇ ଦେଇଛନ୍ତି ବୋଲି ଜାଣିପାରିଲେ ।

କିଛି ସମୟ ପରେ ହସିହସି କହିଲେ, "ଆରେ ! ଏଥିରେ କୋର୍ଟ ଫି ନାହିଁ ।" ଏହା କହି ସେ ନିଜେ ଟଙ୍କା ଦେଇ କୋଟ ଫି ତାଙ୍କ ପିଅନ ଦ୍ୱାରା ମଗାଇ ଆଣିଲେ । ପ୍ରମାଣପତ୍ର ଦେବାର ସମସ୍ତ ବିଧି ବ୍ୟବସ୍ଥା କଲେ ।

ଅଧ୍ୟକ୍ଷଙ୍କ ସହିତ ଏସବୁ ସଂପର୍କ ସତ୍ତ୍ୱେ ମୁଁ ସେ କଲେଜରେ ଗୋଟିଏ ମୁହୂର୍ତ୍ତ ରହିବାକୁ ଚାହୁଁ ନ ଥିଲି । ସେଥିପାଇଁ ମୁଁ ଆଗରୁ ଅଧ୍ୟୟନ ଛୁଟି (Study leave) ଦେବାକୁ ଦରଖାସ୍ତ କରିଥିଲି । ସେଠାରୁ ବଦଳି ହେବାକୁ ମଧ୍ଯ ଚେଷ୍ଟା କରିଥିଲି । ଅଧ୍ୟକ୍ଷଙ୍କ ଲେଖା ଦ୍ୱାରା ମୋର ବର୍ଷ ମଝିରେ ହେବା ବଦଳି ସରକାରଙ୍କ ଶିକ୍ଷା ବିଭାଗ ଓ ଡି.ପି.ଆଇ ଅଫିସ ଯୋଗାଯୋଗ ମଧ୍ୟରେ ଅଟକି ଯାଇଥିଲା ।

ଯାହାହେଉ ୧ ୯ ୮ ୨ ମସିହା ଜୁନ୍ ମାସ ଶେଷରେ ବ୍ରହ୍ମପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ମୋର ବଦଳି ଆଦେଶ ଆସିଥିଲା । ସାତଦିନ ମଧ୍ୟରେ ନିଜ ନିଜ ସ୍ଥାନରେ ଯୋଗ ଦେବାପାଇଁ କୁହାଯାଇଥିଲା ।

ଯେତେବେଳେ ମୋର ତୃତୀୟ ପୁତ୍ର ଶକ୍ତିପ୍ରକାଶର ଜନ୍ମ ହେବାର ଆପାତତଃ ସମୟ ଜୁଲାଇ ପ୍ରଥମ ସପ୍ତାହରେ ଥିଲା । ଏ ପରିସ୍ଥିତିରେ ମୁଁ ଭାଙ୍ଗିଯାଇ ନ ଥିଲି କି କିଛିଦିନ ମୋର ବଦଳି ସ୍ଥଗିତ ରଖିବା ନିମନ୍ତେ ଅଧ୍ୟକ୍ଷଙ୍କୁ କହି ନ ଥିଲି । ମାତ୍ର ପରିସ୍ଥିତିର ଚାପରେ ମୁଁ ଅଣନିଃଶ୍ୱାସୀ ହୋଇ ଯାଇଥିଲି ।

ସେ ସମୟରେ ମୋର ଶିକ୍ଷକ ତଥା ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରାଧ୍ୟାପକ ଡ଼କ୍ଟର ଭି.ବି. ଶାସ୍ତ୍ରୀ ନିଜ ତରଫରୁ ଅଧ୍ୟକ୍ଷ ଅମାନ୍ତଙ୍କୁ ମୋତେ ସାହାଯ୍ୟ କରିବାକୁ କହିଥିଲେ । ସେ ସଙ୍ଗେ ସଙ୍ଗେ ତାଙ୍କୁ ସ୍ୱତନ୍ତ୍ର ବାର୍ତ୍ତାବହ ହିସାବରେ ମୋର ବଦଳି ବ୍ୟକ୍ତିଗତ ଅସୁବିଧା ଯୋଗୁଁ କିଛିଦିନ ବନ୍ଦ ରଖିବା ନିମନ୍ତେ ଡ଼ି.ପି.ଆ.ଇ ଙ୍କୁ ନିବେଦନ କରି ଏକ ଚିଠି ଦେଇ ପଠାଇଥିଲେ । ଅଧ୍ୟକ୍ଷଙ୍କ ଶୁଭ ଦୃଷ୍ଟି ଓ ପ୍ରଫେସର ଶାସ୍ତ୍ରୀଙ୍କ ଅହେତୁକ ସାହାଯ୍ୟ ଯୋଗୁଁ ମୋର ବଦଳି କିଛି ଦିନ ପାଇଁ ସ୍ଥଗିତ ରଖାଯାଇଥିଲା ।

କ'ଣ ହେଲା କେଜାଣି କିଛିଦିନ ପରେ ମୋର ବଦଳି ଆଦେଶ ସେ ବର୍ଷ ସଂପୂର୍ଣ୍ଣ ଭାବେ ବାତିଲ ହୋଇଗଲା । ମୁଁ ଜାଣିବାକୁ ପାଇଲି ଯେ ଯେଉଁଦିନ ମୋର

ବଦଳି ବାତିଲ ଆଦେଶ ଆସିଲା, ସେଦିନ ଅଧ୍ୟକ୍ଷ ବହୁତ ବ୍ୟସ୍ତ ହେଲେ । ଏଥିରୁ ସ୍ପଷ୍ଟ ହୋଇଗଲା ଯେ ମୋତେ ଆହତ କରି ସେଠାରେ ସେ ମୋର ସ୍ଥିତି ଗୋଟିଏ ମୁହୂର୍ତ୍ତ ପାଇଁ ଚାହୁଁ ନ ଥିଲେ । କିନ୍ତୁ ଯେହେତୁ ମୋତେ ସାହାଯ୍ୟ କରିବାକୁ ଯାଇ ସେ ନିଜେ ମୋର ବଦଳିକୁ ସାମୟିକ ସ୍ଥଗିତ କରିବାକୁ ଲେଖିଦେଇଛନ୍ତି, ଆଉ ଥରେ ବଦଳି କରିବା ନିମନ୍ତେ ଲେଖିବା ପ୍ରଶାସନିକ ଆପ୍ରାସଙ୍ଗିକତା ହେବ ବୋଲି ଭାବି ଅଧ୍ୟକ୍ଷ ବୋଧହୁଏ ସେ ବର୍ଷ ନୀରବ ରହିଲେ ।

ଇତି ମଧ୍ୟରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ତରଫରୁ ବିଲାତରେ ବ୍ରିଟିଶ୍ କାଉନସିଲ୍ ସ୍କଲାରସିପ୍ ପାଇ ଶିକ୍ଷା ଟେଲିଭିଜନ ସଂପର୍କରେ ତାଲିମ୍ ନେବା ନିମନ୍ତେ ଆଗ୍ରହୀ ଅଧ୍ୟାପକମାନଙ୍କଠାରୁ ଦରଖାସ୍ତ ଆହ୍ୱାନ କରିବା ନିମନ୍ତେ କଲେଜକୁ ଚିଠି ଆସିଲା । ସେଥିପାଇଁ ଚାରି ପାଞ୍ଚଟି ଦରଖାସ୍ତ ଫର୍ମର କପି ପଠାଇବାର ଥିଲା । ପ୍ରତ୍ୟେକରେ ଅଧ୍ୟକ୍ଷଙ୍କ ସୁପାରିଶ ଲିପିବଦ୍ଧ କରିବାକୁ ସ୍ଥାନ ଥିଲା । କେବଳ ଅଧ୍ୟକ୍ଷ ସୁପାରିଶ କଲେ ବୋଲି ଲେଖି ଦେବା କଥା । ମୁଁ ସେ ସମସ୍ତ ଫର୍ମ ଅଧ୍ୟକ୍ଷଙ୍କୁ ଦେଲି । ସେ ଦିନେ ଦୁଇଦିନ ପରେ ନିଜ ଅଂଶ ପୂରଣ କରି ଦେବେ ବୋଲି କହିଲେ । ଦୁଇ ଦିନ ପରେ ସେ ମୋତେ ସବୁ କାଗଜତ ଫେରାଇ ଦେଲେ । ସୁପାରିଶ ସ୍ଥାନରେ ସେ କେବଳ ସୁପାରିଶ କଲେ ବୋଲି ଲେଖିଲେ ନାହିଁ । ଯାହା ଲେଖିଲେ, ତାହା ଆଶାତୀତ ଭାବେ ମୋର ଏକ ପ୍ରଶଂସାପତ୍ର ଥିଲା ।

ସେ ଲେଖିଥିଲେ -

"ଦରଖାସ୍ତକାରୀ ଆକାଶବାଣୀର ଜଣେ ନିୟମିତ ଲେଖା ପ୍ରସ୍ତୁତକାରୀ । ତାଙ୍କର ସେସବୁ ଲେଖା ଓ ଉପସ୍ଥାପନ ଅତି ଚମତ୍କାର । ଏତଦ୍‌ବ୍ୟତୀତ ସେ ହେଉଛନ୍ତି ରାଜ୍ୟର ଜଣେ ବିଶିଷ୍ଟ ଶିଶୁ ସାହିତ୍ୟିକ । ବିଭିନ୍ନ ବିଷୟରେ ତାଙ୍କର ମଧ୍ୟ ନିତାନ୍ତ ଆଗ୍ରହ ଅଛି ।"

ସେ ବର୍ଷ ଆମ ରାଜ୍ୟରୁ ତିନିଜଣ ଅଧ୍ୟାପକ ବିଲାତରେ ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମରେ ତାଲିମ ପାଇବା ପାଇଁ ମନୋନୀତ ହୋଇଥିଲେ । ମୋ ବ୍ୟତୀତ ଡକ୍ଟର ଚିଦାନନ୍ଦ ପାତ୍ର ଓ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦର ଅଧ୍ୟାପକ ପଦ୍ମଚରଣ ମହାନ୍ତି ମଧ୍ୟ ମନୋନୀତ ହୋଇଥିଲେ ।

ଏତଦ୍‌ବ୍ୟତୀତ ମୋର ବିଲାତ ଯିବାକୁ ଥିବାରୁ ବିଭିନ୍ନ ସମୟରେ ମୋର ଚରିତ୍ର ସଂପର୍କରେ ସରକାରଙ୍କ ତରଫରୁ ତଥ୍ୟ ମଗାଯାଇଥିଲା । ଏହା ବିଦେଶ ଯାଉଥିବା ସରକାରୀ କର୍ମଚାରୀଙ୍କ ପାଇଁ ଜରୁରୀ ବୋଲି ମୁଁ ଜାଣିବାକୁ ପାଇଲି । ମୋପ୍ରତି ଅଧ୍ୟକ୍ଷଙ୍କ କୌଣସି ପ୍ରତିକୂଳ ମନ୍ତବ୍ୟ ନ ଥିଲା । ସେ ସେବର୍ଷ ମୋ ବିରୋଧରେ ପ୍ରତିକୂଳ ମନ୍ତବ୍ୟ ଦେଇଥିଲେ ମୁଁ ଏଇ ପ୍ରଶିକ୍ଷଣ ସୁଯୋଗ ଲାଭରୁ ବଞ୍ଚିତ ହୋଇଥାନ୍ତି ।

ସେ ବର୍ଷ ସମ୍ବାଦପତ୍ର ସହିତ ମୋର ସଂପର୍କ ଓ ଲେଖା ପ୍ରକାଶ ଯୋଗୁଁ ଯେ ମୋର ସରକାରୀ ଚାକିରି ପ୍ରତି ବିପଦ ଅଛି, ତାହା ମୁଁ ହାଡ଼େ ହାଡ଼େ ଅନୁଭବ କଲି । ଡକ୍ଟର ମହତାବ ମୋତେ ହୀରାଖଣ୍ଡର କଳିକା ପୃଷ୍ଠାକୁ ସଂପାଦନ କରିବା ନିମନ୍ତେ ଯେଉଁ ଛୋଟିଆ ଦାୟିତ୍ୱଟିଏ ଦେଇଥିଲେ ସେଥିରୁ ଖସିବା ମୋ ପାଖରେ ମଧ୍ୟ ଏତେ ସହଜ ହେଲା ନାହିଁ । କାରଣ ମୁଁ ଯେତେଥର ଯାଇଁ ଏହାର ସଂପାଦକ ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କୁ କହିଲି, ସେ ମୋତେ ମନା କଲେ । ସବୁବେଳେ ଗୋଟିଏ କଥା କହିଲେ, "ବ୍ରହ୍ମାବାବୁ ! ଆପଣ ଆମକୁ ଟିକିଏ ସାହାଯ୍ୟ କରନ୍ତୁ ।"

ଦିନେ ଜାଣିବାକୁ ପାଇଲି ଯେ ଶ୍ରୀଯୁକ୍ତ ଶ୍ରୀବଲ୍ଲଭ ପାଣିଗ୍ରାହୀ ହୀରାଖଣ୍ଡର ଦାୟିତ୍ୱ ନେଇଛନ୍ତି । ତେଣୁ 'କଳିକା' ଦାୟିତ୍ୱରୁ ଖସି ଆସିବା ମୋ ପକ୍ଷରେ ସୁବିଧାଜନକ ହେବ ଭାବି ଦିନେ ଯାଇ ତାଙ୍କୁ ହୀରାଖଣ୍ଡ ପରିସରରେ ଥିବା ମୁଖ୍ୟ ସଂପାଦକଙ୍କ କୋଠରିରେ ଦେଖାକଲି । ଅତୀତରେ ସେ ଆମ ରାଜ୍ୟର ଶିକ୍ଷାମନ୍ତ୍ରୀ ଥିଲେ । ତାଙ୍କ ସହିତ ମଧ୍ୟ ମୋର ସମ୍ବଲପୁର ଅଞ୍ଚଳର ବିଭିନ୍ନ ସାହିତ୍ୟ ମଞ୍ଚରେ ଭାଷଣ ଦେବା ଅବସରରେ ପରିଚୟ ହୋଇଥିଲା । ସେ ମୋତେ ଦେଖି ସାଙ୍ଗେ ସାଙ୍ଗେ ଆରମ୍ଭ କଲେ, "ଆରେ ! ବ୍ରହ୍ମାବାବୁ ଆସିଛନ୍ତି । ତାଙ୍କୁ ପାଣି ପିଇବାକୁ ଦିଅ ।" ପାଣି ପିଇବାକୁ ଦିଅ କହିବା ଥିଲା ଏକ ସୌଜନ୍ୟମୂଳକ ଆତିଥ୍ୟ ।

ତାଙ୍କ ସହିତ କଥା ପ୍ରସଙ୍ଗରେ କହିଲି, "ସାର୍ ! ମୋ ଉପରେ ଗବେଷଣା ସଂପର୍କୀୟ ଅନେକ ଚାପ ଅଛି । ମୋତେ ଆପଣ କଳିକା ଦାୟିତ୍ୱରୁ ବିଦାୟ ଦିଅନ୍ତୁ । ଆପଣଙ୍କର ସମ୍ବାଦପତ୍ରରେ ତ ଅନେକ ସହ ସଂପାଦକ ଅଛନ୍ତି । ସେମାନେ ମୋଠାରୁ ଅଧିକ ଭଲଭାବେ 'କଳିକା' ବିଭାଗକୁ ସଂପାଦନା କରିବେ ।" ସେ କିଛି କ୍ଷଣ ପାଇଁ ନୀରବ ରହିଲେ । କ'ଣ ଭାବି ମୋତେ କହିଲେ, "ନାହିଁ ବ୍ରହ୍ମା ବାବୁ ! ଆପଣ କିଛିଦିନ ପାଇଁ ଏ ଦାୟିତ୍ୱରେ ଥାଆନ୍ତୁ ।" ମୁଁ ତାଙ୍କ କଥା ଶୁଣି ନୀରବ ରହିଲି । ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ବିଶେଷ ତଥା ଆମର ପୂର୍ବତନ ଶିକ୍ଷାମନ୍ତ୍ରୀଙ୍କ କଥା ମୋ ଭଳି ଜଣେ ସାଧାରଣ ଲୋକ ପକ୍ଷରେ ଭାଙ୍ଗିବା ଯେ କେତେ କଷ୍ଟକର ତାହା ମୁଁ ସେଦିନ ମର୍ମେ ମର୍ମେ ଅନୁଭବ କଲି । ହୀରାଖଣ୍ଡ ସହ ସଂପର୍କ ଯେ ସାମୟିକ ଭାବେ ମୋର ଚାକିରି ଜୀବନର କାଳ ହେଉଛି, ତାହା ତାଙ୍କ ଭଳି ଲୋକଙ୍କୁ କହିବା ମୋ ପକ୍ଷରେ ସମୀଚୀନ ନୁହେଁ ଭାବି ମୁଁ ଧନକଉଡ଼ାସ୍ଥିତ ମୋ ବାସଭବନ ସାବିତ୍ରୀ ନିବାସକୁ ଫେରି ଆସିଲି ।

ଏସବୁ ଘଟଣାର କିଛିଦିନ ପରେ ମୋର ଗବେଷଣା ନିମନ୍ତେ ଅଧ୍ୟୟନ ଛୁଟି (Study leave) ଡି.ପି.ଆଇ ଅଫିସରୁ ମଞ୍ଜୁର ହୋଇ ୧୫.୯.୧୯୮୨ ମସିହାରେ

ଆସିଲା । ମୁଁ ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ଅନୁଯାୟୀ କଲେଜରୁ ଅଧ୍ୟୟନ ନିମନ୍ତେ ଅବ୍ୟାହତି ନେଲି । ମୋର ଛୁଟିକାଳୀନ ସଦର ମହକୁମା (Headquarters) ଭୁବନେଶ୍ୱର ରହିଲା । କାରଣ ମୋ ଥେସିସ୍‌ର ଗାଇଡ୍ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଅଧ୍ୟାପକ ଜଗନ୍ନାଥ ମହାନ୍ତି ଭୁବନେଶ୍ୱରରେ ରହୁଥିଲେ । ଅଧ୍ୟୟନ ନିମନ୍ତେ ଛୁଟି ନେବା ପରେ ମୁଁ ଦୁଇ ତିନିମାସ ସମ୍ବଲପୁରରେ ରହିଲି । ତଥାପି ମୋର କଲେଜ ସହିତ କୌଣସି ସଂପର୍କ ରହିଲା ନାହିଁ । ଛୁଟିରେ ରହୁଥିବା ହେତୁ 'ହୀରାଖଣ୍ଡ'ର ସଂପାଦକ ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କୁ କହି କଳିକା ଦାୟିତ୍ୱରୁ ଅବ୍ୟାହତ ନେଲି ।

**ସମ୍ବଲପୁରର ସାଂସ୍କୃତିକ ପରିବେଶ**

କଳା-ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ସମ୍ବଲପୁରର ଦାନ କେବଳ ଭାରତର ଭୌଗୋଳିକ ସୀମା ମଧ୍ୟରେ ସୀମାବଦ୍ଧ ନୁହେଁ । ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ଏହାର ପ୍ରତିଫଳନ ଘଟିଅଛି । ମୋର ସୌଭାଗ୍ୟ ଯେ ମୁଁ ମୋର ଅଧ୍ୟାପକ ଜୀବନର ପ୍ରାରମ୍ଭରେ ସମ୍ବଲପୁରର କଳା, ସାହିତ୍ୟ ଓ ସଂସ୍କୃତିର ସଂସ୍ପର୍ଶରେ ଆସିଥିଲି ।

ଅଳ୍ପଦିନ ରହଣି ମଧ୍ୟରେ ମୋର ସମ୍ବଲପୁର ସହର ନିକଟସ୍ଥ ନକ୍‌ସାପାଲି ଗ୍ରାମର ସାହିତ୍ୟିକ ପ୍ରଭାକର ପାଣିଗ୍ରାହୀଙ୍କ ସହିତ ପରିଚୟ ହେଲା । ସେ ଜଣେ ଭକ୍ତିମାର୍ଗର କବି ଥିଲେ ଓ ନିଜ ପ୍ରଚେଷ୍ଟାରେ ଅନେକ ଭକ୍ତିମୂଳକ ରଚନା ପ୍ରକାଶନ କରିଥିଲେ । ତାଙ୍କର କନ୍ୟା ପଦ୍ମିନୀ ମୋର ବି.ଏଡ୍. ଛାତ୍ରୀ ଥିଲା । ଶ୍ରୀଯୁକ୍ତ ପାଣିଗ୍ରାହୀ ମୋଠାରୁ ବୟସରେ ଅନେକ ବଡ଼ ଥିଲେ । ସମ୍ବଲପୁର ଟାଉନସ୍ଥ ହିନ୍ଦୀ ହାଇସ୍କୁଲରେ କାମ କରୁଥିବା ହେତୁ ମୋର ଅନେକ ସମୟରେ ତାଙ୍କ ସହିତ ଦେଖା ସାକ୍ଷାତ ହେଉଥିଲା । ଥରେ ଅଧେ ମୁଁ ସାଇକେଲରେ ଧନକଉଡ଼ାରୁ ପ୍ରାୟ ୧୫ କିଲୋମିଟର ଦୂରରେ ଅବସ୍ଥିତ ତାଙ୍କ ନକ୍ସାପାଲି ଗ୍ରାମକୁ ଯାଇଛି । ତାଙ୍କ ସହିତ ସାହିତ୍ୟର ବିଭିନ୍ନ ବିଷୟରେ ଆଲୋଚନା କରିବାର ସୁଯୋଗ ମଧ୍ୟ ପାଇଛି ।

ସମ୍ବଲପୁରର ସଭାଗୃହରେ ଅନେକ ସମୟରେ ବିଭିନ୍ନ ଆଲୋଚନାଚକ୍ରର ଆୟୋଜନ କରାଯାଉଥିଲା । ସେଠି ଜଣେ ବକ୍ତା ହିସାବରେ ମୋତେ କହିବାର ସୁଯୋଗ ମଧ୍ୟ ଦିଆଯାଇଥିଲା । ଏଇ ଅବସରରେ ମୋର ସମ୍ବଲପୁର ଓ ଓଡ଼ିଶାର ପ୍ରଖ୍ୟାତ ବ୍ୟଙ୍ଗ ସାହିତ୍ୟର ସ୍ରଷ୍ଟା ସୁନୀଲ ମିଶ୍ରଙ୍କ ସହିତ ଦେଖା ହେବାର ସୁଯୋଗ ମିଳିଥିଲା । ସେ ଜଣେ, ବିଶାଳ ବପୁବନ୍ତ ଗୌରବର୍ଣ୍ଣର ବ୍ୟକ୍ତି ଥିଲେ । ତାଙ୍କଦ୍ୱାରା 'ଜନସମୀକ୍ଷା' ନାମକ ଏକ ଖବରକାଗଜ ପ୍ରକାଶିତ ହେଉଥିଲା । ଏଇ ଖବରକାଗଜରେ ବିଭିନ୍ନ ବିଷୟରେ ମୋର ଲେଖା ଓ ପ୍ରବନ୍ଧମାନ ମଧ୍ୟ ପ୍ରକାଶିତ ହେଉଥିଲା । ମୋତେ ଦେଖିଲେ

ସେ ପୁତ୍ରବତ୍ ସ୍ନେହ କରୁଥିଲେ । ଥରେ ମୋତେ 'ଗୁରୁଦିବସ' ସଂପର୍କରେ ଏକ ଲେଖା ଦେବାକୁ କହିଥିଲେ । ସେ ଲେଖାଟି ମୋଠାରୁ ଏହାର ସହ ସଂପାଦକ ଲକ୍ଷ୍ମୀନାରାୟଣ ମିଶ୍ର ମଗାଇ ନେଇଥିଲେ । ମାତ୍ର ଗୁରୁଦିବସ ଦିନ ପ୍ରକାଶିତ 'ଜନସମୀକ୍ଷା'ରେ ମୋର ଲେଖା ନ ଥିଲା । ମୁଁ ତିନି ତିନି ଥର ସେଥିରେ ପ୍ରକାଶିତ ହେଉଥିବା ଲେଖାମାନ ଖୋଜି ଦେଖିଲି । ମାତ୍ର ମୋ ଲେଖାକୁ ଖୋଜି ପାଇଲି ନାହିଁ । ପରେ ମୋର ସମ୍ବଲପୁରର ଗୋଲବଜାରରେ ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ଦେଖାହେଲା । ସେ ମୋତେ କହିଲେ, "ଗୁରୁଦିବସ" ଲେଖାଟି ସଂପାଦକୀୟ ସ୍ତମ୍ଭରେ ପ୍ରକାଶିତ ହୋଇଅଛି । ଲେଖାର ଶେଷରେ ଆପଣଙ୍କ ସଂପୂର୍ଣ୍ଣ ନାମ ଲେଖାଯାଇଛି । ସେଦିନ ମୁଁ ଯେତେବେଳେ ସଂପାଦକ ମିଶ୍ରଙ୍କୁ ତାଙ୍କର ସଂପାଦକୀୟ ସ୍ତମ୍ଭର ଲେଖା ମୁଦ୍ରଣ ନିମନ୍ତେ ମାଗିଲି, ସେ ମୋତେ ଆପଣଙ୍କ ଲେଖାଟି ସଂପାଦକୀୟ ସ୍ତମ୍ଭରେ ଦେଇ ଦେବାକୁ କହିଲେ ।"

ସମ୍ବଲପୁରର ଆଉ ଜଣେ ବିଶିଷ୍ଟ ଲେଖକ ଥିଲେ ଶ୍ରୀଯୁକ୍ତ ଗୌରୀଶଙ୍କର ପାଣିଗ୍ରାହୀ । ସେ ମୁନ୍‌ସିପାଲଟି ହାଇସ୍କୁଲର ପ୍ରଧାନଶିକ୍ଷକ ଥିଲେ । ଅତୀତରେ ଜଣେ ପାଠ୍ୟପୁସ୍ତକ ରଚୟିତା ଭାବେ ତାଙ୍କ ଖ୍ୟାତି ଥିଲା । ମଧ୍ୟ ଇଂରାଜୀ ସ୍ତରରେ ପଢୁଥିବାବେଳେ ତାଙ୍କ ରଚିତ ଅତିରିକ୍ତ ସାହିତ୍ୟ ବହି ମୋର ନଜରକୁ ଆସିଥିଲା । ସେ ବହିଟିର ବିଷୟବସ୍ତୁ ଚୟନ ଓ ଉପସ୍ଥାପନ ଅତୀବ ସୁନ୍ଦର ଥିଲା ।

ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟ ଆନୁକୂଲ୍ୟରେ ପ୍ରଫେସର ଶରତଚନ୍ଦ୍ର ଦାଶଙ୍କ ଦ୍ୱାରା ଆରମ୍ଭ ହୋଇଥିବା ବିଦ୍ୟାଳୟ ସଙ୍ଗମ (School Complex) କାର୍ଯ୍ୟକ୍ରମ ସଂପର୍କରେ ମୁଁ ଥରେ ଅଧେ ତାଙ୍କ ପାଖକୁ ଯାଇଥିଲି । ସେଇଦିନଠାରୁ ତାଙ୍କ ସହିତ ମୋର ଚିହ୍ନା ପରିଚୟ ହୋଇଥିଲା । ଆମ କଲେଜର ବି.ଏଡ୍ ପିଲାମାନଙ୍କର ଅଭ୍ୟାସ ପାଠଦାନ ମଧ୍ୟ ସେଠାରେ କିଛିଦିନ ପାଇଁ ହେଉଥିଲା । ସେ ସମୟରେ ସ୍ୱାଭାବିକ ଭାବେ ଆମେ ସାହିତ୍ୟ ସଂପର୍କରେ ଆଲୋଚନା କରୁଥିଲୁ । ମାତ୍ର କୌଣସି କାରଣରୁ ମୁଁ ଦୀର୍ଘଦିନ ପର୍ଯ୍ୟନ୍ତ ସେ ବିଦ୍ୟାଳୟକୁ ଯାଇ ନ ଥିଲି । ବିଭିନ୍ନ ସମୟରେ ସେ ମୋତେ ସେଠାକୁ ଟିକେ ଯାଇ ଦେଖା କରିବାକୁ ଅନୁରୋଧ ପୂର୍ବକ ଖବର ପଠାଇଥିଲେ । ଦିନେ ମୁଁ ତାଙ୍କୁ ଦେଖାକରି ପଚାରିଲି, "ଆଜ୍ଞା ! ଆପଣ କାହିଁକି ମୋତେ ଖୋଜୁଥିଲେ ।"

ସେ ହସି ହସି କହିଲେ, "ବ୍ରହ୍ମାବାବୁ ! ଆପଣଙ୍କୁ ଦେଖିଲେ ମୋର ମନେ ହୁଏ ଯେ ଆପଣଙ୍କ ସହିତ କୌଣସି ଜନ୍ମରେ ମୋର ସଂପର୍କ ଅଛି । ଆପଣ ଆସିଲେ ମୋତେ ଖୁବ୍ ଭଲ ଲାଗେ । ସେମିତି କିଛି କାମ ମୋର ଆପଣଙ୍କ ପାଖରେ ନାହିଁ । ଏହି ଗୌର ତାମ୍ରବର୍ଣ୍ଣଯୁକ୍ତ ମଣିଷ ଜଣକ ଜଣେ ଦେବତୁଲ୍ୟ ବ୍ୟକ୍ତି ଥିଲେ । ତାଙ୍କର ସ୍ଥିତି ଓ ବ୍ୟକ୍ତିତ୍ୱ ସେ କାର୍ଯ୍ୟ କରୁଥିବା ପରିବେଶକୁ ଦିବ୍ୟାୟିତ କରୁଥିଲା ।

ବିଭିନ୍ନ ସମୟରେ ଶ୍ରୀଯୁକ୍ତ ପାଣିଗ୍ରାହୀ ଅଞ୍ଚ କେତେକ ସାହିତ୍ୟିକମାନଙ୍କୁ ଏକାଠି କରି ଏକ କ୍ଷୁଦ୍ର ପରିବେଶରେ ସାହିତ୍ୟର ବିଭିନ୍ନ ବିଭାବ ସଂପର୍କରେ ଆଲୋଚନା କରୁଥିଲେ । ଉପସ୍ଥିତ ସାହିତ୍ୟିକମାନଙ୍କର ଜନ୍ମ ଦିବସ ମଧ୍ୟ ପାଳନ କରାଯାଉଥିଲା । ଜନ୍ମଦିନ ଉପଲକ୍ଷେ ଜଣେ ଅଧେ ସାହିତ୍ୟିକଙ୍କୁ ମଧ୍ୟ ସ୍ୱତନ୍ତ୍ର 'ଉପାଧି'ରେ ଭୂଷିତ କରାଯାଉଥିଲା । ଏଇ ସାହିତ୍ୟ ଆସରକୁ ମୋତେ ନିମନ୍ତ୍ରଣ କରାଯାଉଥିଲା । ମୁଁ ଏ ସୁଯୋଗକୁ ହାତଛଡ଼ା କରୁ ନ ଥିଲି । କାର୍ଯ୍ୟକ୍ରମର ଶେଷରେ ସମସ୍ତଙ୍କ ପାଇଁ ଜଳଯୋଗ ଓ ଖାଦ୍ୟପେୟରେ ଆପ୍ୟାୟିତ କରାଯାଉଥିଲା ।

ସମ୍ବଲପୁରର ଯେଉଁ ଉଦୀୟମାନ ଯୁବ ସାମ୍ବାଦିକ ବନ୍ଧୁମାନଙ୍କ ସହିତ ମୋର ଭାବଗତ ସଂପର୍କ ଥିଲା ସେମାନେ ହେଲେ ସର୍ବଶ୍ରୀ ଶିବପ୍ରସାଦ ତ୍ରିପାଠୀ, ମନୋରଞ୍ଜନ ପଟ୍ଟନାୟକ, ଲକ୍ଷ୍ମୀନାରାୟଣ ମିଶ୍ର ଓ ବୀରେନ୍ଦ୍ର ପାଣିଗ୍ରାହୀ । ମନୋରଞ୍ଜନ ବାବୁ ଓ ବୀରେନ୍ଦ୍ର ବାବୁ ସମ୍ବଲପୁରର ଦୈନିକ ସମ୍ବାଦ 'କୋଶଳ' ସହିତ ସଂପୃକ୍ତ ଥିଲେ । ଦୈନିକ 'କୋଶଳ'ର ସଂପାଦକ ଶ୍ରୀଯୁକ୍ତ ତ୍ରିବିକ୍ରମ ତ୍ରିପାଠୀ ଜଣେ ଦକ୍ଷ, ନିରପେକ୍ଷ ଓ କର୍ମଠ ସଂପାଦକ ଭାବେ ବିଶେଷ ପରିଚିତ ଥିଲେ । ଏହାଛଡ଼ା ବରଗଡ଼ରୁ ପ୍ରକାଶିତ ହେଉଥିବା ଶିଶୁପତ୍ରିକା 'ସୁବର୍ଣ୍ଣଦୀପ'ର ସଂପାଦକ ପ୍ରଦୀପ୍ତଭାନୁ ମହାନ୍ତି ଓ ଶିଶୁ ସାହିତ୍ୟିକ ତ୍ରିଲୋଚନ ମଥାନଙ୍କ ସହିତ ମୋର ଭାବଗତ ସଂପର୍କ ମଧ୍ୟ ରହିଥିଲା ।

ସମ୍ବଲପୁରର ଅନ୍ୟତମ ଯଶସ୍ୱୀ ସାହିତ୍ୟିକ ହେଉଛନ୍ତି ମଙ୍ଗୁଳୁ ଚରଣ ବିଶ୍ୱାଳ । ତାଙ୍କ ସହିତ ମୋର କବି ଅନନ୍ତ ପଟ୍ଟନାୟକଙ୍କ ଦ୍ୱାରା ବ୍ରହ୍ମପୁରଠାରେ ଶିଶୁଲେଖା ଆନୁକୂଲ୍ୟରେ ୧୯୮୦ ମସିହାରେ ଆୟୋଜିତ ହୋଇଥିବା ଆଲୋଚନା ଚକ୍ରରେ ଦେଖା ସାକ୍ଷାତ ହୋଇଥିଲା । ମୁଁ ହାଇସ୍କୁଲ ସ୍ତରରେ ପାଠ ପଢ଼ିଲାବେଳେ ସ୍ୱର୍ଗତଃ ରାମକୃଷ୍ଣ ନନ୍ଦଙ୍କ ସଂପାଦିତ 'ସଂସାର' ପତ୍ରିକାରେ ତାଙ୍କ ରଚିତ ଏକ କବିତା ପଢ଼ିବାର ସୁଯୋଗ ପାଇଥିଲି । ସେ କବିତାଟିର ପ୍ରଥମ ଧାଡ଼ି "ବିଶ୍ୱ ଦେଖିଲ ମଧୁମୟ ତୁମେ ନିଃସ୍ୱ ପାଇଁକି ଗାଇଲ ଗୀତି" ଏବେ ମଧ୍ୟ ମୋ ହୃଦୟରେ ସାଇତା ହୋଇ ରହିଅଛି । ସେହିପରି ଆଉ ଜଣେ ଦରଦୀ ବ୍ୟଙ୍ଗ କବି ମନୋରଞ୍ଜନ ସାହୁଙ୍କ ସହିତ ମୋର କେତୋଟି ସ୍ମରଣୀୟ ମୁହୂର୍ତ୍ତ ଏବେ ମଧ୍ୟ ମୋ ହୃଦୟକୁ ଆନ୍ଦୋଳିତ କରେ ।

ସମ୍ବଲପୁରର ତତ୍କାଳୀନ ବୟୋଜ୍ୟେଷ୍ଠ ସାହିତ୍ୟିକ ଓ ଭାଷାବିତ୍ ହେଉଛନ୍ତି ସ୍ୱର୍ଗତଃ ନୃସିଂହ ଚରଣ ଗୁରୁ । ସେ ସମ୍ବଲପୁରୀ ଭାଷାର ପ୍ରଥମ ବ୍ୟାକରଣ ରଚୟିତା ଭାବେ ଜଣାଶୁଣା । ତାଙ୍କ ଦେହାନ୍ତ ପରେ ମୁଁ ତାଙ୍କ ଅମରଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ ଏକ କବିତା ଲେଖିଥିଲି । ତାହା ଦୈନିକ ହୀରାଖଣ୍ଡରେ ପ୍ରକାଶିତ ହୋଇଥିଲା ।

## ଦୁର୍ଗା ପୁସ୍ତକ ଭଣ୍ଡାର ଓ ମୋ ପ୍ରକାଶିତ ପୁସ୍ତକ

ସମ୍ବଲପୁରର ରହଣି ମଧ୍ୟରେ ମୋର ଜଣେ ବୟୋଜ୍ୟେଷ୍ଠ ଶିକ୍ଷାବିତ୍ ତଥା ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଉଦୟନାଥ ପଣ୍ଡାଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିଲା । ସେ ସେତେବେଳେ ସମ୍ବଲପୁରରେ ଧନକଉଡ଼ାସ୍ଥିତ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ବିଦ୍ୟାଳୟର ଅଧ୍ୟକ୍ଷ ଥିଲେ । ଏଇ ବିଦ୍ୟାଳୟ ପରିଚାଳିତ ବିଭିନ୍ନ ସହ ପାଠ୍ୟକ୍ରମ ଭିତ୍ତିକ କାର୍ଯ୍ୟକ୍ରମରେ ଯୋଗଦାନ କରିବାକୁ ମୁଁ ସେ ଅନୁଷ୍ଠାନ ତରଫରୁ ବିଭିନ୍ନ ସମୟରେ ନିମନ୍ତ୍ରଣ ପାଉଥିଲି । ଏହା ଫଳରେ ସମ୍ବଲପୁର ଅଞ୍ଚଳର ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ଓ ଶିକ୍ଷାର୍ଥୀଙ୍କ ଅଭିଭାବକମାନଙ୍କ ସହିତ ମୋର ସଂପର୍କ ଗଢ଼ି ଉଠିଥିଲା । ଶ୍ରୀଯୁକ୍ତ ପଣ୍ଡା ଜଣେ ଲେଖକ ଥିଲେ । ସେତେବେଳେ ସମ୍ବଲପୁରରେ ଜଣେ ଉଦୀୟମାନ ଯୁବକ ବିମଳ ଶାହାଙ୍କ ଦ୍ୱାରା ଗେଇଟିଟକି ରୋଡ଼ସ୍ଥିତ ମାର୍କେଟ କମ୍ପ୍ଲେକ୍ସରେ ଦୁର୍ଗାପୁସ୍ତକ ଭଣ୍ଡାର ପ୍ରତିଷ୍ଠିତ ହୋଇଥିଲା । ସେ ଜଣେ ପ୍ରକାଶକ ହୋଇଥିବା ହେତୁ ଶ୍ରୀଯୁକ୍ତ ପଣ୍ଡାଙ୍କ ଲିଖିତ ଶିକ୍ଷାର୍ଥୀ ଉପଯୋଗୀ ଅନେକ ବହି ଛପାଉ ଥିଲେ ।

ଦିନେ ମୋତେ ଉଦୟବାବୁ କଥା ପ୍ରସଙ୍ଗରେ କହିଲେ, "ବ୍ରହ୍ମା ବାବୁ ! ମୋର ପ୍ରକାଶକ ବିମଳ କୁମାର ଶାହ, ମୋତେ କହୁଛନ୍ତି ଯେ ସମ୍ବଲପୁରରୁ ବିଶ୍ୱବିଦ୍ୟାଳୟର ବି.ଏଡ୍ ଓ ଏମ୍.ଏଡ୍ ପାଠ୍ୟକ୍ରମ ଅନୁସାରେ ଏକ ଶିକ୍ଷା ଦର୍ଶନ ପୁସ୍ତକ ବହି ନାହିଁ । ସେ ବହି ଖଣ୍ଡକ ଆପଣ ଲେଖିଦେବେ ବୋଲି ମୋର ବିଶ୍ୱାସ । ଆପଣ କ'ଣ କହୁଛନ୍ତି ?"

ମୋର ସେତେବେଳର ଦରମା ମୋ ପରିବାର ଚଳାଇବା ପାଇଁ ଯଥେଷ୍ଟ ନ ଥିଲା । ସବୁବେଳେ ମୁଁ ଅଭାବବୋଧ ଅନୁଭବ କରୁଥିଲି । ତେଣୁ ମୁଁ ସଙ୍ଗେ ସଙ୍ଗେ କିଛି ପାରିଶ୍ରମିକ ପାଇବା ଆଶାରେ ରାଜି ହୋଇଗଲି ।

ସେଦିନ ସନ୍ଧ୍ୟାରେ ସେ ମୋତେ ବିମଳବାବୁଙ୍କ ସହିତ ସାକ୍ଷାତ କରାଇଲେ । ବିମଳବାବୁଙ୍କ ସହ କଥାବାର୍ତ୍ତାରୁ ମୁଁ ଜାଣି ପାରିଲି ଯେ ସେ ହେଉଛନ୍ତି ଜଣେ ବିଜ୍ଞ ଓ ଶିକ୍ଷିତ ଉଦୀୟମାନ ପ୍ରକାଶକ । ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ବି.ଏଡ୍., ଏମ୍.ଏଡ୍ ପାଠ୍ୟକ୍ରମ ସହିତ ଅନ୍ୟ ଭାରତୀୟ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ନେଇ କେଉଁ କେଉଁ ଅଧ୍ୟାୟ ରହିବ ସେ ସଂପର୍କରେ ସୂଚନା ଦେଲେ ।

ମୁଁ ସିନା ହଁ ମାରିଦେଲି, ମାତ୍ର ଦର୍ଶନ ପୁସ୍ତକଟିଏ ଲେଖିବା ମୋ ପକ୍ଷରେ ଏତେ ସହଜ ନ ଥିଲା । ତେଣୁ ମୁଁ ମୋର ଅଧ୍ୟୟନ ଓ ଅଧ୍ୟାପନାକୁ ପୁଞ୍ଜି କରି ଗୋଟିଏ ପରେ ଗୋଟିଏ ଅଧ୍ୟାୟ ଲେଖିବାକୁ ଆରମ୍ଭ କଲି ।

ମଝିରେ ମଝିରେ ସମ୍ବଲପୁରର ଗୋଲବଜାର ଅଞ୍ଚଳରେ ପରିବାର ସହିତ ବୁଲିବାବେଳେ ଯେତେବେଳେ ବିମଳବାବୁଙ୍କ ନଜର ବାଟଘାଟରେ ପଡ଼ି ଯାଉଥିଲା,

ସେତେବେଳେ ସେ ମୋ ପାଖକୁ ଆସୁଥିଲେ । ଥଣ୍ଡା ପାନୀୟ ଓ 'ବଙ୍ଗଳା ପତା' ପାନ ଦେଇ ଆପ୍ୟାୟିତ କରୁଥିଲେ । ମୁଁ ଯେତେ ମନା କଲେ ମଧ୍ୟ ସେ ମୋତେ ବାଧ୍ୟ କରୁଥିଲେ । ଏ ଆତିଥ୍ୟ ମୋର ପୁସ୍ତକ ରଚନା ପାଇଁ ଏପରି ଭାବଗତ ଅଭିପ୍ରେରଣା ଥିଲା ଯେ ମୁଁ ଲଜ୍ଜିତ ହୋଇ ଅଧ୍ୟାୟଗୁଡ଼ିକୁ ଲେଖି କିପରି ତାଙ୍କୁ ଦେବି ସେଥିପାଇଁ ଯତ୍ନଶୀଳ ହୋଇ ପଡୁଥିଲି । କ୍ରମାଗତ ଉଦ୍ୟମ ଫଳରେ ସମୁଦାୟ ବୟାଳିଶିଟି ଅଧ୍ୟାୟକୁ ନେଇ ମୋର ଶିକ୍ଷା ସଂପର୍କୀୟ ପ୍ରଥମ ପୁସ୍ତକ Education in the Emerging Indian Society ଶାହା ପବ୍ଲିଶର୍ସ ଓ ଡ଼ିଷ୍ଟ୍ରିବ୍ୟୁଟର ଦ୍ୱାରା ୧୯୮୨ ମସିହା ବସନ୍ତ ପଞ୍ଚମୀ ଦିନ ଆତ୍ମ ପ୍ରକାଶ କଲା ।

ଏହି ଶିକ୍ଷା ଦର୍ଶନ ପୁସ୍ତକଟି ସମ୍ବଲପୁର ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ଶିକ୍ଷା ପାଠ୍ୟକ୍ରମ ପଢୁଥିବା ଛାତ୍ରଛାତ୍ରୀମାନଙ୍କର ଅଭୂତପୂର୍ବ ଆବଶ୍ୟକତା ମେଣ୍ଟାଇ ପାରିଲା । ଏଥିରେ ବିମଳ ବାବୁ ଖୁସି ହେଲେ । ଏଇ ଅବସରରେ ମୁଁ ମୋ ରଚିତ ଶିଶୁ କିଶୋର ଉପନ୍ୟାସ 'ମୁନା ଡ଼ାକ୍ତର' ପ୍ରକାଶ କରିବାକୁ ତାଙ୍କୁ ଅନୁରୋଧ କଲି । ସେ ମୋର ଅନୁରୋଧ ରକ୍ଷା କରି ଏଇ ଉପନ୍ୟାସଟିକୁ ପ୍ରକାଶ କଲେ ।

ସଂପ୍ରତି ଆମ ଦେଶ ଓ ବିଦେଶରେ ୧୯୯୪ମସିହାରେ କାଇରୋ ଠାରେ ଅନୁଷ୍ଠିତ ହୋଇଥିବା ବିଶ୍ୱ ସମ୍ମିଳନୀର ସୁପାରିଶ ଅନୁଯାୟୀ ଭାରତୀୟ ଭେଷଜ ପଦ୍ଧତି (Indian Medicine System)ର ପ୍ରୟୋଗ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଅଛି । ମାତ୍ର ଶିଶୁ କିଶୋରମାନଙ୍କୁ ଆମ ଦେଶର ପାରମ୍ପରିକ ଚିକିତ୍ସା ପଦ୍ଧତି ସଂପର୍କରେ ଏକ ଉପନ୍ୟାସ ମାଧ୍ୟମରେ ଆକର୍ଷିତ କରିବା ନିମନ୍ତେ 'ମୁନା ଡ଼ାକ୍ତର'ରେ ୧୯୮୪ ମସିହାରେ ଯଥେଷ୍ଟ ଉପାଦାନ ଦେବା ନିମନ୍ତେ ପ୍ରୟାସ କରାଯାଇଥିଲା । ଜଣେ ପ୍ରକାଶକଙ୍କ ଦ୍ୱାରା ଏଇ ପୁସ୍ତକଟି ପ୍ରକାଶିତ ହୋଇଥିବା ହେତୁ ଏହା ରାଜ୍ୟର ବିଭିନ୍ନ ପାଠାଗାରରେ ଥିବା କଥା ମୁଁ ପରବର୍ତ୍ତୀ ସମୟରେ ଲକ୍ଷ୍ୟ କରିଥିଲି । 'ମୁନା ଡାକ୍ତର' ଉପନ୍ୟାସ ଆଜି କିଶୋର ସାହିତ୍ୟ ଜଗତରେ ସ୍ୱତନ୍ତ୍ର ସ୍ୱୀକୃତି ପାଇ ପାରିଅଛି ।

ଶିକ୍ଷାଦର୍ଶନ ପୁସ୍ତକଟି ପ୍ରକାଶିତ ହେବାର କିଛି ଦିନ ପରେ ମୋତେ ଦିନେ ବିମଳବାବୁ କହିଲେ, "ବ୍ରହ୍ମାବାବୁ ! ଆପଣଙ୍କ କଲେଜର ଜଣେ ବୟସ୍କ ଅଧ୍ୟାପକ ମୋତେ ଆସି କହିଲେ, "ଆମ ଭଳି ଅଭିଜ୍ଞ ଅଧ୍ୟାପକମାନେ ଥାଉ ଥାଉ ଆପଣ କେମିତି କାଲି ସକାଳର ଜଣେ ଅନଭିଜ୍ଞ ଅଧ୍ୟାପକଙ୍କର ବହି ଛପାଇ ଦେଲେ ?"

ଏହା କହି ସେ ନୀରବ ରହିଲେ । ମୁଁ କହିଲି, "ଆପଣ କ'ଣ କହିଲେ ?" ସେ କହିଲେ, "ମୁଁ ତାଙ୍କୁ କହିଲି ଦୀର୍ଘ ତିନିବର୍ଷ ହେଲା ଅନେକ ଅଭିଜ୍ଞ ଅଧ୍ୟାପକମାନଙ୍କୁ

ଏଇ ପ୍ରକାରର ବହିଟିଏ ଲେଖିଦେବାକୁ କହିଛି । ସମସ୍ତେ ହଁ, ହାଁ, ମାରି ଚାଲିଗଲେ । କେହି ଜଣେ ହେଲେ ଲେଖି ଦେଲେ ନାହିଁ । ଆପଣ ଯଦି ଏହାର ଏକ ଦଶମାଂଶ ଲେଖିଦେବେ, ତେବେ ମୁଁ ଆପଣଙ୍କ ପାଖରେ ଉପକୃତ ହେବି ।"

ସେ ପୁଣି ଆରମ୍ଭ କଲେ, "ମୁଁ ତାଙ୍କୁ ଶୁଣାଇ କହିଲି ଜୀବନରେ ଅନେକ ତଥା କଥିତ ଅଭିଜ୍ଞ ଅଧ୍ୟାପକମାନଙ୍କୁ ଦେଖିଛି । ଖାଲି କଥାରେ, କିନ୍ତୁ କାମରେ କିଛି ନୁହଁନ୍ତି ।"

ମୁଁ ବିମଳବାବୁଙ୍କ ମୁହଁରୁ ଏପରି ମନ୍ତବ୍ୟ ଶୁଣି ନୀରବ ରହିଲି । ତାଙ୍କର ମନ୍ତବ୍ୟ କେତେ ସତ କେତେ ମିଛ ସେ ସଂପର୍କରେ ମତାମତ ଦେବା ମୋ ପକ୍ଷରେ ଠିକ୍ ହେବ ନାହିଁ ବୋଲି ମନେ କଲି ।

ତା'ପରେ ସେ ମୋ ଆଡ଼କୁ ଚାହିଁଲେ । କହିଲେ, "ବ୍ରହ୍ମାବାବୁ ! ଆପଣ ମୋ ପାଇଁ ଆଉ ଦୁଇତିନିଟି ବହି ଲେଖି ଦିଅନ୍ତୁ ।"

ମୁଁ ତାଙ୍କ କଥାରେ ରାଜି ହେଲି । ପରବର୍ତ୍ତୀ ସମୟରେ ମୁଁ Modern Approaches to Methods of Teaching History , Educational Administration and Supervision ନାମକ ଦୁଇଟି ବହି ଲେଖି ଥିଲି । ମୋର ଶିକ୍ଷା ପ୍ରଶାସନ ସଂପର୍କୀୟ ବହିଟି ଶିକ୍ଷାର୍ଥୀମାନଙ୍କର ବହୁଦିନର ଅଭାବ ମେଣ୍ଟାଇ ପାରିଥିଲା ।

ମୋତେ ଯେତେବେଳେ ଯେଉଁଠି ଦେଖନ୍ତି ରାଜ୍ୟର ଜଣେ ଶିକ୍ଷା ମଣ୍ଡଳାଧୀଶ ମୋ ପ୍ରତି ବିଶେଷ ସମ୍ମାନ ପ୍ରଦର୍ଶନ କରନ୍ତି । ମୁଁ ୨୦୦୩ ମସିହାରେ କୋରାପୁଟରେ ଚାକିରି କଲାବେଳେ ସେ ତତ୍କାଳୀନ କଲେକ୍ଟରଙ୍କୁ ମୋର ପରିଚୟ ପ୍ରଦାନ କରି କହିଥିଲେ ଯେ ମୁଁ ହେଉଛି ତାଙ୍କର ଶିକ୍ଷକ । ପରେ ଯେତେବେଳେ ମୁଁ ତାଙ୍କୁ ପଚାରିଥିଲି, "ଆପଣଙ୍କୁ ତ ମୁଁ କୌଣସିଠାରେ ପାଠ ପଢ଼ାଇ ନ ଥିଲି । ମାତ୍ର ମୁଁ ଆପଣଙ୍କ ଶିକ୍ଷକ ବୋଲି କାହିଁକି ଅନେକ ସମୟରେ କହୁଛନ୍ତି ?"

ସେ ସଙ୍ଗେ ସଙ୍ଗେ ମୋତେ କହିଲେ, "ଖାଲି ପ୍ରତ୍ୟକ୍ଷ ପାଠ ପଢ଼ାଇଲେ ଯେ ଜଣେ ଶିକ୍ଷକ ହେବେ ତାହା ନୁହେଁ । ମୁଁ ଯେତେବେଳେ ଓଡ଼ିଶା ଶିକ୍ଷା ସେବାର ପରୀକ୍ଷା ଦେଇଥିଲି ସେତେବେଳେ ଆପଣଙ୍କ ବହି Educational Administration & Supervision ପଢ଼ିବାର ସୁଯୋଗ ପାଇଥିଲି । ସେ ସମୟରେ ଆପଣଙ୍କ ଲିଖିତ ବହିଟି ମୋ ଭଳି ପରୀକ୍ଷାର୍ଥୀମାନଙ୍କ ପାଇଁ ନିତାନ୍ତ ଉପାଦେୟ ଥିଲା ।"

ମୋ ବହିର ଉପାଦେୟତା ସଂପର୍କରେ ବିଭିନ୍ନ ସମୟରେ ମୁଁ ଜାତୀୟସ୍ତରରୁ ମଧ୍ୟ ଜାଣିବାକୁ ପାଇଥିଲି । ଏକଦା ମୁଁ ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ନୂଆଦିଲ୍ଲୀର ଅତିଥି ଭବନରେ ଥିଲି । ସେ ସମୟରେ ଅନ୍ୟ ରାଜ୍ୟର ଜନୈକ ଶିକ୍ଷାବିତ୍

ମୋ ପରିଚୟ ଚାହିଁଥିଲେ । ମୁଁ ପରିଚୟ ଦେଲା ପରେ ପରେ ସେ ମୋତେ ପ୍ରଶ୍ନ କରିଥିଲେ, "ଆପଣ କ'ଣ ଶିକ୍ଷା ସଂପର୍କୀୟ ପୁସ୍ତକ ରଚନା କରିଛନ୍ତି ?" ହଁ ମାରିଥିଲି । ସେ ସଙ୍ଗେ ସଙ୍ଗେ ମୋ ରଚିତ ଦର୍ଶନ ପୁସ୍ତକର ସୂଚନା ଦେଲେ । ପରେ ମୁଁ ବିମଳ ବାବୁଙ୍କଠାରୁ ଜାଣିବାକୁ ପାଇଥିଲି ଯେ ସେ ସମୟରେ ମୋ ବହିଟିକୁ ରାଜ୍ୟ ବାହାରର କେତେକ ପ୍ରକାଶକ ତାଙ୍କଠାରୁ ମଗାଇ ନେଇଥିଲେ । ଏତଦ୍‌ବ୍ୟତୀତ ଅନ୍ୟ ରାଜ୍ୟର କେତେକ ବ୍ୟକ୍ତି ମଧ୍ୟ ଭି.ପି.ପି. ଦ୍ୱାରା ଏହି ବହିଟିର ପ୍ରାପ୍ତି ସ୍ୱୀକାର କରିଥିଲେ ।

ସମ୍ବଲପୁରର ସାଂସ୍କୃତିକ ପରିବେଶକୁ ଋଦ୍ଧିମନ୍ତ କରିଥିବା ଅନ୍ୟତମ ପ୍ରତିଭା ହେଉଛନ୍ତି ଡାକ୍ତର ଝସକେତନ ସାହୁ । ଥରେ ତାଙ୍କ ସହିତ ଉତ୍କଳ ଦିବସ କାର୍ଯ୍ୟକ୍ରମରେ ଭାଷଣ ଦେବାର ସୁଯୋଗ ମିଳିଥିଲା । ସେତେବେଳେ ସେ ଓଡ଼ିଶା ସରକାରଙ୍କ ଜନୈକ ମନ୍ତ୍ରୀ ଥିଲେ । ଏହି କାର୍ଯ୍ୟକ୍ରମଟି ଶ୍ରୀଯୁକ୍ତ ଗୌରୀଶଙ୍କର ପାଣିଗ୍ରାହୀଙ୍କ ବିଦ୍ୟାଳୟରେ ଆୟୋଜନ କରାଯାଇଥିଲା । ତାଙ୍କର ସେଦିନ ବୁର୍ଲାଠାରେ ଅନ୍ୟ ଏକ କାର୍ଯ୍ୟକ୍ରମ ଥିବାରୁ ସେ ପ୍ରଥମେ ତାଙ୍କର ଭାଷଣ ରଖିଥିଲେ । ତା'ପରେ ମୋର ଭାଷଣ ଆରମ୍ଭ ହେଲା । ମୁଁ ମୋର ଭାଷଣରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ସମ୍ବଲପୁରର ଅବଦାନ ସଂପର୍କରେ ଐତିହାସିକ ତଥ୍ୟ ଦେଇ ବିଭିନ୍ନ ତଥ୍ୟ ଉପସ୍ଥାପନ କଲି । ଏଇ ସମୟରେ ସେ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଯୋଗ ଦେବା ନିମନ୍ତେ ଉଠି ଆସିଲେ ।

ମୋର ବକ୍ତବ୍ୟ ସେମିତି ଚାଲିଥାଏ । ଦେଖିଲି ବାହାରେ ମୋ ଆଡ଼କୁ ଏକନିଷ୍ଠ ଭାବରେ ଡାକ୍ତର ସାହୁ ଚାହିଁ ରହିଛନ୍ତି । ମୋର ନଜର ତାଙ୍କ ଉପରେ ପଡ଼ିଲା । ମୁଁ ଭାବିଲି ବୋଧେ ହୁଏ ସେ ମୋତେ କିଛି କହିବାକୁ ଚାହୁଛନ୍ତି । କିନ୍ତୁ ମୁଁ କହିଚାଲିଥିବାରୁ ବୋଧେହୁଏ ଭରସି କିଛି କହିପାରୁ ନାହାଁନ୍ତି । ଏହା ଲକ୍ଷ୍ୟ କରି ମୁଁ ତାଙ୍କୁ ପଚାରିଲି, "ଆଜ୍ଞା ! ଆପଣ ମୋତେ କ'ଣ କିଛି କହିବେ ?"

ସେ ସଙ୍ଗେ ସଙ୍ଗେ ମନା କଲେ ଓ କହିଲେ, "ବ୍ରହ୍ମାବାବୁ ! ଆପଣ ଯେଉଁସବୁ ବିଷୟବସ୍ତୁ ବର୍ତ୍ତମାନ ଆଲୋଚନା କରୁଛନ୍ତି, ତାହା ମୁଁ ପୂର୍ବରୁ ଜାଣି ନଥିଲି । ସେଥିପାଇଁ ରହିଗଲି । ଆପଣ ଆପଣଙ୍କ ବକ୍ତବ୍ୟ ଆଗେଇ ନିଅନ୍ତୁ ।"

ଅନ୍ୟ ଏକ କାର୍ଯ୍ୟକ୍ରମର ଘଟଣା । ସେଦିନ ଥାଏ ଧାନକଉଡ଼ାସ୍ଥିତ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ପ୍ରତିଷ୍ଠାନର ବାର୍ଷିକ ଉତ୍ସବ । ସେ କାର୍ଯ୍ୟକ୍ରମରେ ମୁଁ କେବଳ ନିମନ୍ତ୍ରିତ ଅତିଥି ଥିଲି । ତେଣୁ ମୁଁ ସେଦିନ କଲେଜ କାମ ସାରି ସନ୍ଧ୍ୟାବେଳେ ଯାଇ ସଭାସ୍ଥଳରେ ପହଞ୍ଚିଲି । ସଭାକାର୍ଯ୍ୟ ଆରମ୍ଭ ହୋଇଯାଇଥିଲା । ମଞ୍ଚ ଉପରେ ଡାକ୍ତର ସାହୁ ଭାଷଣ ଦେଉଥାନ୍ତି । ମୁଁ ସଭାସ୍ଥଳରେ ପହଞ୍ଚି ସଭାର ଶେଷଭାଗରେ ପଡ଼ିଥିବା ଏକ ଚେୟାରରେ

ବସି ପଡ଼ିଲି । ହଠାତ୍ ଭାଷଣ ମଝିରେ ମାନ୍ୟବର ମନ୍ତ୍ରୀ ଡ଼ାକ୍ତର ସାହୁ ଅଟକି ଯାଇ କହିଲେ, "ବ୍ରହ୍ମାବାବୁ ! ଆପଣ କ'ଣ ସେଠି ବସିଛନ୍ତି । ଆପଣ ମୋ ପାଖକୁ ମଞ୍ଚ ଉପରକୁ ଆସନ୍ତୁ ।" ମୁଁ ମାନ୍ୟବର ମନ୍ତ୍ରୀ ମହୋଦୟଙ୍କ କଥା ରଖି ମଞ୍ଚ ଉପରକୁ ଗଲି । ସେ ଭାଷଣ ସାରିଲା ପରେ କହିଲେ, "ବ୍ରହ୍ମାବାବୁ ! ମୋତେ ମୋ ପରମେଶ୍ୱର (ରୋଗୀ)ମାନେ ମୋ କ୍ଲିନିକ୍‌ରେ ଅପେକ୍ଷା କରିଥିବେ । ଆପଣ ମୋ ତରଫରୁ କେତେକ ପ୍ରାଇଜ୍ ପିଲାମାନଙ୍କୁ ଦେଇଦେବେ ।" ଏହା କହି ସେ ମଞ୍ଚଛାଡ଼ି ଚାଲିଗଲେ ।

ଡ଼ାକ୍ତର ସାହୁଙ୍କ ସହିତ ମୋର ପରିଚୟ ଏଇ ଗୋଟିଏ ଦୁଇଟି ଘଟଣା ମଧ୍ୟରେ ସୀମାବଦ୍ଧ ଥିଲା । ତାଙ୍କର ଦେହାନ୍ତ ପରେ ମୁଁ 'ପ୍ରଜାତନ୍ତ୍ର'ରେ ତାଙ୍କ ସଂପର୍କରେ ପ୍ରକାଶିତ ବିଭିନ୍ନ ପ୍ରବନ୍ଧ ପଢ଼ିବାର ସୁଯୋଗ ପାଇଥିଲି । ତାଙ୍କର ସାହିତ୍ୟିକ ଜୀବନର ଅବଦାନ ଯୋଗୁଁ ସେ ବହୁ ସମ୍ମାନ, ମାନପତ୍ର ଏବଂ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ବିଷୁବ ସମ୍ମାନ ପାଇଥିଲେ ।

ଆମ ରାଜ୍ୟରେ ସମ୍ବଲପୁରର ତତ୍‌କାଳୀନ ସମାଜସେବୀ ଶ୍ରଦ୍ଧାକର ସୂପକାରଙ୍କ ସ୍ୱତନ୍ତ୍ର ସ୍ଥାନ ଅଛି । 'ହୀରାଖଣ୍ଡ'ର ସଂପାଦନା ଦାୟିତ୍ୱର ବହୁ ପୂର୍ବରୁ ମୋର ତାଙ୍କ ସହିତ ସମ୍ବଲପୁରରେ ପରିଚୟ ହୋଇଥିଲା । ଅନେକ ସମୟରେ ସେ ଆମ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ଆସୁଥିଲେ ଓ ମୋ ସହିତ ଲାଇବ୍ରେରୀକୁ ଯାଇ ବହି ଦେଖୁଥିଲେ । ଶିକ୍ଷାଦାନ ସଂପର୍କୀୟ ଗୋଟିଏ ଦୁଇଟି ବହି ମୋ ନାମରେ ସେ ଲାଇବ୍ରେରୀରୁ ନେଉଥିଲେ । ତିନି ଚାରିଦିନ ପରେ ବହିଗୁଡ଼ିକ ମୋତେ ଫେରାଇ ଦେଉଥିଲେ । ମୁଁ ନ ଥିଲେ ଲାଇବ୍ରେରୀୟାନ ଶ୍ରୀଯୁକ୍ତ ବିନୋଦ ଭୂଷଣ ପରିଜାଙ୍କୁ ବହି ଫେରସ୍ତ ଦେଉଥିଲେ ।

ଡକ୍ଟର ସୂପକାର ଥିଲେ ଜଣେ ଗାନ୍ଧିବାଦୀ ମଣିଷ, ସମାଜ ସଂସ୍କାରକ, ସାଂସଦ ଓ ଆମ ରାଜ୍ୟର ବିଧାୟକ । ପ୍ରାଚୀନ ଭାରତର ମନୁ ଆଇନ ଶୀର୍ଷକ ଗବେଷଣା କରି ସେ ପିଏଚ.ଡ଼ି ଡିଗ୍ରୀ ହାସଲ କରିଥିଲେ । କଥା ପ୍ରସଙ୍ଗରେ ଥରେ ମୋତେ କହିଥିଲେ, "ବ୍ରହ୍ମାବାବୁ, ପ୍ରାଚୀନ କାଳରେ ପ୍ରଚଳିତ ମନୁ ଆଇନ ଅତି କଠୋର ଥିଲା । ଜଣେ ଅପରାଧୀ ଯେମିତି ତା'ର ଅପରାଧକୁ ଲୁଚାଇ ପାରିବ ନାହିଁ, ସେଥିପାଇଁ ମଧ୍ୟ ବ୍ୟବସ୍ଥା କରାଯାଉଥିଲା । ଅର୍ଥାତ୍ ଯେଉଁଲୋକ ଯେପରି ଅପରାଧ କରୁଥିଲା, ସେଇ ଅପରାଧର ସାଂକେତିକ ଛବି ତା'ର ମୁଖ ମଣ୍ଡଳରେ ଚିତାକୁଟି ଅଙ୍କା ଯାଉଥିଲା । ଏହା ଫଳରେ ସେ ତା'ର ଅପରାଧକୁ କୌଣସି ମତେ ଲୁଚାଇ ରଖିପାରୁ ନ ଥିଲା ।"

ମୁଁ ସମ୍ବଲପୁର ଛାଡ଼ି ଆସିଲା ପରେ ମୋର ଡକ୍ଟର ସୂପକାରଙ୍କ ସହିତ ଦୀର୍ଘଦିନ ଧରି ଦେଖାସାକ୍ଷାତ ହୋଇ ନ ଥିଲା । ପରବର୍ତ୍ତୀ ସମୟରେ ସେ ରାଜ୍ୟ ବିଧାନ ସଭାକୁ ସଦସ୍ୟ ଭାବେ ନିର୍ବାଚିତ ହୋଇ ଆସିଥିଲେ । ଥରେ ମୋତେ ଏସ୍.ସି.ଇ.ଆର୍.ଟି କାର୍ଯ୍ୟାଳୟ ଆଗ ରାସ୍ତାରେ ଦେଖି କହିଲେ, "ବ୍ରହ୍ମାବାବୁ ! ମୁଁ ଆପଣଙ୍କୁ ଇତି ମଧ୍ୟରେ କେତେ ଖୋଜିଛି ।"

ମୁଁ ପଚାରିଲି, "ସାର୍ ! କାହିଁକି ?"

ସେ କହିଲେ, "ଆପଣ ମୋର ସଂପର୍କୀୟଙ୍କ ପିଏଚ.ଡ଼ି ଥେସିସ୍‌ର ଗାଇଡ଼ ହୋଇଥାନ୍ତେ ।"

ଏହା କହି ସେ ନୀରବ ରହିଲେ । ବୋଧେ ହୁଏ ସେ ଦାୟିତ୍ୱ ସେତେବେଳକୁ ସେ ଆଉ କାହାକୁ ଦେଇ ଦେଇଥିଲେ । ସେଦିନର ସେ ମୁହୂର୍ତ୍ତ ହିଁ ମୋର ଥିଲା ତାଙ୍କ ସହିତ ଶେଷ ସାକ୍ଷାତ ।

**ସାବିତ୍ରୀ ନିବାସ : ମୋ ବାସସ୍ଥାନ**

ସମ୍ବଲପୁର ଧନକଉଡ଼ା ବ୍ଲକ ନିକଟସ୍ଥ ସାବିତ୍ରୀ ନିବାସର ଉପର ମହଲା ମୋର ବାସସ୍ଥାନ ଥିଲା । ଏଥିରେ ତିନୋଟି ଘର ଓ ଗୋଟିଏ ରୋଷେଇ ଘର ଥିଲା । ୧୯୭୭ ମସିହାରୁ ୧୯୮୩ ମସିହା ଜାନୁୟାରୀ ମାସର ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ମୁଁ, ମୋର ପତ୍ନୀ ଓ ପିଲାମାନେ ଏଇ ଘରେ ରହୁଥିଲୁ । ଏଇ ଘରର ମାଲିକ ଜଣେ ପୌଢ଼ାଭଦ୍ର ମହିଳା ଥିଲେ । ତାଙ୍କର ଭୁଜ ନାମକ ଜଣେ ନାତି ଥିଲା । ସେ ସେତେବେଳେ ଗଙ୍ଗାଧର ମେହର କଲେଜର ଛାତ୍ର ଥିଲା । ପୌଢ଼ାଜଣକ କଠୋର ମନୋଭାବର ହେଲେ ମଧ୍ୟ ମୋ ପିଲାମାନଙ୍କ ପ୍ରତି ତାଙ୍କ ମନରେ ଅତୁଟ ସ୍ନେହ ଥିଲା । ମୋର ଶିଶୁ ପୁତ୍ର ବାପି ଓ ମୁନୁକୁ ସେ ବେଶୀ ଭଲ ପାଉଥିଲେ । ତାଙ୍କ ଭୟରେ ମୋ ପିଲାମାନଙ୍କୁ କେହି କିଛି କହିବାକୁ ସାହସ କରୁ ନ ଥିଲେ ।

ମୁଁ କେମିତି ଓ କିପରି ଯାଇ 'ସାବିତ୍ରୀ' ନିବାସକୁ ମୋ ଭଡ଼ାଘର ରୂପେ ବାଛିଲି ତାହା ଆଜି ମୋର ମନେ ନାହିଁ । ବୋଧେ ହୁଏ ଏହା ବିଧି ନିର୍ଦ୍ଦିଷ୍ଟ ଥିଲା । ଥରେ ସ୍ୱାସ୍ଥ୍ୟ ବିଭାଗର ଜଣେ ଅଧସ୍ତନ କର୍ମଚାରୀଙ୍କ ସହିତ ମୁଁ ଶାସନ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ପହଞ୍ଚିଲି । ସେ ସ୍ୱାସ୍ଥ୍ୟ କେନ୍ଦ୍ରର ଡ଼ାକ୍ତର ମୋତେ ପ୍ରସଙ୍ଗ କ୍ରମେ ପଚାରିଥିଲେ, "ଆପଣ ଧନକଉଡ଼ାର କେଉଁଠାରେ ରହୁଛନ୍ତି ?"

ମୁଁ ଉତ୍ତର ଦେଲି, "ସାବିତ୍ରୀ ନିବାସ"ରେ । ସେ ଏକଥା ଶୁଣି ବହୁତ ଖୁସିହେଲେ ଓ କହିଲେ, "ମୁଁ ମଧ୍ୟ କିଛି ବର୍ଷ ପାଇଁ ସେ ଘରେ ରହିଥିଲି । ସେ ଘରେ ଯିଏ ରହିବେ ତାଙ୍କର ନିଶ୍ଚିତ ଭାବେ ଉନ୍ନତି ଘଟିବ ।"

ମୁଁ ତାଙ୍କ କଥା ଶୁଣିଲି । କୌଣସି ମତାମତ ଦେଲି ନାହିଁ । ଗୋଟିଏ ଘରର ରହଣି ଯେ ବ୍ୟକ୍ତିର ଉନ୍ନତିରେ ସହାୟକ ହୁଏ, ତାହା ଜାଣି ମନେ ମନେ ଖୁସି ହେଲି ।

ସାବିତ୍ରୀ ନିବାସର ଉପର ମହଲାର ରାସ୍ତାପଟକୁ ଥିବା ଅଂଶ ବାଲ୍‌କୋନୀ ଭଳି ଥିଲା । ପାର୍ଶ୍ୱସ୍ଥ ବେଲଗଛର ଛାୟା ଏଇ ଛାତଟି ଉପରେ ପଡୁଥିଲା । ସେଇ ଖୋଲା ଅଂଶ ଓ ବେଲଗଛର ଛାୟା ହୋଇଗଲା ମୋର ଅଧ୍ୟାପକ ଜୀବନର ସାଧନା ପୀଠ । ସେଇଠାରେ ମୁଁ ଲେଖିଥିଲି ମୋ ଶିକ୍ଷା ସଂପର୍କୀୟ ତିନୋଟି ପୁସ୍ତକ । ଏଇ ବେଲଗଛର ଡାଳତଳେ ମୋର ଶିଶୁ ସାହିତ୍ୟ ଗଳ୍ପ "ଆସ ସଙ୍ଗାତ ବଣକୁ ଯିବା", କିଶୋର ଉପନ୍ୟାସ ମୁନ୍ନା ଡାକ୍ତର, ବନ୍ଧୁ ଫାସିଆର ଆଚାର୍ଯ୍ୟଙ୍କ ସହିତ ଯୁଗ୍ମ ଲେଖକ ଭାବେ ପ୍ରକାଶିତ ହୋଇଥିବା ଶିଶୁ ଗଳ୍ପ ସଂକଳନ "ଶିକ୍ଷାଦୁନିଆର କଥା ରାଇଜ"ର କେତେକ ଗଳ୍ପ ରଚିତ ହୋଇଥିଲା । ଏତଦ୍‌ବ୍ୟତୀତ ଗବେଷଣାତ୍ମକ କେତକ ସନ୍ଦର୍ଭ ମଧ୍ୟ ଏଇଠାରେ ପ୍ରସ୍ତୁତ ହୋଇଥିଲା ।

ସାବିତ୍ରୀ ନିବାସରେ ଥିଲାବେଳେ ଅନେକ ସାହିତ୍ୟିକ ବନ୍ଧୁ ବିଭିନ୍ନ ସମୟରେ ମୋତେ ଦେଖା କରିବାକୁ ଆସୁଥିଲେ । ଏଇ ନିବାସରେ ମୋତେ ଖୋଜି ଖୋଜି ବରଗଡ଼ ନିବାସୀ ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ଦୟାଲାଲ ଯୋଶୀ ଆସି ପହଞ୍ଚିଥିଲେ । ସେ ଯଥେଷ୍ଟ ବୟସ୍କ ଓ ସେ ସମୟର ଜଣେ ଆଗଧାଡ଼ିର ସାହିତ୍ୟିକ ଥିଲେ । ଜଣେ ଜଣାଶୁଣା ସ୍ତମ୍ଭକାର ରୂପେ ମଧ୍ୟ ସେ ରାଜ୍ୟରେ ପରିଚିତ ଥିଲେ ।

ଦିନେ ଆମ ଘରେ ପହଞ୍ଚି ମୋତେ ନିଜର ପରିଚୟ ଦେଇ କହିଲେ, "ବ୍ରହ୍ମାବାବୁ ! ମୁଁ ଆପଣଙ୍କର ଅନେକ ଲେଖା ପଢ଼ିଛି । ସେ ସବୁ ଗଳ୍ପ ଓ ପ୍ରବନ୍ଧ ମୋତେ ଭଲ ଲାଗେ । ଆଜି କାହିଁକି କେଜାଣି ଆପଣଙ୍କ ସହିତ ମିଶିବାକୁ ଇଚ୍ଛା ହେଲା । ତେଣୁ ଡ୍ରାଇଭରକୁ କହିଲି, ଧନକଉଡ଼ା ଅଭିମୁଖେ ଗାଡ଼ି ଚଳାଇବାକୁ ।"

ମୁଁ ଦେଖିଲି ଜଣେ ଦୀର୍ଘକାୟ ଧୋତି ପରିହିତ ଗୌରବର୍ଣ୍ଣର ପ୍ରୌଢ଼ ମଣିଷଟିଏ ମୋ ଆଗରେ ହସ ହସ ମୁହଁରେ ଆସି ଠିଆ ହୋଇ ଗପି ଚାଲିଛନ୍ତି । ମୁଁ କାଳ ବିଳମ୍ବ ନ କରି ତାଙ୍କୁ ଉପର ମହଲାସ୍ଥ ମୋର ବୈଠକ ଘରକୁ ଡାକିଲି । ବେଶ କିଛି ସମୟ ତାଙ୍କ ସହିତ ଚା' ପାନ ସହିତ ଅନ୍ତରଙ୍ଗ ଆଳାପ ହେଲା । ସେ ମୋତେ ବରଗଡ଼ ଗଲେ ତାଙ୍କ ଘରକୁ ଆସିବାକୁ ନିମନ୍ତ୍ରଣ କଲେ ଓ ତାଙ୍କ ଟେଲିଫୋନ ନମ୍ବର ମଧ୍ୟ ଦେଲେ ।

ଏହାପରେ ମୁଁ ବରଗଡ଼ ଟାଉନ ହଲରେ ଅନେକ ଥର ସାହିତ୍ୟ ଆଲୋଚନା ଚକ୍ରରେ ତାଙ୍କ ସହିତ ଦେଖା ସାକ୍ଷାତ ହେବାର ସୁଯୋଗ ମଧ୍ୟ ପାଇଅଛି । ତାଙ୍କ ଘରକୁ ମଧ୍ୟ ଅନେକ ଥର ଯାଇଛି । ତାଙ୍କର ଶ୍ରଦ୍ଧା ଓ ଆତିଥ୍ୟ ମୋତେ ଚମତ୍କୃତ କରିଛି ।

ମୋତେ ସାବିତ୍ରୀ ନିବାସରେ ଥରେ ସିନାପାଲି କଲେଜର ଶିକ୍ଷା ବିଭାଗର ଜନୈକ ଯୁବ ଅଧ୍ୟାପକ ଛତରିଆ ବାବୁ ଆସି ଦେଖା କରିଥିଲେ । ସେ ମୋତେ ତାଙ୍କ କଲେଜର ଶିକ୍ଷା ବିଭାଗର ଦ୍ୱିତୀୟ ବର୍ଷ ପିଲାମାନଙ୍କର ପ୍ରାକ୍‌ଟିକାଲ୍ ପରୀକ୍ଷା କରିବା ନିମନ୍ତେ ଅନୁରୋଧ କରିଥିଲେ ଓ ଏଥି ସହିତ ମୋତେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଆଣିଥିବା ନିଯୁକ୍ତି ପତ୍ର ମଧ୍ୟ ଦେଇଥିଲେ । ତାଙ୍କ ସହିତ ଆଲୋଚନାରୁ ମୁଁ ଜାଣିପାରିଲି ଯେ ସେ ହେଉଛନ୍ତି ଜଣେ ଜ୍ଞାନଦୀପ୍ତ ଉଦୀୟମାନ ଶାଳୀନତା ସଂପନ୍ନ ଅଧ୍ୟାପକ । ତେଣୁ ବଲାଙ୍ଗୀର ଜିଲ୍ଲାର ସିନାପାଲି ଯାଇ ପିଲାମାନଙ୍କ କାମ କରିବା ନିମନ୍ତେ ମୁଁ ଆଉ ମନା କରି ପାରିଲି ନାହିଁ ।

ନିର୍ଦ୍ଧିଷ୍ଟ ଦିନ ମୁଁ ସିନାପାଲି ଗଲି । ପିଲାମାନଙ୍କ ପରୀକ୍ଷା ଯଥାବିଧି ହେଲା । କଲେଜର ଅଧ୍ୟକ୍ଷ ପରଦିନ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେବାକୁ କହିଲେ । ତାଙ୍କର ଅନୁରୋଧ ରକ୍ଷା କରି ମୁଁ ମୋର ବକ୍ତବ୍ୟ ରଖିଥିଲି ।

ସେଦିନ କଥା ପ୍ରସଙ୍ଗରେ ମୋତେ ଅଧ୍ୟକ୍ଷ କହିଲେ, "ସାର୍ ! ନିକଟରେ ଆମ କଲେଜରେ ଶିକ୍ଷା ବିଭାଗର ଅଧ୍ୟାପକ ରଖିବା ପାଇଁ ବିଜ୍ଞାପନ ଦିଆଯାଇଥିଲା । ଜଣେ ଦୁଇଜଣ ଅଧ୍ୟାପକ ଦରଖାସ୍ତ କରିଥିଲେ । ସରକାରଙ୍କ ନିୟମ ଅନୁସାରେ ଜଣେ ଶିକ୍ଷାବିତ୍‌ଙ୍କୁ ରଖି ଆମେ ସେମାନଙ୍କର ସାକ୍ଷାତକାର ନେବା କଥା । ଆପଣ ଯଦି ରାଜି ହୁଅନ୍ତି, ତେବେ ଆଜି ମୁଁ ସାକ୍ଷାତକାର ବ୍ୟବସ୍ଥା କରନ୍ତି ।"

ମୋର ସେ ସମୟରେ ଘରୋଇ ମହାବିଦ୍ୟାଳୟର ପରିଚାଳନା ସମିତି ଦ୍ୱାରା ଅଧ୍ୟାପକ ନିଯୁକ୍ତିର ନୀତି ନିୟମ ସଂପର୍କରେ କିଛି ଜଣା ନ ଥିଲା । ମୁଁ ସମସ୍ତ କାଗଜପତ୍ରଗୁଡ଼ିକୁ ତନ୍ନ ତନ୍ନ କରି ଦେଖିଲି । ସେ ଯୁବ ଅଧ୍ୟାପକ ଛତରିଆ ବାବୁଙ୍କୁ ସାକ୍ଷାତକାର ନିୟମ ଅନୁସାରେ କଲି ଓ ତାଙ୍କୁ ହିଁ ବିଷୟ ବିଶେଷଜ୍ଞ ହିସାବରେ ଅଧ୍ୟାପକ ପଦବୀ ନିମନ୍ତେ ମନୋନୀତ କରି ଆସିଲି ।

ଫେରିବା ରାସ୍ତାରେ ସିନାପାଲିରୁ ପ୍ରତ୍ୟକ୍ଷ ଭାବେ ସମ୍ବଲପୁରକୁ ବସ ନ ଥିଲା । ସାକ୍ଷାତକାର ପରଦିନ ସକାଳୁ ସକାଳୁ ମୁଁ ସିନାପାଲିରୁ ବରଗଡ଼ ଅଭିମୁଖେ ଟିକେଟ୍ କରିଲି । ବରଗଡ଼ ବସଷ୍ଟାଣ୍ଡରେ ଓହ୍ଲାଇଲା ବେଳେ ମୋର ପୁରାତନ ଏମ୍.ଏଡ୍ ଛାତ୍ର ଓ ତତ୍‌କାଳୀନ ବରଗଡ଼ ଘରୋଇ ବି.ଏଡ୍ କଲେଜର ଅଧ୍ୟକ୍ଷ ନୀଳମାଧବ ପରିଛାଙ୍କ ସହିତ ଦେଖା ହେଲା । ସେ ମୋତେ ଦେଖୁ ଦେଖୁ ତାଙ୍କ ମହାବିଦ୍ୟାଳୟକୁ କିଛି ସମୟ ଯାଇ ପିଲାମାନଙ୍କୁ ଉଦ୍‌ବୋଧନ ମୂଳକ ବକ୍ତବ୍ୟ ଦେବାକୁ ଅନୁରୋଧ କଲେ । ସେତେବେଳେ ମୁଁ ଘରମୁହାଁ ଥିଲି । ତାଙ୍କୁ ଆଉ ଦିନେ ଆସିବା ପାଇଁ କହିଲି । ମାତ୍ର ସେ

ମୋତେ ଛାଡ଼ିଲେ ନାହିଁ । ସଙ୍ଗେ ସଙ୍ଗେ ରିକ୍ସାଟିଏ ମଗାଇ ମୋତେ କଲେଜ ଆସିବାକୁ ଅନୁରୋଧ କଲେ । ମୁଁ କଲେଜରେ ପହଞ୍ଚିଲି । ସାମାନ୍ୟ ଜଳଯୋଗ ପରେ ସଭାର ଆୟୋଜନ କରାଗଲା । ଛାତ୍ରଛାତ୍ରୀମାନଙ୍କୁ "ଆଗାମୀ ଶତାବ୍ଦୀରେ ଶିକ୍ଷକଙ୍କର ଭୂମିକା" ସଂପର୍କରେ ମୁଁ ଆଲୋକପାତ କଲି । ସେଦିନ ସଭାରୁ ଫେରିଲା ପରେ ମୋର ବରଗଡ଼ ବସଷ୍ଟାଣ୍ଡରେ ଆକସ୍ମିକ ଭାବରେ ଜଣେ ଯୁବକଙ୍କ ସହିତ ଦେଖାହେଲା । ସେ ମୋର ପାଦଧୂଳି ନେଲେ ଓ ମୋତେ କହିଲେ, "ସାର୍ ! ଆପଣ ମୋତେ ଚିହ୍ନି ପାରୁଛନ୍ତି ?" ମୁଁ ତାଙ୍କୁ ଦେଖି ଦୋଦୋ ଚିହ୍ନା ହେଲି । ସେ କହିଲେ, "ସାର୍ ! ମୁଁ ହେଉଛି ବହୁଗ୍ରାମର ସେଇ ଅବହେଳିତ ଛାତ୍ର ତୁଷାର ଯାହାକୁ ଆପଣ ସ୍ନେହ ଓ ଶ୍ରଦ୍ଧା ଦେଇଥିଲେ । ବିନା ବିରକ୍ତିରେ ପାଠ ପଢ଼ାଉଥିଲେ ।" ମୁଁ ତୁଷାର ମୁହଁକୁ ଚାହିଁଲି । ଇଏ ସେଇ ତୁଷାର ଯିଏ ମୋର ମାନ ଓ ସମ୍ମାନ ଜଣେ ଅଭିଭାବକଙ୍କ ପାଖରେ ରଖିଥିଲା । ସେଦିନ ସମସ୍ତଙ୍କ ଆଖିରେ ସେ ଦୁଷ୍ଟ ଥିଲା । ମାତ୍ର ମୋ ଆଖିରେ ସେ ଶିଷ୍ଟ ଥିଲା । ତୁଷାର ସେତେବେଳେ ବରଗଡ଼ ସିମେଣ୍ଟ କାରଖାନାରେ କାମ କରୁଥିଲା । ତା'ର ଭଲ ମନ୍ଦ ଶୁଣି ମନେ ମନେ ଖୁସି ହେଲି ଓ ବରଗଡ଼ ବସଷ୍ଟାଣ୍ଡରୁ ମୋ ବାସସ୍ଥାନକୁ ଫେରି ଆସିଲି ।

ସାବିତ୍ରୀ ନିବାସକୁ ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ମୋତେ ଦେଖା କରିବାକୁ ଆସିଥିଲେ । ସେ ହେଉଛନ୍ତି ସମ୍ବଲପୁରସ୍ଥିତ ନେହରୁ ଯୁବକେନ୍ଦ୍ରର ସଂଯୋଜକ ଅଧ୍ୟାପକ ଜୟଦେବ ଦଣ୍ଡସେନା । ଅଧ୍ୟାପକ ଦଣ୍ଡସେନା ଇଂରାଜୀ ସାହିତ୍ୟର ଅଧ୍ୟାପକ ଥିଲେ । ସମ୍ବଲପୁରୀ ସାହିତ୍ୟ ଓ ଲୋକଗୀତ ଉପରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା । ନେହରୁ ଯୁବକେନ୍ଦ୍ରର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦାନ କରିବାକୁ ସେ ମୋତେ ନିବେଦନ କରିଥିଲେ । ତାଙ୍କ ସହିତ ମୁଁ ସମ୍ବଲପୁରର ଦୂରଦୂରାନ୍ତରେ ଥିବା ଗାଆଁମାନଙ୍କୁ ଯାଇଛି ଓ ସେଠାକର ଜନଜୀବନକୁ ମଧ୍ୟ ଅନୁଧ୍ୟାନ କରିଛି ।

ମୁଁ ଯାଇଥିବା ଗାଁମାନଙ୍କ ମଧ୍ୟରେ ବରଗଡ଼ ନିକଟସ୍ଥ ବନ୍ଧପାଲି ଗାଆଁ ଏବେ ମଧ୍ୟ ମୋର ସ୍ମୃତିରେ ରହିଛି । ସେଇ ଗାଆଁରେ ସନ୍ଧ୍ୟାବେଳେ ଏକ ଆଲୋଚନା ଚକ୍ର ଆୟୋଜିତ ହୋଇଥିଲା । ଆଲୋଚନା ଚକ୍ରରେ ଦଣ୍ଡସେନା ବାବୁ ମୋତେ ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କରେ କିଛି ଆଲୋକପାତ କରିବାକୁ କହିଥିଲେ । ମୋର ସରଳ ଭାଷା ଓ ବିଷୟବସ୍ତୁ ଗାଆଁ ଲୋକମାନଙ୍କ ମନକୁ ଛୁଇଁ ପାରିଥିଲା ବୋଲି ଗାଆଁ ଲୋକ କୁହାକୁହି ହେଉଥିବା କଥା ମୋତେ ଦଣ୍ଡସେନା ବାବୁ କହିଥିଲେ ।

ଦଣ୍ଡସେନା ବାବୁଙ୍କ ସହିତ ମୁଁ ଭାରତ ସରକାରଙ୍କର କ୍ଷେତ୍ର ପ୍ରଚାର ସଂସ୍ଥାର ଅଧିକାରୀ ଶ୍ରୀଯୁକ୍ତ ଦିଗମ୍ବର ଶତପଥୀଙ୍କ ସହିତ ବୀର ସୁରେନ୍ଦ୍ର ସାଏଙ୍କ ଖେଣ୍ଡା ଗ୍ରାମର ଏକ କାର୍ଯ୍ୟକ୍ରମରେ ଯୋଗ ଦେବାର ସୁଯୋଗ ପାଇଥିଲି ।

ଥରେ ସାବିତ୍ରୀ ନିବାସକୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ତତ୍‌କାଳୀନ ରେଜିଷ୍ଟ୍ରାର ବି.ବି. ତ୍ରିପାଠୀ ଆସିଥିଲେ । ଶ୍ରୀଯୁକ୍ତ ତ୍ରିପାଠୀ ଦକ୍ଷ ଓ **ସଚ୍ଚୋଟ ଅଫିସର ରୂପେ** ଜଣାଶୁଣାଥିଲେ । ସେ ମୋତେ ଏକ ବ୍ୟକ୍ତିଗତ କାର୍ଯ୍ୟ ସଂପର୍କରେ କହିବାକୁ ଆସିଥିଲେ ବୋଲି ମୁଁ ପରେ ଜାଣିଲି । ମାତ୍ର ମୋତେ ସେ ସେ ବିଷୟରେ ନ କହି ବନ୍ଧୁତ୍ୱପୂର୍ଣ୍ଣ ଆଳାପ ପରେ ସାବିତ୍ରୀ ନିବାସରୁ ବିଦାୟ ନେଇଥିଲେ ।

ମୋର ଧନକଉଡ଼ା ରହଣି ମଧ୍ୟରେ କଟକ, ପୁରୀ, ବାଲେଶ୍ୱର ଆଦି ଅଞ୍ଚଳର ଅନେକ ବି.ଏଡ୍. ପ୍ରଶିକ୍ଷାର୍ଥୀ ଆସି ସାବିତ୍ରୀ ନିବାସରେ ପହଞ୍ଚୁଥିଲେ । ସେମାନଙ୍କ ସହିତ ମୋର ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ଥିଲା । ସେମାନଙ୍କ ମଧ୍ୟରେ ଯେଉଁମାନେ ମୋର ସ୍ମୃତିରେ ଅଛନ୍ତି ସେମାନେ ହେଲେ ଯାଜପୁରର ପ୍ରୀତିକାନ୍ତ, ବାଲେଶ୍ୱରର ନିଗମାନନ୍ଦ, ସୁନ୍ଦରଗଡ଼ର ଫାଶୀଆର ଆଚାର୍ଯ୍ୟ ଓ  ସେମାନଙ୍କର ସାଙ୍ଗସାଥୀ । ଶ୍ରୀମାନ୍ ନିଗମାନନ୍ଦ ପାଣିଗ୍ରାହୀ ଓଷ୍ଟାର ସଂପାଦକ ହେଲା ପରେ ମୋତେ ବିଭିନ୍ନ କାର୍ଯ୍ୟକ୍ରମରେ ଅତିଥିଭାବେ ଯୋଗଦେବାକୁ ନିମନ୍ତ୍ରଣ କରୁଥିଲେ । ମୁଁ ମଧ୍ୟ ଯୋଗ ଦେଇଥିଲି । ଦିନେ ମୁଁ ନିଗମାନନ୍ଦଙ୍କୁ ଓଷ୍ଟାର ଏକ କାର୍ଯ୍ୟକ୍ରମରେ ଯୋଗଦେବା ଅବସରରେ କହିଲି, "ନିଗମ ! ତୁମେ ଦିନେ ଭୁବନେଶ୍ୱରସ୍ଥିତ ମୋର ସରକାରୀ ବାସଭବନ ଆଡ଼େ ବୁଲି ଆସ ।"

ନିଗମର ତତ୍‌କ୍ଷଣାତ୍ ଉତ୍ତର ଥିଲା, "ସାର୍ ! ମୁଁ ଗଲେ, ମାଡ଼ାମ୍ ହଇରାଣରେ ପଡ଼ିବେ । ଆଜି ମଧ୍ୟ ମୋର ମନେ ପଡ଼େ କିପରି ମାଡ଼ାମ୍ ଆମକୁ ଖରାଦିନେ ପଖାଳ ଭାତ ଓ ମାଛ ଭଜା ଖାଇବାକୁ ଦେଉଥିଲେ ।"

ମୁଁ ନୀରବ ରହିଲି । ମନେ ମନେ ଭାବିଲି ନିଗମ କେତେଦୂର  ସତ କହୁଛି । ମୋ ଘରକୁ କୌଣସି ବି.ଏଡ୍ ଛାତ୍ର ଆସିଲେ ଆମ ପରିବାରର ଆତିଥ୍ୟ ନ ପାଇ ଫେରେ ନାହିଁ । ସହଧର୍ମିଣୀ ଜ୍ୟୋତ୍ସ୍ନା ନିଜର ସାନ ସାନ ପିଲାଙ୍କର ଯତ୍ନ ନେବାର କଷ୍ଟ ନେଇ ମଧ୍ୟ ସେଇ ପିଲାମାନଙ୍କୁ ପଖାଳ ଭାତ, ମାଛ ଭଜା ଆଦି ନ ଖୋଇ ଛାଡ଼େ ନାହିଁ । ଏହା ଛଡ଼ା ଆମ ନିକଟ ସଂପର୍କୀୟଙ୍କ କେତେକ ପିଲା ପରୀକ୍ଷା ସମୟରେ ଆମ ଘରେ ବି.ଏଡ୍ ପରୀକ୍ଷା ସମୟରେ ମଧ୍ୟ ରହୁଥିଲେ । ସଂପ୍ରତି ସେମାନେ ସରକାରୀ ପଦପଦବୀରେ ମଧ୍ୟ ଅଧିଷ୍ଠିତ ହୋଇଛନ୍ତି । ମାତ୍ର ପରବର୍ତ୍ତୀ ସମୟରେ ସେମାନେ ମଧ୍ୟ ଦିନେ ଆମ ଘରକୁ ଆସି ସୌଜନ୍ୟମୂଳକ ସାକ୍ଷାତ କରି ନାହାନ୍ତି ।

**ଆମ ସୁଖ ଦୁଃଖର ସାକ୍ଷୀ : ସାବିତ୍ରୀ ନିବାସ**

ସାବିତ୍ରୀ ନିବାସରେ ଥିଲାବେଳେ ଆମେ ଥିଲୁ ତିନିଜଣ ମାତ୍ର । ମୁଁ, ଶ୍ରୀମତୀ ବ୍ରହ୍ମା ଓ ଆମର ଦୁଇ ବର୍ଷର ଶିଶୁପୁତ୍ର ବାପି । ଏହା ହେଉଛି ୧୯୭୭ ମସିହାର

ଘଟଣା । ଆମେ ସାବିତ୍ରୀ ନିବାସରେ କିଛିଦିନ ରହିବା ପରେ ଶିଶୁପୁତ୍ର ବାପିର ଦେହ ଭୀଷଣ ଖରାପ ହେଲା । ସେ ଥଣ୍ଡା, ଜର ଓ ଡାଇରିଆରେ ଏମିତି ଛଟପଟ ହେଲା ଯେ ଆମେ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଲୁ । ଅନ୍ୟମାନଙ୍କ ପରାମର୍ଶରେ ତାକୁ ବୁର୍ଲାସ୍ଥିତ ବୀର ସୁରେନ୍ଦ୍ରସାଏ ମେଡ଼ିକାଲ କଲେଜ ଡ଼ାକ୍ତରଖାନାକୁ ନେଇଗଲୁ । ଡ଼ାକ୍ତର ଦେଖି ତାକୁ ସଙ୍ଗେ ସଙ୍ଗେ ଶିଶୁ ୱାର୍ଡ଼ରେ ଭର୍ତ୍ତି କଲେ ।

ତା'ପରେ ବାପିକୁ ସାଲାଇନ୍ ଦିଆଗଲା । ଅନ୍ୟାନ୍ୟ ଆନୁଷଙ୍ଗିକ ଚିକିତ୍ସା ମଧ୍ୟ କରାଗଲା । ସାଲାଇନ୍ ଦିଆଯିବା ସମୟରେ ମୁଁ ସେଠାରେ ରହି ପାରୁ ନ ଥିଲି । ସାଧାରଣତଃ ଏବେ ମଧ୍ୟ ମୋତେ ଛୁଞ୍ଚ ଫୋଡ଼ା ଦେଖିଲେ ବଡ଼ ଡରମାଡ଼େ । ଶ୍ରୀମତୀ ବ୍ରହ୍ମା ସାଲାଇନ୍ ଫୋଡ଼ା ହାତକୁ ଧରି ସେମିତି ବସି ରହୁଥିଲେ । ଅନେକ ସମୟରେ ମୋର ବନ୍ଧୁ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଯୁବ ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ବାଘସିଂହ ମଧ୍ୟ ସେଠାରେ ପହଞ୍ଚି ଯାଉଥିଲେ । ସେ ଅନେକ ସମୟରେ ବାପି ପାଖରେ ପହଞ୍ଚି ସାଲାଇନ୍ ଦିଆ ହାତ ଯେମିତି ହଲଚଲ ନ ହେବ, ସେଥିପାଇଁ ନିଜେ ହାତଟିକୁ ଧରି ଅନେକ ସମୟରେ ବସି ରହୁଥିଲେ ।

ଏହିପରି ପ୍ରାୟ ପନ୍ଦର ଦିନ ବିତିଗଲା । ତା'ର ସ୍ୱାସ୍ଥ୍ୟରେ କୌଣସି ପରିବର୍ତ୍ତନ ଆସିଲା ନାହିଁ । ଚିକିତ୍ସାର ଦାୟିତ୍ୱରେ ଥିଲେ ଶିଶୁ ବିଭାଗର ପ୍ରଫେସର ଡ଼ାକ୍ତର ସତ୍ୟଭାମା ଦେବୀ । ତାଙ୍କୁ ଡ଼ାକ୍ତର ରଥ ସାହାଯ୍ୟ କରୁଥିଲେ । ଡ଼ାକ୍ତର ରଥ ଜଣେ କର୍ମନିଷ୍ଠ ମଣିଷ ଥିଲେ । ସେ ସବୁବେଳେ ଆସି ବାପିକୁ 'ଫିଡ଼ିଙ୍ଗ୍ ଚାର୍ଟ' ଅନୁସାରେ ଅମୂଲ କ୍ଷୀର ଦିଆଯାଉଛି କି ନାହିଁ ଦେଖୁଥିଲେ । ତାଙ୍କର ଧାରଣା ଥିଲା ଯେ କୌଣସି କାରଣରୁ ପିଲାଟି ଅଣ୍ଡରଫେଡ଼୍ ହୋଇଯାଇଅଛି ।

ଏଇ ସମୟରେ ଶ୍ରୀମତୀ ବ୍ରହ୍ମାଙ୍କ ଖାଦ୍ୟପେୟର ଦାୟିତ୍ୱ ଆମ ଘର ପାଖ ଜୟପୁରର ବି.ଏଡ଼୍. ଛାତ୍ରୀ ଓ ବୁର୍ଲାର ବାସିନ୍ଦା ବିଜୟଲକ୍ଷ୍ମୀ ସାମଲଙ୍କ ବାପା ସାମଲବାବୁ ନେଇଥିଲେ । ସେ ଯଥା ସମୟରେ ଖାଦ୍ୟପେୟ ଆଣି ପହଞ୍ଚାଇ ଦେଉଥିଲେ । ମୁଁ ମୋର ଚାକିରି ସ୍କୁଲ, ସାବିତ୍ରୀ ନିବାସ ମଧ୍ୟରେ ସୀମାବଦ୍ଧ ଥିଲି । ପ୍ରତିଦିନ ଭଲମନ୍ଦ ବୁଝିବାକୁ ଯାହା ବୁର୍ଲା ଡ଼ାକ୍ତରଖାନାକୁ ଯାଉଥିଲି ।

ଦିନେ ଚାରିଟାବେଳେ ମୁଁ ଯାଇ ଡାକ୍ତରଖାନାରେ ପହଞ୍ଚିଛି । ଦେଖିଲି ନର୍ସ ଜଣକ ବାପିକୁ ବାହାରକୁ ନେବାକୁ ବସିଛନ୍ତି । ମୁଁ ତାଙ୍କୁ ପଚାରିଲି, "ଆପଣ ତାକୁ କେଉଁଠାକୁ ନେବେ ?" ସେ ମୋତେ କହିଲେ, "ଲାବୋରେଟୋରୀ କି ନେବି । ତା'ର ଅସ୍ଥି ଓ ମଜ୍ଜାରୁ ରକ୍ତ ନିଆଯିବ । ପରୀକ୍ଷା ପାଇଁ ପଠାଯିବ । ତା' ଦେହରେ ଯକ୍ଷ୍ମା

ଜୀବାଣୁ ଅଛନ୍ତି କି ନାହିଁ ତାହା ପରୀକ୍ଷାରୁ ଜଣାଯିବ ।" ଥରେ ରୋଗୀକୁ ଡାକ୍ତରମାନଙ୍କ ହାତରେ ଛାଡ଼ିଦେଲେ ଆଉ କିଛି କରିବାର କି କହିବାର ନାହିଁ । ସେମାନେ ରୋଗୀର ଅଭିଭାବକଙ୍କୁ ନ ପଚାରି ଯାହା ଉଚିତ ମନେ କରିବେ ତାହା ହିଁ କରିବେ । ସେଠାରେ ଆଉ ପାରିବାରିକ ମାୟା ଓ ମମତା କାମ କରେ ନାହିଁ ।

ମୁଁ ନୀରବ ରହିଲି । କିଛି ସମୟ ପରେ ନର୍ସ ଜଣକ ବାପିକୁ ଧରି ଫେରି ଆସିଲେ । କହିଲେ, "ଯେଉଁ ବ୍ୟକ୍ତିଜଣକ ରକ୍ତ ନେବା କଥା, ସେ ନାହାଁନ୍ତି । ତେଣୁ କାଲି ଆସିଲେ ପୁଣି ତାକୁ ପରୀକ୍ଷା ନିମନ୍ତେ ନିଆଯିବ ।"

ହଠାତ୍ ମୋତେ ଦୈବୀ ବାଣୀ ହେଲା ଭଳି ଜଣାପଡ଼ିଲା । ସତେ ଯେମିତି କିଏ ଜଣେ ମୋତେ କହିଲେ, ତୁ ଶୀଘ୍ର ତାକୁ ଏଠାରୁ ସମ୍ବଲପୁର ନେଇ ଯା । ସେଠି ଡ଼ାକ୍ତର ରାମନାରାୟଣ ମହାନ୍ତି ଅଛନ୍ତି । ତାଙ୍କୁ ଦେଖା ।"

ମୁଁ ୧୯୭୨ ମସିହାରେ ବି.ଏଡ୍ ପଢ଼ିଲା ବେଳେ ସଂଯୋଗବଶତଃ ଡାକ୍ତର ମହାନ୍ତିଙ୍କୁ ଜାଣିଥିଲି ।

ଆଜି ବୁର୍ଲା ମେଡ଼ିକାଲ କଲେଜରେ ଏକ ଅସହାୟ ଅବସ୍ଥାରେ ଥିଲାବେଳେ ଡାକ୍ତର ମହାନ୍ତିଙ୍କୁ ଦେଖାକରିବାକୁ ଆସିଥିବା ଦୈବୀ ନିର୍ଦ୍ଦେଶକୁ ଏଡ଼ାଇ ଯିବାକୁ ମୋର ସାହସ ହେଲା ନାହିଁ । ମୁଁ ସେଦିନ କାହାକୁ କିଛି ନ କହି ବାପି ବେଡ଼ରେ ଝୁଲୁଥିବା ଚିକିତ୍ସା ସଂପର୍କୀୟ ବିବରଣୀ ଗୋଟିଏ କାଗଜରେ ଟିକିନିଖି କରି ଟିପିଲି । ସେ କାଗଜଟିକୁ ପାଖରେ ରଖିଲି ଓ ପରଦିନ ସକାଳୁ ସକାଳୁ ଡ଼ାକ୍ତରଖାନା ଛାଡ଼ିବାକୁ ପ୍ରଫେସର ସତ୍ୟଭାମା ଦେବୀଙ୍କୁ କହିଲି ।

ସେ ମୋ କଥାଶୁଣି ବଡ଼ ବିରକ୍ତ ହେଲେ । କହିଲେ "ଶିଶୁଟିର ଅବସ୍ଥା ଖୁବ୍ ଖରାପ ଅଛି । ସମ୍ବଲପୁରରେ ଜରୁରୀକାଳୀନ ଚିକିତ୍ସା ପାଇଁ କୌଣସି ବ୍ୟବସ୍ଥା ନାହିଁ । ଏପରି ପରିସ୍ଥିତିରେ ଆପଣ ଶିଶୁଟିକୁ ଏଠାରୁ କେମିତି ନେବେ ?"

ମୁଁ କିନ୍ତୁ ମୋ ଜିଦ୍‌ରେ ଅଟଳ ରହିଲି । ସେ ବାଧ୍ୟ ବାଧକତାରେ ବାପିର ରିଲିଭ୍ ଅର୍ଡରରେ ଦସ୍ତଖତ କରିଦେଲେ ।

ଶିଶୁୱାର୍ଡ଼ରୁ ଆମେ ବିଦାୟ ନେଲୁ । ଆମ ଆଗରେ ପଛରେ ଚିକିତ୍ସା ପାଇଁ ଆସିଥିବା ଶିଶୁମାନେ ଭଲ ହୋଇ ଚାଲିଯାଇଥିଲେ । ଆମେ କେବଳ ଏକ ଅହେତୁକ ବିଧିନିର୍ଦ୍ଦିଷ୍ଟ ଦୁର୍ଭାଗ୍ୟର ବଶବର୍ତ୍ତୀ ହୋଇଥିଲୁ । ମୁଁ ୱାର୍ଡରେ ଥିବା ଆମର ଜିନିଷପତ୍ରକୁ ବ୍ୟାଗରେ ପୂରାଇଲି । ଶ୍ରୀମତୀ ବ୍ରହ୍ମା ଶିଶୁପୁତ୍ରକୁ କୋଳେଇ ଧରିଲେ । ସେତେବେଳେ ଶିଶୁପୁତ୍ରଟି ବିଶେଷ କିଛି କହିପାରୁ ନ ଥିଲା । ଆମେ ଯେମିତି ଡାକ୍ତରଖାନାର ପଦାକୁ

ଆସିଲୁ, ମା' କୋଳରେ ତା'ର ଆନନ୍ଦ ଦେଖେ କିଏ ? ସେ ହାତଗୋଡ଼ ହଲାଇ ରାସ୍ତାର ଗାଡ଼ିଘୋଡ଼ା ଦେଖି ବହୁତ ଖୁସି ହେଲା । ସେ ହୁଏତ ବୁଝିପାରିଥିଲା ଏକ ଯନ୍ତ୍ରଣାମୁକ୍ତ ପରିବେଶକୁ ଛାଡ଼ି ଏକ ମୁକ୍ତ ପରିବେଶକୁ ଯାଉଛି ।

ଆମେ ସେଦିନ ସାବିତ୍ରୀ ନିବାସ ଫେରି ଆସିଲୁ । ତା'ର ଜର, ଝାଡ଼ା, ବାନ୍ତି ଆଦିରୁ ମୁକ୍ତି ନ ଥିଲା । ବୁର୍ଲା ଛାଡ଼ି ଆସିଥିବା ହେତୁ ସେଦିନ ରାତିରେ ମୁଁ ଗଭୀର ନିଦ୍ରାରେ ଶୋଇ ଯାଇଥିଲି । ପରଦିନ ସକାଳୁ ଉଠି ଅଳ୍ପଟିକେ ଜଳଖିଆ ଖାଇଲି । ଦିନ ନଅଟା ମଧ୍ୟରେ ଡ଼ାକ୍ତର ଆର୍.ଏନ୍. ମହାନ୍ତିଙ୍କୁ ତାଙ୍କ ବାସଭବନରେ ଦେଖାକଲି ।

ମୁଁ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ଜଣେ ଅଧ୍ୟାପକ ବୋଲି ଜାଣି ବିଶେଷ ଖୁସି ହେଲେ । ତାଙ୍କ ଭଣଜା ଲାଇବ୍ରେରୀୟାନ୍ ବିନୋଦ ଭୂଷଣ ପରିଜା ସେଠାରେ କାମ କରୁଛନ୍ତି ବୋଲି କହିଲେ । ମୁଁ ବାପିକୁ ସାଥୀରେ ନେଇ ନ ଥିଲି । ମାତ୍ର ତା'ର ଚିକିତ୍ସାର ସମସ୍ତ କାଗଜପତ୍ର ନେଇଥିଲି । ତା'ର ବ୍ରାଙ୍କୋ ନିମୁନିଆ ଚିକିତ୍ସା ଚାଲିଥିଲା ବୋଲି କହିଲି ।

ସେ ସମସ୍ତ କାଗଜପତ୍ର ଦେଖିଲେ, କିନ୍ତୁ ରୋଗୀକୁ ଦେଖିଲେ ନାହିଁ । ମୋତେ କହିଲେ, "କେବଳ ତିନି ପାନେ ଔଷଧରେ ସେ ଭଲ ହୋଇଯିବ ।" ମୁଁ ତାଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲି । ସେ ପୁଣି କଥା ପ୍ରସଙ୍ଗରେ ମୋତେ କହିଲେ, "ଗୋଟିଏ ବର୍ଷ ବୟସର ଛୁଆକୁ ପୁଣି ପଚାଶଟା ପର୍ଯ୍ୟନ୍ତ ଇଂଜେକ୍ସନ୍ ଫୋଡ଼ା ହୋଇଅଛି । ଦେହରେ ଯକ୍ଷ୍ମା ଜୀବାଣୁ ଅଛି କି ନାହିଁ ତାହା ପୁଣି ପରୀକ୍ଷା କରିବାର କଥା ଥିଲା । ଏହା କହି ସେ ମାତେ ଗୋଟିଏ ଡାକ୍ତରୀ ବହି ଖୋଲି ଦେଖାଇଲେ । ସେଥିରେ ଲେଖାଥିଲା, ଶିଶୁମାନଙ୍କ ମଧ୍ୟରେ ପ୍ରାୟତଃ ଯକ୍ଷ୍ମାର ଜୀବାଣୁ ଦେଖାଯାଏ ନାହିଁ । କାରଣ ତାଙ୍କର ରୋଗ ପ୍ରତିରୋଧକ ଶକ୍ତି ବୟସ୍କମାନଙ୍କଠାରୁ ଯଥେଷ୍ଟ ଅଧିକ ଥାଏ । ସେହିପରି ଅନ୍ୟ ଏକ ସ୍ଥାନରେ ଲେଖାଥିଲା, "ପିଲାଙ୍କୁ ଟିକକ କଥାରେ ଛୁଞ୍ଚି ଫୋଡିବା ଅନୁଚିତ୍ । ଯଦି ପରିସ୍ଥିତି ଜଟିଳ ଓ ବାଧ୍ୟତାମୂଳକ ଥାଏ, ତେବେ ଦିଅ ।

ଏହାକହି ସେ ମୋତେ କହିଲେ, "ତାକୁ ମେଲେରିଆ ଜର ହୋଇଛି ।"

ମୁଁ କହିଲି, "ମେଲେରିଆର ଭୂତାଣୁ ଅଛି କି ନାହିଁ ତାହା ପରୀକ୍ଷା କରାଯାଇଅଛି ।"

ସେ କହିଲେ, "ସାଧାରଣତଃ ପ୍ରାରମ୍ଭିକ ସ୍ତରରେ ଏହା ଜଣାପଡ଼େ ନାହିଁ । ମାତ୍ର ମେଲେରିଆର ଚିକିତ୍ସା କଲେ ରୋଗୀ ଭଲ ହୋଇଯାଏ ।"

ମୁଁ ତାଙ୍କ ସହିତ ଅଧିକ ଆଲୋଚନା କରିବାକୁ ଉଚିତ ମନେ କଲି ନାହିଁ । ସେ ମେଲେରିଆ ପାଇଁ ଲାରିଆଗୋ ସିରପ୍ (Lariago Syrup) ଲେଖିଦେଲେ । ଆଲ୍‌ଥ୍ରୋସିନ୍ ସସ୍‌ପେନସନ (Althrosin Suspension) ମଧ୍ୟ ଲେଖିଥିଲେ ।

ଡାକ୍ତର ମହାନ୍ତି ହେଉଛନ୍ତି ସମ୍ବଲପୁର ଅଞ୍ଚଳର ଜଣେ ବିଶିଷ୍ଟ ଓ ଜଣାଶୁଣା ଡାକ୍ତର । ସେ ମଳ, ମୂତ୍ର ଆଦି ପରୀକ୍ଷା କରନ୍ତି ନାହିଁ, ମାତ୍ର କୌଣସି ପରୀକ୍ଷା ନ କରି ଶରୀରରେ ଥିବା ଜୀବାଣୁ, ଭୂତାଣୁ ଆଦିର ଉପସ୍ଥିତ ଜାଣି ଚିକିତ୍ସା କରି ପାରନ୍ତି । ତାଙ୍କର ଚିକିତ୍ସା ଉପରେ ରୋଗୀମାନଙ୍କର ଅତୁଟ ବିଶ୍ୱାସ ଥାଏ ।

ମୁଁ ଡାକ୍ତର ମହାନ୍ତିଙ୍କଠାରୁ ଫେରି ବାପିକୁ ଲାରିଆଗୋ ସିରପ୍‌ର ପ୍ରଥମ ପାନ ଦେଲି । ସତକୁ ସତ ଦୁଇ ତିନି ପାନେ ଔଷଧରେ ତା'ର ଶରୀରରେ ଥିବା ଦୀର୍ଘଦିନର ଜ୍ୱର ଭଲ ହୋଇଗଲା । ଝାଡ଼ା ଓ ବାନ୍ତି ଆଦି ଉପସର୍ଗ ମଧ୍ୟ ରହିଲା ନାହିଁ ।

ମୋର ବିଧି ନିର୍ଦ୍ଦିଷ୍ଟ ପଦକ୍ଷେପ ମୋତେ ଏକ ବଡ଼ ବିପଦରୁ ରକ୍ଷା କଲା । ମୁଁ ମଧ୍ୟ ମାନସିକ ଯନ୍ତ୍ରଣାରୁ ରକ୍ଷା ପାଇଲି ।

## ଆମ ପରିବାରର ନବାଗତ ଅତିଥି

ଶ୍ରୀମାନ୍ ଜ୍ୟୋତି ପ୍ରକାଶ (ବାପି) ଜନ୍ମର ଠିକ୍ ଦୁଇବର୍ଷ ପରେ ମେ ୧୫ ତାରିଖ, ୧୯୭୮ ମସିହାରେ ସମ୍ବଲପୁରର ମାତୃମଙ୍ଗଳ କେନ୍ଦ୍ରରେ ଜନ୍ମ ହୋଇଥିଲା ଆମର ଦ୍ୱିତୀୟ ପୁତ୍ର ଶ୍ରୀମାନ୍ ଦୀପ୍ତିପ୍ରକାଶ (ମୁନା) । ମୁଁ ସେଦିନ ପ୍ରାୟ ଦିନ ଦୁଇଟାବେଳେ ମାତୃମଙ୍ଗଳ କେନ୍ଦ୍ରରେ ପହଞ୍ଚିଲି । ମୋତେ ମାତୃମଙ୍ଗଳ କେନ୍ଦ୍ରର ମାତୃସ୍ଥାନୀୟ ନର୍ସ ନେତ୍ରମଣି ଦିଦି ଆଣି ପ୍ରତୀକ୍ଷା କୋଠରିରେ ଶିଶୁପୁତ୍ର ମୁନାକୁ ଧରାଇ ଦେଇଥିଲେ । ତା'ର ସ୍ୱାସ୍ଥ୍ୟ ଓଜନ ଆଦି ଠିକ୍ ଥିଲା ବୋଲି କହିଥିଲେ ।

ମାତୃମଙ୍ଗଳ କେନ୍ଦ୍ରରେ କାମ କରୁଥିବା ନେତ୍ରମଣି ମିଶ୍ର ସେଇ କେନ୍ଦ୍ର ପରିସରରେ ଏକ କ୍ୱାଟର୍ସରେ ରହୁଥିଲେ । ତାଙ୍କ ପରିବାର କହିଲେ ତାଙ୍କର ସ୍ୱାମୀ, ପୁଅ ଜ୍ୟୋତିଷ ମିଶ୍ର ଓ କଲେଜ ପଢୁଆ ଝିଅ ସ୍ନିଗ୍ଧା ମିଶ୍ର । ମୁଁ ବି.ଏଡ୍ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ହୋଇଥିବା ହେତୁ ସେ ମୋତେ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲେ । ତାଙ୍କ ବସାକୁ ଗଲେ ସେ ମୋତେ ନ ଖୁଆଇ ଛାଡ଼ନ୍ତି ନାହିଁ । ପରବର୍ତ୍ତୀ ସମୟରେ ତାଙ୍କ ଝିଅ ସ୍ନିଗ୍ଧା ମିଶ୍ର ବି.ଏଡ୍ ଓ ଏମ୍.ଏଡ୍ ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟରେ ପଢ଼ିବାର ସୁଯୋଗ ପାଇଥିଲା । ମୋର ଛାତ୍ରୀ ହୋଇଥିବାରୁ ଶେଷ ପର୍ଯ୍ୟନ୍ତ ତାଙ୍କ ପରିବାର ଆମ ସହିତ ସଂପର୍କ ରଖିଥିଲେ ।

ଆମର ତୃତୀୟ ପୁତ୍ର ଶକ୍ତିପ୍ରକାଶ ବ୍ରହ୍ମା ସେଇ ମାତୃମଙ୍ଗଳ କେନ୍ଦ୍ରରେ ଜୁଲାଇ ବାର ତାରିଖ ୧୯୮୧ ମସିହା ସକାଳ ୮ଟା ୧୬ ମିନିଟ୍‌ରେ ଜନ୍ମ ଗ୍ରହଣ କରିଥିଲା । ସେଦିନ ଆଷାଢ଼ ଶୁକ୍ଳ ଏକାଦଶୀ ରବିବାର ଥିଲା ।

ଚତୁର୍ଥ ପୁତ୍ର କାନ୍ତିପ୍ରକାଶର ଜନ୍ମ ପୂର୍ବରୁ ଆମେ ମଧ୍ୟ ମାତୃମଙ୍ଗଳ କେନ୍ଦ୍ର ଉପରେ ନିର୍ଭର କରିଥିଲୁ ।

କାନ୍ତିପ୍ରକାଶ ୧୯୮୨ ମସିହା ଡ଼ିସେମ୍ବର ମାସ ୧୬ ତାରିଖ ଦିନ ରାତ୍ର ୩.୨୦ ମିନିଟ୍‌ରେ ଭୂମିଷ୍ଠ ହୋଇଥିଲା । ସେ ଦିନ ଧନୁ ସଂକ୍ରାନ୍ତି, ଗୁରୁବାର ଥିଲା ।

**ଆମ ପରିବାରର ଅନ୍ୟତମ ସଦସ୍ୟ : ଶିଶୁ ଶୁଆ**

ସାବିତ୍ରୀ ନିବାସର ଗୋଟିଏ ପାର୍ଶ୍ୱରେ ଛୋଟଛୋଟ ଖପର ଘର ଥାଏ । ସେଇସବୁ ଖପର ଘରେ ଜଙ୍ଗଲ ବିଭାଗର କିଛି ଚତୁର୍ଥ ଶ୍ରେଣୀ କର୍ମଚାରୀ ରହୁଥିଲେ । ସେମାନଙ୍କ ମଧ୍ୟରୁ ନାରୁ ସହିତ ଆମର ସଂପର୍କ ଟିକିଏ ଭଲ ଥିଲା ।

ନାରୁ ଦିନେ ଆମ ଘରେ ପର ଉଠି ନ ଥିବା ଗୋଟିଏ ଶୁଆ ଧରି ପହଞ୍ଚିଲା । ଶୁଆଟିକୁ ଦେଖି ପିଲାମାନେ ଭାରି ଖୁସି ହୋଇଯାଇଥିଲେ । ସଙ୍ଗେ ସଙ୍ଗେ ତା'ପାଇଁ ଗୋଲବଜାରରୁ ଗୋଟିଏ ପଞ୍ଜୁରି କିଣା ହୋଇ ଆସିଲା । ଶ୍ରୀମତୀ ବ୍ରହ୍ମା ତାକୁ ନିଜ ହାତରେ ଦୁଧ ଓ ଭାତ ଗୋଳେଇ ଖୁଆଇ ଦେଲେ । ନିଜ ପିଲାଙ୍କ ଭଳି ତା'ର ଯତ୍ନ ନେଲେ ।

ଆମ ସମ୍ବଲପୁର ରହଣି ମଧ୍ୟରେ ଶିଶୁ ଶୁଆଟି ବଡ଼ ହୋଇ ପିଲାଙ୍କ ନାମ ଧରି ଡାକିଲା । ତା'ର 'ବାପା, 'ବୋଉ' ଡାକ ସହିତ 'ବାପି' 'ମୁନୁ' ଡାକ ଆମ ମନରେ ଯଥେଷ୍ଟ ଆନନ୍ଦ ଦେଲା । ତା'ପରେ ଟିକିଏ ବଢ଼ିଯିବାରୁ ସେ ମଝିରେ ମଝିରେ ଉଡ଼ିଯିବାକୁ ଚେଷ୍ଟା କଲା । ତେଣୁ ଆମେ ମଧ୍ୟ ଆବଶ୍ୟକତା ଅନୁସାରେ ତା'ର ପରକୁ କାଟି ଛୋଟ କରୁଥିଲୁ ।

ତଥାପି ପର ବଢ଼ିବା ପ୍ରତି ଆମର ବିଶେଷ ନଜର ନଥିବାରୁ ସେ ପଞ୍ଜୁରି ମଧ୍ୟରୁ ବାହାରି ଉଡ଼ି ଉଡ଼ି ଧନକଉଡ଼ା ଗାଁ ମଧ୍ୟକୁ ଦୁଇ ତିନିଥର ଉଡ଼ି ଯାଇଛି । ତା'ର ଉଡ଼ାପଥକୁ ଲକ୍ଷ୍ୟ କରି ଶ୍ରୀମତୀ ବ୍ରହ୍ମା ତାକୁ ଖୋଜିବାକୁ ସଙ୍ଗେ ସଙ୍ଗେ ଯାଆନ୍ତି । ଥରେ ସେ ଉଡ଼ି ନ ପାରି ରାସ୍ତାକଡ଼ରେ ପଡ଼ି ଯାଇଥିଲା । ସେଠାରୁ ଶ୍ରୀମତୀ ବ୍ରହ୍ମା ତାକୁ ଉଦ୍ଧାର କରି ଘରକୁ ଆଣିଥିଲେ । ଆଉ ଥରେ ସେ ଉଡ଼ିଚାଲିଗଲା ଯେ ଆଉ ଫେରି ଆସିଲା ନାହିଁ । ଯେତେବେଳେ ଆମ ଘର ପାଖ ଗଛରେ ଶୁଆଟିଏ ଆସି ବସୁଥିଲା; ତାକୁ ଆମେ ଲକ୍ଷ୍ୟ କରୁଥିଲୁ । ବେଳେବେଳେ ସେ ଆମ ଶୁଆ ବୋଲି ମନରେ ଭ୍ରମ ଆସୁଥିଲା । ହୁଏତ ଆମ ଶୁଆ ହୋଇଥିଲେ ଆମ ପାଖକୁ ଫେରି ଆସିଥାନ୍ତା ।

ଅଗତ୍ୟା ଆମେ ତା' କଥା ଭୁଲିବାକୁ ଚେଷ୍ଟା କଲୁ କିନ୍ତୁ ଆମ ଘରେ ପାଣି ଆଣିଦେଉଥିବା ମେଲଣମା' ଦିନେ ଆସି କହିଲା, "ଆମ ପଡ଼ାରେ ଜଣେ ଲୋକ ତୁମ ଶୁଆ ରଖିଛି ।" ସେ ସବୁବେଳେ ବାପା, ବୋଉ, ବାପି, ମୁନୁ ଆଦି ଡ଼ାକୁଛି । ସେ ଯେତେବେଳେ ବାପା, ବୋଉ, ବାପି, ମୁନୁ ଆଦି ଡ଼ାକୁଛି, ସେତେବେଳେ ସେ ଲୋକର ଘରବାଲି କହୁଚି, ବାପା ନାଇନ, ବୋଉ ନାଇନ, ବାପି ନାଇନ, ମୁନୁ ନାଇନ । ଏପରି କଥା ବଡ଼ ସମ୍ବେଦନଶୀଳ ଥିବା ହେତୁ ଶ୍ରୀମତୀ ବ୍ରହ୍ମା ଶୁଆଟି କିପରି ଫେରି ଆସିବ ସେଥିପାଇଁ ବ୍ୟସ୍ତ ହେଲେ । ବାପା ନାହିଁ, ବୋଉ ନାହିଁ ଶୁଆଟି ପ୍ରତି ଘରବାଲିର ଏପରି ବକ୍ତବ୍ୟ ଶୁଣି ମୋ ମନରେ ବିରକ୍ତି ଭାବ ଦେଖାଦେଲା । କିଛି ପଇସା ନେଇ ଶୁଆଟିକୁ ଫେରାଇ ଦେବା ପାଇଁ ମୁଁ ମଧ ସେ ଗାଉଁଲୀ ଭଦ୍ର ମହିଳାଙ୍କୁ କହିଲି । ସେ ରାଜି ହେଲା ନାହିଁ ।

ମୋ ମନରେ ବେଳେବେଳେ ଏମିତି ଆସିଲା ଯେ ଯଦି ଦରକାର ପଡ଼େ ମୁଁ ତା' ବିରୋଧରେ ଆଇନର ଆଶ୍ରୟ ନେବି । ସେତେବେଳେ ମୋର ସମ୍ବଲପୁର ଭିଜିଲାନ୍‌ସ କାର୍ଯ୍ୟାଳୟର ଜନୈକ ଡି.ଏସ୍.ପି ନାଥବାବୁଙ୍କ ସହିତ ଚିହ୍ନା ପରିଚୟ ଥିଲା । ସେ ମୋଠାରୁ ବୟସରେ ଅଧିକ ବଡ଼ ହେଲେ ମଧ ମୋତେ ସମ୍ମାନ କରୁଥିଲେ । ଦିନେ ମୁଁ ଶୁଆଟିକୁ ଫେରି ପାଇବା ପାଇଁ ତାଙ୍କ ସାହାଯ୍ୟ ଲୋଡ଼ିଲି । ସେ ମୋତେ ସଙ୍ଗେ ସଙ୍ଗେ କହିଲେ, "ସେ ଶୁଆଟି ଆପଣଙ୍କର ବୋଲି କି ପ୍ରମାଣ ଅଛି ।"

ମୁଁ କହିଲି, "ସେ ତ ଆମ ଘରର ଲୋକମାନଙ୍କର ନାମ ଧରି ଡ଼ାକୁଛି । ଏହାଠାରୁ ଆଉ କ'ଣ ବଡ଼ ପ୍ରମାଣର ଆବଶ୍ୟକତା ରହିଅଛି ।"

ସେ ତତ୍‌କ୍ଷଣାତ୍ ମୋତେ କହିଲେ, "ଭାରତୀୟ ଦଣ୍ଡବିଧି ଆଇନର ନିର୍ଦ୍ଦିଷ୍ଟ ଧାରା ଅନୁଯାୟୀ ପକ୍ଷୀର ସାକ୍ଷ୍ୟ, ସାକ୍ଷ୍ୟ ହିସାବରେ ଗ୍ରହଣ ଯୋଗ୍ୟ ନୁହେଁ ।"

ମୁଁ ତାଙ୍କ କଥା ଶୁଣି ନୀରବ ରହିଲି । ତାଙ୍କ ଦ୍ୱାରା ଯେ କିଛି ହେବ, ସେ ଆଶା ମୋର ମଉଳି ଗଲା । ସେତେବେଳେ ଧନକଉଡ଼ାରେ ଜଣେ ବ୍ୟକ୍ତି ଥିଲେ, ଯାହାଙ୍କୁ ସମସ୍ତେ 'ସରପଞ୍ଚ' ବୋଲି ଡାକୁଥିଲେ । ସେ ସେତେବେଳେ ସରପଞ୍ଚ ପଦବୀରେ ନ ଥିଲେ ମଧ ପୂର୍ବ ସରପଞ୍ଚ ହେତୁ ତାଙ୍କର ଗାଁରେ ଅସମ୍ଭବ ଖାତିର ଥିଲା ।

ଦିନେ ରାସ୍ତାରେ ମୋର ମୁକୁଟ ବିହୀନ ସେଇ ସରପଞ୍ଚ ମହୋଦୟଙ୍କ ସହିତ ଦେଖା ହେଲା । ମୁଁ ତାଙ୍କୁ ଶୁଆଟି ସଂପର୍କରେ କହିଲି । ସେ ମୋତେ କହିଲେ, "ଆପଣ ମୋ ସହିତ ଆସନ୍ତୁ । ବର୍ତ୍ତମାନ ଏହାର ସମାଧାନ କରିଦେବା । ଆମେ ଦୁଇଜଣ ସେଇ ବ୍ୟକ୍ତିଟିର ଘରକୁ ଗଲୁ । ତା'ର ସ୍ୱାମୀ ସେତେବେଳେ ଘର ନ ଥିଲା । ସରପଞ୍ଚଙ୍କ କଥା

ଅନୁସାରେ ପ୍ରଥମେ ପ୍ରଥମେ ସେ ଘରବାଲି ଜଣକ ଶୁଆଟିକୁ ଦେବାକୁ ମନା କଲା । ମୋତେ ସରପଞ୍ଚ କହିଲେ, "ଆପଣ ତାକୁ କିଛି ଟଙ୍କା ଦିଅନ୍ତୁ । ତାକୁ ପ୍ରାୟ ଚାଳିଶି ଟଙ୍କା ପାଖାପାଖି ଦେଲି । ତଥାପି ଅନିଛା ସତ୍ତ୍ୱେ ସେ ଟଙ୍କା ପାଇ ଶୁଆଟିକୁ ଫେରାଇ ଦେଲା ।

ସେଦିନ ମୁଁ ଶୁଆଟିକୁ ଧରି ଘରେ ଆସି ପହଞ୍ଚିଲି ।

ଆମ ଘରେ ଆମ ଶୁଆ ପହଞ୍ଚିଯିବାରୁ ପିଲାମାନେ ବହୁତ ଖୁସି ହେଲେ । ମୁଁ ମଧ ଅଯଥା ମାନସିକ ଚାପରୁ ରକ୍ଷା ପାଇଲି । ଘଟଣାର କିଛିଦିନ ପରେ ଜାଣିଲି ଯେ ଘରେ ବଣ୍ୟ ପଶୁପକ୍ଷୀଙ୍କୁ ରଖିବା ଆଇନ ଅନୁଯାୟୀ ଧର୍ତ୍ତବ୍ୟ ଦଣ୍ଡନୀୟ ଅପରାଧ ।

**ସାବିତ୍ରୀ ନିବାସରୁ ଗାଆଁ ଅଭିମୁଖେ**

ସବା ସାନ ପୁଅ କାନ୍ତିପ୍ରକାଶର ଜନ୍ମର ଆଠ ଦଶ ଦିନପରେ ଆମେ ସାବିତ୍ରୀ ନିବାସ ଛାଡ଼ି ଗାଁକୁ ଚାଲି ଆସିଲୁ । ସେତେବେଳକୁ ମୋର ଶିକ୍ଷାକାର୍ଯ୍ୟକ୍ରମ ସଂପର୍କରେ ପ୍ରଶିକ୍ଷଣ ନେବା ପାଇଁ ବିଲାତ ଯିବାର ଚିଠି ଆସିଯାଇଥିଲା ଓ ମୋତେ ୧୭ ଜାନୁୟାରୀ ୧୯୮୩ ମସିହାରେ ବିଲାତରେ କାର୍ଲିଲାଇଲସ୍ଥିତ ଏଦନ୍‌ଭିଜନ୍ ଷ୍ଟୁଡ଼ିଓରେ ଯୋଗ ଦେବାର ଥିଲା । ଆମେ ଆସିଲାବେଳେ ପୋଷା ଶୁଆଟିକୁ ସମ୍ବଲପୁରରୁ ଆମ ଘର କଟକ ଜିଲ୍ଲାର ଜଳୌକାପାହାଡ଼ ପାଦଦେଶରେ ଅବସ୍ଥିତ ରୁଦ୍ରପୁର ଗାଁକୁ ଆଣିବୁକି ନାହିଁ ଦ୍ୱନ୍ଦରେ ପଡ଼ିଲୁ । ମୁଁ ଶୁଆଟିକୁ ଆଣିବା ସପକ୍ଷରେ ଆଦୌ ନ ଥିଲି । ତାକୁ ନେଇ ଅନେକ ଅଶାନ୍ତି, ଉଡ଼ିଗଲେ ବାହାରେ ଯାଇ ଖୋଜା, କାହାଘରେ ରହିଗଲେ କଳିକଜିଆର ସମ୍ଭାବନା ଥିବାରୁ ସ୍ଥିର କରାଗଲା ଯେ ଯେଉଁ ନାରୁ ଆମକୁ ଆଣି ଶୁଆଟିକୁ ଦେଇଥିଲା, ସେ ହିଁ ସେ ଶୁଆଟିକୁ ପଞ୍ଜୁରି ସହିତ ରଖୁ ।

ନାରୁକୁ ଡକାଗଲା ଓ ସେ ସଂପର୍କରେ ତାକୁ ପଚରାଗଲା । ମୁଁ ଭାବିଥିଲି ସେ ଖୁସି ହୋଇ ବର୍ତ୍ତମାନ କଥା କହୁଥିବା ଓ ଅତୀତରେ ଆମକୁ ଦେଇଥିବା ସେହି ଶୁଆଟିକୁ ରଖିବ । ମାତ୍ର ସେ ଖୁସି ହେବା ପରିବର୍ତ୍ତେ ମୋତେ ଅତି ଭଦ୍ରଭାବରେ କହିଲା, "ସାର୍ ! ଆପଣ ସିନା ଶୁଆଟିକୁ ମୋତେ ଦେଇ ଚାଲିଯିବେ, ମାତ୍ର ସେ ଦୀର୍ଘ କେତେ ବର୍ଷ ଆପଣଙ୍କ ଘରେ କଟେଇଛି । ଆପଣ ଓ ଆପଣଙ୍କ ପିଲାମାନଙ୍କ ନାମ ଧରି ଡାକୁଛି । ଯଦି ମୁଁ ତାକୁ ରଖିବି, ସେ ଆପଣମାନଙ୍କୁ ଝୁରିଝୁରି ମରିଯିବ । ଯଦି ତାକୁ ଉଡ଼େଇ ଦେବି, ତେବେ ତା'ର ଭାଷା ଅନ୍ୟ ପକ୍ଷୀମାନଙ୍କଠାରୁ ଅଲଗା ହୋଇଥିବା ହେତୁ ତାକୁ ଅନ୍ୟ ପକ୍ଷୀମାନେ ଗୋଡ଼େଇ ଗୋଡ଼େଇ ମାରିଦେବେ ।"

ବେଶୀ ପାଠ ପଢ଼ି ନ ଥିବା ସେଇ ସରଳ ମଣିଷ ନାରୁ କଥାର ନିର୍ଯ୍ୟାସ ମୁଁ ଠିକ୍ ଭାବେ ବୁଝି ପାରିଲି । ଶେଷରେ ଆମେ ଆମର ଖଟ, ଟ୍ରଙ୍କ, ଜିନିଷପତ୍ର ଓ ଶୁଆଟିକୁ ନେଇ ସାବିତ୍ରୀ ନିବାସରୁ ବିଦାୟ ନେଲୁ ।

ସେଦିନ ସମ୍ବଲପୁର ବସଷ୍ଟାଣ୍ଡରେ ଆମ ପରିବାରକୁ ବିଦାୟ ଦେବାକୁ ଅନେକ ଜଣାଅଜଣା ଲୋକ ଆସିଥିଲେ । ଆମେ ସମ୍ବଲପୁରରୁ ଆସି କଟକରେ ପହଞ୍ଚିଲୁ । ବସଟି ସକାଳେ ସକାଳେ ଆମକୁ କଟକରେ ପହଞ୍ଚାଇ ଦେଇଥିଲା । କଟକରୁ ଯାଜପୁର ଅଭିମୁଖେ ଯାଉଥିବା ବସ ଧରି ଛତିଆରେ ପହଞ୍ଚିଲୁ । ଛତିଆରୁ ଆମର ଆସବାବପତ୍ର ଆଦି ରିକ୍ସାରେ ଲଦି ଘରେ ଆସି ପ୍ରାୟ ଦିନ ଦଶଟା ବେଳେ ପହଞ୍ଚିଲୁ ।

**ବିଲାତ ଅଭିମୁଖେ ଯାତ୍ରା**

ସମ୍ବଲପୁରରୁ ଫେରି ମୁଁ ଗାଆଁରେ ରହିବା ପାଇଁ ମାତ୍ର ଚାରି ପାଞ୍ଚ ଦିନ ପାଇଥିଲି । ପୂର୍ବରୁ ଭୁବନେଶ୍ୱରରେ ରାଜ୍ୟ ସରକାରଙ୍କ ଘରୋଇ ବିଭାଗ ମାଧ୍ୟମରେ ମୋର ପାସପୋର୍ଟ ହୋଇ ଯାଇଥିଲା । କେବଳ ଭିସା ଆଣିବା ପାଇଁ କଲିକତା ଯିବାକୁ ପଡ଼ିଥିଲା । ଯାତ୍ରାପୂର୍ବରୁ କଲିକତାସ୍ଥିତ ବ୍ରିଟିଶ କାଉନ୍‌ସିଲ ଅଫିସ ଯାଇ ବିଲାତଯାତ୍ରାର ଆବଶ୍ୟକୀୟ କାଗଜପତ୍ର ଓ ଥମାସକୁକ୍ ଟ୍ରାଭେଲସ୍ କାର୍ଯ୍ୟାଳୟରୁ ଟିକେଟ ଆଣିବାର ଥିଲା ।

ମୁଁ ୧୯୮୩ ମସିହା ଜାନୁୟାରୀ ମାସ ନଅ ତାରିଖର ଏକ ଅଳସ ଅପରାହ୍ଣରେ ଗାଆଁମାଟି ଛାଡ଼ି କଲିକତା ଯିବା ପାଇଁ ଭୁବନେଶ୍ୱର ଷ୍ଟେସନ ଅଭିମୁଖେ ବାହାରିଲି । ଛତିଆ ପର୍ଯ୍ୟନ୍ତ ମୋତେ ଛାଡ଼ିବା ପାଇଁ ମୋ ବଡ଼ଭାଇ ଶ୍ରୀଯୁକ୍ତ ଚତୁର୍ଭୁଜ ବ୍ରହ୍ମା ଓ ପୁତୁରା ଶ୍ରୀମାନ୍ ସରୋଜ ସୁନ୍ଦର ବ୍ରହ୍ମା ଓ ଶିଶୁପୁତ୍ର ବାପି ଓ ମୁନୁ ଆସିଥିଲେ । ବାପି ଓ ମୁନୁର ବୟସ ଅତି ଅଳ୍ପ ହୋଇଥିବା ହେତୁ ସେମାନେ ମୁଁ କେବେ ଫେରିବି ବୋଲି ମୋତେ ବାରମ୍ବାର ପ୍ରଶ୍ନ କରୁଥିଲେ । ବିଲାତର ଦୂରତ୍ୱ ଓ ତିନିମାସର ସମୟ ବ୍ୟବଧାନକୁ ସେମାନେ ସେତେବେଳେ ସହଜରେ ଆକଳନ କରିପାରୁ ନ ଥିଲେ ।

ଭୁବନେଶ୍ୱର ଷ୍ଟେସନରେ ସେ ଦିନ ରାତି ଦଶଟା ବେଳେ ପୁରୀ - ହାଉଡ଼ା ଏକସ୍‌ପ୍ରେସ୍ ଧରି ଆମର ଭୁବନେଶ୍ୱରରୁ କଲିକତା ଯିବାର ଥିଲା । ମୋ ସହିତ ଯାଉଥିଲେ ରାଜ୍ୟ ଶିକ୍ଷା ଗବେଷଣା ପରିଷଦର ଅଧ୍ୟାପକ ପଦ୍ମଚରଣ ମହାନ୍ତି ଓ ରେଭେନ୍‌ସା ମହାବିଦ୍ୟାଳୟର ଅଧ୍ୟାପକ ଚିଦାନନ୍ଦ ପାତ୍ର । ଆମେ ତିନିବନ୍ଧୁ ଭୁବନେଶ୍ୱର ରେଳ ଷ୍ଟେସନରେ ଏକାଠି ହେଲୁ ।

ମୋତେ ଷ୍ଟେସନରେ ବିଦାୟ ଦେବା ପାଇଁ ମୋ ବଡ଼ ଭାଇ ଶ୍ରୀଯୁକ୍ତ ଚତୁର୍ଭୁଜ ବ୍ରହ୍ମା ଆସିଥିଲେ । ଆମେ କଲିକତାରେ ଆବଶ୍ୟକୀୟ କାମସାରି ୧୯୮୩ ମସିହା ଜାନୁୟାରୀ ଏଗାର ତାରିଖ ମଙ୍ଗଳବାର ଦିନ କଲିକତାସ୍ଥିତ ଦମଦମ୍ ଆନ୍ତର୍ଜାତିକ ବିମାନଘାଟି (ବର୍ତ୍ତମାନର ନେତାଜୀ ସୁବାସଚନ୍ଦ୍ର ବୋଷ ଆନ୍ତର୍ଜାତିକ ବିମାନଘାଟି)ରୁ ବିଲାତ ଅଭିମୁଖେ ପ୍ରସ୍ଥାନ କଲୁ । ଲଣ୍ଡନ ସହରରେ ଅବସ୍ଥିତ ହିଥ୍ରୋ ବିମାନ ଘାଟିରେ

ବାର ତାରିଖ ବୁଧବାର ଦିନ ଭୋରରେ ପହଞ୍ଚିଲୁ । ସେଠାରୁ ଲଣ୍ଡନରେ ଅବସ୍ଥିତ ବ୍ରିଟିଶ୍ କାଉନସିଲ କାର୍ଯ୍ୟାଳୟ ଯାଇ ଆମର ଗନ୍ତବ୍ୟସ୍ଥଳ କାର୍ଲିଲାଇଲ୍ ଅଭିମୁଖେ ଟ୍ରେନ୍‌ରେ ଯାତ୍ରା କରିଥିଲୁ । କାର୍ଲିଲାଇଲସ୍ଥିତ ଏଦନ୍‌ଭିଜନ ଷ୍ଟୁଡ଼ିଓ ଥିଲା ଆମର ପ୍ରଶିକ୍ଷଣସ୍ଥଳୀ । ଏହାର ନିର୍ଦ୍ଦେଶକ ଥିଲେ ରାୟ ଥମ୍ପସନ୍ । ଆମର ପ୍ରଶିକ୍ଷକ ଥିଲେ ଗାୟ ଫିଦରସନ୍ । ଆଉ ଯେଉଁ କେତେଜଣ କର୍ମଚାରୀଙ୍କ ସଂସ୍ପର୍ଶରେ ଆସିଥିଲୁ ସେମାନେ ହେଲେ ରବର୍ଟ, ଆର୍ଣ୍ଣି, ଟୋନି, ଉପସ୍ଥାପକ ଆଲିକ୍ ଏବଂ କାର୍ଯ୍ୟାଳୟର ପରିଚାଳକ କ୍ରିଷ୍ଟାଇନ୍ ରୋଗରସନ୍ ।

ଆମେ ପହଞ୍ଚିଲା ପରେ ପରେ ତିନିମାସ କାଳ କ'ଣ କରାଯିବ ତା'ର ଏକ ପ୍ରୋଗ୍ରାମ ବହି ଆମକୁ ଦିଆଯାଇଥିଲା । ଷ୍ଟୁଡ଼ିଓ ମଧ୍ୟରେ ଶିକ୍ଷାସଂପର୍କୀୟ ଅନେକ କାର୍ଯ୍ୟକ୍ରମର ଲେଖା ପ୍ରସ୍ତୁତ କରିବାଠାରୁ ତା'ର ନିର୍ଦ୍ଦେଶନା ଦେବା, ଭିଡ଼ିଓ ରେକଡ଼ିଂ କରିବା, ଆବଶ୍ୟକସ୍ଥଳେ କ୍ୟାମେରାମ୍ୟାନ୍ କାର୍ଯ୍ୟ କରିବା ଆମ ପାଇଁ ଏକ ଆହ୍ୱାନ ଥିଲା । ଥରେ ଏକ କାର୍ଯ୍ୟକ୍ରମର ପ୍ରସ୍ତୁତିରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କାମ କରି ମୁଁ ବ୍ୟସ୍ତ ଓ ବିବ୍ରତ ହୋଇ ବସି ପଡ଼ିଥିଲି । ମୋର ଟିଉଟର ଗାୟ ଫିଦରସନ୍ ମୋ ପିଠିରେ ହାତ ବୁଲାଇ ଆଣି କହିଲେ, "ବ୍ରହ୍ମା, ଟିକିଏ ରିଲାକ୍ସ କର ।" ତାଙ୍କର ସେଦିନର ସେଇ ସ୍ନେହାସିକ୍ତ କଥା କେଇପଦକ ଏବେବି ମୋ ପାଇଁ ଅବିସ୍ମରଣୀୟ ହୋଇ ରହିଛି ।

ଆମ୍ଭେମାନେ ଅନେକ ସମୟରେ ବିଲାତର କବି ଉଇଲିୟମ୍ ୱାର୍ଡ଼ସ ୱାର୍ଥଙ୍କ ଉପରେ ଆଲୋଚନା କରୁଥିବା ଗାୟ ଫିଦରସନଙ୍କ ନଜରକୁ ଆସିଥିଲା । ତେଣୁ ସେ କାର୍ଯ୍ୟକ୍ରମର ଶେଷ ଭାଗରେ ବାହ୍ୟ ସୁଟିଂ (Outdoor Suiting) କାର୍ଯ୍ୟକ୍ରମ ହିସାବରେ କବି ୱାର୍ଡ଼ସ ୱାର୍ଥଙ୍କ ଜନ୍ମସ୍ଥାନ ଲେକ୍ ଡ଼ିଷ୍ଟ୍ରିକ୍ଟକୁ ଆଧାର କରି କେତେକ କାର୍ଯ୍ୟକ୍ରମ (Programme) ରଖିଥିଲେ । କବି ଉଇଲିୟମ୍ ୱାର୍ଡ଼ସ ୱାର୍ଥଙ୍କ ବିଷୟରେ ଏକ ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମର ନିର୍ଦ୍ଦେଶକ ଭାବେ ମୁଁ କାର୍ଯ୍ୟ କରିଥିଲି । ଆମେ କାର୍ଲିଲାଇଲ୍ ଛାଡ଼ିଲା ପୂର୍ବରୁ ଆମ ଦ୍ୱାରା କରାଯାଇଥିବା ସମସ୍ତ କାର୍ଯ୍ୟକ୍ରମର ଭିଡ଼ିଓ ଆମକୁ ଦିଆଯାଇଥିଲା ।

କାର୍ଲିଲାଇଲ୍‌ରେ ଥିବାବେଳେ ଗୋଟିଏ ଅନନ୍ୟ ଦୃଶ୍ୟ ମୋତେ ଏଦନ୍‌ଭିଜନ ଷ୍ଟୁଡ଼ିଓର ନିର୍ଦ୍ଦେଶକ ରାୟ ଥମ୍ପସନ ଦେଖାଇ ଦେଇଥିଲେ । ତାହା ହେଉଛି ଜଣେ ବୃଦ୍ଧ ଅନ୍ଧବ୍ୟକ୍ତିକୁ ଗୋଟିଏ ପୁଲିସ ବିଭାଗର କୁକୁର ବ୍ୟସ୍ତ ବହୁଳ କାର୍ଲିଲାଇଲ ଛକ ରାସ୍ତା ପାର କରି ଦେବାର ଦୃଶ୍ୟ । ଏଇ ଦୃଶ୍ୟକୁ ମୁଁ ଦେଖୁଥିଲାବେଳେ ସେ ମୋତେ ତାଙ୍କ ଦେଶର ପୁଲିସ ସଂସ୍ଥା କିପରି ବୃଦ୍ଧ ବୟସରେ ଦୃଷ୍ଟିହୀନ ଲୋକଙ୍କୁ ସାହାଯ୍ୟ କରିବା

ପାଇଁ ପ୍ରଶିକ୍ଷିତ କୁକୁରମାନ ଦେଉଅଛି ତାହା କହି ଚାଲିଥିଲେ । ସେ କହିଥିଲେ ଯେ କେବଳ ରାସ୍ତାରେ ନବା କିମ୍ବା ଛକପାରି କରାଇବା କୁକୁରର ପ୍ରମୁଖ କାର୍ଯ୍ୟ ନ ଥିଲା । ସେ ଭଦ୍ରବ୍ୟକ୍ତି ଯଦି କୁକୁରଟିକୁ ବ୍ୟାଙ୍କ କିମ୍ବା ପୋଷ୍ଟଅଫିସକୁ ଯିବାକୁ କହୁଥିଲେ, ତେବେ ସେ ସେଠାକୁ ତାଙ୍କୁ ନେଉଥିଲା । ଏତଦ୍‌ବ୍ୟତୀତ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷପତ୍ର କିଣିବା ନିମନ୍ତେ ଚାହିଁଲେ, ସେ ଉଦ୍ଦିଷ୍ଟ ଦୋକାନକୁ ଚିହ୍ନଟ କରି ସେଠାରେ ପହଞ୍ଚାଇ ଦେଉଥିଲା ।

ବିଲାତ ଯିବା ପୂର୍ବରୁ ମୋର ଥରେ ରାଜ୍ୟର ଅଗ୍ରଣୀ ଶିଶୁ ପତ୍ରିକା ସଂସାରର ସଂପାଦକ ପୂଜ୍ୟ ରାମକୃଷ୍ଣ ନନ୍ଦଙ୍କ ସହିତ ଦେଖା ହୋଇଥିଲା । ମୁଁ ବିଲାତ ଯାଉଥିବା କଥା ଶୁଣି ସେ ବିଶେଷ ଖୁସି ହୋଇଥିଲେ । ବିଲାତ ଅନୁଭୂତିରୁ କିଛି ଲେଖି 'ସଂସାର' ପତ୍ରିକାରେ ପ୍ରକାଶିତ କରିବା ନିମନ୍ତେ ଦେବାକୁ ସେ ମୋତେ କହିଥିଲେ ।

ସେଦିନ କାର୍ଲଲାଇଲ ରାଜ ରାସ୍ତାରେ ଉପର ବର୍ଣ୍ଣିତ ଦୃଶ୍ୟ ଦେଖିବା ପରେ ମୁଁ କାର୍ଲଲାଇଲରେ ରହୁଥିବା ୟୁକ୍ରେନ୍ ଛାତ୍ରାବାସକୁ ଫେରିଆସିଥିଲି । କିଛି ତଥ୍ୟ ଓ କଳ୍ପନାକୁ ଆଧାର କରି "ସାର୍ ଜନ୍‌ଙ୍କ ପ୍ରିୟ ସାଥୀ ଡ଼ିକ୍" ଗଳ୍ପଟିକୁ ଶିଶୁ ଓ କିଶୋରମାନଙ୍କ ପାଇଁ ଲେଖିଥିଲି । ସେହି ଗଳ୍ପଟିକୁ ବିଲାତରୁ ଫେରି ଆସିଲା ପରେ ପୂଜ୍ୟ ନନ୍ଦଙ୍କୁ ସଂସାରରେ ପ୍ରକାଶିତ କରିବା ନିମନ୍ତେ ତାଙ୍କ ତଳ ତେଲଙ୍ଗା ବଜାରସ୍ଥିତ ସଂସାର କାର୍ଯ୍ୟାଳୟରେ ଦେଇ ଆସିଥିଲି । ଲେଖାଟି ପ୍ରକାଶିତ ହେଲାପରେ ସେ ମୋ ପାଖକୁ ପୋଷ୍ଟକାର୍ଡ଼ରେ ଚିଠିଟିଏ ଲେଖି ଏହା ଶିଶୁମାନଙ୍କ ପାଇଁ ଏକ ଶିକ୍ଷଣୀୟ ଓ ସୁନ୍ଦର ଗଳ୍ପ ବୋଲି ଜଣାଇଥିଲେ ।

ଆମେ କାର୍ଲଲାଇଲରେ ଆମର ତିନିମାସ ରହଣି ମଧ୍ୟରେ ସେଠାକାର ବହୁ ଦର୍ଶନୀୟ ଓ ଐତିହାସିକ ସ୍ଥାନ ଦେଖିଥିଲୁ । ବିଭିନ୍ନ ଉଚ୍ଚ ମାଧ୍ୟମିକ ସ୍କୁଲ ମଧ୍ୟ ଯାଇଥିଲୁ ଓ ସେଠାକାର ଶିକ୍ଷାଦାନ ଲକ୍ଷ୍ୟ କରିଥିଲୁ । ଶିକ୍ଷକମାନଙ୍କୁ ସେମାନଙ୍କ ପ୍ରକୋଷ୍ଠରେ ଭେଟି ଆଲୋଚନା କରିବାର ସୁଯୋଗ ପାଇଥିଲୁ । ଏତଦ୍‌ବ୍ୟତୀତ ପିଲାମାନଙ୍କ ସହିତ ମଧ୍ୟାହ୍ନ ଭୋଜନରେ ଯୋଗ ଦେଇଥିଲୁ । ସେମାନଙ୍କର ମଧ୍ୟାହ୍ନ ଭୋଜନ ଗୁଣାତ୍ମକ, ସ୍ୱାଦିଷ୍ଟ ଓ ରୁଚିକର ଥିଲା ।

ପରିଶେଷରେ କାର୍ଲଲାଇଲ୍‌ରୁ ବିଦାୟ ନେବାର ଦିନ ଆସି ପହଞ୍ଚିଲା । ଆମେ ଏପ୍ରିଲ ନଅ ତାରିଖରେ କାର୍ଲଲାଇଲ୍ ଷ୍ଟେସନରୁ ଲଣ୍ଡନ ଅଭିମୁଖେ ଯାତ୍ରା କରିଥିଲୁ । ଆମକୁ ବିଦାୟ ଦେବାକୁ କାର୍ଲଲାଇଲ ଷ୍ଟେସନକୁ ଆମର ଡାଇରେକ୍ଟର ରାୟ ଥମ୍ପସନ୍, ପ୍ରଶିକ୍ଷକ ଗାୟ ଫିଦରସନ୍ ରବର୍ଟ, ଆଣ୍ଡି, ଟୋନି ଓ ଗ୍ରେସ୍ ଆସିଥିଲେ । ସେମାନେ

ଷ୍ଟେସନ୍‌ରେ ଆମକୁ ଚା' ପାନୀୟରେ ଆପ୍ୟାୟିତ କରିଥିଲେ । ଗାଡ଼ି ଛାଡ଼ିବା ପୂର୍ବରୁ କୁମାରୀ ଗ୍ରେସ୍ ପଦବାବୁଙ୍କୁ ଗାଲରେ ଏକ ଚୁମ୍ବନ ଦେଇଥିଲେ । ଯେହେତୁ ସେ ତାଙ୍କର ଝିଅଭଳି ଥିଲେ ତାହା ତାଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧାର ଚୁମ୍ବନ ଥିଲା । ଏପରି ଚୁମ୍ବନ ତାଙ୍କ ଚଳଣିରେ ପ୍ରଚଳିତ । ସ୍ଥଳ ବିଶେଷରେ ଏହା ଅର୍ଥ ମଧ୍ୟ ଭିନ୍ନଭିନ୍ନ । ଆମେ କାର୍ଲଲାଇଲରୁ ଫେରି ଲଣ୍ଡନ ସହରରେ ଅବସ୍ଥିତ ଓଡ଼ିଶାର ଲୋକମାନଙ୍କ ପାଇଁ ଥିବା ୱାଇଏମ୍ ସିଏ (YMCA) ଛାତ୍ରାବାସରେ ତିନିଚାରିଦିନ ପାଇଁ ରହିଲୁ । ସେତେବେଳେ ଏହାର ପରିଚାଳନା ଦାୟିତ୍ୱରେ କଟକରେ ଜନୈକ ନାୟକ ବାବୁ ଥିଲେ । ସେ ଆମ୍ଭମାନଙ୍କୁ ଏଇ ତିନି ଚାରି ଦିନ ମଧ୍ୟରେ ଲଣ୍ଡନ ସହରର କେତେକ ପ୍ରମୁଖ ଦର୍ଶନୀୟ ସ୍ଥାନ ଦେଖିବା ନିମନ୍ତେ ପରାମର୍ଶ ଦେଲେ । ଆମେ ଲଣ୍ଡନରେ ଥିଲାବେଳେ ମାଡ଼ାମ ଟୁସାଡ଼, ଲଣ୍ଡନ ଲାଇବ୍ରେରୀ, ରାଜପ୍ରାସାଦ, ହାଇଡ଼ ପାର୍କ ଆଦି ଦେଖିବାର ସୁଯୋଗ ପାଇଥିଲୁ । ଲଣ୍ଡନର ସ୍ୱଳ୍ପ ଦିନର ରହଣି ଚିତ୍ତାକର୍ଷକ ଥିଲା । ଏହାର ଭୂଇଁତଳ ରେଳରେ ଯିବାର ପ୍ରଥମ ଥରର ଅନୁଭୂତି ବହୁତ ରୋମାଞ୍ଚକର ଥିଲା ।

ପରିଶେଷରେ ଆମେ ତିନିବନ୍ଧୁ ହିଥ୍ରୋ ଆନ୍ତର୍ଜାତିକ ବିମାନ ଘାଟିରୁ ୧୧ ଏପ୍ରିଲ, ୧୯୮୩ ରବିବାର ଦିନ ବ୍ରିଟିଶ୍ ଏୟାରେୱେଜ ବିମାନରେ ଆସି କଲିକତା ଆନ୍ତର୍ଜାତିକ ବିମାନ ଘାଟିରେ ତା'ପରଦିନ ଦିନବେଳା ପହଞ୍ଚିଲୁ । ସେଇଦିନ କଲିକତାରୁ ଟ୍ରେନ୍‌ଯୋଗେ ଭୁବନେଶ୍ୱର ଆସି ନିଜ ନିଜର ଘରକୁ ଫେରିଲୁ ।

**ମୋ ଗବେଷଣା : କେତେ ସ୍ମୃତି ! କେତେ ଅନୁଭୂତି !**

ମୋର ଗର୍ବ ଓ ଗୌରବ ଯେ ମୁଁ ମୋର ଗବେଷଣାର ପଥ ପ୍ରଦର୍ଶକ ଭାବରେ ରାଜ୍ୟ ଓ ଦେଶର ଆଗଧାଡ଼ିର ଗବେଷକ, ଶିକ୍ଷାବିତ୍ ପ୍ରଫେସର ଜଗନ୍ନାଥ ମହାନ୍ତିଙ୍କୁ ପାଇଥିଲି । ସମ୍ବଲପୁରରେ ଅଧ୍ୟାପକ ଥିଲାବେଳେ ବରିଷ୍ଠ ଅଧ୍ୟାପକ କାଳିଚରଣ ସାହୁ ତାଙ୍କର ଏକ ସଦ୍ୟ ପ୍ରକାଶିତ ଲେଖା ମୋତେ ଦେଖାଇଥିଲେ । ମୁଁ ଅଧ୍ୟାପକ ସାହୁଙ୍କୁ କହିଥିଲି, "ମୋର ପ୍ରଫେସର ମହାନ୍ତିଙ୍କ ସହିତ ଆଗରୁ ପରିଚୟ ନାହିଁ । ଆପଣ ଯଦି ମୋ ଥେସିସ୍‌ର ଗାଇଡ୍ ହେବା ପାଇଁ ଡଃ ମହାନ୍ତିଙ୍କୁ ସମ୍ମତି ଦେବାକୁ କହନ୍ତେ ତେବେ ମୁଁ ଉପକୃତ ହୁଅନ୍ତି ।"

ସେ ମୋ କଥା ଶୁଣି ସେତେବେଳେ ରାଜ୍ୟ ଶିକ୍ଷା ଓ ଗବେଷଣା ପରିଷଦର ପ୍ରାଧ୍ୟାପକ ଭାବେ କାର୍ଯ୍ୟ କରୁଥିବା ଡକ୍ଟର ମହାନ୍ତିଙ୍କ ପାଖକୁ ମୋ ଗବେଷଣା ପ୍ରସଙ୍ଗ ଲେଖି ଚିଠିଟିଏ ଲେଖିଥିଲେ । ଫେରନ୍ତା ଡାକରେ ତାଙ୍କ ହସ୍ତଲିଖିତ ଅନ୍ତର୍ଦେଶୀୟ ପତ୍ରଟିଏ ମିଳିଥିଲା । ସେଥିରେ ସେ ଲେଖିଥିଲେ, " ମୁଁ ଦିଗରାଜ ବାବୁଙ୍କୁ ଯଦିଓ ପୂର୍ବରୁ

ଦେଖିନାହିଁ, ତଥାପି ତାଙ୍କ ରଚିତ ଅନେକ ଲେଖା ପଢ଼ିବାର ସୁଯୋଗ ପାଇଛି । ସେ ଶିଶୁ ସାହିତ୍ୟରେ ଗବେଷଣା କରିବାକୁ ଚାହୁଁଛନ୍ତି । ଏହା ଏକ ଭଲ କଥା । ସେ ମୋତେ ଆସି ଭୁବନେଶ୍ୱରରେ ଭେଟିଲେ ଆମେ ତାଙ୍କର ଗବେଷଣାର ବିଷୟବସ୍ତୁ ନେଇ ଏକ ସିନୋପ୍‌ସିସ୍ (Synopsis) ପ୍ରସ୍ତୁତ କରିବୁ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଗବେଷଣା କରିବା ନିମନ୍ତେ, ସେ ବାଣୀବିହାରରୁ ଆବଶ୍ୟକ କାଗଜପତ୍ର ଆଣିଲେ ମୁଁ ସେଥିରେ ଦସ୍ତଖତ କରିଦେବି । ଅଳ୍ପଦିନ ମଧ୍ୟରେ ରେଜିଷ୍ଟ୍ରେସନ ମଧ୍ୟ ହୋଇଯିବ ।"

ତାଙ୍କର ଚିଠି ମୋ ପାଇଁ ଆଶାଜନକ ଥିଲା । ସେତେବେଳେ ପିଏଚ୍.ଡ଼ି ଗବେଷଣା ନିମନ୍ତେ ଗାଇଡ଼ଟିଏ ପାଇବା ମଧ୍ୟ ବଡ଼ କଷ୍ଟକର ଥିଲା । ଅତି ସହଜରେ ସେ ରାଜି ହୋଇଯାଇଥିବାରୁ ମୋର ଏଣିକି ଗବେଷଣା ନିମନ୍ତେ କୌଣସି ଚିନ୍ତା ନ ଥିଲା ।

ତେଣୁ ମୁଁ ମଝିରେ ମଝିରେ ସମ୍ବଲପୁରରୁ ଭୁବନେଶ୍ୱର ଆସି ତାଙ୍କ ସହିତ ଆଲୋଚନା କରି ଗବେଷଣା କାର୍ଯ୍ୟକୁ ଆଗେଇ ନେଉଥିଲି । ସେତେବେଳେ ରାଜ୍ୟସରକାର ଗବେଷଣା ନିମନ୍ତେ ସବୈତନିକ ଛୁଟି ଦେଉଥିବା ହେତୁ ମୋତେ ଅଧ୍ୟୟନ ଛୁଟି (Study leave) ନେବାକୁ ଡକ୍ଟର ମହାନ୍ତି ପରାମର୍ଶ ଦେଇଥିଲେ । ତାଙ୍କ ପରାମର୍ଶ ଅନୁସାରେ ମୁଁ ଛୁଟି ପାଇଁ ଆବେଦନ କରିଥିଲି । ଯେତେବେଳେ ଏଇ ଛୁଟି ମଞ୍ଜୁର ହୋଇ ସରକାରଙ୍କଠାରୁ ଆସିଲା, ସେଇ ସମୟରେ ମୋର କଲେଜ ଜୀବନ ପ୍ରଶାସନିକ ତାଡ଼ନାରେ ବିପର୍ଯ୍ୟସ୍ତ ହୋଇଥିଲା । ତେଣୁ ମୁଁ ସଙ୍ଗେ ସଙ୍ଗେ ଛୁଟିନେଇ ସାବିତ୍ରୀ ନିବାସରେ କିଛିଦିନ ରହିଥିଲି । ଏଇ ସମୟରେ ବିଲାତ ଯିବାକୁ ଚିଠି ଆସିବାରୁ ମୁଁ ସମ୍ବଲପୁର ଛାଡ଼ି ଘରକୁ ଚାଲି ଆସିଥିଲି ।

ବିଲାତରୁ ଫେରି ମୁଁ ଗବେଷଣାର ସଦରମହକୁମା ଭୁବନେଶ୍ୱର ଆସିଲି । ଭୁବନେଶ୍ୱରର ଅଗ୍ନିଶମ କେନ୍ଦ୍ର ପାଖ ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀରେ ଅବସ୍ଥିତ ଡି.ପିଆଇ ଅଫିସର ତତ୍‌କାଳୀନ ବରିଷ୍ଠ କର୍ମଚାରୀ ଶ୍ରୀଯୁକ୍ତ ପ୍ରହଲ୍ଲାଦ ଦାଶଙ୍କ ଘରକୁ ଭଡ଼ାସୂତ୍ରରେ ନେଲି । ସେଇ ଘର ମୋର ଗବେଷଣାର ସାଧନା କ୍ଷେତ୍ର ହେଲା ।

ବରମୁଣ୍ଡା ହାଉସିଂ ବୋର୍ଡ଼ରୁ ମାଷ୍ଟରକାଣ୍ଟିନ୍‌ସ୍ଥିତ ଡ଼କ୍ଟର ମହାନ୍ତିଙ୍କ ସରକାରୀ ଘରକୁ ମୁଁ ଅନେକ ସମୟରେ ଯାଇଛି । ଡ଼କ୍ଟର ମହାନ୍ତିଙ୍କ ସହଧର୍ମିଣୀ ଶ୍ରୀମତୀ ଆହ୍ଲାଦିନୀ ମହାନ୍ତି ତାଙ୍କର ସମସ୍ତ ପିଲାମାନଙ୍କର ଦାୟିତ୍ୱ ସହିତ ମୋ ଭଳି ଆସୁଥିବା ଅଧ୍ୟାପକମାନଙ୍କ ମଧ୍ୟ ଦାୟିତ୍ୱ ନେଉଥିଲେ । ଏମିତି କୌଣସି ଦିନ ନ ଥିଲା, ଯେଉଁ ଦିନ ତାଙ୍କ ଘରର ଆତିଥ୍ୟ ନ ପାଇ ମୁଁ ଘରକୁ ଫେରିଥିଲି । ଏବେ ପ୍ରଫେସର ମହାନ୍ତିଙ୍କ ଆବର୍ତ୍ତମାନରେ ମଧ୍ୟ ତାଙ୍କ ଘରକୁ ଗଲେ ସେ ମହୀୟସୀ ମହିଳା ବିନା ଆତିଥ୍ୟରେ ଛାଡ଼ନ୍ତି ନାହିଁ । ଯେମିତି ଆମ ସହିତ ପ୍ରଫେସର ମହାନ୍ତି ଦମ୍ପତିଙ୍କ ପୂର୍ବଜନ୍ମର ସଂପର୍କ ଥିଲା ।

ଗବେଷଣା ସମୟ ମଧ୍ୟରେ ଘଟିଥିବା ଗୋଟିଏ ଦୁଇଟି ଘଟଣା ମୋ ପାଇଁ ଖୁବ୍ ଶିକ୍ଷଣୀୟ ଥିଲା । ସେଥିରୁ ମୁଁ ପ୍ରଫେସର ମହାନ୍ତି କେତେଦୂର ଧୈର୍ଯ୍ୟଶୀଳ ଓ ସ୍ଥିତପ୍ରଜ୍ଞ ଥିଲେ ତା'ର ପରିଚୟ ପାଇଥିଲି । ପ୍ରଥମ ଘଟଣା ଘଟିଥିଲା ଏଇପରି :

ଦିନେ ସନ୍ଧ୍ୟାବେଳେ ମୁଁ ମାଷ୍ଟରକାଣ୍ଟିନ୍ ଛକ ନିକଟସ୍ଥ ତାଙ୍କ ସରକାରୀ ବାସଭବନରେ ପହଞ୍ଚିଥିଲି । ମୋ ହାତରେ ଥେସିସ୍‌ର ଲିଖିତ ଗୋଟିଏ ଅଧ୍ୟାୟ ଥିଲା । ପହଞ୍ଚି ଦେଖିଲି ଯେ ସାର୍ ସେ ସମୟରେ ଅଫିସରୁ ଫେରି ବାହାର ବାରଣ୍ଡାର ଚେୟାରରେ ବସି ଜୋତା ଖୋଲୁଛନ୍ତି । ମୋତେ ଦେଖି ସଙ୍ଗେ ସଙ୍ଗେ କହିଲେ, "ଦିଗରାଜ ବାବୁ ! ଏଠାରେ ବସନ୍ତୁ । ମୁଁ ଟିକିଏ ଫ୍ରେସ୍ ହୋଇ ଆସେ ।" ସାଥେ ସାଥେ ସେ ଘର ଭିତରକୁ ଚାଲିଗଲେ । କିଛି ସମୟ ପରେ ଆସି ମୋ ପାଖରେ ବସିଲେ । କହିଲେ, "ଦିଗରାଜ ବାବୁ ! ଘରେ ଦୁଇତିନି ଜଣ ପିଲାଙ୍କ ଦେହ ଭଲ ନାହିଁ । ଗୋଟିଏ ଝିଅର ଜର ଟାଇଫଏଡ୍ ଆଡ଼କୁ ଗତି କଲାଣି ।"

ମୁଁ ସାରଙ୍କ ଆଡ଼କୁ ଚାହିଁଲି । ଏ ପରିସ୍ଥିତିରେ ସେଠାରୁ କେମିତି ଖସିବି ମନେ ମନେ ଚିନ୍ତା କଲି । କିଛି ସମୟପରେ ଦେଖିଲି ସାରଙ୍କ ଅସ୍ତବ୍ୟସ୍ତ ମନ ଶାନ୍ତ ହୋଇ ଆସିଛି । ଏଇ ସମୟକୁ ଅନୁକୂଳ ମନେ କରି ମୁଁ କହିଲି, "ସାର୍ ! ଆଜି ମୁଁ ଫେରିଯାଉଛି । ଆଉ ଦିନେ ଆସିବି ।"

ସାର୍ ସଙ୍ଗେ ସଙ୍ଗେ କହି ଉଠିଲେ, "ଆପଣ ଫେରିଯିବାର କୌଣସି ଆବଶ୍ୟକତା ନାହିଁ । ଏସବୁ ମୋର ଦେହସୁହା । ମୋ ପଢ଼ା ଘର ଭିତରକୁ ଆସନ୍ତୁ । ଆମେ ସେଠାରେ ଆପଣଙ୍କ ଲେଖାଗୁଡ଼ିକ ଦେଖି ନେବା ।"

ଏହା କହି ସେ ବୈଠକ ଘରକୁ ଗଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ଗଲି । ସେ ତାଙ୍କ ଚେୟାରରେ ବସି ମୋ ଗବେଷଣା ସଂପର୍କୀୟ ଲିଖିତ ଅଧ୍ୟାୟକୁ ଟିକିନିଖି କରି ଦେଖିଲେ । ଆବଶ୍ୟକସ୍ଥଳେ ପରିବର୍ତ୍ତନ କରିଦେଲେ । ଅତି ସହଜରେ ଧୈର୍ଯ୍ୟର ସହିତ ମୋର ଗୋଟିଏ ଅଧ୍ୟାୟ ସଂଶୋଧିତ ହୋଇଥିବା ହେତୁ ସେଦିନ ରାତି ଦଶଟାବେଳେ ମୁଁ ଆନନ୍ଦରେ ବରମୁଣ୍ଡାସ୍ଥିତ ମୋର ବାସଭବନକୁ ଫେରି ଆସିଲି । ସେତେବେଳେ ମୋବାଇଲ ସେବା ପ୍ରଚଳନ ନ ଥିଲା । ତେଣୁ ଅତ୍ୟଧିକ ଡେରି ହେବାରୁ ଘରେ ପିଲାମାନେ ଚିନ୍ତିତ ଥିଲେ ।

ସେହିପରି ଥେସିସ୍‌କାମ ସରିବା ସରିବା ହେଉଥିବା ସମୟର ଏକ ଘଟଣା ମଧ୍ୟ ମୋ ମନକୁ ରେଖାପାତ କରିଥିଲା । ଦିନେ ସନ୍ଧ୍ୟାବେଳେ ଡକ୍ଟର ମହାନ୍ତି ସପତ୍ନିକ ମୋର ବରମୁଣ୍ଡାସ୍ଥିତ ବାସଭବନକୁ ବୁଲି ଆସିଥିଲେ । ଶ୍ରୀମତୀ ମହାନ୍ତି ଶ୍ରୀମତୀ ବ୍ରହ୍ମାଙ୍କ

ସହିତ କଥାବାର୍ତ୍ତାରେ ଲାଗି ପଡ଼ିଲେ । ଏଇ ଅବସରରେ ପ୍ରଫେସର ମହାନ୍ତି ମୋତେ କହିଲେ, "ଦିଗରାଜ ବାବୁ ! ଆପଣଙ୍କର ଆଉ କିଛି ଅଧ୍ୟାୟ ଲେଖିବାକୁ ବାକି ଅଛି କି ?"

ମୁଁ ହଁ' ମାରିଲି ।

ସେ ସଙ୍ଗେ ସଙ୍ଗେ ସେସବୁ ତାଙ୍କୁ ଦେବାକୁ କହିଲେ । ମୁଁ ସମସ୍ତ ଲେଖା ତାଙ୍କୁ ଦେଲି । ସେଦିନ ସେ ଗପସପ ଓ ଚା'ପାନର ଆଳାପ ମଧ୍ୟରେ ମୋର ସମସ୍ତ ଲେଖା ସଂଶୋଧନ କରିଦେଲେ । ମୁଁ ସେଦିନ ତାଙ୍କର କର୍ମ କୁଶଳତା ଓ କାର୍ଯ୍ୟନିଷ୍ଠା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲି । ମୋତେ ଜଣା ଯାଇଥିଲା ସତେ ଯେମିତି ମୋ ମୁଣ୍ଡରୁ ଏକ ବିରାଟ ବୋଝ ଆପେ ଆପେ ସ୍ୱାଭାବିକ ଭାବେ ଖସି ଯାଉଛି ।

ସେତେବେଳେ ମୁଁ ଅନେକ ବନ୍ଧୁ ଗବେଷକଠାରୁ ଶୁଣିଥିଲି ଯେ ଗବେଷକ ଓ ପଥପ୍ରଦର୍ଶକ (Guide) ମଧ୍ୟରେ ଗବେଷଣା ଚାଲିଥିବା ସମୟରେ ସଂପର୍କର ସୂତାଖିଅ ଛିଣ୍ଡି ଯାଇଥାଏ । ଏପରିକି ସନ୍ଦର୍ଭର ଗୋଟିଏ ଗୋଟିଏ ଶବ୍ଦ ବଦଳାଇବା ପାଇଁ ଗାଇଡ୍ ଅନେକ ସମୟ ନେଇଥାନ୍ତି । ଗୋଟିଏ ଗୋଟିଏ ଅଧ୍ୟାୟ ମଧ୍ୟ ଆଠ ଦଶଥର ଲେଖା ଯାଇଥାଏ । ପୁଣି କେତେକ ଗାଇଡ୍ ମଧ୍ୟ ବିଭିନ୍ନ ଉପାୟରେ ଗବେଷକଙ୍କୁ ଶୋଷଣ କରିଥାନ୍ତି । ଏପରିକି ଜନୈକା ଅଧ୍ୟାପିକା ତାଙ୍କ ପ୍ରୋଭିଡ଼େଣ୍ଟ ଫଣ୍ଡରୁ ପଇସା ଉଠାଇ ଜଣେ ପ୍ରଫେସରଙ୍କୁ ଦେଲାପରେ ସେ ପ୍ରଫେସର ତାଙ୍କ ଥେସିସ୍‌କୁ ବିଶ୍ୱବିଦ୍ୟାଳୟରେ ଦଖଲ ନିମନ୍ତେ ଆବଶ୍ୟକ କାଗଜପତ୍ରରେ ଦସ୍ତଖତ କରିଥିଲେ ବୋଲି କେହି କେହି ଆଲୋଚନା କରୁଥିବାର ମୁଁ ସମ୍ବଲପୁରରେ ଶୁଣିଥିଲି ।

କିନ୍ତୁ ପ୍ରଫେସର ଜଗନ୍ନାଥ ମହାନ୍ତି ଥିଲେ ଏକ ବ୍ୟତିକ୍ରମ । ସେ କାହାଠାରୁ କେବେ ଚା' କପଟିଏ ଖାଇଲେ ତାକୁ ନ ଶୁଝାଇ ନିଶ୍ଚିନ୍ତ ରହନ୍ତି ନାହିଁ । ଥରେ ମୋ ସ୍କୁଟରରେ ଆମେ କୌଣସି ଏକ ସ୍ଥାନକୁ ଯାଇଥିଲୁ । ଫେରି ଆସିଲାପରେ ସେ ମୋ ପକେଟ୍‌ରେ ସେ ବାବଦକୁ ମୁଁ ମନା କରିବା ସତ୍ତ୍ୱେ ଜବରଦସ୍ତ ପେଟ୍ରୋଲ ଖର୍ଚ୍ଚ ରଖିଦେଇଥିଲେ । ଏସବୁ ଭାବିଲାବେଳେ ଆଜିକାଲି ଆମ ଆଖି ଆଗକୁ ପ୍ରଫେସର ମହାନ୍ତିଙ୍କ ଭଳି ଖୁବ୍ କମ୍ ବିରଳ ବ୍ୟକ୍ତିତ୍ୱ ଆସନ୍ତି । ଏଇପରି ଏକ ଅନୁରୂପ ବ୍ୟବହାର ମୁଁ ତତ୍‌କାଳୀନ ସଂସ୍କୃତି ବିଶ୍ୱବିଦ୍ୟାଳର କୁଳପତି ପ୍ରଫେସର ବିମଳେନ୍ଦୁ ମହାନ୍ତିଙ୍କଠାରୁ ପାଇଥିଲି । ମୋ ପାଇଁ ଖର୍ଚ୍ଚ କରିଥିବା ଅର୍ଥକୁ ମୁଁ ପରିଶୋଧ କଲାବେଳେ ସେ ଗ୍ରହଣ କଲେ ଓ ଜବରଦସ୍ତ ଦିଲ୍ଲୀ ବିମାନଘାଟିରେ ଆମେ ଭୁବନେଶ୍ୱର ଆସୁଥିବାବେଳେ ମୋ ପକେଟରେ ଭର୍ତ୍ତି କରିଦେଲେ । କୁଳପତି ପ୍ରଫେସର ମହାନ୍ତିଙ୍କ ମୋ ପ୍ରତି ସେଦିନର ସେ ସ୍ନେହ ମୋର ଅଭୁଲାସ୍ମୃତି ହୋଇ ରହିଅଛି ।

ମୋ ରଚିତ ସନ୍ଦର୍ଭ "The Educational Implications of Children's Litrature" ପ୍ରସ୍ତୁତ ହେଲା ପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ୧୯୮୪ ମସିହା ଡ଼ିସେମ୍ବର ୧୦ ତାରିଖ ଦିନ ଦାଖଲ ସମୟରେ ଜଣାପଡ଼ିଲା ଯେ ଥେସିସ୍ ସହିତ ଶିକ୍ଷାବିଭାଗର ଦୁଇଜଣ ପ୍ରଫେସରଙ୍କଠାରୁ ପ୍ରମାଣପତ୍ର ଦରକାର । ପ୍ରମାଣପତ୍ରରେ ସେମାନେ ଲେଖିବେ ଯେ ଗବେଷକ ପିଏଚ୍.ଡ଼ି. ଡ଼ିଗ୍ରୀ ପାଇବା ନିମନ୍ତେ ଜଣେ ଯୋଗ୍ୟ ଓ ଯଥାର୍ଥ ଲୋକ । ସେତେବେଳେ ପ୍ରଫେସର ପଦବୀରେ ସମଗ୍ର ଓଡ଼ିଶାରେ ଦୁଇତିନି ଜଣ ବ୍ୟକ୍ତି ଥିଲେ । ଏସ୍.ସି.ଇ.ଆର.ଟି.ର ନିର୍ଦ୍ଦେଶକ ପ୍ରଫେସର ଶରତଚନ୍ଦ୍ର ଦାଶଙ୍କୁ କହିବା ମାତ୍ରେ ସେ ପ୍ରମାଣପତ୍ର ଦେଇଦେଲେ । ସେତେବେଳେ ଭୁବନେଶ୍ୱରସ୍ଥିତ ଆଞ୍ଚଳିକ ମହାବିଦ୍ୟାଳୟର ଅଧକ୍ଷ ପ୍ରଫେସର ଗୋଷ୍ଠବିହାରୀ କାନୁନ୍‌ଗୋ ଥାଆନ୍ତି । ତାଙ୍କୁ ମୁଁ ପ୍ରମାଣପତ୍ର ପାଇଁ ଅନୁରୋଧ କଲାମାତ୍ରେ ସେ କ'ଣ ବୁଝିଲେ କେଜାଣି ମୋ ଉପରେ ବିରକ୍ତ ହେଲେ । ମୁଁ ଅଗତ୍ୟା କୌଣସି ଉପାୟ ନ ପାଇ ସେଠାରୁ ଫେରି ଆସିଲି । ରେଭେନ୍ସା କଲେଜ ଯାଇ ଶିକ୍ଷା ବିଷୟର ବିଭାଗୀୟ ମୁଖ୍ୟ ପ୍ରଫେସର ଗୋପାଳକୃଷ୍ଣ ସାମନ୍ତରାୟଙ୍କଠାରୁ ଆବଶ୍ୟକ ପ୍ରମାଣପତ୍ର ଧରି ଆସିଲି ।

ଥେସିସ୍ ଦାଖଲ ସମୟରେ ଥେସିସ୍‌ର ବିଷୟବସ୍ତୁ ଉପରେ ଧାରଣା ଥିବା ବିଦେଶର ପାଞ୍ଚଜଣ ପରୀକ୍ଷକଙ୍କ ନାମ ଗାଇଡ଼ ଦେଇଥାନ୍ତି । ସେମାନଙ୍କ ମଧ୍ୟରୁ ବିଦେଶ ପରୀକ୍ଷକମାନଙ୍କ ମଧ୍ୟରୁ ଜଣେ ଓ ସ୍ୱଦେଶ ପରୀକ୍ଷକମାନଙ୍କ ମଧ୍ୟରୁ ଜଣକଙ୍କର ନାମକୁ କୁଳପତି ପରୀକ୍ଷକ ହେବା ନିମନ୍ତେ ବାଛିଥାନ୍ତି । ଗାଇଡ଼ ଯେଉଁସବୁ ନାମ ଦେଇଥିଲେ ସେସବୁ ସେତେବେଳର ଗବେଷଣା କମିଟିର ଚେୟାରମ୍ୟାନ-ତଥା- ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ଭୁବନେଶ୍ୱରର ପ୍ରଫେସର କୈଳାସ ଚନ୍ଦ୍ର ପଣ୍ଡା ବଦଳାଇ ଦେଇଥିଲେ । ପରିଶେଷରେ ମୋର ପରୀକ୍ଷକ ହିସାବରେ ମନୋନୀତ ହୋଇଥିଲେ ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ପ୍ରଫେସର ଚାର୍ଲସ ଏସ୍. ବେନସନ୍ (Charles S. Benson)ଓ ପଶ୍ଚିମବଙ୍ଗ ରାଜ୍ୟସ୍ଥ କଲ୍ୟାଣୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଦୁର୍ଗାଦାସ ଭଟ୍ଟାଚାର୍ଯ୍ୟ ।

ଥେସିସ୍ ଦାଖଲର ଅଳ୍ପଦିନ ବ୍ୟବଧାନ ମଧ୍ୟରେ ଏପ୍ରିଲ ୧୮, ୧୯୮୫ ମସିହାରେ ଚାର୍ଲସ ଏସ୍. ବେନସନ୍ ପି.ଏଚ.ଡ଼ି. ଡ଼ିଗ୍ରୀ ପାଇଁ ମୋ ଥେସିସ୍‌କୁ ମନୋନୀତ କରି ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଜଣାଇଥିଲେ । ଏହାର କିଛିଦିନ ପରେ ଭାରତୀୟ ପରୀକ୍ଷକ ପ୍ରଫେସର ଭଟ୍ଟାଚାର୍ଯ୍ୟ ମଧ୍ୟ ଅନୁକୂଳ ମନ୍ତବ୍ୟ ଦେଇ ପିଏଚ୍.ଡ଼ି.ଡ଼ିଗ୍ରୀ ପ୍ରଦାନ ନିମନ୍ତେ ସମ୍ମତି ଜଣାଇଥିଲେ । ଏସବୁ ପରେ ଆରମ୍ଭ ହୋଇଥିଲା ମୌଖିକ ପରୀକ୍ଷା ପର୍ବ ।

ସନ୍ଦର୍ଭର ବିଷୟବସ୍ତୁ ସଂପର୍କରେ ମୌଖିକ ପରୀକ୍ଷା ଦିନ ପ୍ରଫେସର ଭଟ୍ଟାଚାର୍ଯ୍ୟଙ୍କ ସହିତ ଆଲୋଚନା କରି ବିଶ୍ୱବିଦ୍ୟାଳୟକୁ ଜଣାଇବା ନିମନ୍ତେ ବିଶ୍ୱବିଦ୍ୟାଳୟ ତରଫରୁ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ନିକଟକୁ ଚିଠି ଆସିଲା । ସେ ପ୍ରଫେସର ଭଟ୍ଟାଚାର୍ଯ୍ୟଙ୍କ ପାଖକୁ ଚିଠି ଲେଖିଲେ । ମାତ୍ର ପ୍ରଫେସର ଭଟ୍ଟାଚାର୍ଯ୍ୟ ଡଃ ମହାନ୍ତିଙ୍କୁ ଲେଖି ଜଣାଇଲେ ଯେ ସେ କୌଣସିମତେ କାର୍ଯ୍ୟବ୍ୟସ୍ତତା ହେତୁ ଆଗାମୀ ତିନିମାସ ମଧ୍ୟରେ ଆସି ପାରିବେ ନାହିଁ । ତେଣୁ ଡଃ ମହାନ୍ତି ଏ ଚିଠିର ଉତ୍ତର ଦେବାକୁ ଯାଇ ଲେଖିଲେ, "ଆପଣ ଯଦି କଲ୍ୟାଣୀ ଠାରେ ମୌଖିକ ପରୀକ୍ଷା କରାଇଦେବାକୁ ଚାହାନ୍ତି, ତେବେ ମୁଁ ପରୀକ୍ଷାର୍ଥୀଙ୍କୁ ନେଇ ସେଠାରେ ପହଞ୍ଚିଯିବି । ତେଣୁ ଆପଣ ଦୟାକରି ଦିନ ସ୍ଥିର କରନ୍ତୁ ।"

ହଠାତ୍ ପ୍ରଫେସର ଭଟ୍ଟାଚାର୍ଯ୍ୟଙ୍କଠାରୁ ଏକ ଟେଲିଗ୍ରାମ ଆସିଲା । ସେଥିରେ ସେ ଏକ ନିର୍ଦ୍ଦିଷ୍ଟ ତାରିଖ ଦେଇ ଭୁବନେଶ୍ୱରରେ ମୌଖିକ ପରୀକ୍ଷା କରିବା ନିମନ୍ତେ ଆସୁଛନ୍ତି ବୋଲି ଜଣାଇ ଦେଲେ । ତଦନୁଯାୟୀ ୧୯୮୫ ମସିହା ଅଗଷ୍ଟ ମାସ ଦ୍ୱିତୀୟ ସପ୍ତାହରେ ପରୀକ୍ଷା ଦିନ ସ୍ଥିର ହେଲା । ଉତ୍କଳ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟର ଏକ ପ୍ରକୋଷ୍ଠରେ ପରୀକ୍ଷା ଆରମ୍ଭ ହେବା ପୂର୍ବରୁ ପ୍ରଫେସର ଭଟ୍ଟାଚାର୍ଯ୍ୟ ଏକ ସଂକ୍ଷିପ୍ତ ଅଭିଭାଷଣ ଦେଲା ଭଳି ଆରମ୍ଭ କଲେ, "ମିଷ୍ଟର ବ୍ରହ୍ମା ! ତୁମର ସୌଭାଗ୍ୟ ଯେ ତୁମେ ରାଜ୍ୟ ଓ ଦେଶର ଜଣେ ଶିକ୍ଷାବିତ୍‌ଙ୍କୁ ତୁମର ଗାଇଡ୍ ହିସାବରେ ପାଇଛ । ମୁଁ ପୂର୍ବରୁ ତାଙ୍କର ବହୁ ଲେଖା ଦେଶର ଶିକ୍ଷା ଜର୍ଣ୍ଣାଲଗୁଡ଼ିକରେ ଦେଖିବାର ସୁଯୋଗ ପାଇଛି । ଆମ କଲ୍ୟାଣୀ ବିଶ୍ୱବିଦ୍ୟାଳୟରେ ମଧ୍ୟ ତାଙ୍କ ରଚିତ ଅନେକ ପୁସ୍ତକ ରହିଅଛି । ସେ ତାଙ୍କର ସାହିତ୍ୟିକ କୃତି ଯୋଗୁଁ ମଧ୍ୟ ରାଜ୍ୟ ଓ କେନ୍ଦ୍ର ସ୍ତରରେ ବହୁ ପୁରସ୍କାରର ଅଧିକାରୀ ହୋଇଛନ୍ତି । ଆପଣମାନଙ୍କୁ ଆଜିର ମୌଖିକ ପରୀକ୍ଷା ଅବସରରେ ମୁଁ ସ୍ୱାଗତ କରୁଛି ।"

ଏପରି ଏକ କ୍ଷୁଦ୍ର ଅଭିଭାଷଣ ଅପ୍ରତ୍ୟାଶିତ ଥିଲା । ଏହି ଅଭିଭାଷଣ ପରେ ପରେ ସେ ମୋତେ ଗବେଷଣା ସହିତ ସଂଶ୍ଳିଷ୍ଟ କେତେକ ମୌଳିକ ପ୍ରଶ୍ନ ପଚାରିଥିଲେ । ଫୁଟ୍‌ନୋଟ ଲିଖନ ପ୍ରଣାଳୀ ତ୍ରୁଟିଯୁକ୍ତ କହିଲାବେଳେ ଡଃ ମହାନ୍ତି ତାହା ନୂତନ ଓ ଏବେ ଆନ୍ତର୍ଜାତିକ ସ୍ତରରେ ଗ୍ରହଣୀୟ ବୋଲି କହିଥିଲେ । ଏ ସଂପର୍କରେ ଆଲୋଚନା ଚାଲିଲା । ସେ ହସି ହସି ଡକ୍ଟର ମହାନ୍ତିଙ୍କ ମତାମତକୁ ଗ୍ରହଣ କଲେ । କଥା ପ୍ରସଙ୍ଗରେ କହିଲେ, "ମୋ ସ୍ତ୍ରୀ (କଲ୍ୟାଣୀ ବିଶ୍ୱବିଦ୍ୟାଳୟର ତତ୍‌କାଳୀନ ଅଧ୍ୟାପିକା) କହୁଥିଲା ଏ ଥେସିସ୍‌ରେ ପରିମାପ ଶାସ୍ତ୍ର (Measurement) ର ପ୍ରୟୋଗ କରାଯାଇନାହିଁ । ମାତ୍ର ମୁଁ ତାକୁ କହିଥିଲି, ଏହା ଏକ ସ୍ୱତନ୍ତ୍ର ସର୍ଜନାତ୍ମକ ଶିଶୁ ସାହିତ୍ୟ ଭିତ୍ତିକ ଗବେଷଣା । ଏଥିରେ ପରିମାପ ପ୍ରୟୋଗର ଆବଶ୍ୟକତା ନାହିଁ ।

ଯାହାହେଉ ମୋର ମୌଖିକ ପରୀକ୍ଷା ପରେ ପରେ ସେ ମୋତେ ପିଏଚ୍.ଡ଼ି ଡିଗ୍ରୀ ପ୍ରଦାନ କରିବାକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଡକ୍ଟର ମହାନ୍ତିଙ୍କ ସହିତ ସୁପାରିଶ କଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ବିଜ୍ଞପ୍ତି ନଂ ୩୮୪୧ ତା ୨୬.୮.୮୫ ଅନୁଯାୟୀ ମୋତେ "ଶିକ୍ଷା ବିଭୂଷଣ" ଉପାଧି ପ୍ରଦାନ କରାଗଲା ବୋଲି ଜଣାଇ ଦିଆଗଲା ।

ପରୀକ୍ଷାର ଗୋଟିଏ ଦିନର ସଂପର୍କ ମଧ୍ୟରେ ମୁଁ ପ୍ରଫେସର ଭଟ୍ଟାଚାର୍ଯ୍ୟଙ୍କ ବିଶାଳ ହୃଦୟର ପରିଚୟ ପାଇଥିଲି । ସେଦିନ ଏକ ସଂଭ୍ରାନ୍ତ ହୋଟେଲରେ ମଧ୍ୟାହ୍ନଭୋଜନ କଲାପରେ ସେ ଡକ୍ଟର ମହାନ୍ତିଙ୍କୁ ମଧ୍ୟାହ୍ନଭୋଜନ ଖର୍ଚ୍ଚ ଦେବାକୁ ମନା କଲେ । କହିଲେ, "ମୁଁ ହେଉଛି ଆପଣମାନଙ୍କ ମଧ୍ୟରେ ବଡ଼ । ତେଣୁ ମୁଁ ଆଜି ମଧ୍ୟାହ୍ନଭୋଜନର ଖର୍ଚ୍ଚ ଦେବି ।"

ଏହାକହି ସେ ପକେଟରୁ କିଛି ଟଙ୍କା ବାହାର କଲେ । ସଙ୍ଗେ ସଙ୍ଗେ ଡଃ ମହାନ୍ତି କହିଲେ, "ସାର୍ ! ଆପଣ ଏ କ'ଣ କରୁଛନ୍ତି ? ଆପଣ ଭୁଲି ଯାଉଛନ୍ତି ଯେ ଆପଣ ଆମର ଅତିଥି । ଆପଣଙ୍କୁ ଆତିଥ୍ୟ ଦେବା ଆମର କର୍ତ୍ତବ୍ୟ ।"

ତା'ପରେ ପ୍ରଫେସର ଭଟ୍ଟାଚାର୍ଯ୍ୟ ବିଲ୍ ପେମେଣ୍ଟରୁ କ୍ଷାନ୍ତ ହୋଇଥିଲେ । ସେଦିନ ଯିବା ସମୟରେ ମୁଁ ତାଙ୍କୁ ପଚାରିଥିଲି, "ସାର୍ ! ଆପଣ ତ ଏତେ ଶୀଘ୍ର ମୌଖିକ ପରୀକ୍ଷା କରି ପାରିବେ ନାହିଁ ବୋଲି ମନା କରିଥିଲେ । କିନ୍ତୁ ହଠାତ୍ କେମିତି ନିଜର ମତ ବଦଳାଇ ପରୀକ୍ଷା କରିବା ନିମନ୍ତେ ଭୁବନେଶ୍ୱର ଚାଲି ଆସିଲେ ?"

ସେ ମୋତେ କହିଲେ, "ତୁମ ସହିତ କଲ୍ୟାଣୀ ଆସି ପରୀକ୍ଷା ନେବା ନିମନ୍ତେ ମୋତେ ଡକ୍ଟର ମହାନ୍ତି ଲେଖିଲେ । ମୁଁ ମନେ ମନେ ଭାବିଲି ଯେ ତାହାହେଲେ ତୁମେ ଦୁଇଜଣ ଅଯଥାରେ କଲ୍ୟାଣୀ ବିଶ୍ୱବିଦ୍ୟାଳୟ ଯିବାର କଷ୍ଟ ନେବ । ତେଣୁ ସେସବୁ କଷ୍ଟ ନ ଦେଇ ମାନସିକ ଚାପରୁ ତୁମକୁ ମୁକ୍ତ ରଖିବାକୁ ମୁଁ ନିଜେ ଚାଲି ଆସିଲି ।"

ମୁଁ ପ୍ରଫେସର ଭଟ୍ଟାଚାର୍ଯ୍ୟଙ୍କ ମୁହଁକୁ ଚାହିଁଲି । ତାଙ୍କ ଭଳି ବିଜ୍ଞ ବିଶାଳ ହୃଦୟ ସଂପନ୍ନ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ଯେ କେତେ ବଡ଼ ମୁଁ ତା'ର କଳନା କରି ପାରିଲି ନାହିଁ । ଯେତେବେଳେ ଗବେଷଣା, ଗବେଷକ ଓ ପରୀକ୍ଷକଙ୍କୁ ନେଇ ଅନେକ ଅବାଞ୍ଛିତ ତଥ୍ୟ ମଝିରେ ମଝିରେ ରାଜ୍ୟ ଓ ଦେଶର ଗଣମାଧ୍ୟମରେ ସ୍ଥାନ ପାଉଥିଲା, ସେତେବେଳେ ଏଇ ଶିକ୍ଷାବିତ୍‌ଙ୍କ ଚିନ୍ତାଧାରା ତାଙ୍କ ସଂସ୍ପର୍ଶରେ ଆସୁଥିବା ବ୍ୟକ୍ତି ବିଶେଷଙ୍କ ଜୀବନର ଆଦର୍ଶ ରୂପେ ଆପେ ଆପେ ରୂପାନ୍ତରିତ ହୋଇଯାଉଥିଲା ।

୧୯୮୫ ମସିହାଠାରୁ ମୋର ପ୍ରଫେସର ଭଟ୍ଟାଚାର୍ଯ୍ୟଙ୍କ ସହିତ ଦେଖା ହୋଇ ନାହିଁ । ବେଲୁରର ଆନନ୍ଦନଗରଠାରେ ଥିଲାବେଳେ ୨୦୦୯ ମସିହାରେ ମୋର

କଲିକତା ବିଶ୍ୱବିଦ୍ୟାଳୟର ଶିକ୍ଷା ବିଭାଗର ପ୍ରଫେସର ତଥା ବିଶିଷ୍ଟ ଲେଖକ ମଳୟ ସେନଗୁପ୍ତଙ୍କ ସହିତ ଦେଖା ସାକ୍ଷାତ ହୋଇଥିଲା ।

କଥା ପ୍ରସଙ୍ଗରେ ଆମ ଦୁଇଜଣଙ୍କ ମଧ୍ୟରେ ଶିକ୍ଷାସଂପର୍କରେ ଅନେକ କଥା ଆଲୋଚନା ହୋଇଥିଲା । ମୁଁ ପ୍ରଫେସର ଭଟ୍ଟାଚାର୍ଯ୍ୟଙ୍କ ପ୍ରସଙ୍ଗ ଉଠାଉ ଉଠାଉ ସେ ମୋତେ କହିଥିଲେ, "ବ୍ରହ୍ମା ବାବୁ ! ପ୍ରଫେସର ଭଟ୍ଟାଚାର୍ଯ୍ୟ ମୋର ପିଏଚ୍.ଡ଼ି ଥେସିସ୍‌ର ଗାଇଡ଼୍ ଥିଲେ । ସେ ଜଣେ ଅଦ୍ଭୁତ ଓ ବିରଳ ବ୍ୟକ୍ତିତ୍ୱ ।" ତା'ପରେ ସେ ସଙ୍ଗେ ସଙ୍ଗେ ତାଙ୍କ ଘରକୁ ଫୋନ ଲଗାଇ ଦେଲେ ।

ମାତ୍ର ଫୋନଟି ବାରମ୍ବାର ଲଗାଇବା ସତ୍ତ୍ୱେ ବାଜି ରହି ଯାଇଥିଲା । ତାଙ୍କ ସହିତ ସେଦିନ କୌଣସି ମତେ ଯୋଗାଯୋଗ ହୋଇ ପାରିଲା ନାହିଁ ।

**ଚାକିରି ଜୀବନର ପୁନଃ ଅୟମାରମ୍ଭ**

ଚାହୁଁ ଚାହୁଁ ଦୁଇବର୍ଷର ଅଧ୍ୟୟନ ଛୁଟି ସରିଗଲା । ଛୁଟି ସରିବାର ଯଥେଷ୍ଟ ଆଗରୁ ମୁଁ ରାଜ୍ୟ ସରକାରଙ୍କ ଉଚ୍ଚ ଶିକ୍ଷାବିଭାଗକୁ ମୋ ପୋଷ୍ଟିଂ ନିମନ୍ତେ ଲେଖିଲି । ଆଶା କରୁଥିଲି ଛୁଟି ସରିବା ପୂର୍ବରୁ କୌଣସି ସ୍ଥାନକୁ ମୋର ପୋଷ୍ଟିଂ ଅର୍ଡ଼ର ଆସିବ । କିନ୍ତୁ ତାହା ହେଲା ନାହିଁ । ବିନା ଦରମାରେ ଚଳିବାକୁ ହେଲା । ଦୁଇ ତିନିମାସ ବସିଗଲା ପରେ ମୋର ସଞ୍ଚିତ ଆୟ ମଧ୍ୟ ସରି ସରି ଆସିଲା । ଯେତେ ଅଭାବରେ ଥିଲେ ମଧ୍ୟ କାହାକୁ ଧାର ଉଧାର ମାଗିବା ମୋ ଜୀବନର ଆଦର୍ଶ ନଥିଲା । ଚଳିବା କ୍ରମଶଃ କଷ୍ଟକର ହେଲା ।

ଏ କଥା ମୋ ଗାଇଡ଼୍ ଡଃ ମହାନ୍ତି ଠିକ୍ ଭାବେ ବୁଝି ପାରିଥିଲେ । ଦିନେ ସେ ମୋତେ ତାଙ୍କ କର୍ମସ୍ଥଳୀ ଏସ୍.ସି.ଇ.ଆଇ.ଟିରୁ ସରକାରଙ୍କ ଉଚ୍ଚ ଶିକ୍ଷା ବିଭାଗକୁ ନେଇଗଲେ । ଉଚ୍ଚ ଶିକ୍ଷାବିଭାଗର ତତ୍‌କାଳୀନ ସେକ୍ସନ ଅଫିସର ସୁରେନ୍ଦ୍ର ମହାନ୍ତିଙ୍କୁ ମୋ ପୋଷ୍ଟିଂ ସଂପର୍କରେ କହିଲେ ।

ଏହିପରି ଭାବରେ ଡଃ ମହାନ୍ତି ମୋ ଅଧ୍ୟୟନ ଛୁଟି ପରବର୍ତ୍ତୀ ଅବସ୍ଥାପନ ସଂପର୍କ ପର୍ବକୁ ଆଗେଇ ନେଲେ । ତଥାପି ମୁଁ ମୋର ପୁନଃ ଅବସ୍ଥାପନ ପାଇଲି ନାହିଁ । ଦିନେ ମୁଁ ଉଚ୍ଚଶିକ୍ଷା ବିଭାଗର ଡ଼େପୁଟି ସେକ୍ରେଟାରୀ ଶ୍ରୀଯୁକ୍ତ ନରେନ୍ଦ୍ର ମିଶ୍ରଙ୍କୁ ସାକ୍ଷାତ କଲି । ଶ୍ରୀଯୁକ୍ତ ମିଶ୍ର ଜଣେ ଉଚ୍ଚ ପରମ୍ପରା ଓ ସଂସ୍କୃତି ସଂପନ୍ନ ବ୍ୟକ୍ତି । ମୁଁ ତାଙ୍କୁ ଯେତେବେଳେ ଏସ୍.ସି.ଇ.ଆର୍.ଟିରେ ମୋର ପୋଷ୍ଟିଂ ବାବଦରେ କହିଲି, ସେ ମୋତେ କହିଲେ, "ତୁମେ କ'ଣ ଜାଣ ନାହିଁ ଯେ ସେ ମହିଳା ଜଣକ ଆସି ଏଠାରେ କନ୍ଦାକଟା କଲା । ଆମେ ତାକୁ ସେଠାରେ ପୋଷ୍ଟିଂ କରିବାକୁ ଇତି ମଧ୍ୟରେ

ପଦକ୍ଷେପ ନେଇଅଛୁ । ତେଣୁ କଟକ ଭୁବନେଶ୍ୱର ଛାଡ଼ି ଅନ୍ୟ କୌଣସି ସ୍ଥାନ କଥା କୁହ, ସାଥେ ସାଥେ ତୁମ କାମ ହୋଇଯିବ ।" ନୀରବରେ ମୁଁ ସେଠାରୁ ଫେରି ଆସିଲି ।

ମୁଁ ରହୁଥିବା ବରମୁଣ୍ଡା ହାଉସିଂ ବୋର୍ଡ଼ ଘରର ପାଖାପାଖି ସେକ୍ରେଟେରୀଏଟ୍‌ର କେତେକ କର୍ମଚାରୀ ରହୁଥିଲେ । ସେମାନେ ମଝିରେ ମଝିରେ ଆସି କହୁଥିଲେ, "ଉଚ୍ଚ ଶିକ୍ଷାବିଭାଗର ସିନିୟର ଆସିଷ୍ଟାଣ୍ଟ ସୁନୀଲ ମଲ୍ଲିକ ଆପଣଙ୍କ ପାଖକୁ ଖବର ପଠାଇଛନ୍ତି । ତେଣୁ ତାଙ୍କୁ ଯାଇ ଦେଖାସାକ୍ଷାତ କରନ୍ତୁ ।" ଏହିପରି ତିନି ଚାରି ଥର ସୁନୀଲବାବୁଙ୍କଠାରୁ ଖବର ଆସି ମୋ ପାଖରେ ପହଞ୍ଚିଲା । ମୁଁ ଯେତେଥର ସଚିବାଳୟ ଯାଇ ତାଙ୍କୁ ସାକ୍ଷାତ କଲି, ସେ ମୋତେ ନ ଚିହ୍ନିଲା ପରି ରହିଲେ ଓ କିଛି କହିଲେ ନାହିଁ । ପ୍ରତ୍ୟେକ ଥର ମୁଁ ନିରାଶାରେ ଫେରି ଆସିଲି । ଆଉ ସେକ୍ରେଟେରୀଏଟ୍ ଯିବି ନାହିଁ ବୋଲି ମନେ ମନେ ପ୍ରତିଜ୍ଞା କଲି ।

କିନ୍ତୁ ଦିନେ ପୁଣି ସେକ୍ରେଟେରୀଏଟ୍‌ରୁ ଖବର ଆସିଲା ସୁନୀଲବାବୁଙ୍କୁ ସାକ୍ଷାତ କରିବା ପାଇଁ । ଏଥରକ ମୁଁ ସୁନୀଲ ବାବୁଙ୍କ ସହିତ ଦେଖା ସାକ୍ଷାତ ବେଳେ କହିଲି, "ମୁଁ ସମ୍ବଲପୁରରେ ଦୀର୍ଘ ଆଠବର୍ଷ ହେଲା ରହିଲିଣି । ଆପଣ ମୋତେ ଦୟାକରି ଏସ.ସି.ଇ.ଆର୍.ଟି କିମ୍ବା ବିଜେବି କଲେଜରେ ପୁନଃ ଅବସ୍ଥାପିତ କରିବା ନିମନ୍ତେ ସରକାରଙ୍କୁ ଫାଇଲ ଦିଅନ୍ତୁ ।"

ମୋ କଥା ଶୁଣି ସୁନୀଲବାବୁ ପୂର୍ବଭଳି ନୀରବ ରହିଲେ ନାହିଁ । ସମସ୍ତଙ୍କୁ ଶୁଣେଇଲା ଭଳି କହିଲେ, "ଏସ୍.ସି.ଇ.ଆର୍.ଟି କିମ୍ବା ବିଜେବି କଲେଜରେ ପୋଷ୍ଟିଂ ଶସ୍ତା ଶସ୍ତା ହୁଏ ନାହିଁ । ସେଥିପାଇଁ ଆଠ ଦଶ ହଜାର ଟଙ୍କା ଦେବାକୁ ପଡ଼ିବ, ନଚେତ୍ ପୁଣିଥରେ ତୁମକୁ ସମ୍ବଲପୁର ଯିବାକୁ ହେବ ।"

ମୁଁ ସଙ୍ଗେ ସଙ୍ଗେ କହିଲି, "ତା'ହେଲେ ଆପଣ ସମ୍ବଲପୁର ନିମନ୍ତେ ମୋର ଫାଇଲ ଦେଇ ଦିଅନ୍ତୁ । ମୋତେ ବିନା ପୋଷ୍ଟିଂରେ ବସାଇ ରଖନ୍ତୁ ନାହିଁ ।" ଏହା କହି ମୁଁ ସିଧା ସିଧା ସେଠାରୁ ଭୁବନେଶ୍ୱରର ନଅତାଲା କୋଠାରେ ଥିବା ଡି.ପି.ଆଇ ଅଫିସକୁ ମୋର ଦଦେଇ ପୁଅ ଭାଇ ଗଉରିଆ ନନାଙ୍କ ପାଖକୁ ଚାଲି ଆସିଲି । ସେ ମୋତେ ଦେଖିଲା ମାତ୍ରେ ପଚାରିଲେ, "ତୋର ପୋଷ୍ଟିଂ କୁଆଡ଼େ ହେଲା ।"

ମୁଁ ହସି ହସି କହିଲି, "ହେବ ଆଉ କ'ଣ । ମୁଁ ପୁଣି ସମ୍ବଲପୁର ଫେରିଯିବି ସେକ୍ରେଟାରୀଏଟ୍‌ର ସିନିୟର ଆସିଷ୍ଟାଣ୍ଟ ସୁନୀଲବାବୁ କହିଛନ୍ତି । ସେତେବେଳେ ଗଉରିଆ ନନା କାମ କରୁଥିବା ସେକସନ୍‌ରେ ସେକ୍‌ସନ୍ ଅଫିସର ଥାଆନ୍ତି କଟକ ଜିଲ୍ଲା

ସିଦ୍ଧେଶ୍ୱରପୁରର ଶ୍ରୀଯୁକ୍ତ ବାସୁଦେବ ଆଚାର୍ଯ୍ୟ । ସେ ଖୁବ୍ କମ୍ କଥାବାର୍ତ୍ତା କରନ୍ତି । ଭୁବନେଶ୍ୱରରେ ଥିଲାବେଳେ ମୋତେ ବିଭିନ୍ନ ସମୟରେ ଗଉରିଆ ନନାଙ୍କ ପାଖକୁ ଯିବାର ସେ ଲକ୍ଷ୍ୟ କରିଥାନ୍ତି ।

ମୋ କଥା ଶୁଣି ସେ ଫାଇଲ କାମ ଛାଡ଼ି ମୋ ଆଡ଼କୁ ଟିକିଏ ଚାହିଁଲେ । କିଛି କହିଲେ ନାହିଁ । ମନେ ମନେ କ'ଣ ଭାବି ଫାଇଲ କାମରେ ପୁଣି ଲାଗି ପଡ଼ିଲେ ।

ସେଦିନ ସନ୍ଧ୍ୟା ସମୟରେ ମୁଁ ରହୁଥିବା ବରମୁଣ୍ଡା ହାଉସିଂ ବୋର୍ଡ଼ର ଘରକୁ ଘରର ମାଲିକ ଡି.ପି.ଆଇ ଅଫିସର ଶ୍ରୀଯୁକ୍ତ ପ୍ରହଲ୍ଲାଦ ଦାଶ ଆସି ପହଞ୍ଚିଲେ । ମୋତେ କହିଲେ, "ବ୍ରହ୍ମାବାବୁ ! ଆପଣଙ୍କ ମୁହଁରୁ ସମ୍ବଲପୁର ଯିବା କଥା ଶୁଣି ସେକ୍ସନ ଅଫିସର ବାସୁବାବୁ ସହଜରେ ହଜମ କରପାରିଲେ ନାହିଁ । ଆପଣ ଆସିଲା ପରେ ପରେ ସେ କହିଲେ, " ଗୋଟିଏ ପିଲା ଦୁଇବର୍ଷକାଳ ମଝିରେ ମଝିରେ ଏଠାକୁ ଆସୁଥିଲା । ଆଜି ଯେଉଁ ସମ୍ବଲପୁରରେ ଥିଲା ସେଠାକୁ ଚାଲିଯିବ । ଦୀର୍ଘଦିନ ହେଲା ଘରଠାରୁ ବହୁଦୂରରେ ଥିଲେ ମଧ ତାହା କଥା କେହି ବୁଝିଲେ ନାହିଁ । ଏହା ହେଉଛି ପ୍ରଶାସନିକ ନ୍ୟାୟ । ତେଣୁ ସେ ସଙ୍ଗେ ସଙ୍ଗେ ଡି.ପି.ଆଇ ଅଫିସ୍‌ର ଉଚ୍ଚ ଶିକ୍ଷା ବିଭାଗରେ କାମ କରୁଥିବା ସିନିୟର ଆସିଷ୍ଟାଣ୍ଟ ମଣ୍ଡଳବାବୁଙ୍କୁ ଡାକି କହିଛନ୍ତି ଆପଣଙ୍କ କଥା ବୁଝିବା ନିମନ୍ତେ । ଆପଣ ତାଙ୍କୁ ଦେଖା କରନ୍ତୁ ।"

ପ୍ରହଲ୍ଲାଦ ବାବୁଙ୍କ କଥା ମୋ ପାଇଁ ଉତ୍ସାହଜନକ ଥିଲା । ମୁଁ ନଅ ନମ୍ବରରେ ଥିବା ମଣ୍ଡଳବାବୁଙ୍କ ଘରେ ପହଞ୍ଚିଲି । ସେ ଜଣେ ଖୁସି ମିଜାସର ଲୋକ । ମୋତେ ଦେଖିବା ମାତ୍ରେ କହିଲେ, "ବ୍ରହ୍ମାବାବୁ ! ଓଡ଼ିଶା ସରକାରଙ୍କ ଉଚ୍ଚ ଶିକ୍ଷା ବିଭାଗର ସେକ୍ସନ ଅଫିସର ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କ ସହିତ ମୋର ଘନିଷ୍ଠ ସଂପର୍କ ଓ ସହଯୋଗ ଅଛି । ଯେତେବେଳେ ସରକାରଙ୍କ ହାତରୁ ବଦଳି କ୍ଷମତା ଆସି ଜୁଲାଇ ମାସରେ ଡି.ପି.ଆଇ ଅଫିସରେ ଥାଏ, ସେତେବେଳେ ସେ ମୋତେ କହି କେତେକ ଅଧ୍ୟାପକ ବନ୍ଧୁଙ୍କ କାମ କରାଇ ନିଅନ୍ତି । ଯେତେବେଳେ ଡି.ପି.ଆଇଙ୍କ ହାତରୁ କ୍ଷମତା ଯାଇ ସରକାରଙ୍କ ଉଚ୍ଚଶିକ୍ଷା ବିଭାଗ ହାତକୁ ଯାଇଥାଏ, ସେତେବେଳେ ମୁଁ ତାଙ୍କୁ କହି କେତେକଙ୍କ କାମ କରାଇଥାଏ । ଯେହେତୁ ବାସୁବାବୁ(ଶ୍ରୀଯୁକ୍ତ ବାସୁଦେବ ଆଚାର୍ଯ୍ୟ) ମୋତେ ଆପଣଙ୍କ କାମ କରାଇବା ପାଇଁ କହିଛନ୍ତି, ତେଣୁ ଆପଣଙ୍କୁ ଆଉ ଯେମିତି ସମ୍ବଲପୁର ଯିବାକୁ ହେବନି ତାହା ମୁଁ ଦେଖିବି ।"

ଏହ କହି ସେଦିନ ରାତି ନଅଟାବେଳେ ମୋତେ ସେ ନଅନମ୍ବରସ୍ଥିତ ସୁରେନ୍ଦ୍ର ବାବୁଙ୍କ ଘରକୁ ନେଇଗଲେ । ସୁରେନ୍ଦ୍ରବାବୁ ଜଣେ ଲେଖକ ଓ ଉଚ୍ଚ ଚିନ୍ତାଧାରା ସଂପନ୍ନ

ବ୍ୟକ୍ତି ବୋଲି ମୁଁ ଶୁଣିଥିଲି । ସେଦିନ ମଣ୍ଡଳବାବୁ ମୋତେ ତାଙ୍କ ସହିତ ପରିଚୟ କରାଇଦେଲେ । ମୋତେ ଭୁବନେଶ୍ୱରରେ ଅବସ୍ଥାପିତ କରାଇବା ପାଇଁ କହିଲେ । କିନ୍ତୁ ସୁରେନ୍ଦ୍ର ବାବୁ କହିଲେ, "ଆପଣ ତ ଜାଣନ୍ତି ଭୁବନେଶ୍ୱରର ସମସ୍ତ ପୋଷ୍ଟିଂ ବଡ଼ ବଡ଼ ଅଫିସର, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀଙ୍କ ସୁପାରିଶରେ ହୁଏ । ତେଣୁ ଏହା ମୋ ଦ୍ୱାରା ସମ୍ଭବ ହେବ ନାହିଁ । ମୁଁ ତାଙ୍କୁ ଅନୁଗୁଳ ପ୍ରଶିକ୍ଷଣ ମହାବିଦ୍ୟାଳୟରେ କରିଦେବି । ତେଣୁ ତାଙ୍କର ଯିବା ଆସିବା ବାଟ ଅଧେ କମିଯିବ ।"

କିଛିଦିନ ପରେ ମୁଁ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କଠାରୁ ଜାଣିବାକୁ ପାଇଲି ଯେ ପୁନଃ ଅବସ୍ଥାପନ ନିମନ୍ତେ ମୋ ଫାଇଲ ଅନୁଗୁଳ ପାଇଁ ଯାଇଛି । ଦିନେ ଦୁଇଦିନ ମଧ୍ୟରେ ଆଦେଶ ନାମା ବାହାରିବ ।

ମୁଁ ବିନା ପୋଷ୍ଟିଂରେ ଦରମା ନ ପାଇ କଷ୍ଟେମଷ୍ଟେ ଚଳୁଥିଲି । ଶୀଘ୍ର ଚାକିରିରେ ପୁନଃ ଅବସ୍ଥାପିତ ହେଲେ ଦରମା ପାଇବା ଆଶାରେ ବଦଳି ଆଦେଶର ଏକ ନକଲ ଆଣିବାକୁ ସେକ୍ରେଟେରୀଏଟ୍‌ର ଟାଇପ ସେକ୍ସନକୁ ଗଲି । ଯିବା ବାଟରେ ମୋର ସୁନୀଲ ମଲ୍ଲିକଙ୍କ ସହ ଦେଖାହେଲା । ତାଙ୍କ ସମ୍ବଲପୁର ବଦଳି ପ୍ରସ୍ତାବକୁ ସୁରେନ୍ଦ୍ର ବାବୁ କାଟି ଅନୁଗୁଳ କରିଥିବା ହେତୁ ସେ ମୋ ଆଗରେ ବିରକ୍ତି ପ୍ରକାଶ କରି ନିଜର ବଡ଼ପଣ ପ୍ରଦର୍ଶନ କରିବାକୁ ଚାହିଥିଲେ । ଏହା ଗଣତାନ୍ତ୍ରିକ ବିଧି ବ୍ୟବସ୍ଥାରେ କେତେକ ବ୍ୟକ୍ତିଙ୍କର ଅମଲାତାନ୍ତ୍ରିକ ମାନସିକତା ।

ସେଦିନ ମୁଁ ସେକ୍ରେଟେରୀଏଟ୍‌ର ଉଚ୍ଚଶିକ୍ଷା ବିଭାଗର ଟାଇପ୍ ସେକ୍ସନରେ ପହଞ୍ଚି ମୋର ଅନୁଗୁଳ ପୋଷ୍ଟିଂ ଆଦେଶନାମା ନ : ୧୩୦୮୨ ତା୧୪ ଏପ୍ରିଲ, ୧୯୮୫ର ଏକ କିତା ନକଲ ଆଣିଲି ଓ ଅନୁଗୁଳ ଯିବା ନିମନ୍ତେ ପ୍ରସ୍ତୁତ ହେଲି ।

**ଅନୁଗୁଳରେ ମୋର ଅଧ୍ୟାପକ ଜୀବନ**

ଅନୁଗୁଳ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ମୁଁ ତା ୧୫ଏପ୍ରିଲ୍ ୮୫ରେ ଅଧ୍ୟାପକ ରୂପେ ଯୋଗଦାନ କଲି । ସେତେବେଳେ ସେ ମହାବିଦ୍ୟାଳୟର ଅଧ୍ୟକ୍ଷ ଥିଲେ ଶ୍ରୀଯୁକ୍ତ ମଦନମୋହନ ମିଶ୍ର । ସେ ରାଜ୍ୟର ବିଶିଷ୍ଟ ଶିକ୍ଷାବିତ୍ ଓ ସାହିତ୍ୟିକ ଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ମଧ୍ୟ ଲାଭ କରିଥିଲେ ।

ମୁଁ ପହଞ୍ଚିବାର କିଛିଦିନ ପରେ ସେ ମୋ ପାଇଁ ଏକ "ସ୍ୱାଗତ ସଭା"ର ଆୟୋଜନ କରିଥିଲେ ।

ଓଡ଼ିଶାର ଶିକ୍ଷା ଇତିହାସରେ ଅନୁଗୁଳର ସ୍ଥାନ ସ୍ୱତନ୍ତ୍ର । ଏଠାରେ ରାଜ୍ୟର ସର୍ବପ୍ରଥମ ବେସିକ ଟ୍ରେନିଂ କଲେଜ ପ୍ରତିଷ୍ଠିତ ହୋଇଥିଲା । ଏହାର ଅଧ୍ୟକ୍ଷ ଥିଲେ

ପ୍ରଫେସର ଶତ୍ରୁଘ୍ନ ନାଥ, ବିଶିଷ୍ଟ ସାହିତ୍ୟିକ ସର୍ବେଶ୍ୱର ଦାସ, ରମଣୀ ରଞ୍ଜନ ଦାସ, ଭାଗୀରଥି ନାୟକଙ୍କ ଭଳି ବ୍ୟକ୍ତି ବିଶେଷ । ଏଇଠାରେ ଅବସ୍ଥିତ ସ୍ୱାଧୀନତା ସଂଗ୍ରାମୀ ନବକୃଷ୍ଣ ଚୌଧୁରୀଙ୍କ ସହଧର୍ମିଣୀ ମାଳତୀ ଦେବୀଙ୍କ ଆଶ୍ରମ ଓ ସହିଦ୍ ବାଜି ରାଉତ ଛାତ୍ରାବାସ ।

ଖୁବ୍ ଅଳ୍ପଦିନ ମଧ୍ୟରେ ସେ ଅଞ୍ଚଳରେ ମୁଁ ସୁପରିଚିତ ହୋଇଗଲି । ବିଭିନ୍ନ ଆଲୋଚନା ଚକ୍ର ଓ ସାହିତ୍ୟ ସଭାରେ ଯୋଗଦାନ ନିମନ୍ତେ ମୋତେ ବିଭିନ୍ନ ସମୟରେ ଡାକରା ଆସୁଥିଲା । ବାଜି ରାଉତ ଛାତ୍ରାବାସ ଓ ମାଳତି ଦେବୀଙ୍କ ଆଶ୍ରମର ବିଭିନ୍ନ କାର୍ଯ୍ୟକ୍ରମରେ ଅତିଥି ହେବାର ସୁଯୋଗ ମିଳିଥିଲା । ସେଥିପାଇଁ ମାଳତି ଦେବୀଙ୍କ ଆଶ୍ରମରେ ରହୁଥିବା ଖଲାରୀ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ବଂଶୀବାବୁ ଯୋଗସୂତ୍ର ରୂପେ କାର୍ଯ୍ୟ କରୁଥିଲେ ।

ବାଜି ରାଉତ ହେଉଛନ୍ତି ଆମ ଦେଶ ସ୍ୱାଧୀନତା ସଂଗ୍ରାମର ଜଣେ ଅଭୁଲା ବାଳକ, ଯିଏ କି ଇଂରେଜ ଫଉଜଙ୍କୁ ତତ୍‌କାଳୀନ ଇଂରେଜ ସରକାରଙ୍କ ବିରୋଧରେ ହେଉଥିବା ପ୍ରଜାମେଳିକୁ ଦମନ କରିବା ନିମନ୍ତେ ଡଙ୍ଗା ପାରି କରି ନ ଥିଲେ । ସେଥିପାଇଁ ସେ ଇଂରେଜମାନଙ୍କ ରୋଷର ଶିକାର ହେଲେ । ହସିହସି ସେମାନଙ୍କ ଗୁଳିଦ୍ୱାରା ଢଳି ପଡ଼ିଥିଲେ । ଏଇ କଥା ଓ କାହାଣୀକୁ ଭିତ୍ତିକରି ସହିଦ୍ ବାଜି ରାଉତଙ୍କ ବୀରତ୍ୱ କାହାଣୀର ଗଳ୍ପ ଓ କବିତା ଆମ ରାଜ୍ୟ ପାଠ୍ୟପୁସ୍ତକରେ ସ୍ଥାନ ପାଇ ଆସୁଅଛି । ଇତିହାସ ପୃଷ୍ଠା ମଧ୍ୟ ସେଇ କାଳଜୟୀ ବାଳକଙ୍କର ଜୟଗାନ କରୁଅଛି ।

୧୯୮୬ ମସିହାର ଘଟଣା । ବାଜିରାଉତଙ୍କ ସଂପର୍କରେ ବାଜି ରାଉତ ଛାତ୍ରାବାସ ତରଫରୁ ସହିଦ୍ ଦିବସ ପାଳନ ଅବସରରେ ମୋତେ ମୁଖ୍ୟବକ୍ତା ଓ ଅନୁଗୁଳ ସରକାରୀ ମହାବିଦ୍ୟାଳୟର ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ ଡକ୍ଟର ବାବାଜୀ ଚରଣ ପଟ୍ଟନାୟକଙ୍କୁ ଡକାଯାଇଥିଲା । ମୁଁ ମୋ ଭାଷଣରେ ଢେଙ୍କାନାଳ ଜିଲ୍ଲା ନୀଳକଣ୍ଠପୁର ଗ୍ରାମରେ ଜନ୍ମିତ ବାଜି ରାଉତଙ୍କ ବୀରତ୍ୱ ସଂପର୍କରେ ବିଭିନ୍ନ କବି ଓ ଲେଖକଙ୍କ ଉଦ୍ଧୃତି ଦେଇ ମୋର ବକ୍ତବ୍ୟ ଉପସ୍ଥାପନ କଲି ।

ଏସବୁ ବକ୍ତବ୍ୟର ସାରମର୍ମ ହେଲା :

୧୯୩୮ ମସିହା ଅକ୍ଟୋବର ମାସ ୧୦ ତାରିଖ ଦିନ ରାତ୍ର ଆଠଟାରେ ବ୍ରିଟିଶ ପୁଲିସ ନୀଳକଣ୍ଠପୁର ଘାଟ ତୁରନ୍ତ ପାରି କରି ଦେବାକୁ ୧୩ ବର୍ଷର ବାଳକ ବାଜି ରାଉତଙ୍କୁ ଆଦେଶ ଦେଇଥିଲେ । ସେତେବେଳକୁ ବାଜି ରାଉତ ଭୁବନ ଗ୍ରାମରେ ବ୍ରିଟିଶ ପୁଲିସର ଗୁଳିଚାଳନାରେ ଦୁଇ ଦୁଇ ଜଣ ସ୍ୱାଧୀନତା ସଂଗ୍ରାମୀ ସହିଦ୍ ହୋଇଥିବା

ଖବର ସଂପର୍କରେ ଅବଗତ ହୋଇଥିଲେ । ତେଣୁ ସେ ସେମାନଙ୍କୁ ନଦୀ ପାର କରାଇବେ ନାହିଁ ବୋଲି ରୋକଠୋକ୍ କହିଥିଲେ । ଏହା ଶୁଣି ବ୍ରିଟିଶ୍ ଫଉଜ ବାଜି ରାଉତଙ୍କ ମୁଣ୍ଡକୁ ଗୁଳି ଚାଳନା କରିଥିଲେ । ସେହିଠାରେ ସଙ୍ଗେ ସଙ୍ଗେ ବାଜି ରାଉତ ଟଳି ପଡ଼ିଥିଲେ । ଆମ ସ୍ୱାଧୀନତା ସଂଗ୍ରାମର ସେ ଥିଲେ ସର୍ବକନିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଓ ଆମର ଚିର ନମସ୍ୟ ।

ଅଧ୍ୟାପକ ବନ୍ଧୁ ଜଣକ ସେଇଠି ମୋ ଉପସ୍ଥିତିରେ ତାଙ୍କ ବକ୍ତବ୍ୟରେ କହିଲେ, "ଅଧ୍ୟାପକ ବ୍ରହ୍ମା ଯାହା କହିଛନ୍ତି ସଂପୂର୍ଣ୍ଣ ମିଥ୍ୟା । ବାଜି ରାଉତ ଇଂରେଜ ଫଉଜଙ୍କୁ ଡ଼ରି ପଳାଇଯାଉଥିବା ବେଳେ ସେମାନଙ୍କ ଗୁଳିରେ ନିହତ ହୋଇଥିଲେ ।"

ମୁଁ ଅଧ୍ୟାପକ ପଟ୍ଟନାୟକଙ୍କ କଥା ଶୁଣି ସ୍ତମ୍ଭୀଭୂତ ହୋଇ ଯାଇଥିଲି । ସେ ସ୍ଥାନରେ ଉପସ୍ଥିତ କୌଣସି ବ୍ୟକ୍ତି ହୁଏତ ଅତିଥିଙ୍କ ଅବମାନନା ହେବ ବୋଲି ପ୍ରତିବାଦ ନ କରି ନୀରବ ରହିଗଲେ । ମୁଁ ମଧ୍ୟ ମଞ୍ଚ ଉପରେ ଥାଇ ଏହାର ପ୍ରତିବାଦ କରିବାକୁ ଉଚିତ୍ ମନେ କଲି ନାହିଁ । କାରଣ ସେଠାରେ ବାଜି ରାଉତ ଛାତ୍ରାବାସର ଛୋଟ ଛୋଟ ପିଲାମାନେ ଥିଲେ ।

ଇଂରେଜ ଶାସନ ସମୟରେ ଭାରତର ଅବସ୍ଥା ଏମିତି ହୋଇଥିଲା ଯେ ଗାଁ ଗହଳିର ଲୋକେ କୌଣସି ଇଂରେଜ ବ୍ୟକ୍ତିଙ୍କୁ ଦେଖିଲେ ଘରେ କବାଟ କିଳି ରହୁଥିଲେ । ସେମାନଙ୍କ ଅନ୍ୟାୟ ବିରୋଧରେ ପ୍ରତିବାଦ କଲେ କଠୋର ଦଣ୍ଡରେ ଦଣ୍ଡିତ ହେଉଥିଲେ । ଯେଉଁ କେତେଜଣ ପ୍ରତିବାଦ କରୁଥିଲେ ସେମାନଙ୍କୁ 'କଳାପାଣି'ରେ ଛାଡ଼ି ଦିଆଯାଇଥିଲା ବା ଫାଶୀ ଖୁଣ୍ଟରେ ଝୁଲାଇ ଦିଆଯାଉଥିଲା ।

ତେଣୁ ସ୍ୱାଧୀନତା ସଂଗ୍ରାମକୁ ଆଗେଇ ନେବା ପାଇଁ ନିଜ ଜୀବନକୁ ପଣ ରଖି କେତେଜଣ ସ୍ୱାଧୀନତା ସଂଗ୍ରାମୀ ଅଦମ୍ୟ ସାହସ ଓ ଉତ୍ସାହର ସହିତ ଆଗେଇ ଆସୁଥିଲେ । ସେମାନେ କୌଣସି ବ୍ୟକ୍ତି ଯେ କୌଣସି ପରିସ୍ଥିତିରେ ବ୍ରିଟିଶ ଫଉଜ ହାତରେ ମୃତ୍ୟୁବରଣ କରନ୍ତୁ ପଛକେ ତାଙ୍କୁ ସହିଦ୍ ବୋଲି କହୁଥିଲେ ଓ ତାଙ୍କ ଶବ ଶୋଭାଯାତ୍ରାକୁ ଗାଁ ଗାଁ ନେଇ ବୁଲାଉଥିଲେ । ଏହା ଫଳରେ ନିଷ୍ପେସିତ ଦଳିତ ଲୋକମାନଙ୍କ ମଧ୍ୟରେ ନବଜାଗରଣର ବାର୍ତ୍ତା ପହଞ୍ଚି ପାରୁଥିଲା । ସେମାନେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ସ୍ୱତଃପ୍ରବୃତ୍ତ ଭାବେ ଯୋଗଦାନ କରୁଥିଲେ ।

ସେତେବେଳେ ସହିଦ୍ ଶବ୍ଦର ଅର୍ଥ ଥିଲା "ଯିଏ ଯେ କୌଣସି ପରିସ୍ଥିତିରେ ଇଂରେଜମାନଙ୍କ ହାତରେ ମରୁନା କାହିଁକି, ସେ ହେଉଛି ସହିଦ୍ ।" ଏକଥା ସଭାସାଙ୍ଗ ହେଲା ପରେ ମୁଁ ଅଧ୍ୟାପକ ପଟ୍ଟନାୟକଙ୍କ ସହିତ ଆଲୋଚନା କରିଥିଲି । ପୁଣି ଏକଥା

ମଧ୍ୟ କହିଥିଲି, ଯେଉଁ କଥା ଓ କାହାଣୀ ଆମ ସଂସ୍କୃତି ଓ ଚାଲିଚଳନର ବାର୍ତ୍ତାବହନ କରୁଛି, ତା'ର ବିରୋଧରେ କହିବାରେ ଆମର କୌଣସି ଅଧିକାର ନାହିଁ।"

ସେ ମୋ କଥା ଶୁଣି କୌଣସି ମତାମତ ନ ଦେଇ ନୀରବ ରହିଥିଲେ। ମୋର ଅନୁଗୁଳ ରହଣି ମଧ୍ୟରେ ଅମଲାପଡ଼ାର ଜନୈକ ଯୁବବନ୍ଧୁ ରାଧାକାନ୍ତ ମହାନ୍ତି 'ଅଙ୍ଗୀକାର' ନାମକ ଏକ ସାହିତ୍ୟ ସଂସଦ ଗଢ଼ିଥିଲେ। ସେ ସାହିତ୍ୟ ସଂସଦ ମାଧ୍ୟମରେ ମୁଁ ଅନୁଗୁଳର ଅଧିକାଂଶ ସାହିତ୍ୟିକ ବନ୍ଧୁମାନଙ୍କ ସହିତ ପରିଚିତ ହୋଇଥିଲି। ସେମାନଙ୍କ ମଧ୍ୟରେ ପ୍ରାଧ୍ୟାପକ ରବିନାରାୟଣ ବରାଳ, ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଫେସର ଶରତ ଚନ୍ଦ୍ର ପ୍ରଧାନ, ଅଧ୍ୟାପକ ବିଷ୍ଣୁମୋହନ, ଡି.ଏସ.ପି. ଭଗାନ ମୁର୍ମୁ, ଏସ୍.ଡ଼ି.ଓ ଅଫିସର ଅକ୍ଷୟ କୁମାର ପଟ୍ଟନାୟକ, ବୁଦ୍ଧିମନ୍ତ ମହାନ୍ତି, ମୂରଲୀଧର ମିଶ୍ର ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମୋତେ ସେ ଅଞ୍ଚଳରେ ସବୁଠାରୁ ବେଶୀ ପରିଚିତ କରିବାରେ ଯିଏ ସାହାଯ୍ୟ କରିଥିଲେ, ସେ ହେଉଛନ୍ତି 'କାଳିଆ ସୁନା' ଶିଶୁ ପତ୍ରିକାର ସଂପାଦକ ବନ୍ଧୁ ଶ୍ରୀଯୁକ୍ତ ନରେଶ ବେହେରା । ତାଙ୍କ ସହିତ ମୋର ଏତେ ଭାବଗତ ସଂପର୍କ ଥିଲା ଯେ ମୁଁ ଅନେକ ସମୟରେ ତାଙ୍କ ପରିବାର ସହିତ ମିଶୁଥିଲି । ସେ ମଧ୍ୟ ମୋ ସରକାରୀ ନିବାସକୁ ଆସୁଥିଲେ। ସେତେବେଳେ କାଳିଆ ସୁନା ଶିଶୁ କିଶୋର ପତ୍ରିକାରେ ଅଧିକାଂଶ ସଂଖ୍ୟାରେ ମୋ ରଚିତ ଗଳ୍ପ କିମ୍ବା କବିତା ପ୍ରକାଶ ପାଉଥିଲା ।

ଏଇ ସମୟରେ ଅନୁଗୁଳରେ ଜଣେ ବରିଷ୍ଠ ସାହିତ୍ୟିକ ଭାବେ ଉତ୍ତରପଡ଼ାର ଶ୍ରୀଯୁକ୍ତ ରାଜକିଶୋର ପାଢ଼ୀଙ୍କ ସହିତ ମୋର ବେଶ ଭାବଗତ ସଂପର୍କ ସ୍ଥାପିତ ହୋଇଥିଲା । ସେ ବୟସାଧିକ୍ୟ ଯୋଗୁ ମୋତେ ଥରେ ତାଙ୍କ ଘରେ ଯାଇ ଦେଖା କରିବାକୁ ନିମନ୍ତ୍ରଣ କରିଥିଲେ। ମୁଁ ଯାଇଥିଲି। ସେତେବେଳେ ମୁଁ ତାଙ୍କ ଘରେ ଏକ ଗୋବର ଗ୍ୟାସପ୍ଲାଣ୍ଟ ଦେଖିବାକୁ ପାଇଥିଲି । ଘରେ ତାଙ୍କର ଅନେକ ଗାଈଗୋରୁ ଥିଲେ । ସେ ଏଇ ଗୋବର ଗ୍ୟାସ ପ୍ଲାଣ୍ଟର ଯୋଜନା କରିଥିଲେ ଓ ଘରର ରନ୍ଧନ କାର୍ଯ୍ୟ ଏଇ ଗ୍ୟାସ ଦ୍ୱାରା କରାଉଥିଲେ ।

ସେତେବେଳେ ଶ୍ରୀଯୁକ୍ତ ପାଢ଼ୀଙ୍କ ରଚିତ ଅନେକ ଧର୍ମଭିତ୍ତିକ ପ୍ରବନ୍ଧ ଓ ସ୍ତମ୍ଭ ଓଡ଼ିଆ ଖବର କାଗଜ ପୃଷ୍ଠା ମଣ୍ଡନ କରୁଥିଲା। ସେ ଭାଗବତ ସଂପର୍କରେ ଲେଖିଥିବା ଏକ ପୁସ୍ତକ 'ଭାଗବତ ଚିନ୍ତନ' ମୋତେ ଦେଇଥିଲେ । କଥା ପ୍ରସଙ୍ଗରେ ମୋତେ ମହାପୁରୁଷ ହାଡ଼ିଦାସଙ୍କ ଭବିଷ୍ୟବାଣୀକୁ ନେଇ ଜଣେ ଗବେଷକ ଯେପରି ନିର୍ଦ୍ଦିଷ୍ଟ ତାରିଖ ଓ ଦିନ ଆଦି ଉଲ୍ଲେଖ କରି ଏକ ପୁସ୍ତକ ରଚନା କରି ଭବିଷ୍ୟତ ବାଣୀ ଦେଇଥିଲେ

ତା'ର ନିନ୍ଦା କରି କହିଥିଲେ, "ଏପରି ଗବେଷକଙ୍କଠାରୁ ସେମାନଙ୍କ ପିଏଚ୍.ଡି ଡିଗ୍ରୀ ବିଶ୍ୱବିଦ୍ୟାଳୟ ଫେରସ୍ତ ନେବା ଉଚିତ୍। କାରଣ ସେ ଯେଉଁ ତାରିଖ ଦେଇ ଭବିଷ୍ୟତବାଣୀ କରିଥିଲେ ସେଥିରୁ ଗୋଟିଏ ହେଲେ ମଧ୍ୟ ଘଟିଲା ନାହିଁ।"

ତାଙ୍କର ଏପରି ଉକ୍ତି କେତେ ଯଥାର୍ଥ ଥିଲା, ତାହା ମୁଁ ଅନୁଭବ କରିଥିଲି। ଜଣେ ବ୍ୟକ୍ତି ଯଦି ତା'ର ଡିଗ୍ରୀର ମୂଲ୍ୟ ରଖି ନପାରେ; ତେବେ ତାହା ରଦ୍ଦ କରିବାର ଅଧିକାର ମଧ୍ୟ ବିଶ୍ୱବିଦ୍ୟାଳୟର ଅଛି।

ସେ ସମୟରେ ହୁଲରସିଂହା ପ୍ରାଥମିକ ସ୍କୁଲର ପ୍ରଧାନଶିକ୍ଷକ ଥିଲେ ଶ୍ରୀଯୁକ୍ତ ମୂରଲୀଧର ମିଶ୍ର। ଶ୍ରୀଯୁକ୍ତ ମିଶ୍ର ଜଣେ ଧୋତି ଓ ପଞ୍ଜାବୀ ପିନ୍ଧା ଲୋକ। ତାଙ୍କର ହସହସ ମୁହଁକୁ ଧୋତି ଓ ପଞ୍ଜାବୀ ତାଙ୍କୁ ବେଶ୍ ମାନେ। ସେ ନିଜସ୍ୱ ପ୍ରଚେଷ୍ଟାରେ ଅନେକ ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶ କରିଥିଲେ। ବିଭିନ୍ନ ସାହିତ୍ୟ ଆଲୋଚନାରେ ମଧ୍ୟ ଅଂଶ ଗ୍ରହଣ କରୁଥିଲେ। ସେଇପରି ଆଉ ଜଣେ ଶିକ୍ଷକ ଶିଶୁ ସାହିତ୍ୟିକ ବୁଦ୍ଧିମନ୍ତ ମହାନ୍ତିଙ୍କ ସହିତ ମୋର ନିୟମିତ ସଂପର୍କ ରହିଥିଲା।

ପ୍ରତିବର୍ଷ ଇଂରାଜୀ ମାସର ପ୍ରଥମ ଦିବସକୁ ସ୍ୱାଗତ ଜଣାଇ ଡ଼ିସେମ୍ବର ମାସ ୩୧ ତାରିଖରେ ରାଧାକାନ୍ତ ବାବୁ (ରାଧାକାନ୍ତ ମହାନ୍ତି) 'ଅଙ୍ଗୀକାର' ସାହିତ୍ୟ ସଂସଦ ଆନୁକୂଲ୍ୟରେ ମଧ୍ୟରାତ୍ରିରେ କବିତା ପାଠର ଆୟୋଜନ କରୁଥିଲେ। ଏହା କେବଳ କବିତା ଓ ଗଳ୍ପ ମଧ୍ୟରେ ସୀମାବଦ୍ଧ ନଥିଲା। ଏହି ସଭାରେ ମୁଁ ଜଣେ ଯୁବବନ୍ଧୁଙ୍କୁ ଉପସ୍ଥିତ ରହିବାର ଦେଖିଥିଲି। ସେ ହେଉଛନ୍ତି ଶ୍ରୀମାନ୍ ରାଧାମୋହନ ପଣ୍ଡା। ଅନେକ ଦିନ ପରେ ତାଙ୍କ ସହିତ ମୋର ଭୁବନେଶ୍ୱରରେ ଦେଖା ହୋଇଥିଲା। ସେ ମୋତେ ନିଜର ପରିଚୟ ଦେଇ କହିଲେ ଯେ "ସାର୍ ! ମୁଁ ଅନୁଗୁଳ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଆପଣଙ୍କ ଛାତ୍ର ଥିଲି। ବର୍ତ୍ତମାନ ଶ୍ରୀମାନ୍ ପଣ୍ଡା ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗର ଜଣେ ଉଚ୍ଚ ପଦସ୍ଥ ଅଫିସର।

ଅନୁଗୁଳ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଯେଉଁ ଅଧ୍ୟାପକବନ୍ଧୁମାନଙ୍କ ସହିତ ମୁଁ କାମ କରିବାର ସୌଭାଗ୍ୟ ପାଇଥିଲି; ସେମାନେ ହେଲେ ଶ୍ରୀଯୁକ୍ତ ତ୍ରିଲୋଚନ ଷଡ଼ଙ୍ଗୀ, ଶ୍ରୀଯୁକ୍ତ ଭିକାରୀ ଚରଣ ମିଶ୍ର, ଶ୍ରୀଯୁକ୍ତ ଚକ୍ରଧର ବିଶ୍ୱାଳ, ଶ୍ରୀଯୁକ୍ତ ବ୍ରଜମୋହନ ମିଶ୍ର, ଶ୍ରୀଯୁକ୍ତ ପ୍ରଫୁଲ କୁମାର ପଣ୍ଡା, ଶ୍ରୀଯୁକ୍ତ ବ୍ରଜବନ୍ଧୁ ପଣ୍ଡା, ଶ୍ରୀଯୁକ୍ତ ଚୈତନ୍ୟ ସାହୁ, ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ। ଅଧ୍ୟକ୍ଷ ଶ୍ରୀଯୁକ୍ତ ମଦନମୋହନ ମିଶ୍ର ଜଣେ ଗୁଣଗ୍ରାହୀ ବ୍ୟକ୍ତି ଥିଲେ। ତାଙ୍କ ପରେ ଯେଉଁ ବରିଷ୍ଠ ପ୍ରାଧ୍ୟାପକ ରହିଥିଲେ ସେ ହେଉଛନ୍ତି ଶ୍ରୀଯୁକ୍ତ ତ୍ରିଲୋଚନ ଷଡ଼ଙ୍ଗୀ। ସେ ଜଣେ ଦକ୍ଷ ଉଦାରଚେତା ମଣିଷ ଥିଲେ। ତେଣୁ କଦବା

କେବେ କୌଣସି ବ୍ୟତିକ୍ରମ ଦେଖାଦେଲେ ଅଧ୍ୟକ୍ଷ ଓ ଶ୍ରୀଯୁକ୍ତ ଷଡ଼ଙ୍ଗୀ ମହାବିଦ୍ୟାଳୟଟିକୁ ଏକ ପରିବାର ଭଳି ଚଳେଇ ନେଉଥିଲେ । କଲେଜର ହେଡ଼କ୍ଲର୍କ ମଦନ ମୋହନ ପ୍ରଧାନ ଅତୀବ ସରଳ ଥିଲେ । ଶ୍ରୀଯୁକ୍ତ ଭାବଗ୍ରାହୀ ପ୍ରଧାନ କ୍ୟାସିୟର ହିସାବରେ ସମ୍ବଲପୁରରୁ ବଦଳି ହୋଇ ସେଠାରେ କାମ କରୁଥିଲେ ।

ଅନୁଗୁଳରେ ଯୋଗଦେଲା ପରେ ସାମୟିକ ଭାବେ ମୁଁ ଛାତ୍ରାବାସ ନିକଟସ୍ଥ 'ଅତିଥିଭବନ'ରେ ରହୁଥିଲି । ସେଠାରେ ରହିବାର ଦୁଇ ଚାରି ଦିନ ମଧ୍ୟରେ ମୋତେ ଭୀଷଣ ଜ୍ୱର ହେଲା । ସେତେବେଳେ ଛାତ୍ରାବାସର ପିଲାମାନେ ବାର୍ଷିକ ପରୀକ୍ଷା ଦେଇଥିଲେ । ମୁଁ ଗୋଟିଏ ଶିକ୍ଷାବର୍ଷର ଶେଷରେ ସେଠାରେ ଯୋଗ ଦେବାହେତୁ ସେମାନଙ୍କ ଶିକ୍ଷାଦାନ କରିବାର ସୌଭାଗ୍ୟ ମୋର ନ ଥିଲା । ମାତ୍ର ମୋର ଏ ଅସହାୟ ଅବସ୍ଥାରେ ମନକୁ ମନ ଜଣେ ଦୁଇଜଣ ଛାତ୍ର ଆସି ମୋ ଭଲମନ୍ଦ ବୁଝି ଯାଉଥିଲେ । ସେମାନଙ୍କ ମଧ୍ୟରେ ଢ଼େଙ୍କାନାଳ ଜିଲ୍ଲାର ରବି ବୋଲି ଜଣେ ଛାତ୍ର ଥିଲେ । ସ୍ୱାଭାବିକ ଭାବେ ମୋ ମନରେ ତା'ପ୍ରତି ଶ୍ରଦ୍ଧାଭାବ ଆସିଥିଲା ।

ମୁଁ ପରବର୍ତ୍ତୀ ସମୟରେ ରବିକୁ ମନେମନେ ଅନେକବାର ଖୋଜିଛି । କିନ୍ତୁ କୌଣସିଠାରେ ତା' ସହିତ ଦେଖା ସାକ୍ଷାତ ହୋଇନାହିଁ । ସେହିପରି ମୁଁ ଖୋଜୁଥିବା ଅନୁଗୁଳର ମୋର ଅନ୍ୟତମ ଛାତ୍ର ହେଉଛନ୍ତି ଶ୍ରୀମାନ୍ ସନ୍ତୋଷ ମିଶ୍ର । ସେ କଲେଜ ଛାତ୍ର ସଂସଦର ସଂପାଦକ ଥିଲେ । ତେଣୁ ଛାତ୍ର ସଂସଦର ସଂପାଦକ ହିସାବରେ ସେ କଲେଜର ଗଣେଶ ପୂଜା, ସରସ୍ୱତୀ ପୂଜା ଆଦି ଅନେକ ସାଂସ୍କୃତିକ କାର୍ଯ୍ୟକ୍ରମ ବୁଝୁଥିଲେ । ସେ ବିଜ୍ଞାନର ଛାତ୍ର ଥିଲେ । ଭବିଷ୍ୟତର ଜଣେ ଉଦୀୟମାନ ଶିକ୍ଷକ ଭାବେ ନିଜର ଶିକ୍ଷାଦାନ ସମୟରେ ଅଧ୍ୟାପକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ।

ସେ ବର୍ଷ ସରସ୍ୱତୀ ପୂଜା ଦିନ ମୋର ବଡ଼ ପୁଅ ଜ୍ୟୋତିପ୍ରକାଶ ଓ ସାନପୁଅ ଦୀପ୍ତିପ୍ରକାଶର ବ୍ରତପୋନୟନ ଅନୁଗୁଳରେ ଅନୁଷ୍ଠିତ ହୋଇଥିଲା । କାରଣ ସେ କାର୍ଯ୍ୟକ୍ରମଟି ଅନୁଗୁଳ ପ୍ରଶିକ୍ଷଣ ମହାବିଦ୍ୟାଳୟର ପରିସର ମଧ୍ୟରେ ହେଉ ବୋଲି ଖୋଦ ଅଧ୍ୟକ୍ଷ ମିଶ୍ର ଚାହିଥିଲେ । ସେ ମୋତେ ହସି ହସି କହିଥିଲେ, "ବ୍ରହ୍ମାବାବୁ ! ଆପଣ ଗାଆଁରେ ପିଲାଙ୍କ ବ୍ରତପୋନୟନ କଲେ ଆମେ କେହି ତ ସେଠାକୁ ଯାଇ ପାରିବୁ ନାହିଁ । ଏଠାରେ କରନ୍ତୁ, ଆମେ ସମସ୍ତେ ସାହାଯ୍ୟ କରିବୁ ।" ତାଙ୍କର ଇଚ୍ଛା ଅନୁସାରେ ବ୍ରତଘର କାମଟି ଅନୁଗୁଳରେ ହେବା ପାଇଁ ସ୍ଥିର କରାଗଲା ।

ମୋର ଗୋଟିଏ ପାରିବାରିକ ଉତ୍ସବ ପରିଚାଳନା କରିବାର ଆଦୌ ଅଭିଜ୍ଞତା ନ ଥିଲା । ଆମ ଘରର ସମସ୍ତ ବିବାହ ଓ ବ୍ରତ ଘରର ଉତ୍ସବ ମୋର ପୂଜ୍ୟ ପିତା

ସ୍ୱର୍ଗତଃ ଲକ୍ଷ୍ମଣ ପଣ୍ଡା କରିଥିଲେ । ତେଣୁ ତାଙ୍କ ସମୟରେ ମୁଁ ଓ ମୋର ବଡ଼ ଭାଇ ଶ୍ରୀଯୁକ୍ତ ଚତୁର୍ଭୁଜ ବ୍ରହ୍ମା କୌଣସି କଥା ମୁଣ୍ଡ ଉପରକୁ ନେବାର ଅବକାଶ ନ ଥିଲା । ମୋ ବାପାଙ୍କ ଅବର୍ତ୍ତମାନରେ ଅନୁଗୁଳରେ କିଏ ଏ ଦାୟିତ୍ୱ ନେବେ ତାହା ମୋର ଚିନ୍ତାର ବିଷୟ ଥିଲା । ପୁଣି ସେତେବେଳେ କଲେଜରେ ଗୋଷ୍ଠୀ କନ୍ଦଳ ଏକ ପ୍ରକାର ମୁଣ୍ଡ ଟେକି ଥିଲା । କଲେଜ କର୍ମଚାରୀଙ୍କ ମଧ୍ୟରୁ କେତେକଙ୍କ ପିଲା ବିଭିନ୍ନ ଗଣ୍ଡଗୋଳରେ ଲିପ୍ତ ଥିଲେ । ଅଧ୍ୟକ୍ଷ ମିଶ୍ର ଏସବୁ ପ୍ରତି ଏକ ରକମ ଆଖି ବୁଜି ଦେଇଥିଲେ । କେବଳ ଯାହାଙ୍କୁ ସମସ୍ତେ ମାନୁଥିଲେ ସେ ହେଉଛନ୍ତି ଶ୍ରୀଯୁକ୍ତ ତ୍ରିଲୋଚନ ଷଡ଼ଙ୍ଗୀ, ପ୍ରାଧ୍ୟାପକ । ତେଣୁ ମୁଁ ଭାବିଲି ଯଦି ଶ୍ରୀଯୁକ୍ତ ଷଡ଼ଙ୍ଗୀ ଏ ଦାୟିତ୍ୱ ମୁଣ୍ଡ ଉପରକୁ ନେଇଯିବେ, ତେବେ ମୋ ପ୍ରତି କୌଣସି ସମସ୍ୟା ରହିବ ନାହିଁ ।

ଦିନେ ସନ୍ଧ୍ୟାବେଳେ ମୁଁ ଷଡ଼ଙ୍ଗୀ ସାର୍‌ଙ୍କୁ ତାଙ୍କ ସରକାରୀ ବାସଭବନରେ ଭେଟିଲି । ମୋ ମନର କଥା କହିଲି । ସେ ହସି ହସି କହିଲେ, "ବ୍ରହ୍ମାବାବୁ ! ମୁଁ ଜାଣେ କେତେକ ଲୋକ ଅସହିଷ୍ଣୁ ଓ ହିଂସାଳୁ ସ୍ୱଭାବର ବ୍ୟକ୍ତି ହୋଇଥିବା ହେତୁ ଆପଣଙ୍କୁ ସହଯୋଗ କରିବେ ନାହିଁ । ମୁଁ ବାପି ଓ ମୁନାର ବ୍ରତଘର ଉତ୍ସବ, ଭୋଜିଭାତର ସମସ୍ତ ଦାୟିତ୍ୱ ନେବି ।"

ଏଇ ଘଟଣାର ପରେ ପରେ ଶ୍ରୀଯୁକ୍ତ ଷଡ଼ଙ୍ଗୀଙ୍କ ବଦଳି ଅଧ୍ୟକ୍ଷ ଭାବେ ବଲାଙ୍ଗୀର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ହୋଇଗଲା । ତାଙ୍କର ପିଲାମାନେ ଅନୁଗୁଳରେ ରହିଲେ । ସେ ମୋତେ ଦେଇଥିବା ପ୍ରତିଶ୍ରୁତି ଅନୁଯାୟୀ ବ୍ରତପୋନୟନ କାର୍ଯ୍ୟକ୍ରମର ଦୁଇଦିନ ଆଗରୁ ଆସି ପହଞ୍ଚିଲେ । ଭୋଜିଭାତର ଆୟୋଜନ ହଷ୍ଟେଲ ପୂଜାରୀ ଭାସ୍କର ମିଶ୍ର ଭାଇନାଙ୍କୁ ଧରି କଲେ ।

ସରସ୍ୱତୀ ପୂଜାଦିନ ବ୍ରତଘରର ଚାରିକର୍ମ କାର୍ଯ୍ୟ ପଡ଼ିଥିଲା । ସେଦିନ ଗୋଟାଏ ବେଳକୁ ମୋତେ ଅଧ୍ୟକ୍ଷ ମହୋଦୟ ଦେବୀ ସରସ୍ୱତୀଙ୍କ ପୁଷ୍ପାଞ୍ଜଳି କାର୍ଯ୍ୟକ୍ରମରେ ଯୋଗ ଦେବାକୁ ଡକାଇଲେ । ମୁଁ କଲେଜକୁ ଆସିଲି । ସେତେବେଳେ ଅଧ୍ୟକ୍ଷ ମିଶ୍ର କେତେକ ସହକର୍ମୀଙ୍କ ସହିତ ତାସ ଖେଳୁଥିଲେ । ଏଇ ସମୟରେ କଲେଜର ବରିଷ୍ଠ ଅଧ୍ୟାପକ ଚକ୍ରଧର ବିଶ୍ୱାଳ ଅଧ୍ୟକ୍ଷଙ୍କୁ ଲକ୍ଷ୍ୟକରି ବାରମ୍ବାର କହିଲେ, "ସାର୍ ! ସେ ସନ୍ତୋଷ କଲେଜର ସେକ୍ରେଟେରୀ । ତାକୁ ଦେଖୁଛି ସେ ବାରମ୍ବାର ବ୍ରହ୍ମାବାବୁଙ୍କ ବ୍ରତଘର କାମରେ ଲାଗିଛି । କଲେଜର ଗୋଷ୍ଠୀ କାର୍ଯ୍ୟ (Community Work)ରେ ଆଦୌ ଯୋଗ ଦେଉନାହିଁ ।" ତାଙ୍କ କଥାକୁ ଅଧ୍ୟକ୍ଷ ଧ୍ୟାନ ନ ଦେଇ ଗୋଟିଏ ପରେ ଗୋଟିଏ ତାସ ପତା ପକାଇ ପୂର୍ବବତ୍ ଖେଳି ଚାଲିଲେ ।

ମୁଁ ମଧ୍ୟ ଏ ପ୍ରସଙ୍ଗରେ କୌଣସି କଥା କହିବାକୁ ଉଚିତ୍ ମନେ କଲି ନାହିଁ । ଆଗକୁ ମୋର କାମ ଅଛି । ଯେ କୌଣସି ଦାୟିତ୍ୱ ସଂପନ୍ନ କଲାବେଳେ ମଣିଷ ଶାନ୍ତ, ଭଦ୍ର ଓ ନମ୍ର ବ୍ୟବହାର କରିବା ଦରକାର । ପରଦିନ ମୋର ପିଲାଙ୍କର ବ୍ରତଘର ଥିବା ହେତୁ ମୁଁ ନୀରବ ରହିବା ଶ୍ରେୟ ମନେ କଲି ।

ଯେହେତୁ ଅଧ୍ୟକ୍ଷ କିଛି କହିଲେ ନାହିଁ, ଚକ୍ରଧର ବାବୁ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ । ସେ ଏଥରକ ମୋତେ ପ୍ରଶ୍ନ କଲେ, "ବ୍ରହ୍ମାବାବୁ ! ସେ ସନ୍ତୋଷ ଯାଇ ଆପଣଙ୍କ ଘରେ କି କାମ କରୁଛି ? ମୁଁ ତ ଦେଖୁଛି, ସେ ସବୁବେଳେ ଆପଣଙ୍କ ବ୍ରତଘର କାମରେ ଲାଗିଛି ।"

ସେ ମୋତେ ସ୍ପଷ୍ଟଭାବେ ଇଙ୍ଗିତ କରି ପଚାରୁଥିବା ହେତୁ ମୁଁ ଏକ ସ୍ପଷ୍ଟୀକରଣ ଦେବା ଉଚିତ ହେବ ବୋଲି ମନେ କଲି । ସଙ୍ଗେ ସଙ୍ଗେ କହିଲି, "ସନ୍ତୋଷକୁ କେବେ ମୁଁ ଘରକାମରେ ସାହାଯ୍ୟ କରିବାକୁ କହି ନାହିଁ । ଅନୁଗୁଳ ଏକ ଛୋଟ ସହର ହୋଇଥିବା ହେତୁ, ସେ କେତେବେଳେ କେମିତି ଆମର ଜିନିଷପତ୍ର କିଣାକିଣି ସମୟରେ ଆକସ୍ମିକ ଭାବେ ପହଞ୍ଚିଯାଉଛି । ଯାହା ଉଚିତ୍ ମନେ କରୁଛି ତାହା କରୁଛି ।"

"ସେ କ'ଣ ଏପରି କରିବା ଉଚିତ ହେଉଛି ?" ଚକ୍ରଧରବାବୁ ପଚାରିଲେ । ମୁଁ କହିଲି, "ଦେଖନ୍ତୁ, ସନ୍ତୋଷ ହେଉଛି ବିଜ୍ଞାନର ଛାତ୍ର । ମୁଁ ଚାହିଲେ ମଧ୍ୟ ତାକୁ ବି.ଏଡ୍ ପ୍ରାକ୍‌ଟିକାଲ୍ ପରୀକ୍ଷାରେ ଗୋଟିଏ ମାତ୍ର ନମ୍ବର ତା' ସପକ୍ଷରେ ଦେଇ ପାରିବି ନାହିଁ । ତେଣୁ ଆପଣ ଯେଉଁ ପ୍ରଶ୍ନ ଏଠାରେ ବାରମ୍ବାର ଉଠାଉଛନ୍ତି; ତାହା ମୋତେ ନ ପଚାରି ତାକୁ ପଚାରି ଥିଲେ ଭଲ ହୋଇଥାନ୍ତା ।"

ମୋ କଥା ଶୁଣି ବିଜ୍ଞ ଅଧ୍ୟକ୍ଷ ମିଶ୍ର ବୋଧେହୁଏ ଲକ୍ଷ୍ୟ କଲେ ଯେ ଏକ ସାମାନ୍ୟ କଥା ହୁଏତ କଥା ପ୍ରସଙ୍ଗରେ ବଡ଼ ହୋଇପାରେ । ତେଣୁ ସେ ପୂର୍ବପରି ନୀରବ ନ ରହି ହଠାତ୍ ଏକ ମନ୍ତବ୍ୟ ଦେଇ କହିଲେ, "ହଇହୋ ଚକ୍ରଧର ବାବୁ, କେବଳ କଲେଜର ସରସ୍ୱତୀ ପୂଜା କ'ଣ ହେଉଛି ଗୋଷ୍ଠୀଗତ କାର୍ଯ୍ୟ (Community Work) ଆଉ ବ୍ରହ୍ମାବାବୁଙ୍କ ପିଲାଙ୍କ ବ୍ରତଘର କାମ ନୁହେଁ ? ସନ୍ତୋଷ ଏଠି କାମ କଲେ ଯାହା, ବ୍ରହ୍ମାବାବୁଙ୍କ ଘରେ କାମ କଲେ ସେୟା ।"

ଅଧ୍ୟକ୍ଷଙ୍କ ଏ ମତାମତ ପରେ ଚକ୍ରଧରବାବୁ ନୀରବ ରହିଲେ । ମୁଁ ପୁଷ୍ପାଞ୍ଜଳି ଦେଇ ବସାକୁ ଫେରି ଆସିଲି । ସେଇ ଶିକ୍ଷାବର୍ଷ ପରେ ମୋର ଆଉ ଭବିଷ୍ୟତରେ ଉଦୀୟମାନ୍ ଶିକ୍ଷକ ହେବାର ସ୍ୱପ୍ନ ଦେଖୁଥିବା ସନ୍ତୋଷ ସହିତ କେବେ କୌଣସିଠାରେ ଦେଖା ସାକ୍ଷାତ ହୋଇନାହିଁ । ମୁଁ ମନେ ମନେ ତାକୁ ଅନେକ ସମୟରେ ଖୋଜିଛି ।

ଭାବିଥିଲି ରାଜ୍ୟ ଶିକ୍ଷା ଗବେଷଣା ପରିଷଦରେ କାମ କଲାବେଳେ ଓ ରାଜ୍ୟର ବିଭିନ୍ନ ସ୍ଥାନରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମରେ ଯୋଗଦେଲାବେଳେ ହୁଏତ ଦେଖା ହେବ । ମୋର ଅନୁଗୁଳର ଛାତ୍ର ରବି ସହିତ ମଧ୍ୟ ସାକ୍ଷାତ ହେବ । କିନ୍ତୁ ଆଜି ପର୍ଯ୍ୟନ୍ତ ସେ ସ୍ମୃତି ମୋର ସ୍ମୃତି ହୋଇ ରହିଅଛି । ଆଉଥରେ ସେମାନଙ୍କ ସହିତ ଦେଖା ସାକ୍ଷାତର ସମ୍ଭାବନା ଅଛି କି ନାହିଁ, ସେ କଥା ମଧ୍ୟ ଜାଣେ ନାହିଁ ।

ଅନୁଗୁଳ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରଶାସନିକ ନିୟନ୍ତ୍ରଣରେ ଅନୁଗୁଳ ହାଇସ୍କୁଲ ଥାଏ । ସେ ସ୍କୁଲରେ ବି.ଏଡ୍ ଅଭ୍ୟାସ ପାଠଦାନ ଚାଲୁଥିଲାବେଳେ ଆମେ ଅଧ୍ୟାପକମାନେ ସାଧାରଣତଃ ସେ ବିଦ୍ୟାଳୟକୁ ବି.ଏଡ୍ ଛାତ୍ରଙ୍କର ଅଭ୍ୟାସ ଶିକ୍ଷାଦାନ ଦେଖିବାକୁ ଯାଇଥାଉ । ମୋ ସ୍ୱଳ୍ପ ରହଣି ମଧ୍ୟରେ ମୁଁ ସେଠାକାର ଦୁଇଜଣ ପ୍ରବୀଣ ପ୍ରଧାନଶିକ୍ଷକଙ୍କ ସଂସ୍ପର୍ଶରେ ଆସିଥିଲି । ଜଣେ ହେଉଛନ୍ତି ଶ୍ରୀଯୁକ୍ତ ବୃନ୍ଦାବନ ତ୍ରିପାଠୀ ଓ ଆଉ ଜଣେ ହେଉଛନ୍ତି ଶ୍ରୀଯୁକ୍ତ ବାଳକୃଷ୍ଣ ପ୍ରଧାନ । ଥରେ ଅନୁଗୁଳ ହାଇସ୍କୁଲର ବାର୍ଷିକ ଉତ୍ସବରେ ମୁଖ୍ୟବକ୍ତା ହେବା ନିମନ୍ତେ ମୋତେ ବିଦ୍ୟାଳୟର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ବାଳକୃଷ୍ଣ ପ୍ରଧାନ ଆମ କଲେଜକୁ ଆସି ନିମନ୍ତ୍ରଣ ଜଣାଇଥିଲେ । ସେତେବେଳେ ମୁଁ ତାଙ୍କ କଥା ଶୁଣି ବିସ୍ମିତ ହୋଇଥିଲି । କାରଣ ବିଦ୍ୟାଳୟର ପରିଦର୍ଶକ କଲେଜର ଅଧ୍ୟକ୍ଷଙ୍କୁ ନ ଡାକି ମୋତେ ଡ଼ାକିବା କଥା ମୁଁ ସହଜରେ ଗ୍ରହଣ କରି ପାରି ନ ଥିଲି । ସେଥିପାଇଁ ମୁଁ ପ୍ରଧାନଶିକ୍ଷକ ମହୋଦୟଙ୍କୁ କହିଲି, "ସାର୍ ! ଆପଣ ଏ କି ଭୁଲ କରୁଛନ୍ତି ? ଆପଣ ଆମ ଅଧ୍ୟକ୍ଷଙ୍କୁ ଡାକନ୍ତୁ ।"

ସେ ମୋତେ ସାଥେ ସାଥେ କହିଲେ, "ବ୍ରହ୍ମାବାବୁ ! ସେ କଥା ଆମ ବିଦ୍ୟାଳୟର ନିଜସ୍ୱ କଥା । ବିଦ୍ୟାଳୟର ସବୁ ଶିକ୍ଷକ ଚାହୁଁଛନ୍ତି ଯେ ଆପଣ ଦୁଇ ଚାରି ପଦ କହିଲେ, ପିଲାମାନେ ଅନେକ କଥା ଜାଣିବେ ଓ ମନଯୋଗ ସହକାରେ ଶୁଣିବେ । ଆପଣ ଆଉ ମନା କରନ୍ତୁ ନାହିଁ । ମୁଁ ଜାଣିଥିଲି ଶ୍ରୀଯୁକ୍ତ ପ୍ରଧାନ ହେଉଛନ୍ତି ଜଣେ ନିର୍ଭୀକ ଜ୍ଞାନୀ, ଛାତ୍ରବତ୍ସଳ ପ୍ରଧାନଶିକ୍ଷକ । ତାଙ୍କଭଳି ଜଣେ ବୟସ୍କ ଲୋକଙ୍କ ଆମନ୍ତ୍ରଣକୁ ଏଡ଼ାଇ ଯିବାର ସାହସ ମୁଁ ଜୁଟାଇ ପାରି ନ ଥିଲି । ଯେଉଁଦିନ ବିଦ୍ୟାଳୟରେ ଛାପା ନିମନ୍ତ୍ରଣ ପତ୍ର ଆସି ମୋ ପାଖରେ ପହଞ୍ଚିଲା, ମୁଁ ଦେଖିଲି ଯେ ମୋ ସହିତ ଅନୁଗୁଳ ଏସ୍.ଡ଼ି.ଓ କାର୍ଯ୍ୟାଳୟର ଏ.ଡ଼ି.ଏମ୍ ଶ୍ରୀଯୁକ୍ତ ରମାବଲ୍ଲଭ ମିଶ୍ର ମୁଖ୍ୟ ଅତିଥିଭାବରେ ଅଛନ୍ତି ।

ଯଥା ସମୟରେ ପୁରସ୍କାର ବିତରଣ ଉତ୍ସବ ଆରମ୍ଭ ହେଲା । ମୁଖ୍ୟବକ୍ତା ହିସାବରେ ମୋତେ ପ୍ରଥମେ ଭାଷଣ ଦିଆଯିବାକୁ କୁହାଗଲା । ସେଦିନ ମୁଁ ମୋର

ଅଭିବ୍ୟକ୍ତିକୁ ଶିକ୍ଷାର୍ଥୀ କିମ୍ବା ସେମାନଙ୍କ ଅଭିଭାବକମାନଙ୍କ ଗତାନୁଗତିକ ଉପଦେଶ ମଧ୍ୟରେ ନ ରଖି, "ଶିକ୍ଷାର୍ଥୀର ଶିକ୍ଷା ଓ ମନସ୍ତତ୍ତ୍ୱ"ର ଅଜଣା କଥା ଉପରେ ପର୍ଯ୍ୟବସିତ କରିଥିଲି । ଭାଷା ସରଳ ଓ ତରଳ ହୋଇଥିବା ହେତୁ ସମସ୍ତେ ଆଗ୍ରହର ସହିତ ଶୁଣିଥିଲେ । ଏଇ ସମୟରେ ପ୍ରଧାନଶିକ୍ଷକ ମହୋଦୟ ଆସି ମୋ କାନ ପାଖରେ ଧୀରେ ଧୀରେ କହିଲେ, "ବ୍ରହ୍ମାବାବୁ । ମୁଖ୍ୟ ଅତିଥି ଆସିବାକୁ ଆଉ କିଛି ସମୟ ଡ଼େରି ଲାଗିବ । ଆପଣ ଆପଣଙ୍କ ଭାଷଣକୁ ଦୟାକରି ସେ ପର୍ଯ୍ୟନ୍ତ ବଢ଼ାଇ ଚାଲନ୍ତୁ । ସେତେବେଳେ ମୋର ଭାଷଣ ଦେବା ପ୍ରାୟ ଅଧଘଣ୍ଟା ଅତିକ୍ରମ କରିଥାଏ । ମୁଁ ପ୍ରଧାନଶିକ୍ଷକଙ୍କ ଅନୁରୋଧ କ୍ରମେ ମୋର ଭାଷଣର ସମୟ ବଢ଼ାଇ ଚାଲିଲି । ମୋ ଭାଷଣ ଚାଲିଥିବା ମଧ୍ୟରେ ଶ୍ରୀଯୁକ୍ତ ମିଶ୍ର ଆସି ମଞ୍ଚସ୍ଥ ହେଲେ ଓ ମୋ ବକ୍ତବ୍ୟକୁ ଆଗ୍ରହର ସହିତ ଶୁଣିଲେ । ଏହା ସହିତ ସ୍କୁଲ ବାହାର ମୁଖ୍ୟରାସ୍ତାରେ ଠିଆ ହୋଇ ଅନେକ ଲୋକ ମଧ୍ୟ ଶୁଣିଲେ । ସେଦିନର ସେ ଭାଷଣର ପ୍ରଭାବ କ'ଣ ଥିଲା କେଜାଣି ପରଦିନ ସେତେବେଳର ସେଇ ଛୋଟିଆ ସହରରେ ମୁଁ ବୁଲିଲାବେଳେ ଅନେକ ସାଧାରଣ ଲୋକ ମୋ ଭାଷଣରୁ ଅନେକ କଥା ଜାଣିଲେ ବୋଲି ମୋତେ ନିଜ ନିଜର ମତାମତ ଦେଇଥିଲେ ।

ସେ ସମୟରେ ମୋ ପାଇଁ ଅନ୍ୟ ଏକ ନୂତନ ଅନୁଭୂତି ଥିଲା ତାଳଚେରଠାରେ ଥିବା ଏକ ମାଧ୍ୟମିକ ଇଂରାଜୀ ବିଦ୍ୟାଳୟର ବାର୍ଷିକ ଉତ୍ସବରେ ଯୋଗଦାନ । ମୁଖ୍ୟ ଅତିଥି ଭାବରେ ମୁଁ ମୋର ଉଦ୍‌ବୋଧନ ଦେଇଥିଲି । ମୋ ଭାଷଣ ଶୁଣି ଅଧ୍ୟକ୍ଷ ଧନ୍ୟବାଦ ପ୍ରସଙ୍ଗରେ କହିଲେ, "ଅଧ୍ୟାପକ ବ୍ରହ୍ମାଙ୍କ ଶିକ୍ଷାଦାନ ସ୍ୱତନ୍ତ୍ର ବୋଲି ମୁଁ ତାଙ୍କର ଅନେକ ଛାତ୍ରଙ୍କଠାରୁ ଶୁଣିଥିଲି । ଯାହା ଶୁଣିଥିଲି ତାହା ଯଥାର୍ଥ । ସେ ମହାଶୟ କାର୍ଯ୍ୟକ୍ରମକୁ ଆସିଥିବା ହେତୁ ମୁଁ ତାଙ୍କୁ ଆମ ଅନୁଷ୍ଠାନ ତରଫରୁ ଧନ୍ୟବାଦ ଜଣାଉଛି ।"

ମୁଁ ଆସିଲାବେଳେ ମୋତେ ଅଧ୍ୟକ୍ଷ ମହୋଦୟ ଏକ ଲଫାପା ଧରାଇଲେ । ସେଥିରେ କିଛି ଅର୍ଥ ଥିଲା । ମୁଁ ସେ ଲଫାପାକୁ ତାଙ୍କୁ ଫେରେଇ ଦେଇ କହିଲି, "ଆପଣଙ୍କ ନିମନ୍ତ୍ରଣ କ୍ରମେ ଆସି ଆପଣମାନଙ୍କ ସହିତ ମିଶିବା ଓ ମତ ବିନିମୟ କରିବା ତ ମୋ ଧର୍ମ । ସେଥିପାଇଁ ମୋତେ ଅର୍ଥ ଦେବାର କ'ଣ ଆବଶ୍ୟକତା ଅଛି ?" ସେ ମୋତେ ତତ୍‌କ୍ଷଣାତ୍ କହିଲେ, "ଏହା ଆମର ବିଧି ବ୍ୟବସ୍ଥାର ଅନ୍ତର୍ଭୁକ୍ତ । ଆପଣଙ୍କୁ ନେବାକୁ ପଡ଼ିବ ।"

ତେଣୁ ମୁଁ ଲଫାପାଟିକୁ ଧରି ଆସିଲି । ତାହାହିଁ ଥିଲା ମୋର ଅନିଚ୍ଛା ସତ୍ତ୍ୱେ ଏକ ଶିକ୍ଷାନୁଷ୍ଠାନରେ ଭାଷଣ ବିନିମୟରେ କିଛି ପାରିଶ୍ରମିକ ପାଇବାର ପ୍ରଥମ ଓ ଶେଷ ଅନୁଭୂତି ।

ସେ ସମୟରେ ଅନୁଗୁଳର ଶିକ୍ଷା ଅନୁଷ୍ଠାନ ମଧ୍ୟରେ ଅନୁଗୁଳ ମହାବିଦ୍ୟାଳୟର ସ୍ୱତନ୍ତ୍ର ସ୍ଥାନ ଥିଲା । ମୋର ସେଇ ମହାବିଦ୍ୟାଳୟର ପ୍ରାଧ୍ୟାପକ ରବିନାରାୟଣ ବରାଳ, ଅଧ୍ୟାପକ ପୁରନ୍ଦର ବେହେରା, ଅଧ୍ୟାପକ କୁଳମଣି ନାୟକ, ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ରଥ ଓ ଅଧ୍ୟାପକ ବିଷ୍ଣୁମୋହନ (ଦାଶ)ଙ୍କ ସହିତ ଭାବଗତ ସଂପର୍କ ଥିଲା । ଅଧ୍ୟାପକ ବିଷ୍ଣୁମୋହନ ରାଜନୀତି ବିଜ୍ଞାନର ଜଣେ ପ୍ରବୀଣ ଅଧ୍ୟାପକ ଭାବରେ ଓଡ଼ିଶାରେ ଜଣାଶୁଣା । ସେତେବେଳେ ରାଜନୀତି ବିଜ୍ଞାନ ସଂପର୍କୀୟ ତାଙ୍କର ବହୁ ପ୍ରବନ୍ଧ ଓଡ଼ିଶାର ଅଗ୍ରଣୀ ଖବରକାଗଜ ପୃଷ୍ଠା ମଣ୍ଡନ କରୁଥିଲା । ଏବେ ସେ ଶିଶୁସାହିତ୍ୟରେ ମନୋନିବେଶ କରିଛନ୍ତି । ଅଧ୍ୟାପକ ପୁରନ୍ଦର ବେହେରା ଇତିହାସର ପ୍ରାଧ୍ୟାପକ ଥିଲେ । ମୁଁ ରେଭେନ୍ସା ମହାବିଦ୍ୟାଳୟରେ ପଢୁଥିଲାବେଳେ ସେ ଆମେ ରହୁଥିବା ପୂର୍ବଛାତ୍ରାବାସର ସାଧାରଣ ସଂପାଦକ ଥିଲେ । ତାଙ୍କର ବ୍ୟକ୍ତିତ୍ୱ ପ୍ରତି ସେତେବେଳେ ଅନ୍ତେବାସୀମାନଙ୍କ ଯେଉଁ ଶ୍ରଦ୍ଧା ଓ ସମ୍ମାନ ଥିଲା, ତାହା ସେ ପରବର୍ତ୍ତୀ ଜୀବନରେ ନିଜ କର୍ମ କ୍ଷେତ୍ରରେ ମଧ୍ୟ ଅବ୍ୟାହତ ରଖିଥିଲେ । ଏହା ଫଳରେ ସେ ଛାତ୍ରଛାତ୍ରୀ, ଅଭିଭାବକ ଓ ଅନୁଗୁଳର ଜନଜୀବନରେ ସମ୍ମାନସ୍ପଦ ବ୍ୟକ୍ତିରୂପେ ଜଣାଶୁଣା ଥିଲେ ।

ଅନୁଗୁଳ ରହଣି ସମୟରେ ମୁଁ ମଦନମୋହନପଡ଼ାରେ ଅବସ୍ଥିତ ଟାଉନ ସିନିୟର ବେସିକ୍ ସ୍କୁଲର ପ୍ରବୀଣ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ନରେନ୍ଦ୍ର ମିଶ୍ରଙ୍କ ସଂସ୍ପର୍ଶରେ ଆସିଥିଲି । କର୍ମକ୍ଷେତ୍ରରେ ସେ କେବଳ ଜଣେ ସଚେତନଶୀଳ ପ୍ରଧାନଶିକ୍ଷକ ନ ଥିଲେ, ବରଂ କୁନି କୁନି ପିଲାମାନଙ୍କ ପାଇଁ ମଧ୍ୟ ସମ୍ବେଦନଶୀଳ ଥିଲେ । ନିର୍ଦ୍ଧାରିତ ସମୟରେ ବିଦ୍ୟାଳୟର ଦୈନିକ ପ୍ରାର୍ଥନା କାର୍ଯ୍ୟକ୍ରମ, ଶିକ୍ଷାଦାନ, ବଗିଚାକାମ ଅନ୍ୟାନ୍ୟ ସହ ପାଠ୍ୟକ୍ରମଭିତ୍ତିକ କାର୍ଯ୍ୟକ୍ରମ ସଂପାଦନ କରିବା ସହିତ ସେ ଶିକ୍ଷକମାନଙ୍କୁ ଆବଶ୍ୟକ ଦିଗ୍‌ଦର୍ଶନ ମଧ୍ୟ ଦେଉଥିଲେ ।

ମାତ୍ର ଯେକୌଣସି ଲୋକ ବିଦ୍ୟାଳୟକୁ ପ୍ରବେଶ କଲାବେଳେ ତାଙ୍କ ହାତରେ ବେତଟିଏ ଥିବାର ଦେଖାଯାଏ । କିନ୍ତୁ ସେ ବେତକୁ ପ୍ରୟୋଗ କରିବାର ମୁଁ କେବେ ଦେଖି ନାହିଁ । ସେତେବେଳେ ସେଠାରେ ମୋ ବଡ଼ପୁଅ ଜ୍ୟୋତିପ୍ରକାଶ ପଞ୍ଚମ ଶ୍ରେଣୀରେ ଓ ଦ୍ୱିତୀୟ ପୁତ୍ର ଦୀପ୍ତିପ୍ରକାଶ ତୃତୀୟ ଶ୍ରେଣୀରେ ପଢୁଥାଏ । ଆମ ପ୍ରଶିକ୍ଷଣ ମହାବିଦ୍ୟାଳୟର ପ୍ରଶିକ୍ଷାର୍ଥୀମାନେ ଅଭ୍ୟାସ ଶିକ୍ଷାଦାନ ଦେଲାବେଳେ ମୁଁ ସେ ବିଦ୍ୟାଳୟକୁ ଅତି ପାଖରୁ ଦେଖିବାର ସୁଯୋଗ ପାଇଥିଲି ।

ଥରେ ମୁଁ ଜ୍ୟୋତିପ୍ରକାଶର ଇଂରାଜୀ ଖାତା ଦେଖିଲାବେଳେ ଲକ୍ଷ୍ୟ କଲି ଯେ ବିଦ୍ୟାଳୟର ଇଂରାଜୀ ଶିକ୍ଷକ ଶିକ୍ଷାବର୍ଷର ପ୍ରାରମ୍ଭରେ ଏପରି ଶବ୍ଦ ଦେଇ ବାକ୍ୟ ରଚନା

କରିବାକୁ ଦେଉଛନ୍ତି, ତାହା କରିବା ତା' ପକ୍ଷରେ କଷ୍ଟକର ହେଉଛି । ମୁଁ ମଧ୍ୟ ସେସବୁ ଶବ୍ଦ ଦେଖି ଆଶ୍ଚର୍ଯ୍ୟ ହେଲି । ଦିନେ ମୁଁ ପ୍ରଧାନଶିକ୍ଷକ ମିଶ୍ରବାବୁଙ୍କୁ ଏ ବିଷୟରେ ତାଙ୍କ କାର୍ଯ୍ୟାଳୟରେ ଦେଖାକରି କହିଲି । ମୋ କଥା ଶୁଣୁ ଶୁଣୁ ସେ ସଂପୃକ୍ତ ଶିକ୍ଷକଙ୍କୁ ଡକାଇ ପଠାଇଲେ । ସେ ଜଣେ ପ୍ରବୀଣ ଶିକ୍ଷକ ଥିଲେ ଓ ତାଙ୍କର ଇଂରାଜୀ ଭାଷାରେ ମଧ୍ୟ ଦକ୍ଷତା ଥିଲା । ମୁଁ ଭାବି ନ ଥିଲି ଯେ ମିଶ୍ରବାବୁ ତାଙ୍କୁ ସାଥେ ସାଥେ ଡକାଇ ପଠାଇବେ । ସେ ପିଲାଙ୍କର ଶିକ୍ଷକ ହୋଇଥିବା ହେତୁ ମୋର ସେ ବିଦ୍ୟାଳୟର ପ୍ରତ୍ୟେକ ଶିକ୍ଷକଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଥିଲା ।

ପ୍ରଧାନଶିକ୍ଷକଙ୍କ ଡାକରା ପାଇ ସେ ଆସିଲେ । ପ୍ରଧାନଶିକ୍ଷକଙ୍କ ଉପସ୍ଥିତିରେ ସେ ବିଷୟରେ ଆଲୋଚନା ହେଲା । ସେ ଭଦ୍ରବ୍ୟକ୍ତି ନିଜର ଅଭିବ୍ୟକ୍ତି ଦେଇ କହିଲେ, "ମୁଁ ଇଂରାଜୀ ବହିର ଶେଷ ଆଡୁ ପଢ଼ାଉଛି । ତା'ର କାରଣ ହେଲା ପିଲାମାନେ ପ୍ରଥମେ କଷ୍ଟକର ବିଷୟସବୁର ଶବ୍ଦ ଜାଣିଗଲେ ପରବର୍ତ୍ତୀ ସମୟରେ ପ୍ରଥମ ଆଡୁ ଥିବା ବିଷୟଗୁଡ଼ିକ ପଢ଼ିବା ତାଙ୍କ ପାଇଁ ସହଜ ହୋଇଯିବ ।" ଏହା ତାଙ୍କର ବ୍ୟକ୍ତିଗତ ତତ୍ତ୍ୱ ଓ ଦର୍ଶନ ଥିଲା । କିନ୍ତୁ ଆମର ଭାଷାଶିକ୍ଷାର ବିଷୟବସ୍ତୁର ସଜ୍ଜୀକରଣ ଏପରି ହୋଇଥାଏ ଯେ ପ୍ରଥମେ ପ୍ରଥମେ ସରଳ ବିଷୟ ଓ ଶବ୍ଦ ଦେଇ ଲେଖକ ଗୋଟିଏ ପାଠରୁ ଆଉ ଗୋଟିଏ ପାଠ୍ୟ ବିଷୟକୁ ଆଗେଇଥାନ୍ତି । ଏହା ହେଉଛି ଶିକ୍ଷାଦାନର ଚିରାଚରିତ ନିୟମ । ଏହାକୁ ସାଧାରଣତଃ ସରଳରୁ କଠିନ (Simple to Complex) ଆଡ଼କୁ ଅଗ୍ରଗତି କରିବାର ନୀତି ବୋଲି କୁହାଯାଇଥାଏ ।

ସେ ସମୟରେ ଆଉ ଗୋଟିଏ ଶିକ୍ଷା ସଂପର୍କିତ ଅଦ୍ଭୁତ ପରିସ୍ଥିତି ମୁଁ ଅନୁଗୁଳ ରହଣି ମଧ୍ୟରେ ଲକ୍ଷ୍ୟ କରିଥିଲି । ସେତେବେଳେ ଅବିଭକ୍ତ ଢ଼େଙ୍କାନାଳ ଜିଲ୍ଲାର ଶିକ୍ଷା ବିଭାଗର ପରିଦର୍ଶକ ଥାଆନ୍ତି ଶ୍ରୀଯୁକ୍ତ ରୁଦ୍ରମୋହନ ମିଶ୍ର । ଜଣେ ବିଶିଷ୍ଟ ଶିକ୍ଷାବିତ୍ ହିସାବରେ ତାଙ୍କର ଯଥେଷ୍ଟ ସୁନାମ ଅଛି । ସେ ଶିକ୍ଷା ପରିଦର୍ଶକ ହେଲାପରେ ନିଜ ଜିଲ୍ଲାର ପ୍ରାଥମିକ ସ୍ତରର ସମସ୍ତ ପ୍ରଶ୍ନପତ୍ର ନିଜ ତତ୍ତ୍ୱାବଧାନରେ ଅବିଭକ୍ତ ଢ଼େଙ୍କାନାଳ ଜିଲ୍ଲା ପାଇଁ ପ୍ରସ୍ତୁତ କରିଥିଲେ । ଏହା ଫଳରେ ସ୍କୁଲଗୁଡ଼ିକ ନିଜେ ପ୍ରଶ୍ନ କରିବା କିମ୍ବା କାହାଠାରୁ କିଣିବାର ସୁଯୋଗ ପାଇଲେ ନାହିଁ । ଏହାଛଡ଼ା ପୂର୍ବ ପ୍ରଶ୍ନପତ୍ରଗୁଡ଼ିକର ତ୍ରୁଟିକୁ ନିରାକରଣ ପୂର୍ବକ ସମସ୍ତ ପରୀକ୍ଷାର୍ଥୀଙ୍କ ପାଇଁ ସମପ୍ରଶ୍ନ (Uniform Question) କରି ଶିକ୍ଷା କ୍ଷେତ୍ରରେ ଏକ ସଂସ୍କାର ଆଣିବା ମଧ୍ୟ ଶ୍ରୀଯୁକ୍ତ ମିଶ୍ରଙ୍କର ଲକ୍ଷ୍ୟ ଥିଲା ।

ଏହି ସମୟରେ ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ ଅନୁଗୁଳକୁ ରାଜ୍ୟ ସରକାର ଢ଼େଙ୍କାନାଳ ଶିକ୍ଷା ଜିଲ୍ଲାର ଶିକ୍ଷକମାନଙ୍କ ପାଇଁ ଏକ ସଂବ୍ୟାପକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ

(Massive Orientation Programme)ର ସମ୍ବଲ କେନ୍ଦ୍ର ହିସାବରେ ବାଛିଥିଲେ । ଏହି କାର୍ଯ୍ୟକ୍ରମଟି ଜାତୀୟ ଶିକ୍ଷାନୀତି, ୧୯୮୬ ଅନୁସାରେ ସମଗ୍ର ଭାରତ ବର୍ଷରେ ଚାଲିଥିଲା । ଅନୁଗୁଳଠାରେ ଏହା ୧୯୮୬ ମସିହା ଜୁନ ମାସ ପହିଲାରୁ ଜୁଲାଇ ମାସ ଆଠ ତାରିଖ ପର୍ଯ୍ୟନ୍ତ ଚାଲିଥିଲା । ଏଥିରେ ଅବିଭକ୍ତ ଢ଼େଙ୍କାନାଳ ଜିଲ୍ଲାର ବହୁ ବିଜ୍ଞ ପ୍ରଧାନଶିକ୍ଷକ, ମାଧ୍ୟମିକ ପ୍ରଶିକ୍ଷଣ ବିଦ୍ୟାଳୟର ପ୍ରଧାନଶିକ୍ଷକ, ଜିଲ୍ଲା ଶିକ୍ଷା ଅଧିକାରୀ ଯୋଗ ଦେଇଥିଲେ । ଏହି ପ୍ରଶିକ୍ଷଣ ଶିବିରରେ ମୋତେ କଲେଜର ଅଧ୍ୟକ୍ଷ ମଦନମୋହନ ମିଶ୍ର ଜଣେ ବିଶେଷଜ୍ଞ ହିସାବରେ କାମ କରିବାକୁ ସୁଯୋଗ ଦେଇଥିଲେ । ଜଣେ ବିଶେଷଜ୍ଞ ଶିକ୍ଷାଦାନ କଲାବେଳେ ସାଧାରଣତଃ ଅନ୍ୟ ବିଶେଷଜ୍ଞମାନେ ଉପସ୍ଥିତ ରହୁଥିଲେ ।

ଏହି ପ୍ରଶିକ୍ଷଣ ଶିବିର ଚାଲୁଥିଲାବେଳେ ମଝିରେ ମଝିରେ ଶିକ୍ଷା ପରିଦର୍ଶକ ଶ୍ରୀଯୁକ୍ତ ମିଶ୍ର ସେଠାକୁ ଆସୁଥିଲେ । ନିଜେ ମଝିରେ ମଝିରେ ଆଲୋଚନାରେ ମଧ୍ୟ ଅଂଶ ଗ୍ରହଣ କରୁଥିଲେ ।

ଦିନକର ଘଟଣା । ସେଦିନ ମହାବିଦ୍ୟାଳୟର ପ୍ରାଧ୍ୟାପକ ଶ୍ରୀଯୁକ୍ତ ତ୍ରିଲୋଚନ ଷଡ଼ଙ୍ଗୀ ମୂଲ୍ୟାୟନ (Evaluation) ସଂପର୍କରେ ପ୍ରଶିକ୍ଷାର୍ଥୀମାନଙ୍କ ସହିତ ଆଲୋଚନା କରୁଥାନ୍ତି । ଏଇ ସମୟରେ ପରିଦର୍ଶକ ମିଶ୍ର ମହୋଦୟ ଆସି ପହଞ୍ଚିଲେ । ସେ ଶ୍ରୀଯୁକ୍ତ ଷଡ଼ଙ୍ଗୀଙ୍କ ଶିକ୍ଷାଦାନର ପ୍ରତି କ୍ଷେତ୍ରରେ ହସ୍ତକ୍ଷେପ କଲେ । ସେପରି କରିବାର କୌଣସି ଆବଶ୍ୟକତା ନ ଥିଲା । କାରଣ ଶ୍ରୀଯୁକ୍ତ ଷଡ଼ଙ୍ଗୀ ହେଉଛନ୍ତି ରାଜ୍ୟର ଏପରି ଜଣେ ବିଶେଷଜ୍ଞ ଯାହାଙ୍କର ପରିମାପ ଓ ମୂଲ୍ୟାୟନ (Measurement & Evaluation) ଉପରେ ଅଗାଧ ପାଣ୍ଡିତ୍ୟ ଥାଏ । ସେଥିପାଇଁ ତାଙ୍କୁ ପ୍ରଶ୍ନପତ୍ର ପ୍ରସ୍ତୁତିରେ ପ୍ରାୟ ନିୟମିତ ଭାବେ ବିଭିନ୍ନ ପରୀକ୍ଷାସଂସ୍ଥା (Examining body) ଏବେ ମଧ୍ୟ ନିୟୋଜିତ କରୁଛନ୍ତି ।

କଥା ପ୍ରସଙ୍ଗରେ ଶ୍ରୀଯୁକ୍ତ ଷଡ଼ଙ୍ଗୀ ସେ ବର୍ଷର ଢେଙ୍କାନାଳ ଶିକ୍ଷା ଜିଲ୍ଲାରେ ପ୍ରସ୍ତୁତ ହୋଇଥିବା ବିଭିନ୍ନ ପ୍ରଶ୍ନପତ୍ର ମୂଲ୍ୟାୟନର ନୀତି ନିୟମର ବ୍ୟତିକ୍ରମ ଥିଲା ବୋଲି କହିଲେ । ଏହା ଶୁଣି ପରିଦର୍ଶକ ଶ୍ରୀଯୁକ୍ତ ମିଶ୍ରଙ୍କ ରାଗ ପଞ୍ଚମକୁ ଉଠିଗଲା । ସେ ତତ୍‌କ୍ଷଣାତ୍ କହିଲେ, "ମୁଁ ଅଭିଜ୍ଞ ଶିକ୍ଷକମାନଙ୍କୁ ନେଇ ଏସବୁ ପ୍ରଶ୍ନପତ୍ର ତିଆରି କରିଛି । ଏହା କିପରି ତ୍ରୁଟିଯୁକ୍ତ ହେଲା ?" ଏହା କହି ସେଠାରୁ ସେ ଚାଲି ଆସିଲେ । ପରବର୍ତ୍ତୀ ସମୟ ସାମୟିକ ଅବକାଶ (recess) ନିମନ୍ତେ ଉଦ୍ଦିଷ୍ଟ ଥିବା ହେତୁ ଶ୍ରୀଯୁକ୍ତ ଷଡ଼ଙ୍ଗୀଙ୍କ ସହିତ ଉପସ୍ଥିତ ଅଧ୍ୟାପକମାନେ ଆଲୋଚନା ସ୍ଥଳରୁ ଚାଲି ଆସିଲେ । ଅଧ୍ୟକ୍ଷଙ୍କ ପ୍ରକୋଷ୍ଠରେ ଶ୍ରୀଯୁକ୍ତ ମିଶ୍ର ପୁଣି ପ୍ରଶ୍ନ କଲେ ଯେ ପ୍ରଶ୍ନପତ୍ରରେ କ'ଣ ସବୁ ତ୍ରୁଟି ଥିଲା ?

ପୂର୍ବରୁ ମୁଁ ପଞ୍ଚମ ଶ୍ରେଣୀର ଇଂରାଜୀ ପ୍ରଶ୍ନ ଦେଖିଥିଲି ଏବଂ କହିଲି , "ସାର୍ ! ଆପଣ ପଞ୍ଚମ ଶ୍ରେଣୀର ପ୍ରଶ୍ନପତ୍ର ଲକ୍ଷ୍ୟ କଲେ ଜାଣି ପାରିବେ । ଏଇ ଶ୍ରେଣୀରେ ପାଠ୍ୟ ପୁସ୍ତକରେ ଯେଉଁସବୁ ଶବ୍ଦ ଅଛି ତାକୁ ନେଇ ବାକ୍ୟଗଠନ କରିବାକୁ ଦିଆଯାଇନାହିଁ । 'Beside' ଭଳି ଅନେକ ଶବ୍ଦ ଅଛି ଯାହା ସେ ପିଲା ଆଦୌ ପଢ଼ି ନାହିଁ ବା ଶିକ୍ଷକଙ୍କ ପଢ଼ାଇବାର ଅବକାଶ ନାହିଁ । ଏହାଛଡ଼ା ଅନେକ ପ୍ରଶ୍ନ ଅଛି ଯାହାର ଉତ୍ତର ନିର୍ଦ୍ଦିଷ୍ଟ ସମୟ ଅବଧିରୁ ଅଧିକ ସମୟ ଆବଶ୍ୟକ କରେ । ପ୍ରଶ୍ନର ଗଠନ ମଧ୍ୟ ତ୍ରୁଟିଯୁକ୍ତ । ଗୋଟିଏ ପ୍ରଶ୍ନର ନିର୍ଦ୍ଦିଷ୍ଟ ଉତ୍ତର ହେବା ସ୍ଥାନରେ ଅନେକ ଉତ୍ତର ହେଉଅଛି ।"

ମୋ କଥା ଶୁଣି ଶ୍ରୀଯୁକ୍ତ ମିଶ୍ର କିଛି କହିଲେ ନାହିଁ । ଯେହେତୁ ପ୍ରାଧ୍ୟାପକ ଷଡ଼ଙ୍ଗୀ କେବଳ ତ୍ରୁଟିଯୁକ୍ତ କହିଥିଲେ ଓ ନିର୍ଦ୍ଦିଷ୍ଟ ଉଦାହରଣ ଦେଇ ନ ଥିଲେ, ମୋର ନିର୍ଦ୍ଦିଷ୍ଟ ଉଦାହରଣ ତାଙ୍କୁ ବୋଧେ ହୁଏ ବିଚଳିତ କରିଥିଲା । ସେ ସଙ୍ଗେ ସଙ୍ଗେ ସେ ସ୍ଥାନ ଛାଡ଼ି ଚାଲି ଯାଇଥିଲେ । ଏଇ ଘଟଣାର ପରଠାରୁ ସେ ଆଉ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପରିଦର୍ଶନରେ ଆସି ନ ଥିଲେ ।

ପ୍ରଶ୍ନପତ୍ର ତିଆରି କରିବା ଏକ କଷ୍ଟକର ବ୍ୟାପାର । ପ୍ରତ୍ୟେକ ପ୍ରଶ୍ନ ତିଆରି ପୂର୍ବରୁ ତା'ର ସାଧାରଣତଃ ଏକ ବ୍ଲୁ-ପ୍ରିଣ୍ଟ (Blue-print) ପ୍ରସ୍ତୁତ କରିବା ପ୍ରଶ୍ନକର୍ତ୍ତାଙ୍କ ପାଇଁ ଅପରିହାର୍ଯ୍ୟ । ଏପରିକି ପରୀକ୍ଷାର୍ଥୀଙ୍କଠାରୁ ଆଦାୟ ହେବାକୁ ଥିବା ଉତ୍ତରର ସମୟ ଯେମିତି ପ୍ରଶ୍ନପତ୍ରରେ ସିଲାବସ୍ ଅନୁଯାୟୀ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଦେବାର ସମୟ ମଧ୍ୟରେ ହୋଇପାରିବ ତାହା ପ୍ରଶ୍ନକର୍ତ୍ତା ଦେଖିବା କଥା । ଏ ଭୁଲ ସାଧାରଣତଃ ମୂଲ୍ୟାୟନ ସଂପର୍କରେ ଧାରଣା ନ ଥିବା କିମ୍ବା ନିଜର ଅଭିଜ୍ଞତା ନ ଥିବା ପ୍ରଶ୍ନକର୍ତ୍ତା କରିଥାନ୍ତି । ବିଭିନ୍ନ ପରୀକ୍ଷା ସଂସ୍ଥାର ପ୍ରଶ୍ନପତ୍ର ପ୍ରସ୍ତୁତିରେ ମଧ୍ୟ ଏ ପ୍ରକାର ଭୁଲ ପରିଲକ୍ଷିତ ହୋଇଥାଏ । ଏ ସଂପର୍କରେ ଗୋଟିଏ ଉଦାହରଣ ଦେଲେ ସ୍ପଷ୍ଟ ହେବ । କିଛି ବର୍ଷତଳେ ଆମ ଉଚ୍ଚ ମାଧ୍ୟମିକ ପରିଷଦ ଦ୍ୱାରା ହୋଇଥିବା +୨ ଗଣିତ ପରୀକ୍ଷାରେ ଦେଖାଗଲା ଯେ ଅଧିକାଂଶ ପିଲା ପୂର୍ଣ୍ଣସଂଖ୍ୟା ଶହେ ମଧ୍ୟରୁ ଚାଳିଶ ନମ୍ବରରୁ ଅଧିକ ନମ୍ବର ରଖିପାରିଲେ ନାହିଁ । ଏ ସଂପର୍କରେ ଗଣମାଧ୍ୟମରେ ବିଶେଷ ଆଲୋଚନା ହେଲା । ପ୍ରଶ୍ନକର୍ତ୍ତାଙ୍କ ତରଫରୁ ଯୁକ୍ତି ରଖାଗଲା ଯେ ସେମାନେ ବିଶ୍ୱର ପିଲାମାନଙ୍କ ମାନକୁ ଆଖି ଆଗରେ ରଖି ପ୍ରଶ୍ନ ତିଆରି କରିଛନ୍ତି । କିଛି ଭୁଲ କରି ନାହାଁନ୍ତି । ସେ ବର୍ଷ ମୁଁ ପିଲାଟିବେଳୁ ଭଲ ପଢୁଥିବା ଓ ଭଲ ନମ୍ବର ରଖୁଥିବା ଜନୈକ +୨ ପରୀକ୍ଷାର୍ଥୀଙ୍କୁ ପଚାରିଥିଲି । ସେ ମଧ୍ୟ ଚାଳିଶି ପଇଁଚାଳିଶି ନମ୍ବର ଗଣିତରେ ରଖିଥିଲା । ତା'ର ଉତ୍ତରରେ ସେ ମୋତେ ଯାହା କହିଲେ ତାହା ଏକ ଗବେଷଣା ସାପେକ୍ଷ ବିଷୟବସ୍ତୁ

ହୋଇଗଲା । ସେଇ ପରୀକ୍ଷାର୍ଥୀଙ୍କ ଉତ୍ତର ଥିଲା, "ସଂକ୍ଷିପ୍ତ ପ୍ରଶ୍ନ ଯେତେ ପଢ଼ିଥିଲା ତା'ର ଉତ୍ତର ପାଇବାକୁ ହେଲେ ଆଠ ଦଶ ଧାଡ଼ି ଲେଖିବାକୁ ପଡ଼ିଲା । ଏତେ ପ୍ରଶ୍ନଥିଲା ଯେ ନିର୍ଦ୍ଧାରିତ ସମୟରେ ସମସ୍ତ ପ୍ରଶ୍ନର ଉତ୍ତର କରିବା ସମ୍ଭବ ହେଲା ନାହିଁ । ଅଥଚ ସବୁ ପ୍ରଶ୍ନର ଉତ୍ତର ମୋତେ ଜଣାଥିଲା ।"

ଏଥିରୁ ମୁଁ ବୁଝିଗଲି ଯେ ପ୍ରଶ୍ନକର୍ତ୍ତା ପ୍ରଶ୍ନପତ୍ର ପ୍ରସ୍ତୁତିର ବ୍ଲୁ-ପ୍ରିଣ୍ଟ କରି ନାହାଁନ୍ତି । ପ୍ରଶ୍ନର ଉତ୍ତର କେତେ ସମୟ ଲାଗିବ ତାହା ମଧ୍ୟ ନିଜେ ପରଖି ଦେଖି ନାହାଁନ୍ତି । କେବଳ ବଡ଼ ବଡ଼ କଥା କହି ଅନ୍ୟଦେଶର ପିଲାଙ୍କ ସହ ଆମ ଦେଶର ପିଲାଙ୍କ ଜ୍ଞାନକୁ ତୁଳନା କରି ନିଜକୁ ଜ୍ଞାନୀ ଓ ପଣ୍ଡିତ କହିବାର ଅପଚେଷ୍ଟା ଶିକ୍ଷାବିତ୍‌ଙ୍କ ପାଖରେ ଧରା ପଡ଼ିଥାଏ । ମାତ୍ର ଏହାର ଦୁର୍ଭାଗ୍ୟର ଶିକାର ହୋଇଥାନ୍ତି ଆମର ସରଳ ନିରିହ ପିଲାମାନେ ।

ମୁଁ ୧୯୮୬ ମସିହାରେ ଅନୁଗୁଳରେ ଅବସ୍ଥାପିତ ଥିଲାବେଳେ ମାଧ୍ୟମିକ ଶିକ୍ଷା ବୋର୍ଡ଼, କଟକ ତରଫରୁ ଏମ୍.ଏଇ ପରୀକ୍ଷାର ପ୍ରଶ୍ନପତ୍ର ତିଆରି କରିବା ନିମନ୍ତେ ପ୍ରଥମେ ସୁଯୋଗ ପାଇଥିଲି । ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦର ପ୍ରଶ୍ନପତ୍ର ତିଆରି କରିବା ଏକ ସମ୍ମାନଜନକ କାର୍ଯ୍ୟ । କାରଣ ଏ କାର୍ଯ୍ୟକୁ ଶିକ୍ଷା ପରିଷଦ ଜଣକର ଜ୍ଞାନ, ସାଧୁତା (Integrity), ପାରଦର୍ଶିତା ଦେଖି ଦେଇଥାନ୍ତି । ମୋର ପ୍ରଶ୍ନପତ୍ର ପ୍ରସ୍ତୁତି ନିର୍ଭୁଲ ଓ ବସ୍ତୁନିଷ୍ଠ ଥିବା ହେତୁ ମୁଁ ୧୯୮୬ ମସିହାରୁ ୨୦୦୯ ମସିହା ପର୍ଯ୍ୟନ୍ତ ପ୍ରାୟ ତେଇଶି ବର୍ଷ ମାଧ୍ୟମିକ ଶିକ୍ଷା ପରିଷଦର ପ୍ରଶ୍ନପତ୍ର ପ୍ରସ୍ତୁତି ଓ ସଂପାଦନା କ୍ଷେତ୍ରରେ ନିୟୋଜିତ ହୋଇଥିଲି ।

କୌଣସି ଏକ ପରୀକ୍ଷାର ପ୍ରଶ୍ନପତ୍ର ତିଆରି କରିବା ଏକ କଷ୍ଟକର ବ୍ୟାପାର । କେବଳ ଦୀର୍ଘ ଉତ୍ତରମୂଳକ ପ୍ରଶ୍ନ ପତ୍ର (Essay Type) ସହଜ ହୋଇଥାଏ । ମାତ୍ର କ୍ଷୁଦ୍ର ଉତ୍ତରମୂଳକ, ବସ୍ତୁନିଷ୍ଠ (Objective Type) ପ୍ରଶ୍ନ ଥାଇ ୧୦୦ ମାର୍କ ମଧ୍ୟରେ ସମସ୍ତ ସିଲାବସକୁ ନେଇ ନିର୍ଦ୍ଦିଷ୍ଟ ବ୍ଲୁ-ପ୍ରିଣ୍ଟ ଅନୁଯାୟୀ ପ୍ରଶ୍ନ ପ୍ରସ୍ତୁତି ପ୍ରଶ୍ନକର୍ତ୍ତାଙ୍କ ଅଧିକ ଧ୍ୟାନ ଓ ଏକାଗ୍ରତା ଆବଶ୍ୟକ କରିଥାଏ । ଥରେ କାର୍ଯ୍ୟଭାରର ଅଧିକ ଚାପରେ ପ୍ରଶ୍ନପତ୍ର ସଂପର୍କୀୟ କାର୍ଯ୍ୟରେ ନିୟୋଜିତ ନ କରିବା ପାଇଁ ମୁଁ ବୋର୍ଡ଼ରେ କହି ଆସିଥିଲି । କିନ୍ତୁ ପୁନଃ ପରବର୍ତ୍ତୀ ବର୍ଷ ନିଯୁକ୍ତି ପତ୍ର ଆସିବାରୁ କରିପାରିବି ନାହିଁ, ଜଣାଇ ଦେଲି । ଭାବିଲି ସବୁଦିନ ପାଇଁ ମୋ ମୁଣ୍ଡରୁ ଏ ଦାୟିତ୍ୱ ଗଲା । ମାତ୍ର କିଛିଦିନ ପରେ ବୋର୍ଡ଼ର ଗୁପ୍ତ ବିଭାଗ (Secret Cell)ର ଡ଼େପୁଟିସେକ୍ରେଟାରୀ କାଳକିଙ୍କର ଘୋଷ ଅଧକ୍ଷଙ୍କ ପାଖକୁ ଫୋନ କଲେ ମୋତେ ବୋର୍ଡ଼ ପଠାଇବା ପାଇଁ । ମୁଁ ତାଙ୍କ ପାଖକୁ ଫୋନ କରି

ଜଣାଇଲି ଯେ ମୁଁ ତ ଲିଖିତ ଭାବେ ଜଣାଇଛି ଯେ ଆଉ ସେ କାମ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ମାତ୍ର ସେ କହିଲେ, "ଆପଣ ସେ କଥା ଛାଡ଼ନ୍ତୁ; ଆମକୁ ଟିକିଏ ସାହାଯ୍ୟ କରନ୍ତୁ ।" ଶ୍ରୀଯୁକ୍ତ ଘୋଷଙ୍କ ଅନୁରୋଧକୁ ରକ୍ଷାକରି ମୁଁ ମାଧ୍ୟମିକ ଶିକ୍ଷା ପରିଷଦ କାର୍ଯ୍ୟରେ କଟକ ଯାଇଥିଲି ।

ମୋର ଅନୁଗୁଳ ରହଣି ମଧ୍ୟରେ ଅନୁଗୁଳ ସଦରମହକୁମା ଡାକ୍ତରଖାନାରେ ଡାକ୍ତର ଛନ୍ଦାଚରଣ ସାହୁ ଯୋଗ ଦେଇଥିଲେ । ମୁଁ ରେଭେନ୍‌ସା କଲେଜର ପୂର୍ବ ଛାତ୍ରାବାସରେ ଥିଲାବେଳେ ସେ ମେଧାବୀ ଛାତ୍ର ହିସାବରେ ସେଠାରେ ଏକ କୋଠରି ବିଶିଷ୍ଟ ସ୍ୱତନ୍ତ୍ର ପ୍ରକୋଷ୍ଠ ପାଇ ପଢ଼ାଶୁଣା କରୁଥିଲେ । ସେ ମୋତେ ଅନୁଗୁଳରେ ଦେଖି ବିଶେଷ ଖୁସି ହୋଇଥିଲେ । ମୁଁ ଯେତେବେଳେ ଡାକ୍ତରଖାନା ପରିସରରେ ଥିବା ତାଙ୍କ ସରକାରୀ ବାସଭବନରେ ପହଞ୍ଚୁଥିଲି, ସେତେବେଳେ ଡାକ୍ତର ସାହୁ, ତାଙ୍କ ସୁଯୋଗ୍ୟା ସହଧର୍ମିଣୀ, ତାଙ୍କର କୁନି କୁନି ଦୁଇ ଝିଅ ଖୁସି ହେଉଥିଲେ । ଥରେ ଦୀପାବଳୀ ଦିନ ନଅଟା ଦଶଟାବେଳେ ମୋ ପିଲାଙ୍କର ସ୍ୱାସ୍ଥ୍ୟଗତ ସମସ୍ୟା ନେଇ ତାଙ୍କ ବାସଭବନରେ ତାଙ୍କୁ ସାକ୍ଷାତ କରିଥିଲି । ସେଦିନ ଏକ ଭଲଦିନ କହି ମୋତେ ତାଙ୍କ ଘରେ ମଧ୍ୟାହ୍ନ ଭୋଜନ କରିବା ପାଇଁ ବାଧ କରିଥିଲେ ।

ଓଡ଼ିଶାରେ ଜଣେ ପ୍ରବୀଣ, ଦରଦୀ ଡାକ୍ତର ହିସାବରେ ଡାକ୍ତର ଛନ୍ଦାଚରଣ ସାହୁ ପରିଚିତ । ସେ ନିଜକୁ କୌଣସି ସମୟରେ ଡାକ୍ତର ହିସାବରେ ଡାକ୍ତରଖାନାର ଚାରିକାନ୍ଥ ମଧ୍ୟରେ ସୀମାବଦ୍ଧ ରଖୁ ନ ଥିଲେ । ଗରିବଗୁରୁବା ମଧ୍ୟ ତାଙ୍କୁ ବାଟଘାଟରେ ଭେଟି ତାଙ୍କର ସେବା ନେଉଥିଲେ । ଥରେ ମୋତେ ଜଣେ ଅଧ୍ୟାପକ ବନ୍ଧୁ କହିଲେ, "ବ୍ରହ୍ମା ବାବୁ ! ଡାକ୍ତର ସାହୁ ପରା ଆପଣଙ୍କ ସହପାଠୀ ।" ମୁଁ କହିଲି, "କାହିଁ କ'ଣ ହେଲା ?" ସେ କହିଲେ, "ଆଜି ମୁଁ ବସଷ୍ଟାଣ୍ଡ ଆଡ଼େ ବୁଲି ଯାଇଥିଲି । ଦୂରରୁ ଦେଖିଲି ଯେ ଦୁଃସ୍ଥ ରୋଗୀଟିଏ ଆସି ତାଙ୍କୁ କ'ଣ କହିଲା । ସେ ସଙ୍ଗେ ସଙ୍ଗେ ଚାରିଆଡ଼କୁ ଚାହିଁଲେ । ଦେଖିଲେ ଦୂରରେ ଏକ ସିଗାରେଟ୍ ଖୋଳ ପଡ଼ିଛି । ସେ ନିଜେ ସେ ଖୋଳଟିକୁ ସେଠାରୁ ଉଠାଇ ଆଣିଲେ ଓ ସେଥିରେ ରୋଗୀର ଔଷଧ ପତ୍ର ଲେଖିଦେଲେ ।"

ଏଇ ଘଟଣା ମୋ ପାଇଁ ଏକ ଲେଖାର ଖୋରାକ ଯୋଗାଇଥିଲା । ମଣିଷର ମାନବିକ ମୂଲ୍ୟବୋଧର ଶିକ୍ଷଣୀୟ ଦିଗ ରଖି ମୁଁ ପିଲାମାନଙ୍କ ପାଇଁ ଗୋଟିଏ କ୍ଷୁଦ୍ରଗଳ୍ପ ଲେଖିଥିଲି । ତାହା "କାଳିଆ ସୁନା"ରେ ପ୍ରକାଶିତ ହୋଇଥିଲା । ମାତ୍ର ସେଇ ଗଳ୍ପର ମୂଳ ଚରିତ୍ର ଯେ ଡାକ୍ତର ସାହୁ ଏକଥା କେହି ଜାଣି ନ ଥିଲେ ମଧ୍ୟ ତାହା ତାଙ୍କ ପ୍ରତି

ଅଭିପ୍ରେତ ଥିଲା ବୋଲି ଜଣେ ସାହିତ୍ୟିକ ବନ୍ଧୁ କହିଥିଲେ । ଏଇ ଗଳ୍ପଟିକୁ ଡାକ୍ତର ସାହୁ ପଢ଼ିଛନ୍ତି କି ନାହିଁ, ତାହା ମୁଁ ଜାଣେନା କିମ୍ବା ସେ ଗଳ୍ପ ସଂପର୍କରେ ଆଜି ପର୍ଯ୍ୟନ୍ତ ତାଙ୍କୁ କିଛି କହି ନାହିଁ ।

ସେ ସମୟରେ ଦୀର୍ଘ ଆଠବର୍ଷ ଧରି ତାଳଚେରରୁ 'ଗୋଧୂଳୀ ଲଗ୍ନ' ନାମକ ଏକ ଡେମେଇ ସାଇଜର ବହୁ ପୃଷ୍ଠା ବିଶିଷ୍ଟ ସାହିତ୍ୟ ପତ୍ରିକା ପ୍ରକାଶିତ ହୋଇଥିଲା । ଏହାର ସଂପାଦକ ଥିଲେ ଉଦୀୟମାନ ଯୁବବନ୍ଧୁ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ବରାଳ । ସେ ଅନେକ ସମୟରେ ମୋ ପାଖକୁ ଲେଖା ନେବାକୁ ଆସୁଥିଲେ । ୧୯୮୬ ମସିହା ଗୋଧୂଳୀ ଲଗ୍ନ ଅଷ୍ଟମ ବର୍ଷରେ ପ୍ରଥମ ସଂଖ୍ୟାରେ ଶିଶୁର 'ଭାଷା ଓ ଶୈଳୀ' ଶୀର୍ଷକ ମୋର ଏକ ଲେଖା ପ୍ରକାଶିତ ହୋଇଥିଲା । ଏଇ ପତ୍ରିକାଟି ସେତେବେଳେ ନିଜର ମାନ, ମୁଦ୍ରଣ ଓ ପରିପାଟୀ ଯୋଗୁଁ ଓଡ଼ିଶାରେ ବିଶେଷ ଆଦୃତ ହେଉଥିଲା । କାଳକ୍ରମେ କିଛିଦିନ ପରେ ଏହାର ପ୍ରକାଶନ ଆପେ ଆପେ ବନ୍ଦ ହୋଇଯାଇଥିଲା ।

**ମୋର ପ୍ରଥମ ପିଏଚ୍.ଡ଼ି. ଛାତ୍ର ଓ ପରବର୍ତ୍ତୀ ଗବେଷକ**

୧୯୮୬ ମସିହା ନଭେମ୍ବର ମାସର ପ୍ରଥମ ସପ୍ତାହର ପ୍ରଥମ ରବିବାର । ସେଦିନ ନଅଟା ବେଳେ ମୋ ଘରର କଲିଂବେଲ ବାଜି ଉଠିଲା । ବାହାରେ ମୋତେ କିଏ ଅପେକ୍ଷା କରିଛନ୍ତି ବୋଲି ମୁଁ ସଙ୍ଗେ ସଙ୍ଗେ ଗଲି । ଦେଖିଲି ଜଣେ ଦୁର୍ବଳ, ପତଳା ଡେଙ୍ଗା, ଗୌରବର୍ଣ୍ଣ ଯୁବକ ଜଣକ ହାତରେ କିଛି କାଗଜପତ୍ର ଧରି ଠିଆ ହୋଇଛନ୍ତି । ମୁଁ ତାଙ୍କୁ ତାଙ୍କ ପରିଚୟ ପଚାରିବାରୁ ସେ କହିଲେ, ମୁଁ ହେଉଛି ରାଧାଶ୍ୟାମ ଷଡ଼ଙ୍ଗୀ, ଜଣେ ପ୍ରାଥମିକ ଶିକ୍ଷକ । ଆପଣଙ୍କ ପାଖରେ ପିଏଚ୍.ଡ଼ି ଡିଗ୍ରୀ କରିବା ପାଇଁ ଆସିଛି ?"

ଏହା କହି ସେ ସଙ୍ଗେ ସଙ୍ଗେ ହାତରେ ଧରିଥିବା କେତେକ କାଗଜପତ୍ର ମୋ ହାତକୁ ବଢ଼ାଇ ଦେଲେ ।

ମୁଁ ଦେଖିଲି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି ପଞ୍ଜୀକରଣ ନିମନ୍ତେ ଦରଖାସ୍ତ ଫର୍ମ ଆଣି କେବଳ ଗବେଷଣାର ବିଷୟବସ୍ତୁ ଛାଡ଼ି ଆଉ ସମସ୍ତ ସ୍ଥାନ ପୂରଣ କରିଛନ୍ତି । ଏପରିକି ଗାଇଡ଼ ସ୍ଥାନରେ ମଧ୍ୟ ମୋ ନାମ ମୋତେ ନ ପଚାରି ଲେଖି ଆଣିଛନ୍ତି ।

ମୋତେ ଏସବୁ କଥା ଆଶ୍ଚର୍ଯ୍ୟ ଲାଗିଲା । କାରଣ ଜଣକ ଅନୁମତି ନେଇ ସାଧାରଣ ଗାଇଡ଼ ସ୍ଥାନ ପୂରଣ କରାଯାଇଥାଏ । ମୁଁ ଦେଖିଲି, ସେ ହେଉଛନ୍ତି ଜଣେ ପ୍ରାଥମିକ ଶିକ୍ଷକ । ଅତି ସାଧାସିଧା ଲୋକ । ତାଙ୍କୁ ଖାଲି ହାତରେ ମୋ ଘର ଦୁଆର

ମୁହଁରୁ ବିଦାକରିଦେବାକୁ ମୁଁ ଉଚିତ୍ ମନେ କଲି ନାହିଁ । ତେଣୁ ଘର ଭିତରକୁ ଡାକିଲି । ସେ ଆସି ବୈଠକ ଘରେ ବସିଲେ । ସାଥେ ସାଥେ ସେ ଚାହୁଁଥିବା ମୂଲ୍ୟବୋଧ ଭିତ୍ତିକ ବିଷୟ ସଂପର୍କିତ ଗବେଷଣାର ସିନ୍‌ପୋସିସ୍ (Synopsis) ମଧ୍ୟ ଆଲୋଚନା କରି ପ୍ରସ୍ତୁତ କରି ଦେଲି ।

କଥା ପ୍ରସଙ୍ଗରେ ସେ କହିଲେ ଯେ ଗବେଷଣା ନିମନ୍ତେ ତାଙ୍କର ଯଥେଷ୍ଟ ଆଗ୍ରହ ଅଛି । ସେ ନିଶ୍ଚିତ ଭାବେ ଭଗବାନ ସତ୍ୟସାଇ ବାବାଙ୍କ କୃପାଲାଭ କରି ସଫଳ ହେବେ । ସେ ସଫଳ ହୋଇଥିଲେ ଓ ମୋର ପ୍ରଥମ ସଫଳ ପିଏଚ୍.ଡ଼ି ଛାତ୍ର ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ତାଙ୍କର ଗବେଷଣାତ୍ମକ ନିବନ୍ଧଟି ନୂଆଦିଲ୍ଲୀସ୍ଥ ଦୀପ୍ ଏବଂ ଦୀପ୍ ପବ୍ଲିକେସନ୍ ଦ୍ୱାରା Moral Education in Schools ଶୀର୍ଷକ ଥାଇ ୧୯୯୪ ମସିହାରେ ପ୍ରକାଶିତ ହୋଇଅଛି ।

ମୋ ନିର୍ଦ୍ଦେଶନାରେ ଆଉ ଦୁଇଜଣ ପିଏଚ୍.ଡ଼ି ସ୍କଲାର ପରବର୍ତ୍ତୀ ସମୟରେ ପିଏଚ୍.ଡ଼ି ଡିଗ୍ରୀ ପ୍ରାପ୍ତ ହୋଇଛନ୍ତି । ସେମାନେ ହେଲେ ଶ୍ରୀମତୀ କଳ୍ପନା ସାହୁ ଓ ଶ୍ରୀମାନ୍ ମନୋରଞ୍ଜନ ମିଶ୍ର । ଶ୍ରୀମତୀ ସାହୁଙ୍କ ସନ୍ଦର୍ଭ ଜନଶିକ୍ଷା (Adult Education) ଉପରେ ପର୍ଯ୍ୟବସିତ ଥିଲା । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ.ଡ଼ି ଡିଗ୍ରୀ ପ୍ରାପ୍ତ ହୋଇଥିଲେ । ଶ୍ରୀଯୁକ୍ତ ମନୋରଞ୍ଜନ ମିଶ୍ର ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟରୁ କୈଶୋର ଶିକ୍ଷା ବିଷୟରେ ପିଏଚ୍.ଡ଼ି ଡିଗ୍ରୀ ଲାଭ କରିଥିଲେ ।

**ଅନୁଗୁଳର ଅଧିଷ୍ଠାତ୍ରୀ ଦେବୀ : ବୁଢ଼ୀ ଠାକୁରାଣୀ ।**

ମୁଁ ମୋର ଚାକିରି କାଳରେ ଖୁବ୍ କମ୍ ସମୟ ଅନୁଗୁଳରେ ରହିବାର ସୁଯୋଗ ପାଇଥିଲି । ମାତ୍ର ଏଇ ସମୟରେ ଅନୁଗୁଳର ଅଧିଷ୍ଠାତ୍ରୀ ଦେବୀ ବୁଢ଼ୀ ଠାକୁରାଣୀଙ୍କର ମୋର ଓ ମୋ ପରିବାର ପ୍ରତି ଆଶୀର୍ବାଦ ମୁଁ ମର୍ମେ ମର୍ମେ ଅନୁଭବ କରିଥିଲି । ଯେଉଁ ଭୁବନେଶ୍ୱର ଆସିବା ମୋ ପାଇଁ ଦିନେ ସ୍ୱପ୍ନ ଥିଲା ; ତାହା ଆପେ ଆପେ ସାକାର ହେଲା । ମୋତେ ରାଜ୍ୟ ସରକାରଙ୍କ ଶିକ୍ଷା ଓ ଯୁବକଲ୍ୟାଣ ବିଭାଗର ବିଜ୍ଞପ୍ତି ନଂ : ୩୬୮୬୦ ତାରିଖ ୪.୮.୮୭ ଅନୁଯାୟୀ ଭୁବନେଶ୍ୱରସ୍ଥିତ ନବଗଠିତ ଇଟିଭି ପ୍ରଡ଼କ୍‌ସନ୍ ସେଣ୍ଟର (ପରବର୍ତ୍ତୀ ସମୟରେ ରାଜ୍ୟ ଶିକ୍ଷା ଔଦ୍ୟୋଗିକ ପ୍ରତିଷ୍ଠାନ (SIET)କୁ ବଦଳି କରିଦେଲେ । ଅଗଷ୍ଟ ମାସରେ ଏଇ ବଦଳି ଆଦେଶରେ ନୂତନ ସ୍ଥାନରେ ଖୁବ୍‌ଶୀଘ୍ର ଯୋଗଦାନ କରିବାକୁ ଥିଲେ ମଧ୍ୟ ମୋତେ ଅଧ୍ୟକ୍ଷ ମିଶ୍ର ଅନୁଗୁଳରୁ ଅବ୍ୟାହତି ଦେବା ନିଯୁକ୍ତି ବିଳମ୍ବ କଲେ । ଶେଷରେ ୧୮ ନଭେମ୍ବର ୧୯୮୭ରେ ମୋତେ ଅବ୍ୟାହତ ଦେବା ପାଇଁ ସମସ୍ତ କାଗଜପତ୍ର ପୂରଣକରି ଅଧ୍ୟକ୍ଷ ମିଶ୍ରଙ୍କୁ ତାଙ୍କ

କାର୍ଯ୍ୟାଳୟରେ ହାତେ ହାତେ ଦେଲି । ସେ ସାଥେ ସାଥେ ମୋତେ କହିଲେ, "ବ୍ରହ୍ମାବାବୁ ! ଆପଣଙ୍କୁ ମୁଁ ବିଦା କଲି ନାହିଁ । ଆପଣଙ୍କର ବଦଳି ଆଦେଶ ଥିଲେ ମଧ୍ୟ ମୁଁ ଆପଣଙ୍କୁ ଅବ୍ୟାହତି ନ ଦେଇ ରଖିଥିଲି । ତାହା ଥିଲା ଆମର ଆପଣଙ୍କ ପ୍ରତି ଅନୁରକ୍ତି, କିନ୍ତୁ ଆପଣ ନିଜେ ନିଜେ ଆମକୁ ଛାଡ଼ି ଚାଲିଗଲେ ।"

ସେ ସମୟରେ ମୁଁ ଛାତ୍ରୀନିବାସର ଦାୟିତ୍ୱରେ ଥିଲି । ମୋ ପାଇଁ ପିଲାମାନେ ବିଦାୟ ସମ୍ବର୍ଦ୍ଧନା କରିଥିଲେ । ଏଥିରେ ସମସ୍ତ ଅଧ୍ୟାପକ ଓ ଅଧ୍ୟାପିକା ଯୋଗଦାନ କରିଥିଲେ ।

ବିଦାୟକାଳୀନ ସ୍ମୃତି ସ୍ୱରୂପ ମୋତେ ପିଲାମାନେ ଅଜନ୍ତା କାନ୍ଥଘଣ୍ଟାଟିଏ ଉପହାର ଦେଇଥିଲେ । ୧୯୮୭ ମସିହାରେ ଏଇ କାନ୍ଥଘଣ୍ଟାଟି, ଏବେ ବି ୨୦୧୭ ମସିହାରେ ସମୟ ସହିତ ତାଳ ଦେଇ ତିରିଶ ବର୍ଷ ହେଲା ଟିକ୍ ଟିକ୍ ଶବ୍ଦ କରି ସେମିତି ଆଗେଇ ଚାଲିଛି ... ।

**ଇଟିଭି ପ୍ରଡ଼କସନ୍ ସେଣ୍ଟର, ଭୁବନେଶ୍ୱରରେ ଯୋଗଦାନ**

ମୁଁ ଅନୁଗୁଳରୁ ବିଦାୟ ନେଇ ନଭେମ୍ବର ମାସ ୨୫ ତାରିଖରେ ଭୁବନେଶ୍ୱରସ୍ଥିତ ଇଟିଭି ପ୍ରଡ଼କସନ୍ ସେଣ୍ଟରରେ ଅଧ୍ୟାପକ, ପ୍ରଡ଼କସନ୍ ପଦରେ ଯୋଗଦାନ କଲି । ସେତେବେଳେ ଏଇ କେନ୍ଦ୍ରର ନିର୍ଦ୍ଦେଶକ, ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ପ୍ରଫେସର ଶରତଚନ୍ଦ୍ର ଦାଶ ଥିଲେ । ସେ ମୋତେ ଭଲ ଭାବରେ ଜାଣିଥିଲେ । ମୁଁ ବଦଳି ଆଦେଶର ବହୁଦିନ ପରେ ଯୋଗଦାନ କରୁଥିବା ହେତୁ ପୂର୍ବରୁ ତାଙ୍କୁ ଏସ୍.ସି.ଇ.ଆର୍.ଟିରେ ଦେଖାକରି ଯୋଗଦାନ ତାରିଖ ସଂପର୍କରେ ଅବଗତ କରାଇଥିଲି ।

ଅନୁଗୁଳରୁ ସିନା ମୁଁ ଚାଲି ଆସିଲି, ମାତ୍ର ଭୁବନେଶ୍ୱରରେ ବସାଘରଟିଏ ଖୋଜି ପାଇବା ମୋ ପକ୍ଷରେ କଷ୍ଟକର ଥିଲା । ପିଲାମାନେ ଅନୁଗୁଳରେ ରହିଲେ । ମୁଁ ପ୍ରାରମ୍ଭିକ ସ୍ତରରେ କିଛି ଦିନ ଅନୁଗୁଳରୁ ଯିବା ଆସିବା କଲି । ସକାଳୁ ସକାଳୁ ବସଧରି ମେରାମଣ୍ଡଳୀରେ ଓହ୍ଲାଇ ତାଳଚେର ପୁରୀ ପାସେଞ୍ଜର ଗାଡ଼ି ଧରି ବାଣୀବିହାର ଷ୍ଟେସନରୁ ଚାଲିଚାଲି ଇଟିଭି ପ୍ରଡ଼କସନ୍ ସେଣ୍ଟରକୁ ଆସୁଥିଲି । ମଝିରେ ମଝିରେ ଯିବା ଆସିବା ନକରି ପାରି ବାଣୀବିହାରରେ ଓଡ଼ିଆ ଏମ୍.ଏ ପଢୁଥିବା ମୋ ଭଣଜା ଧୀର (ଉମାଶଙ୍କର ମିଶ୍ର, ମୋ ଭିଣୋଇ ଶ୍ରୀଯୁକ୍ତ ବଂଶୀଧର ମିଶ୍ରଙ୍କ ପୁତ୍ର) ପାଖରେ କେତୋଟି ରାତି ବିତାଇଲି । ମାତ୍ର ବାଣୀବିହାର ହଷ୍ଟେଲ ମଧ୍ୟରେ ରହିବା ମୋ ପକ୍ଷରେ ପସନ୍ଦଯୋଗ୍ୟ ନ ଥିଲେ ମଧ୍ୟ ପ୍ରାଥମିକ ସ୍ତରରେ ମୋର ଅନ୍ୟ କୌଣସି ଉପାୟ ନ ଥିଲା ।

ଦିନେ ମୁଁ ବାଣୀବିହାର ହଷ୍ଟେଲରେ ଥାଏ । ସେଇ ସମୟରେ ମୋର ବଡ଼ ଭିଣୋଇ ଶ୍ରୀଯୁକ୍ତ ଇନ୍ଦ୍ରମଣି ପାଣିଗ୍ରାହୀଙ୍କ ପୁଅ ବାଇନ (ଶ୍ରୀମାନ୍ ମନୋରଞ୍ଜନ ପାଣିଗ୍ରାହୀ)

ସେଠାରେ ପହଞ୍ଚିଲା । ମୋତେ ଦେଖି ପଚାରିଲା, "ମାମୁ ! ଆପଣ କ'ଣ ଏଠାରେ ଅଛନ୍ତି ?" ଗୋଟିଏ ଭଡ଼ାଘର ପାଇବା କଷ୍ଟକର ହେଉଛି ବୋଲି ତାକୁ କହିଲି । ସେ ସେଠାରୁ କିଛିକ୍ଷଣ ପରେ ଚାଲିଗଲା ।

ସେତେବେଳେ ବାଇନ ଦିଲ୍ଲୀସ୍ଥିତ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଏମ୍.ଫିଲ୍. ଛାତ୍ର ଥିଲା । ଛୁଟିରେ ବାଣୀବିହାରର କିଛି ସାଙ୍ଗସାଥୀଙ୍କୁ ଦେଖା କରିବାକୁ ଆସିଥିଲା ।

ବାଇନ ସିନା ଚାଲିଗଲା, କିନ୍ତୁ ପୁଣି କିଛି ସମୟ ପରେ ଚାରି ପାଞ୍ଚଜଣ ବାଣୀ ବିହାର ଅଞ୍ଚଳର ତା'ର ସାଙ୍ଗମାନଙ୍କୁ ଧରି ଆସି ପହଞ୍ଚିଲା । ମୋତେ କହିଲା, "ମାମୁ ! ମୁଁ କେତୋଟି ଘର ଦେଖି ଆସିଛି । ଆପଣ ଦେଖି ପସନ୍ଦ ଅନୁଯାୟୀ ଘରଟିଏ ବାଛି ନେବେ ।"

ମୋ ପ୍ରତି ବାଇନର ଦରଦୀ ଭାବ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ହସି ହସି କହିଲି, "ମୁଁ ଇତି ମଧ୍ୟରେ ପିଲାମାନଙ୍କ ପାଠ ପଢ଼ିବା ପାଇଁ ଉପଯୁକ୍ତ ସ୍କୁଲ ଦେଖି ସେ ଅଞ୍ଚଳରେ ଘରଟିଏ ବାଛି ନେବି ।"

ମୋର ସାମୟିକ ସୁଖଦୁଃଖରେ ଭାଗୀ ହୋଇଥିବା ମୋର ଏଇ ଦୁଇ ଭଣଜା ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠିତ । ଧୀର ଏମ୍.ଏ, ଏମ୍.ଏଡ୍ ଯୋଗ୍ୟତା ହାସଲ କରି ସାମାଜିକ କ୍ଷେତ୍ରରେ କାମ କଲାବେଳେ, ବାଇନ (ଶ୍ରୀମାନ୍ ମନୋରଞ୍ଜନ ପାଣିଗ୍ରାହୀ) ସର୍ବଭାରତୀୟ ପ୍ରଶାସନିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆୟକରଆୟୁକ୍ତ ହେବାର ସୌଭାଗ୍ୟ ଅର୍ଜନ କରିଛି । ଯାହାହେଉ କିଛି ଦିନ ପରେ ମୁଁ ଆଇ.ଆର.ସି. ହାଇସ୍କୁଲ ନିକଟରେ ଘରଟିଏ ପାଇ ପିଲାମାନଙ୍କୁ ସେଠାକୁ ନେଇ ଆସିଥିଲି ।

ମୋ ସହିତ ଅଧ୍ୟାପକ ଭାବେ ଯେଉଁ ବନ୍ଧୁମାନେ ଯୋଗଦାନ କରିଥିଲେ ସେମାନେ ହେଲେ ଡକ୍ଟର ଚିଦାନନ୍ଦ ପାତ୍ର, ଡକ୍ଟର ଅମରେନ୍ଦ୍ର ପ୍ରସାଦ ଗିରି, ଡକ୍ଟର ପଦ୍ମଚରଣ ମହାନ୍ତି । କିଛି ଦିନ ପରେ ଡକ୍ଟର ମୀନକେତନ ପାଠୀ ମଧ୍ୟ ଏଇ ସଂସ୍ଥାରେ ଯୋଗଦାନ କରିଥିଲେ । ଆମ ସହିତ ପରବର୍ତ୍ତୀ ସମୟରେ ଅନୁଗୁଳରୁ ବଦଳି ହୋଇ ଅଧ୍ୟାପକ ଡକ୍ଟର ବ୍ରଜବନ୍ଧୁ ପଣ୍ଡା ମୂଲ୍ୟାୟନ ଅଧିକାରୀ ପଦରେ ଏଇ କେନ୍ଦ୍ରରେ ଯୋଗଦାନ କରିଥିଲେ ।

ଭାରତ ସରକାରଙ୍କ ଉପଗ୍ରହ ଯୋଗାଯୋଗ (INSAT)କାର୍ଯ୍ୟକ୍ରମ ଅନୁଯାୟୀ ପ୍ରାଥମିକ ଶିକ୍ଷାସ୍ତରରେ ଶିକ୍ଷା କାର୍ଯ୍ୟକ୍ରମ ପ୍ରଚାର ଓ ପ୍ରସାର କରିବା ଏହି କେନ୍ଦ୍ରର ମୌଳିକ ଉଦ୍ଦେଶ୍ୟ ଥିଲା । ପ୍ରାଥମିକ ସ୍ତରରେ ଏହି କାର୍ଯ୍ୟକ୍ରମ ସମଗ୍ର ଭାରତବର୍ଷରେ

ଛଅଟି ରାଜ୍ୟରେ ଆରମ୍ଭ ହୋଇଥିଲା । ସେଇସବୁ ରାଜ୍ୟ ହେଲା- ଓଡ଼ିଶା, ବିହାର, ଉତ୍ତରପ୍ରଦେଶ, ଆନ୍ଧ୍ରପ୍ରଦେଶ, ମହାରାଷ୍ଟ୍ର ଓ ଗୁଜୁରାଟ ।

ଏହି କେନ୍ଦ୍ରରେ ପ୍ରଡ଼କସନ୍ ବିଭାଗ, ପ୍ରଶାସନ ବିଭାଗ, ଇଂଜିନିୟରିଂ ବିଭାଗରେ ଅନେକ କର୍ମଚାରୀ କାମ କରୁଥିଲେ । ମୁଁ କାମ କରୁଥିବାବେଳେ କାର୍ଯ୍ୟକ୍ରମ ଉତ୍ପାଦନ (Production) ବିଭାଗର ମୁଖ୍ୟଥିଲେ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍, ସିନେ ଜଗତର ବିଶିଷ୍ଟ ନିର୍ଦ୍ଦେଶକ ସାରଦା ପ୍ରସନ୍ନ ନାୟକ । ଶ୍ରୀଯୁକ୍ତ ନାୟକ ପୂର୍ବରୁ ଦୂରଦର୍ଶନ କେନ୍ଦ୍ରର ଶିକ୍ଷା କାର୍ଯ୍ୟକ୍ରମର ଦାୟିତ୍ୱରେ ଥିଲେ ।

ସେହି ସମୟରେ ଇଟିଭି ପ୍ରଡ଼କ୍ସନ୍ ସେଣ୍ଟରର ପ୍ରଶାସନିକ ଅଧିକାରୀ ଭାବେ ଭିଙ୍ଗାରପୁରର ଚୌଧୁରୀ ପରିବାରର ଚୌଧୁରୀ ଗୌରଚନ୍ଦ୍ର ଦାସ ଯୋଗଦାନ କରିଥିଲେ । ତାଙ୍କର ପ୍ରଶାସନିକ ଦକ୍ଷତା ଓ ସାମାଜିକ ଅନୁଭୂତି ପର୍ଯ୍ୟାପ୍ତ ଥିଲା । ବିଭିନ୍ନ ଆଲୋଚନା ପ୍ରସଙ୍ଗରେ ସେ ତାଙ୍କ ପ୍ରଶାସନିକ ଜୀବନର ଅନୁଭୂତି ସଂପର୍କରେ ଅଧିକ ଆଲୋକପାତ କରୁଥିଲେ । ପରବର୍ତ୍ତୀ ସମୟରେ ସେ କଟକ ଜିଲ୍ଲାପାଳ କାର୍ଯ୍ୟାଳୟରେ ଏ.ଡ଼ି.ଏମ୍ ହିସାବରେ ଯୋଗଦାନ କରିଥିଲେ ।

ନୂତନ ଭାବେ କାର୍ଯ୍ୟକ୍ଷମ ହୋଇଥିବା ଇଟିଭି ପ୍ରଡ଼କସନ୍ କେନ୍ଦ୍ରଟି ପ୍ରାରମ୍ଭିକ ସ୍ତରରେ ସଫଳତା ହାସଲ କରିପାରିଲା ନାହିଁ । ଶିକ୍ଷା ସଂପର୍କୀୟ ଯେତିକି କାର୍ଯ୍ୟକ୍ରମ ପ୍ରସ୍ତୁତ ହେବା କଥା ତାହାଠାରୁ ଖୁବ୍ କମ୍ କାର୍ଯ୍ୟକ୍ରମ ତିଆରି କରାଗଲା । ଯାହାକି ଏଇ କେନ୍ଦ୍ରର ମୂଲ୍ୟାୟନ ହେଲାବେଳେ ସର୍ବଭାରତୀୟ ସ୍ତରର କର୍ତ୍ତୃପକ୍ଷଙ୍କ ନଜରକୁ ଆସିଲା । ପ୍ରଶାସନିକ ସ୍ଥାଣୁତା ଓ ଦୂରଦୃଷ୍ଟିର ଅଭାବରୁ ସେଠାରେ କାର୍ଯ୍ୟରତ ଥିବା ମାନବସମ୍ବଳର ଉପଯୁକ୍ତ ବିନିଯୋଗ କରାଯାଇ ପାରିଲା ନାହିଁ ।

ଏଇ ସମୟରେ ଏସ୍.ସି.ଇ.ଆର.ଟିର ନିର୍ଦ୍ଦେଶକ ପଦରୁ ପ୍ରଫେସର ଶରତଚନ୍ଦ୍ର ଦାଶ ୧୯୮୮ ମସିହା ଅକ୍ଟୋବର ମାସରେ ଅବସର ନେଲେ । ସେ ଅବସରର ଅବ୍ୟବହିତ ପୂର୍ବରୁ ଦିନେ ବିଶିଷ୍ଟ ଶିକ୍ଷାବିତ୍ ରଜତ କୁମାର କରଙ୍କ ସହିତ ଏଇ କେନ୍ଦ୍ରକୁ ଆସିଲେ ଓ ଶ୍ରୀଯୁକ୍ତ କର ରାଜ୍ୟ ଶିକ୍ଷା ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ହିସାବରେ ଦାୟିତ୍ୱ ନେଇଛନ୍ତି ବୋଲି ଆମକୁ କହିଲେ । ତେଣୁ ଶ୍ରୀଯୁକ୍ତ କର ପ୍ରଚଳିତ ନିୟମ ଅନୁସାରେ ଇଟିଭି ପ୍ରଡ଼କସନ୍ କେନ୍ଦ୍ରର ନିର୍ଦ୍ଦେଶକ ହେଲେ ।

ଶ୍ରୀଯୁକ୍ତ କର ଜଣେ ଦକ୍ଷ କଠୋର ମନୋଭାବ ସଂପନ୍ନ ପ୍ରଶାସକ ବୋଲି ସମସ୍ତଙ୍କର ଧାରଣା ଥିଲା । ତେଣୁ ତାଙ୍କର ଯୋଗଦାନ ସେଠାକାର କର୍ମଚାରୀମାନଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କଲା । କାର୍ଯ୍ୟରେ ଅନିୟମିତ ରହୁଥିବା କର୍ମଚାରୀମାନେ

ନିୟମିତ କାର୍ଯ୍ୟରେ ଯୋଗ ଦେବାକୁ ଚେଷ୍ଟା କଲେ । କାର୍ଯ୍ୟକ୍ରମ ପାଇଁ ପୂର୍ବାପେକ୍ଷା ଅଧିକ ଲେଖା (Script) ପ୍ରସ୍ତୁତ କରାଗଲା ।

ଲେଖା ପ୍ରସ୍ତୁତି ବିଭାଗର ଦାୟିତ୍ୱରେ ଥିଲେ ପ୍ରବୀଣ ଶିକ୍ଷକ ଦୁର୍ଗାଚରଣ ସାମନ୍ତରାୟ, ମନୋରଞ୍ଜନ ଦାସ, ଦୀପକ ଦାସ ଓ ଅନ୍ୟମାନେ । ଆମେ ଅଧ୍ୟାପକମାନେ ମଧ୍ୟ ଅନେକ ଲେଖା ପ୍ରସ୍ତୁତ କଲୁ । କାର୍ଯ୍ୟକ୍ରମ ପ୍ରସ୍ତୁତ ଅଧିକାରୀ ଶ୍ରୀଯୁକ୍ତ ସାରଦା ପ୍ରସନ୍ନ ନାୟକ ବିଭିନ୍ନ ସମୟରେ କାର୍ଯ୍ୟକ୍ରମ ନିଷ୍ପାଦକ (Producer) ମାନଙ୍କୁ ଧରି ଲେଖାଗୁଡ଼ିକ କିପରି ସୁଟିଂ ଉପଯୋଗୀ କରାଯିବ ଆଲୋଚନା କଲେ । ସେତେବେଳେ ଏହି କେନ୍ଦ୍ରରେ ପ୍ରଡ୍ୟୁସର ଭାବେ ଶ୍ରୀଯୁକ୍ତ ଗଦାଧର ପୁଛୀ, ଶ୍ରୀଯୁକ୍ତ ବିଭୁ ପ୍ରସାଦ ଦାସ, ଶ୍ରୀଯୁକ୍ତ ବାଣୀ ରଞ୍ଜନ ମହାପାତ୍ର, ଶ୍ରୀଯୁକ୍ତ ବିଜୟ କୁମାର ନନ୍ଦ ପ୍ରମୁଖ ଉଦୀୟମାନ କର୍ମପ୍ରବଣ ବ୍ୟକ୍ତିବିଶେଷ ଥିଲେ । ତଥାପି ପ୍ରଡ଼କସନ୍, ଇଂଜିନିୟରିଙ୍ଗ୍ ଓ ପ୍ରଶାସନିକ ବିଭାଗ ମଧ୍ୟରେ ସମନ୍ୱୟ ନ ରହିବା ଯୋଗୁଁ କୌଣସି ଶୈକ୍ଷିକ କାର୍ଯ୍ୟକ୍ରମ ଚୂଡ଼ାନ୍ତ ରୂପରେଖ ନେଇ ପାରିଲା ନାହିଁ । ଏହା ଭାରତ ସରକାରଙ୍କ ପୁନଃ ମୂଲ୍ୟାୟନ (Review) ସମୟରେ ଜଳଜଳ ହୋଇ ଧରା ପଡ଼ିଲା ।

ଏଇପରି ଏକ ଦୁର୍ଦ୍ଦିନ ସମୟରେ ମୋତେ କର୍ତ୍ତୃପକ୍ଷ କୌଣସି ଏକ କାର୍ଯ୍ୟକ୍ରମରେ ଯୋଗ ଦେବାକୁ କେନ୍ଦ୍ରୀୟ ଶିକ୍ଷା ଔଦ୍ୟୋଗିକ ସଂସ୍ଥା (CIET) ନୂଆଦିଲ୍ଲୀକୁ ପଠାଇଥିଲେ । ପ୍ରଶିକ୍ଷଣର ଶେଷଦିନ ବିଦାୟକାଳୀନ ଉତ୍ସବରେ ଏଇ କେନ୍ଦ୍ରର ମୁଖ୍ୟ ପ୍ରଫେସର ରାଜପୁତ ଯୋଗଦାନ କରିଥିଲେ । ସେ ପ୍ରାୟ ସାତ ଆଠଦିନ ପୂର୍ବରୁ ଏହି ସଂସ୍ଥାର ମୁଖ୍ୟ ଭାବେ ଯୋଗଦାନ କରିଥିଲେ ।

ମୁଁ ଦିଲ୍ଲୀ କାର୍ଯ୍ୟକ୍ରମରୁ ଫେରି ଆମ କାର୍ଯ୍ୟାଳୟରେ ପୂର୍ବବତ୍ ଯୋଗଦାନ କଲି । ଦିନେ କି ଦୁଇଦିନ ଯାଇନାହିଁ; ଏଇ ସମୟରେ ପ୍ରଫେସର ରାଜପୁତ ଆମେ ଅଧ୍ୟାପକମାନେ ବସିଥିବା ପ୍ରକୋଷ୍ଠରେ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନର ତତ୍କାଳୀନ ଅଧ୍ୟାପକ ଡକ୍ଟର ଶକ୍ତି ପ୍ରସାଦ ମିଶ୍ରଙ୍କ ସହ ପ୍ରବେଶ କଲେ । ମୁଁ ମୋ ଚେୟାରରୁ ଉଠିପଡ଼ି ଯଥାବିଧି ସମ୍ମାନ ଜଣାଇଲି ଓ ବସିବାକୁ କହିଲି । ସେଦିନ ମଧ୍ୟ ଅନ୍ୟ ବନ୍ଧୁମାନେ ସେ କେନ୍ଦ୍ରୀୟ ଶିକ୍ଷା ଓ ପ୍ରଶିକ୍ଷକ ସଂସ୍ଥା (CIET)ର ମୁଖ୍ୟ ବୋଲି ଜାଣିବାକୁ ପାଇଲେ ।

ସେ ଅନୌପଚାରିକ ଭାବେ ଆମ ସହିତ କଥାବାର୍ତ୍ତା ଆରମ୍ଭ କଲେ । କଥାବାର୍ତ୍ତା ପ୍ରସଙ୍ଗରେ କହିଲେ ଯେ ସେ ଭୁବନେଶ୍ୱରକୁ ଜଣେ ବନ୍ଧୁଙ୍କ ଆୟୋଜିତ ବିବାହ ଉତ୍ସବରେ ଯୋଗଦାନ କରିବାକୁ ଆସିଛନ୍ତି । ଇଚ୍ଛା ହେଲା ଟିକିଏ ଏ କେନ୍ଦ୍ର ବୁଲି ଦେଖିବାକୁ । ତେଣୁ ଶକ୍ତିପ୍ରସାଦଙ୍କ ସହିତ ଚାଲି ଆସିଲେ । ତା'ପରେ ଆମେ ତାଙ୍କ ପାଇଁ ଚା'

ମଗାଇଲୁ । ସେ ଆଗ୍ରହର ସହ ଚା'ପାନ କଲେ । ପ୍ରାୟ ପନ୍ଦର କୋଡ଼ିଏ ମିନିଟ୍ ପରେ ଆମଠାରୁ ବିଦାୟ ନେଇ ସେଠାରୁ ଚାଲିଗଲେ ।

ଏଇ ଘଟଣାର ଆଠଦଶଦିନ ପରେ ଭାରତ ସରକାରଙ୍କ ମାନବସମ୍ବଳ ମନ୍ତ୍ରାଳୟରୁ ରାଜ୍ୟ ସରକାରଙ୍କ ପାଖକୁ ଏକ କଡ଼ା ଚିଠିଟିଏ ଆସିଲା । ସେଥିରେ ପ୍ରଫେସର ରାଜପୁତଙ୍କ ଇଟିଭି ପ୍ରଡ଼କସନ୍ ସେଣ୍ଟର ପରିଦର୍ଶନର ରିପୋର୍ଟ ଥିଲା । ଏ ରିପୋର୍ଟ ଦେଖି ନିର୍ଦ୍ଦେଶକ, ପ୍ରଡ଼କସନ୍ ଇନଚାର୍ଯ୍ୟ, ପ୍ରଶାସନିକ ଅଧିକାରୀ ଆଦି ଉଚ୍ଚପଦସ୍ଥ ଅଫିସରଗଣ ଅଧ୍ୟାପକମାନଙ୍କ ଉପରେ ରକ୍ତ ଚାଉଳ ଚୋବାଇଲେ । ଏପରି କାହିଁକି ଘଟିଲା ମୁଁ ମନେ ମନେ ଅନୁଧ୍ୟାନ କଲି । ଆମ ଗହଣରେ ପ୍ରଫେସର ରାଜପୁତ ଖୁବ୍ କମ୍ ସମୟ ବିତାଇଲେ । ଆମ କେନ୍ଦ୍ର ସଂପର୍କରେ ଗୋଟିଏ ପଦ କଥା ବି ଆମ ଆଗରେ ଉଠାଇଲେ ନାହିଁ । ଆମେ ଅଧ୍ୟାପକ ହୋଇଥିବା ହେତୁ ସୌଜନ୍ୟମୂଳକ ସାକ୍ଷାତ କଲେ ବୋଲି କହିଲେ ।

ସେ ଯାହା ହେଉ ସେ ଯେଉଁ ରିପୋର୍ଟ ଦେଇଥିଲେ ସେଥିରେ ଯାହା ଲେଖିଥିଲେ, ତା'ର ସାରମର୍ମ ହେଲା -

ଇଟିଭି ପ୍ରଡ଼କସନ୍ ସେଣ୍ଟରରେ ପଶୁ ପଶୁ ଦେଖିଲି କିଛି କର୍ମଚାରୀ ବସି ଗପସପ କରୁଛନ୍ତି । କେହି କୌଣସିଠାରେ ଶିକ୍ଷା କାର୍ଯ୍ୟକ୍ରମ ସଂପର୍କୀୟ କୌଣସି କାର୍ଯ୍ୟକ୍ରମରେ ନିୟୋଜିତ ନ ଥିଲେ । ସେଇ କର୍ମଚାରୀମାନେ କାମ ନ କରି କାହିଁକି ବସିଛନ୍ତି ବୋଲି ପଚାରିଲି । ସେମାନେ କାମ ନ କରି ଦରମା ନେବା ପାଇଁ ସରକାର ନିୟୋଜିତ କରିଛନ୍ତି ବୋଲି କହିଲେ । ଦେଖିଲି ଅନେକ ମୂଲ୍ୟବାନ ଯନ୍ତ୍ରପାତି କାର୍ଯ୍ୟାଳୟ ପରିସର ମଧ୍ୟରେ ଅଣଦେଖା ହୋଇ ପଡ଼ି ରହିଅଛି । ସେଗୁଡ଼ିକ କ୍ରମଶଃ ନଷ୍ଟ ହେଉଛି । ଏ ସଂପର୍କରେ ଆଲୋଚନା କରିବାକୁ ମୁଁ ନିର୍ଦ୍ଦେଶକ କିମ୍ବା ପ୍ରଡ଼କସନ୍ ଇନ୍‌ଚାର୍ଯ୍ୟ କିମ୍ବା ଇଂଜିନିୟରିଙ୍ଗ ଇନ୍‌ଚାର୍ଯ୍ୟକୁ ମଧ୍ୟ ପାଇଲି ନାହିଁ । ଏହାର ପ୍ରଶାସନିକ ଅଧିକାରୀଙ୍କୁ ଖୋଜିଲି । ସେ ମଧ୍ୟ କାର୍ଯ୍ୟାଳୟରେ ଉପସ୍ଥିତ ନ ଥିଲେ । ଶେଷରେ ସେଠାରେ କାର୍ଯ୍ୟରତ ଥିବା ପ୍ରଡ଼କସନ୍ ଅଧ୍ୟାପକମାନଙ୍କ ସହିତ ଆଲୋଚନା କରି ଫେରି ଆସିଲି ।

ଉପରୋକ୍ତ ଶେଷଧାଡ଼ିରୁ ଉଚ୍ଚ ପଦସ୍ଥ ସମସ୍ତ ଅଧିକାରୀମାନେ ଆମ୍ଭମାନଙ୍କ ଉପରେ ସେମାନଙ୍କର କ୍ରୋଧ ପ୍ରକାଶ କଲେ । ସେମାନେ ଯଦି ସେଇ ମୁହୂର୍ତ୍ତରୁ ନିଜର ଦୋଷ ତ୍ରୁଟିକୁ ସୁଧାରି ନେଇ ଆସିଥାନ୍ତେ, ତେବେ ପରବର୍ତ୍ତୀ ସମୟରେ ରାଜ୍ୟ ଶିକ୍ଷା ଔଦ୍ୟୋଗିକ ପ୍ରତିଷ୍ଠାନ (SIET)ର ମର୍ଯ୍ୟାଦା ଲାଭ କରିଥିବା ଏଇ ଅନୁଷ୍ଠାନଟି ଆଜି ବନ୍ଦ ହୋଇ ନ ଥାନ୍ତା ।

କ୍ରମଶଃ ଆମେ କେତେଜଣ ଅଧ୍ୟାପକ ଦେଖିଲୁ ଯେ ଆଉ ଏଇ ଅନୁଷ୍ଠାନରେ କାର୍ଯ୍ୟ କରିବା ଆମ ପକ୍ଷରେ ସମ୍ଭବପର ନୁହେଁ । ଶରୀରର ଗୋଟେ ଅଧେ ଅଙ୍ଗ କାର୍ଯ୍ୟ କରୁଥିଲେ ମଧ୍ୟ ଅନ୍ୟସବୁ ଅଙ୍ଗପ୍ରତ୍ୟଙ୍ଗ ଅଚଳ ହେଲେ ଯାହା ହୁଏ, ତାହାହିଁ ଆମ ପକ୍ଷେ ହେଲା । ତେଣୁ କେତେ ଜଣ ଅଧ୍ୟାପକ ପ୍ରତିଷ୍ଠାନ ଛାଡ଼ି କୌଣସି ମହାବିଦ୍ୟାଳୟରେ ନିୟୋଜିତ କରିବାକୁ ସରକାରଙ୍କୁ ଦରଖାସ୍ତ କଲେ ।

୧୯୮୯ ମସିହା ଜୁନ୍‌ମାସର ଶେଷ ସପ୍ତାହ । ପ୍ରାୟ ୨୫ ତାରିଖ ହେବ । ସେଦିନ କୌଣସି ଜରୁରୀ କାମରେ ମୋର ଆମ ଗ୍ରାମ ରୁଦ୍ରପୁରକୁ ଆସିବାର ଥାଏ । ତେଣୁ ମୁଁ ସେଦିନ କାର୍ଯ୍ୟାଳୟ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥାଏ । ଏଇ ସମୟରେ ମୋତେ ନିର୍ଦ୍ଦେଶକଙ୍କ ପାଖରୁ ଡ଼ାକରା ଆସିଲା । ମୁଁ ଗଲି । ମୋତେ ନିର୍ଦ୍ଦେଶକ କର ମହୋଦୟ ପ୍ରଶ୍ନ କଲେ, "ବ୍ରହ୍ମାବାବୁ ! ଆପଣ କାହିଁକି ବଦଳି ପାଇଁ ଦରଖାସ୍ତ କରିଛନ୍ତି ?"

ମୁଁ କହିଲି, "ଏଠି ତ କିଛି କାମ ହେଉ ନାହିଁ । ବସି ବସି ସମୟ ଯାଉଛି । ତେଣୁ ମୋତେ କୌଣସି ଏକ କଲେଜକୁ ବଦଳି କଲେ ଭଲ ହୁଅନ୍ତା । ସେଠାରେ ମୁଁ ପିଲାମାନଙ୍କୁ ପାଠ ପଢ଼ାଇବାର ସୁଯୋଗ ପାଆନ୍ତି ।"

ସେ ମୋ ଆଡ଼କୁ ଚାହିଁଲେ । କିଛି ସମୟ ରହି ପ୍ରଶ୍ନ କଲେ, "ଆପଣ ପରା ଶିକ୍ଷା ଟେଲିଭିଜନ ସଂପର୍କୀୟ ତାଲିମ ପାଇବା ନିମନ୍ତେ ବିଲାତ ଯାଇଥିଲେ । ତେଣୁ ଏଠାରୁ କେମିତି ବଦଳି ହେବେ ?"

ସେଦିନ ଅତି ବିନମ୍ର ଭାବରେ ମୁଁ ମୋର ବକ୍ତବ୍ୟ ନିର୍ଦ୍ଦେଶକ କରଙ୍କ ପାଖରେ ରଖିଲି । କହିଲି, "ମୋର ଇତିହାସରେ ଅନର୍ସ ଅଛି । ଇତିହାସରେ ମଧ୍ୟ ଏମ୍.ଏ. କରିଛି । ଏମ୍.ଏଡ୍ ପଢ଼ିଛି । ଶିକ୍ଷା ବିଷୟରେ ପିଏଚ.ଡ଼ି କରିଛି । ପୁଣି ହିନ୍ଦୀରେ ମଧ୍ୟ ରାଷ୍ଟ୍ରଭାଷା ରତ୍ନ ଉତ୍ତୀର୍ଣ୍ଣ ହୋଇଛି । ମୋର ଏତେ ସବୁ ଏତେ ଦିନର ଯୋଗ୍ୟତା ସତ୍ତ୍ୱେ କାହିଁକି ବିଲାତର ତିନିମାସିଆ ପ୍ରଶିକ୍ଷଣ ମୋ ଉନ୍ନତି ପଥରେ ବାଧକ ହେବ ?"

ମୋ ଯୋଗ୍ୟତା ସଂପର୍କରେ ଶୁଣିବା ପରେ ପ୍ରଶ୍ନ କଲେ, "ଆପଣ ଇତିହାସରେ ଏମ୍.ଏ. କରିଛନ୍ତି ?" ମୁଁ ହଁ' ମାରିଲି । ତା'ପରେ ସେ ପ୍ରଶ୍ନ କଲେ, "ଆପଣଙ୍କୁ ଯଦି ମୁଁ ରାଜ୍ୟ ଶିକ୍ଷା ଗବେଷଣା ପରିଷଦକୁ ନେଇ ଯାଏ, ତେବେ ଆପଣ ଯିବେ ତ ?"

ନିର୍ଦ୍ଦେଶକ କରଙ୍କ କଥାକୁ ଏଡ଼ାଇ କହିବାର ସାହସ ମୋର ନ ଥିଲା । ସେ ଜଣେ କର୍ତ୍ତବ୍ୟନିଷ୍ଠ ଓ କର୍ମପ୍ରବଣ ମଣିଷ ହୋଇଥିବା ଯୋଗୁଁ ତାଙ୍କ ପାଖରେ ସାଧାରଣତଃ କାର୍ଯ୍ୟ କରିବାକୁ ଅନେକ କୁଣ୍ଠାବୋଧ କରିଥାନ୍ତି । ମାତ୍ର ସେଦିନ ମୁଁ କୌଣସି କଥା ନ ଭାବି ସାଙ୍ଗେ ସାଙ୍ଗେ ହଁ' ମାରିଦେଲି ।

ମୁଁ ଦୁଇଦିନ ଛୁଟି ନେଇ ଏକ ଜରୁରୀ କାମରେ ଗାଆଁକୁ ଯାଉଛି ବୋଲି ଜଣାଇ ତାଙ୍କ ପ୍ରକୋଷ୍ଠରୁ ଚାଲି ଆସିଲି । ଦିନେ ଦୁଇଦିନ ପରେ ଘରୁ ଫେରି ଆସିଲି । କାର୍ଯ୍ୟାଳୟକୁ ଆସିବା ବାଟରେ ମୋତେ ଜଣେ ବନ୍ଧୁ କହିଲେ, "ଆପଣଙ୍କର ବଦଳି ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦକୁ ହୋଇଛି ।" ଏ କଥାକୁ ମୁଁ ଅତି ସହଜରେ ବିଶ୍ୱାସ କରି ପାରିଲି ନାହିଁ । ଏଇ ଦୁଇଦିନ ତଳେ ଏସ୍.ସି.ଇ.ଆରଟି ବଦଳି ପ୍ରସଙ୍ଗ ନିର୍ଦ୍ଦେଶକ ଉଠାଇଥିଲେ । ସାଧାରଣତଃ ସେତେବେଳେ ବଦଳି ହେବାକୁ ଥିବା ଅଧ୍ୟାପକଙ୍କ ନାମ ସରକାରଙ୍କ ଅନୁମୋଦନ ନିମନ୍ତେ ଯାଇଥାଏ । ସରକାରଙ୍କ ମୋହର ଲାଗିଲେ ବଦଳି ଆଦେଶ ଆସିଥାଏ । ମୋ କ୍ଷେତ୍ରରେ ଏମିତି କ'ଣ ଘଟିଲା ଯେ ମୋର ବଦଳି ରାତାରାତି ହୋଇଗଲା ।

ମୁଁ ଇଟିଭି ପ୍ରଡକ୍ସନ ସେଣ୍ଟରକୁ ଆସି ମୋର ବଦଳି ଆଦେଶନାମା ପାଇଲି । ଯାହା ଶୁଣିଥିଲି ତାହା ସତ ଥିଲା । ମୋତେ ନିର୍ଦ୍ଦେଶାଳୟର ଆଦେଶନାମା ନଂ ୫୫୫୩ ତା ୨୭ । ୬। ୧୯୮୯ ଅନୁଯାୟୀ ଇଟିଭି ପ୍ରଡ଼କସନ୍ ସେଣ୍ଟରରୁ ଏସ୍.ସି.ଇ.ଆର.ଟିକୁ ବଦଳି କରାଯାଇଥିଲା । ନିର୍ଦ୍ଦେଶକ କରଙ୍କ କାର୍ଯ୍ୟଶୈଳୀ ସ୍ୱତନ୍ତ୍ର । ସେ ଯାହା ଉଚିତ ମନେ କରନ୍ତି ତାହା କରନ୍ତି । ନିଜର ବୁଦ୍ଧି ବିବେକକୁ ସରକାରୀ କଳ ମଧ୍ୟରେ ସୀମାବଦ୍ଧ କରନ୍ତି ନାହିଁ । ଏହାର ଦୃଷ୍ଟାନ୍ତ ମୁଁ ଇଟିଭି ପ୍ରଡ଼କସନ୍ କେନ୍ଦ୍ରରେ କାର୍ଯ୍ୟ କଲାବେଳେ ପାଇଥିଲି ।

ସେତେବେଳେ ଆମର ପ୍ରତ୍ୟର୍ପଣ ଛୁଟି (Surrender leave) ମଞ୍ଜୁରୀ ଦରଖାସ୍ତ ସରକାରଙ୍କ ପାଖକୁ ପଠାଯାଉଥିଲା । କୌଣସି ଏକ ମାସରେ ମୋ ସହିତ ଆଉ କେତେ ଜଣଙ୍କ ଦରଖାସ୍ତ ସରକାରଙ୍କ ପାଖକୁ ପଠାଇବା ନିମନ୍ତେ ନିର୍ଦ୍ଦେଶକଙ୍କ ଅନୁମୋଦନ ନିମନ୍ତେ ସେକ୍ସନ୍ ଅଫିସର (Section Officer) ବଂଶୀବାବୁ ପଠାଇଲେ ।

ନିର୍ଦ୍ଦେଶକ କର ଅନୁମୋଦନ କରିବା ପୂର୍ବରୁ ବଂଶୀବାବୁଙ୍କୁ ପଚାରିଲେ, "ବଂଶୀବାବୁ ! ଅଧ୍ୟାପକମାନଙ୍କ ଏ ଛୁଟି ମଞ୍ଜୁର କରିବା କ୍ଷମତା କ'ଣ ମୋର ନାହିଁ ?" ବଂଶୀବାବୁ ବଡ଼ ଅସୁବିଧାରେ ପଡ଼ିଗଲେ । ବଡ଼ ଚତୁରତାର ସହିତ ଏ ପ୍ରଶ୍ନକୁ ଏଡ଼ାଇ ଦେବାକୁ ଯାଇ ସେ କହିଲେ, "ଏପରି ମଞ୍ଜୁରୀ ନିମନ୍ତେ ପ୍ରଫେସର ଶରତଚନ୍ଦ୍ର ଦାଶଙ୍କ ଅମଳରୁ ସରକାରଙ୍କ ପାଖକୁ ପ୍ରସ୍ତାବ ଯାଉଥିଲା । ତେଣୁ ମୁଁ ତଦନୁଯାୟୀ ଫାଇଲ ଦେଇଛି । ଆପଣ ଯାହା ବିବେଚନା କରିବେ ।"

ସଙ୍ଗେ ସଙ୍ଗେ ଆମ ଫାଇଲରେ ନିର୍ଦ୍ଦେଶକ 'ମଞ୍ଜୁର ହେଲା' (Sanctioned) ବୋଲି ଲେଖିଦେଇ କହିଲେ, "ସେ କ୍ଷମତା ହୁଏତ ଶରତ ଚନ୍ଦ୍ର ଦାଶଙ୍କ ନ ଥିଲା,

ମାତ୍ର ମୋର ଅଛି ।" ମୁଁ ଏହି କାର୍ଯ୍ୟଶୈଳୀ ଶ୍ରୀଯୁକ୍ତ କର ମହୋଦୟଙ୍କଠାରୁ ଶିଖିଥିଲି । ପରବର୍ତ୍ତୀ ସମୟରେ ଯେତେବେଳେ ଡିଏଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ଅଧ୍ୟକ୍ଷ ହେଲି, କର୍ମଚାରୀଙ୍କ ଅନେକ ଅର୍ଥଗତ ମଞ୍ଜୁରୀ ମୋ ସ୍ତରରେ କରି ଦେଉଥିଲି । ଏହା ଫଳରେ ସେମାନେ ଭୁବନେଶ୍ୱର ଆସି ଅଯଥା ହଇରାଣ ହରକତ ହେବାରୁ ରକ୍ଷା ପାଉଥିଲେ ।

ସେ ଯାହା ହେଉ ୧୯୮୯ ମସିହା ଜୁନ ମାସ ୩୦ ତାରିଖ ଅପରାହ୍ନରେ ଇଟିଭି ପ୍ରଡ଼କସନ୍ ସେଣ୍ଟରରୁ ବିଦାୟ ନେବାକୁ ପଡ଼ିଲା । ସେଦିନ ମୋ ସହିତ ଅଧ୍ୟାପକ ଅମରେନ୍ଦ୍ର ପ୍ରସାଦ ଗିରି ମଧ୍ୟ ସେଠାରୁ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦକୁ ବଦଳି ହୋଇ ଆସିଲେ । ଆମ ଦୁହିଁଙ୍କ ସଦର ମହକୁମା (Headquarters) ଭୁବନେଶ୍ୱର ହୋଇଥିବା ହେତୁ ଆମେ ସେଇଦିନ ଅପରାହ୍ନରେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ଯୋଗଦାନ କରି ନିର୍ଦ୍ଦେଶକଙ୍କୁ ଆମ ଯୋଗଦାନ ସଂପର୍କରେ ଜଣାଇଦେଲୁ ।

**ରାଜ୍ୟ ଶିକ୍ଷା ପ୍ରଶିକ୍ଷଣ ଓ ଗବେଷଣା ପରିଷଦ, ଭୁବନେଶ୍ୱରରେ ଯୋଗଦାନ**

ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍ ତଥା-ନିର୍ଦ୍ଦେଶକ ପ୍ରଫେସର ରଜତ କୁମାର କରଙ୍କ କ୍ଷଣିକ ନିଷ୍ପତ୍ତି ଓ ଅଯାଚିତ ଦୟା ସୁଅ ମୁହଁରେ ପତର ଭଳି ଭାସି ଯାଉଥିବା ମୋ ଭଳି ଜଣେ ଅକିଞ୍ଚନକୁ ଆଣି ରାଜ୍ୟ ଶିକ୍ଷା ଗବେଷଣା ପରିଷଦର ଚାରିକାନ୍ଥ ମଧ୍ୟରେ ସମ୍ମାନ ଜନକ ଭାବେ ଅବସ୍ଥାପିତ କରିଦେଲା । ଦିନେ ଯେଉଁ ପ୍ରତିଷ୍ଠାନ ମୋ ପାଇଁ ଏକ ଅଭେଦ୍ୟ ଦୁର୍ଗ ଥିଲା, ସେଇ ଶିକ୍ଷା ଦୁର୍ଗରେ ମୋତେ ୧୯୮୯ ମସିହାରୁ ୨୦୦୩ ମସିହା ପର୍ଯ୍ୟନ୍ତ ଦୀର୍ଘ ଚଉଦବର୍ଷ ପର୍ଯ୍ୟନ୍ତ କାମ କରିବାକୁ ପଡ଼ିବ, ଏହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଏଇ ଚଉଦ ବର୍ଷ ମଧ୍ୟରେ ପ୍ରଶିକ୍ଷଣ ପରିଷଦକୁ ଅନେକ ଅଧ୍ୟାପକ ଆସିଥିଲେ, ଚାଲି ଯାଇଥିଲେ, ପୁଣି ଆସିଥିଲେ ଓ ଚାଲି ଯାଇଥିଲେ । ମାତ୍ର ମୁଁ ସେମିତି ନିଶ୍ଚଳ ଭାବେ ମୋର କର୍ତ୍ତବ୍ୟ କରି ଚାଲିଥିଲି । ଏଇ ଦୀର୍ଘ ରହଣି ମୋର ତଥାକଥିତ ବନ୍ଧୁମାନଙ୍କ ପାଇଁ ଅସହ୍ୟ ହୋଇଥିଲାବେଳେ ଏବଂ ସେମାନେ ରାଜ୍ୟସରକାରଙ୍କ ବିଭିନ୍ନ ସ୍ତରରେ ମୋ ରହଣି ସଂପର୍କରେ ମନ୍ତ୍ରୀ ଓ ସଚିବ ସ୍ତରରେ ଆପତ୍ତି ଉଠେଇଥିଲେ ମଧ୍ୟ କେଉଁ ଅଦୃଶ୍ୟ ଶକ୍ତି ମୋତେ ମୋର କର୍ତ୍ତବ୍ୟନିଷ୍ଠା ଓ କର୍ମପ୍ରବଣତା ଯୋଗୁଁ ବାନ୍ଧି ରଖିଥିଲା ବୋଲି ମନେ ହୁଏ ।

ମୋ ଯୋଗଦାନ ପରେ ପରେ ରାଜ୍ୟର ବିଭିନ୍ନ ପ୍ରଶିକ୍ଷଣ ଅନୁଷ୍ଠାନ ପାଇଁ କେନ୍ଦ୍ରୀୟ ପୁସ୍ତକ ନିର୍ବାଚନ ବ୍ୟବସ୍ଥା ଥିବା ହେତୁ ମୋତେ ଏଇ ପୁସ୍ତକ ନିର୍ବାଚନ କାର୍ଯ୍ୟର ଦାୟିତ୍ୱ ଦିଆଗଲା । ମୋତେ ଏ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଏସ୍.ଏସି.ଇ.ଆର୍.ଟିରେ କାର୍ଯ୍ୟରତ କର୍ମଚାରୀ ପ୍ରଶାନ୍ତ କରଙ୍କୁ ଦାୟିତ୍ୱ ଦିଆଗଲା । ଆମେ ଦୁଇଜଣ ବସି ଉପାଦେୟ ପୁସ୍ତକଗୁଡ଼ିକର ତାଲିକା କଲୁ ।

ଶ୍ରୀ ପ୍ରଶାନ୍ତ କୁମାର କର ଜଣେ ସମ୍ଭ୍ରାନ୍ତ ପରିବାରର ପିଲା । ତାଙ୍କର କଥାବାର୍ତ୍ତା, ଚାଲିଚଳଣ, କାର୍ଯ୍ୟନିଷ୍ଠା ମୁଁ ପୂର୍ବରୁ କ୍ୱଚିତ କର୍ମଚାରୀମାନଙ୍କ ମଧ୍ୟରେ ଦେଖିଥିଲି । ସେତେବେଳେ ସେ ବିଭିନ୍ନ ପତ୍ରପତ୍ରିକା ପାଇଁ ଲେଖୁଥିଲେ । ସେ ସମୟରେ ପ୍ରକାଶିତ ତାଙ୍କର କେତେକ ଲେଖା ମଧ୍ୟ ମୋ ନଜରକୁ ଆସିଥିଲା । ସେଗୁଡ଼ିକ ଅତି ଉଚ୍ଚ ଧରଣର ଲେଖା ଥିଲା । ସେ ମୋ ସହିତ ଅଳ୍ପଦିନ ସଂଯୋଗବଶତଃ କାମ କରିଥିଲେ ମଧ୍ୟ ତାଙ୍କ ମଧ୍ୟରେ ଏକ ବିରାଟ ସମ୍ଭାବନା ଲୁଚି ରହିଥିଲା । ପରବର୍ତ୍ତୀ ସମୟରେ ସେ ରାଜ୍ୟ କଳା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ (SCART, Odisha), ୨୦୦୧ ମସିହାରେ ଗଠନ କରି ରାଜ୍ୟର କୋଣ ଅନୁକୋଣରେ ଥିବା ଲୁକ୍କାୟିତ ପ୍ରତିଭାମାନଙ୍କୁ ରାଜ୍ୟସ୍ତରୀୟ ଉତ୍ସବରେ ସମ୍ମାନୀତ କରୁଅଛନ୍ତି । ଏତଦ୍‌ବ୍ୟତୀତ ସେମାନଙ୍କ ସାଂସ୍କୃତିକ ଅବଦାନ ଉଲ୍ଲେଖ କରି ପ୍ରତିବର୍ଷ ଲେଖକ ପରିଚୟ ପୁସ୍ତକ ଓ ଅନ୍ୟାନ୍ୟ ଉପାଦେୟ ପୁସ୍ତକମାନ ମଧ୍ୟ ପ୍ରକାଶ କରୁଅଛନ୍ତି । ଆଜି ସ୍କାର୍ଟ ଓଡ଼ିଶା ଦ୍ୱାରା ବହୁ ରାଜନେତା, ସମାଜର ବିଭିନ୍ନ ସ୍ତରରେ କାର୍ଯ୍ୟ କରୁଥିବା ବିଶିଷ୍ଟ ବ୍ୟକ୍ତି, କଳା-ସାହିତ୍ୟ-ସଂସ୍କୃତିର ପୃଷ୍ଠପୋଷକ ଆଦି ସମ୍ମାନୀତ ହେବା ସହିତ ପ୍ରଦତ୍ତ ବିଭିନ୍ନ ଉପାଧିରେ ଭୂଷିତ ହେବାର ସୌଭାଗ୍ୟ ମଧ୍ୟ ପାଇ ପାରିଛନ୍ତି ।

ଯାହାହେଉ ଆମେ ଦୁଇଜଣ ପୁସ୍ତକ ଚୟନ ସଂପର୍କୀୟ ସମସ୍ତ ତାଲିକା ଅଳ୍ପଦିନ ମଧ୍ୟରେ ପ୍ରସ୍ତୁତ କରି ଆମର ଦାୟିତ୍ୱ ସାରି ଦେଇଥିଲୁ ।

ଦିନେ ସନ୍ଧ୍ୟାବେଳେ ନିର୍ଦ୍ଦେଶକ ମହୋଦୟ ସମସ୍ତ ନବାଗତ ଅଧ୍ୟାପକ ଓ ପୁରାତନ ଅଧ୍ୟାପକମାନଙ୍କୁ ଡକାଇ ଏକ ଷ୍ଟାଫ୍ ମିଟିଂ କଲେ । ସେ ସାକ୍ଷାତ୍‌କାରର ଉଦ୍ଦେଶ୍ୟ ଥିଲା ନବାଗତ ଅଧ୍ୟାପକମାନଙ୍କୁ କେଉଁ କେଉଁ ବିଭାଗରେ ଦାୟିତ୍ୱ ଦିଆଯିବ । କଥା ପ୍ରସଙ୍ଗରେ ଜନସଂଖ୍ୟା ଶିକ୍ଷା ବିଭାଗ କଥା ଉଠିଲା । ସେତେବେଳେ ସେ ବିଭାଗର ମୁଖ୍ୟ ଥିଲେ ଅଧ୍ୟାପିକା ପ୍ରେମଲତା ମହାପାତ୍ର । କେଉଁ ଅଧ୍ୟାପକ ସେଥିରେ ରହିଲେ ସେ ବିଭାଗଟି ଭଲ ଚାଲିବ ବୋଲି ନିର୍ଦ୍ଦେଶକ କର ବିଚାର ବିମର୍ଷ କରୁଥିବା ସମୟରେ ଅଧ୍ୟାପିକା ମହାପାତ୍ର କହିଲେ, "ଏଠାରେ ଥିବା କୌଣସି ଅଧ୍ୟାପକଙ୍କର ଜନସଂଖ୍ୟା ବିଷୟ ସଂପର୍କରେ କୌଣସି ଧାରଣା ନାହିଁ ।"

ଏଭଳି ମନ୍ତବ୍ୟକୁ ନିର୍ଦ୍ଦେଶକ କର ମହୋଦୟ ବୋଧହୁଏ ଅତି ସହଜରେ ଗ୍ରହଣ କଲେ ନାହିଁ । କିନ୍ତୁ ତାଙ୍କ ମନ୍ତବ୍ୟ ପରେ ପରେ ନିର୍ଦ୍ଦେଶକ ମହୋଦୟ ମୋତେ ପଚାରିଲେ, "ବ୍ରହ୍ମାବାବୁ ! ଆପଣଙ୍କର ଜନସଂଖ୍ୟା ବିଷୟରେ ଧାରଣା ଅଛି ତ ?"

ମୁଁ ଆଗ୍ରହର ସହିତ କହିଲି, "ସାର୍ ! ମୋର ଜନସଂଖ୍ୟା ଶିକ୍ଷା ସଂପର୍କୀୟ ଅନେକ ପ୍ରକାଶିତ ଲେଖା ଅଛି । ଏ ସଂପର୍କରେ ମୋର ମୌଳିକ ଧାରଣା ମଧ୍ୟ ରହିଅଛି ।" ବାସ୍ ! ସେତିକି ଥିଲା ଯଥେଷ୍ଟ । ମୋତେ ଜନସଂଖ୍ୟା ବିଭାଗର ଜନୈକ ଅଧ୍ୟାପକ ଭାବେ ରଖାଗଲା । ଏଥି ସହିତ ପାଠ୍ୟକ୍ରମ ପ୍ରସ୍ତୁତି ବିଭାଗରେ ମଧ୍ୟ କାର୍ଯ୍ୟ କରିବାକୁ ଦିଆଗଲା ।

ନୂତନ ଶିକ୍ଷାନୀତି, ୧୯୮୬ ଅନୁସାରେ ଓଡ଼ିଶା ସରକାର ପ୍ରାଥମିକ ଶିକ୍ଷାସ୍ତରର ପାଠ୍ୟପୁସ୍ତକ ପ୍ରସ୍ତୁତିର ଦାୟିତ୍ୱ ରାଜ୍ୟ ଶିକ୍ଷା ଓ ଗବେଷଣା ପରିଷଦକୁ ଦେଇଥିଲେ । ସେତେବେଳେ ପରିଷଦର ନିର୍ଦ୍ଦେଶକ ଥିଲେ ପ୍ରଫେସର ଶରତ ଚନ୍ଦ୍ର ଦାଶ । ଏହାର ଦାୟିତ୍ୱରେ ଶିକ୍ଷା ଔଦ୍ୟୋଗିକ ସେଲ୍ (ET Cell)ର ବିଭାଗୀୟ ମୁଖ୍ୟ ଡକ୍ଟର ଜଗନ୍ନାଥ ମହାନ୍ତି । ମୁଁ ୧୯୮୯ ମସିହାରେ ଗବେଷଣା ପରିଷଦରେ ଯୋଗଦାନ କଲାବେଳକୁ ପ୍ରଫେସର ଦାଶ ସରକାରୀ ଚାକିରିରୁ ଅବସର ନେଇ ସାରିଥାନ୍ତି ଓ ଡକ୍ଟର ମହାନ୍ତି ପ୍ରଫେସର ପଦବୀ ପାଇ ଡକ୍ଟର ପର୍ଶୁରାମ ମିଶ୍ର ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ ସମ୍ବଲପୁରରେ ଅଧ୍ୟକ୍ଷ ରୂପେ ଅବସ୍ଥାପିତ ହୋଇଥାନ୍ତି । ତାଙ୍କ ସ୍ଥାନରେ ପାଠ୍ୟକ୍ରମର ଦାୟିତ୍ୱ ଦିଆଯାଇଥାଏ ଅଧ୍ୟାପିକା ଡକ୍ଟର ଚାରୁବାଳା ମହାନ୍ତିଙ୍କୁ । ଅଧ୍ୟାପିକା ମହାନ୍ତିଙ୍କ ସହିତ ମୁଁ ପୂର୍ବରୁ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ କାର୍ଯ୍ୟ କରିଥିଲି । ତାଙ୍କର ପାଠ୍ୟକ୍ରମ ପ୍ରସ୍ତୁତି ଓ ପ୍ରଣୟନ ସଂପର୍କରେ ବିଶେଷ ଧାରଣା ଥିଲା । ଆମେ ଦୁହେଁ ବିଭିନ୍ନ ବିଷୟର ପାଠ୍ୟପୁସ୍ତକ ପ୍ରସ୍ତୁତି ସଂପର୍କୀୟ ଅଧିବେଶନରେ ସରକାରଙ୍କ ଦ୍ୱାରା ନିଯୁକ୍ତ ଲେଖକ ମଣ୍ଡଳୀ ତରଫରୁ ସଂଯୋଜକ ହିସାବରେ କାମ କରୁଥିଲୁ ।

ଆମ ଯୋଗଦାନ ପୂର୍ବରୁ ପ୍ରାୟତଃ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତ ପାଠ୍ୟପୁସ୍ତକ ପ୍ରସ୍ତୁତ ହୋଇ ଓଡ଼ିଶା ସରକାରଙ୍କ ପାଠ୍ୟପୁସ୍ତକ ମୁଦ୍ରଣାଳୟ ସଂସ୍ଥାକୁ ପାଣ୍ଡୁଲିପିଗୁଡ଼ିକ ଛପା ହେବାକୁ ଦିଆଯାଇଥିଲା । କ୍ରମଶଃ ଖଣ୍ଡିଏ ଖଣ୍ଡିଏ ପାଣ୍ଡୁଲିପି ଛପାହୋଇ ବଜାରକୁ ଆସିଲା । ପ୍ରଥମ ଶ୍ରେଣୀର ସାହିତ୍ୟ ବହିରେ 'ଅ' ଅକ୍ଷର କଳା ଅକ୍ଷରରେ ଛପାଯାଇ ନାଲି ଚିହ୍ନିତ ଆକାର ଦିଆଯାଇ ଆ ଅକ୍ଷର ମୁଦ୍ରିତ ହେଲା । 'ଆ' ଏକ ସ୍ୱତନ୍ତ୍ର ଅକ୍ଷର ହେଲେ ମଧ୍ୟ ଏହା 'ଅ' ଆକାର 'ଆ'ର ଭ୍ରମ ଧାରଣା ସୃଷ୍ଟି ହେଲା । ଏତଦ୍‌ବ୍ୟତୀତ ଏଥିରେ ଅନେକ ଗୁରୁଚାଣ୍ଡାଳ ଦୋଷ ମଧ୍ୟ ରହିଲା । ଯାହାକି ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର କାର୍ଯ୍ୟ ଦକ୍ଷତା ଉପରେ ପ୍ରଶ୍ନ ଉଠାଇଲା । ପ୍ରଥମ ଶ୍ରେଣୀ ସାହିତ୍ୟ ବହିର ପ୍ରସ୍ତୁତିରେ ଓଡ଼ିଆ ବିଭାଗର ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ମାଧ୍ୟମିକ ଶିକ୍ଷା ପରିଷଦର ଓଡ଼ିଆ ବିଭାଗର ବିଶେଷଜ୍ଞ ଶୁଭେନ୍ଦ୍ର ମୋହନ

ଶ୍ରୀଚନ୍ଦନ ସିଂ, ଶିକ୍ଷକ-ତଥା-ବରିଷ୍ଠ ଶିଶୁ ସାହିତ୍ୟିକ ବଟକୃଷ୍ଣ ଓଝା ଆଦି ଥିଲେ । ସମୀକ୍ଷକ ଥିଲେ ଡକ୍ଟର ଜଗନ୍ନାଥ ମହାନ୍ତି । ଏଇ ଲେଖକ ମଣ୍ଡଳୀ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସାହିତ୍ୟ ବହି ରଚନା କରିବାର ବ୍ୟବସ୍ଥା ମଧ୍ୟ କରାଇ ନେଇଥିଲେ । ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ସାହିତ୍ୟ ବହି ବଜାରକୁ ଆସିଲା ପରେ ଅନେକ ଦୋଷତ୍ରୁଟି ଗଣମାଧ୍ୟମରେ ସ୍ଥାନ ପାଇଲା । ଲେଖକ ମଣ୍ଡଳୀର ନାମ ପ୍ରତ୍ୟେକ ବହିରେ ମୁଦ୍ରିତ ଥିଲେ ମଧ୍ୟ କେହି ଦାୟିତ୍ୱ ନେଲେ ନାହିଁ । ପରସ୍ପର ପରସ୍ପର ଉପରକୁ ଦୋଷ ଲଦିଲେ । ସର୍ବଶେଷରେ ସବୁ ଦୋଷ ଗଡ଼ିଗଡ଼ି ଆସି ସମୀକ୍ଷକଙ୍କ ଉପରେ ପଡ଼ିଲା ।

ଏଇ ସମୟରେ ତୃତୀୟ ଶ୍ରେଣୀର ସାମାଜିକ ବହି ମୁଦ୍ରିତ ହୋଇ ବଜାରକୁ ଆସିଲା । ଏଥିରେ ରାଜ୍ୟର ତେରଗୋଟି ଜିଲ୍ଲା ସଂପର୍କରେ ତଥ୍ୟ ଥିଲା । ସେଥିରେ ଯେଉଁସବୁ ଦୋଷତ୍ରୁଟି ଦେଖାଦେଲା ସେ ସଂପର୍କରେ ଦୈନିକ 'ସମ୍ବାଦ'ର ସଂପାଦକ ସୌମ୍ୟରଞ୍ଜନ ପଟ୍ଟନାୟକ ଦର୍ଶାଇ ଏହାର ସଂପାଦକୀୟ ପୃଷ୍ଠାରେ ଏସବୁ ତତ୍ତ୍ୱ କେଉଁ ଗବେଷଣାରୁ ଗବେଷଣା ପରିଷଦ ପାଇଲା ବୋଲି ପ୍ରଶ୍ନବାଚୀ ଲଗାଇଲେ । ତୃତୀୟ ଶ୍ରେଣୀର ସାମାଜିକ ବହିରେ ଥିଲା କଟକ ଜିଲ୍ଲାକୁ ଲାଗି କୋରାପୁଟ ଜିଲ୍ଲା । ମୟୁରଭଞ୍ଜ ଜିଲ୍ଲା ସଦର ମହକୁମା ମୟୁରଭଞ୍ଜ, ସେହିପରି କଳାହାଣ୍ଡି ଜିଲ୍ଲାର ସଦର ମହକୁମା କଳାହାଣ୍ଡି । କଳାହାଣ୍ଡି ଜିଲ୍ଲାର ସଦର ମହକୁମା ଭବାନୀପାଟଣା ଓ ମୟୁରଭଞ୍ଜର ବାରିପଦା ବୋଲି ଏହାର ଲେଖକ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଶିକ୍ଷକ ଶ୍ରୀଯୁକ୍ତ ଧ୍ରୁବଚରଣ ପଣ୍ଡାଙ୍କ ଅନୁଶୀଳନ ମଧ୍ୟରେ ନ ଥିଲା ।

ଦଇବ ଯୋଗକୁ ସେତେବେଳେ ଓଡ଼ିଶା ବିଧାନ ସଭା ଚାଲିଥାଏ । ଶିକ୍ଷା ବିଭାଗର ସଚିବ ଶ୍ରୀଯୁକ୍ତ ପ୍ୟାରୀମୋହନ ମହାପାତ୍ର ଲେଖକ ନିଯୁକ୍ତି ଆଦିର ଫାଇଲ ଦେଖିଲେ । ସେ ବହିର ସମୀକ୍ଷକ ଡକ୍ଟର ଜଗନ୍ନାଥ ମହାନ୍ତି ଥିବା ହେତୁ ସେ ବହିର ପୁନଃ ପ୍ରକାଶନ ନିମନ୍ତେ ରାଜ୍ୟ ସରକାରଙ୍କୁ ସମସ୍ତ କ୍ଷତି ଭରଣା କରିବେ ବୋଲି ପରବର୍ତ୍ତୀ ସମୟରେ ସ୍ଥିର କରାଗଲା । କେଉଁ ପରିସ୍ଥିତିରେ ଏସବୁ ଭୁଲ ହେଲା ତାର ଏକ ତର୍ଜମା କରିବା ନିମନ୍ତେ ନିର୍ଦ୍ଦେଶକ ଏକ ସ୍ୱତନ୍ତ୍ର ମିଟିଂ ଡ଼କାଇଲେ ।

ସେଦିନ ସନ୍ଧ୍ୟା ସମୟରେ ତୃତୀୟ ଶ୍ରେଣୀ ସାମାଜିକ ପୁସ୍ତକର ସମୀକ୍ଷା ନିମନ୍ତେ ଆୟୋଜିତ ମିଟିଂର ପୂର୍ବରୁ ମୋତେ ନିର୍ଦ୍ଦେଶକ କର ମହୋଦୟ ଡାକି କହିଲେ, "ବ୍ରହ୍ମା ବାବୁ ! ମୋତେ ସେ ଲେଖକମାନଙ୍କ ସହିତ ଏ ସଂପର୍କରେ ଆଲୋଚନା କରିବାକୁ ଭଲ ଲାଗୁନାହିଁ । ଆପଣ ଟିକେ ମାଛୁଆ ବଜାର ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ପଣ୍ଡାବାବୁଙ୍କୁ ପଚାରିବେ ସେ ଲେଖିଥିବା ବିଷୟବସ୍ତୁ ଯଦି କୌଣସି

ଲେଖକଙ୍କ ପ୍ରକାଶିତ ସାଧାରଣ ଜ୍ଞାନ ବହିରେ ଭୁଲ କ୍ରମେ ଥାଏ, ତେବେ ତାହା ଦେଲେ ଆମେ ହୁଏତ ସରକାରଙ୍କୁ ଦେଖାଇ ଟିକିଏ ରକ୍ଷା ପାଇ ଯାଆନ୍ତେ ।"

ସେଦିନ ସନ୍ଧ୍ୟା ସାତଟା ବେଳେ ଗବେଷଣା ପରିଷଦର ସମ୍ମିଳନୀ ପ୍ରକୋଷ୍ଠରେ ସାମାଜିକ ବହି ଓ ଅନ୍ୟାନ୍ୟ ବହିର ଲେଖକଙ୍କର ଏକ ସ୍ପଷ୍ଟୀକରଣ ମୂଳକ ଆଲୋଚନା ହେଲା । ସାହିତ୍ୟ ବହିର ଭୁଲ କେହି ମାନିଲେ ନାହିଁ । ପ୍ରତ୍ୟେକ ଯେଉଁ ମନ୍ତବ୍ୟ ଦେଲେ, ତା'ର ସାରମର୍ମ ହେଲା, "କେମିତି ଏ ଭୁଲ ହେଲା, କିଏ କଲା, ଆମେ କିଛି ଜାଣିନୁ ।"

ମୁଁ ନିର୍ଦ୍ଦେଶକଙ୍କ କଥା ଅନୁସାରେ ଶ୍ରୀଯୁକ୍ତ ପଣ୍ଡାଙ୍କ ପାଖକୁ ଯାଇ ପଚାରିଲି, "ସାର୍ ! ଆପଣ ଯେଉଁସବୁ ଭ୍ରମାତ୍ମକ ତଥ୍ୟ ଦେଇଛନ୍ତି, ସେସବୁ ଯଦି କୌଣସି ବହିରେ ଅଛି ଦିଅନ୍ତୁ ।"

ସେ ସଙ୍ଗେ ସଙ୍ଗେ ରାଜ୍ୟ ସରକାରଙ୍କ ଦ୍ୱାରା ସଦ୍ୟ ପ୍ରକାଶିତ ତ୍ରୁଟିଯୁକ୍ତ ସାମାଜିକ ବହିଟିକୁ ଖୋଲି କହିଲେ, "ଦେଖନ୍ତୁ, ଏସବୁ ଏ ବହିରେ ଲେଖାଅଛି ।" ମୁଁ ଏହି ବହି ଅନୁସାରେ ଲେଖିଅଛି ।"

ମୁଁ ତାଙ୍କ ଆଡ଼କୁ ଚାହିଁଲି । ଯେଉଁ ଲେଖା ଲେଖି ସେ ସମସ୍ତଙ୍କୁ ବିପଦରେ ପକାଇ ଦେଇଛନ୍ତି ପୁଣି ସେହି ଲେଖାକୁ ଦର୍ଶାଇ ଖସିଯିବାକୁ ବସିଛନ୍ତି । ଏହାପରେ ସେ କୈଫିୟତ ଦେଇଥିବା ଏକ କାଗଜ ଦେଲେ ।

ମୋତେ ମିଟିଂ ସରିଲା ପରେ ନିର୍ଦ୍ଦେଶକ କର ମହୋଦୟ ପଚାରିଲେ, "ବ୍ରହ୍ମା ବାବୁ ! ସେ ପ୍ରାଥମିକ ଶିକ୍ଷକ କିଛି ବହିପତ୍ର ଦେଲେ କି ?" ମୁଁ ତାଙ୍କୁ କହିଲି, "ସାର୍ ! ସେ ନିଜେ କ'ଣ କହୁଛନ୍ତି ନିଜେ ଜାଣନ୍ତି ନାହିଁ ।"

ଏହା କହି ତାଙ୍କ ପ୍ରଦତ୍ତ କୈଫିୟତ କାଗଜଟିକୁ ଦେଲି । ସେଥିରେ ଲେଖା ଥିଲା, "ମୁଁ ଜଣେ ପ୍ରାଥମିକ ଶିକ୍ଷକ । ମନା କରିବା ସତ୍ତ୍ୱେ ମୋତେ ଏସ୍.ସି.ଇ.ଆର୍.ଟି କର୍ତ୍ତୃପକ୍ଷ ଜବରଦସ୍ତ ଜିଲ୍ଲା ସଂପର୍କୀୟ ଅଧ୍ୟାୟ ଲେଖିବାକୁ ଦେଇଥିଲେ । ସେତେବେଳେ ପାରିବାରିକ କାରଣରୁ ମୁଁ ମାନସିକ ଚାପରେ ଥିଲି । ତେଣୁ ମୋ ଲେଖା ସଂପର୍କରେ କ'ଣ ହୋଇଛି, ମଁ ନିଜେ ମଧ୍ୟ ଜାଣି ନାହିଁ ।"

ସେତେବେଳେ ସରକାରୀ ସ୍ତରରେ ଉଚ୍ଚକର୍ତ୍ତୃପକ୍ଷ ନିଷ୍ପତ୍ତି ନେଲେ ଯେ ସେ ଜଣେ ପ୍ରାଥମିକ ସ୍ତରର ଶିକ୍ଷକ ହୋଇଥିବା ହେତୁ ଏପରି ଭୁଲ କରିବା ସ୍ୱାଭାବିକ । ତେଣୁ ତାଙ୍କର କୌଣସି ଦୋଷ ନାହିଁ । ଯାହା ଦୋଷ ସମୀକ୍ଷକଙ୍କର । ସମୀକ୍ଷକ ମଧ୍ୟ ନିଜ ଦୋଷ ଛଡ଼େଇ ଲିଖିତ ଭାବେ ଜଣାଇଦେଲେ ଯେ ସେ କେବଳ ଭାଷା ଦୃଷ୍ଟିରୁ ଦେଖିଥିଲେ । ଲେଖାର ବିଷୟବସ୍ତୁ (content) ହେଉଛି ଲେଖକଙ୍କର ସଂପୂର୍ଣ୍ଣ ନିଜସ୍ୱ ।

ସେ ଯାହାହେଉ ଏସବୁ ବହିଗୁଡ଼ିକର ଦୋଷତ୍ରୁଟି ନିରାକରଣ ଦାୟିତ୍ୱ ଦିଆଗଲା ରାଜ୍ୟଶିକ୍ଷା ଗବେଷଣା ପରିଷଦର ନିର୍ଦ୍ଦେଶକଙ୍କ ଉପରେ । ନିର୍ଦ୍ଦେଶକ କର ସେ ଦାୟିତ୍ୱ ଦେଲେ ଅଧ୍ୟାପିକା ଚାରୁବାଳା ମହାନ୍ତି ଓ ମୋ ଉପରେ । ଆମେ ଲେଖକମାନଙ୍କୁ ଡକାଇ ଆବଶ୍ୟକ ସଂଶୋଧନ କରି ନୂତନ ପାଣ୍ଡୁଲିପି ତିଆରି କଲୁ । ଉପନିର୍ଦ୍ଦେଶକ ଭାବେ ଏହି ଗୁରୁ ଦାୟିତ୍ୱ ବହନ କଲେ ଗବେଷଣା ପରିଷଦର ବିଜ୍ଞାନ ବିଭାଗର ମୁଖ୍ୟ ତଥା ପ୍ରବୀଣ ପ୍ରାଧ୍ୟାପକ ବଂଶୀଧର ତ୍ରିପାଠୀ । ସେ ସମୟରେ ଆମକୁ ରାତିଦିନ କାମ କରିବାକୁ ପଡ଼ିଲା । ଆମେ ଖିଆପିଆ ମଧ୍ୟ ଭୁଲି ଗଲୁ ।

ଏଇ ସଂଶୋଧିତ ବହିଲେ ଆଉ ଲେଖକମାନଙ୍କ ନାମ ନ ଦେବାକୁ ରାଜ୍ୟ ସରକାର ନିଷ୍ପତ୍ତି ନେଲେ । ଏହାକୁ ଅନୁସରଣ କରି ପରବର୍ତ୍ତୀ ସମୟରେ ପ୍ରକାଶିତ ପାଠ୍ୟପୁସ୍ତକରେ ଆଉ ଲେଖକଙ୍କ ନାମ ରହିଲା ନାହିଁ । ଯେଉଁମାନେ ତ୍ରୁଟିଯୁକ୍ତ ବହିଯୋଗୁଁ ଜନମାନସରେ ନିନ୍ଦିତ ହେଲେ ସେମାନେ ମଧ୍ୟ ଆଉ ପରିଷଦର ସୀମା ସରହଦ ମାଡ଼ିଲେ ନାହିଁ । କେହି କେହି ନୂତନ ସଂଶୋଧିତ ବହି ବାହାରିବା ପରେ ପୁଣି ଲେଖକ ହେବା ଆଶାରେ ମୁହଁ ଦେଖାଇଲେ ।

ଏଇ ସମୟରେ କିଛି ଲେଖକ ପୁରୁଣା ବହିର ଦୋଷତ୍ରୁଟି ଦେଖାଇ ସେମାନଙ୍କୁ ଲେଖକ ହିସାବରେ ରଖିବା ପାଇଁ ଶିକ୍ଷା ବିଭାଗକୁ ଜଣାଇଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଲେଖକ ହିସାବରେ ନିଯୁକ୍ତି ଦିଆଗଲା । ମାତ୍ର ସେମାନେ ପୂର୍ବ ଲେଖକଙ୍କ ଅପେକ୍ଷା ଅଧିକ ଦୋଷତ୍ରୁଟି କଲେ । ସେମାନଙ୍କ ପ୍ରସ୍ତୁତ ପାଣ୍ଡୁଲିପି ଗ୍ରହଣ ପୂର୍ବରୁ ସେମାନଙ୍କ ମଧ୍ୟରୁ କେତେକ ଅଧାରୁ ଦାୟିତ୍ୱ ଛାଡ଼ି ପଳାଇଲେ । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀର ବହି ପ୍ରସ୍ତୁତ ହେବ । ସେଥିପାଇଁ ଦାୟିତ୍ୱରେ ଥିବା ଅଧ୍ୟାପକମାନଙ୍କ ଉପରେ ଚାପ ପଡ଼ିଲା । ଅଧ୍ୟାପିକା ଚାରୁବାଳା ମହାନ୍ତି ବହୁ ପରିଶ୍ରମ କରି ପାଣ୍ଡୁଲିପିଗୁଡ଼ିକୁ ସଂଶୋଧନ କଲେ । ଏପରିକି ପ୍ରାଧ୍ୟାପକ ତ୍ରିପାଠୀ ଲେଖକଙ୍କ ଲେଖାକୁ ବଦଳାଇ ବିଜ୍ଞାନ ଓ ସାମାଜିକ ବିଜ୍ଞାନର ପାଠ୍ୟପୁସ୍ତକକୁ ନୂତନ ରୂପରେଖ ଦେଲେ ।

ଇତି ମଧ୍ୟରେ କୌଣସି ଏକ ପାଠ୍ୟପୁସ୍ତକର ତ୍ରୁଟି କଥା ବାହାରିଲା ପରେ ସେ ବହିଟିରେ ଲେଖକଙ୍କର ନାମ ନ ଥିବାରୁ ରାଜ୍ୟ ସରକାର ବିରକ୍ତି ପ୍ରକାଶ କଲେ । ଏଣୁ ନୂତନ ବହିଗୁଡ଼ିକରେ ଲେଖକଙ୍କ ନାମ ଦେବାକୁ ପୁନଃ ସରକାରଙ୍କ ତରଫରୁ ନିଷ୍ପତ୍ତି ନିଆଗଲା ।

ପାଠ୍ୟପୁସ୍ତକ ପ୍ରସ୍ତୁତ କାର୍ଯ୍ୟ ହେଉଛି ଏକ ଜଟିଳ ବ୍ୟବସ୍ଥା । ସେଇ ବ୍ୟବସ୍ଥାରେ ସଂଯୋଜକ ହିସାବରେ କାମ କଲାବେଳେ ଜଣେ ଅଧ୍ୟାପକଙ୍କୁ ଅଯଥାରେ ନିନ୍ଦିତ ହେବାକୁ ପଡ଼ିଥାଏ । ତେଣୁ ବହୁ ପରିଶ୍ରମ କରି ନିର୍ଭୁଲ ପାଣ୍ଡୁଲିପି ପ୍ରସ୍ତୁତ କରୁଥିବା ଅଧ୍ୟାପିକା ଡକ୍ଟର ଚାରୁବାଳା ମହାନ୍ତି ଦିନେ କଥା ପ୍ରସଙ୍ଗରେ ମୋତେ କହିଲେ, "ବ୍ରହ୍ମା ବାବୁ ! ଆଗରୁ ଯେଉଁମାନେ ଲେଖୁଥିଲେ, ତାଙ୍କୁ ସିନା ସରକାର ବିଦା କରିଦେଲେ, ମାତ୍ର ତାଙ୍କ ସ୍ଥାନରେ ଯେଉଁମାନେ ଆସିଲେ ସେମାନେ ଖାଲି ବଡ଼ବଡ଼ କଥା କହୁଛନ୍ତି, ମାତ୍ର କାର୍ଯ୍ୟତଃ ପାଠ୍ୟପୁସ୍ତକ ଉପଯୋଗୀ ଧାଡ଼ିଟିଏ ଲେଖି ପାରୁ ନାହାଁନ୍ତି । ତେଣୁ ସେମାନଙ୍କୁ ନେଇ ମୁଁ କି ପାଣ୍ଡୁଲିପି ପ୍ରସ୍ତୁତ କରିବି ? ଭାବୁଛି, ନିର୍ଦ୍ଦେଶାଳୟ ଛାଡ଼ି ସମ୍ବଲପୁର ଚାଲିଯିବି ।"

ପରବର୍ତ୍ତୀ ଶିକ୍ଷାବର୍ଷ ଆରମ୍ଭରେ ସେ ନିର୍ଦ୍ଦେଶକ କରଙ୍କୁ କହି ଡଃ ପର୍ଶୁରାମ ମିଶ୍ର ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ ସମ୍ବଲପୁରକୁ ବଦଳି ହୋଇ ଚାଲିଗଲେ । ଏଥରକ ନିର୍ଦ୍ଦେଶକ ମୋତେ ପାଠ୍ୟପୁସ୍ତକ ପ୍ରସ୍ତୁତିର ସମସ୍ତ ଦାୟିତ୍ୱ ଦେଲେ ।

ଅଧ୍ୟାପିକା ମହାନ୍ତି ଗଲାବେଳକୁ ଚତୁର୍ଥ, ପଞ୍ଚମ, ଷଷ୍ଠ ଶ୍ରେଣୀର କେତେକ ବିଷୟର ପାଣ୍ଡୁଲିପି ଚୂଡ଼ାନ୍ତ କରି ପାଠ୍ୟପୁସ୍ତକ ମୁଦ୍ରଣାଳୟକୁ ପଠାଇଥିଲେ । ସେ ସବୁର ମୁଦ୍ରିତ ପୃଷ୍ଠାଗୁଡ଼ିକ ପାଠ୍ୟପୁସ୍ତକ ମୁଦ୍ରାଣାଳୟ ସଂସ୍ଥାରୁ ମୋ ପାଖକୁ ସଂଶୋଧିତ ହେବାକୁ ଆସିଲା । ମୁଁ ବହୁ କଷ୍ଟ କରି ସାହିତ୍ୟ, ଗଣିତ, ବିଜ୍ଞାନ ଆଦିର ମୁଦ୍ରିତ ଚୂଡ଼ାନ୍ତ ପଷ୍ଠାଗୁଡ଼ିକର ପ୍ରୁଫ୍ ଦେଖିଲି । ମୋ ଉପରେ ଜନସଂଖ୍ୟା ବିଭାଗ ସହିତ ପାଠ୍ୟପୁସ୍ତକ ପ୍ରସ୍ତୁତି କାର୍ଯ୍ୟର ଚାପ ଏତେ ଅଧିକ ପଡ଼ିଲା ଯେ ମୁଁ ମୋର ନିଜସ୍ୱ ସ୍ଥିତି ଓ ପରିବାର କଥା ମଧ୍ୟ ଭୁଲି ଗଲି ।

ଏଇ ସମୟରେ ଶିକ୍ଷାମନ୍ତ୍ରୀ ମାନ୍ୟବର ଚୈତନ୍ୟ ପ୍ରସାଦ ମାଝୀଙ୍କ ପାଖରୁ ନର୍ଦ୍ଦେଶକଙ୍କ ପାଖକୁ ଖବର ଆସିଲା ଯେ କାହିଁକି ନିର୍ଦ୍ଦିଷ୍ଟ କେତେକ ଅଞ୍ଚଳର ବୀର ପୁରୁଷ ଓ ସ୍ୱାଧୀନତା ସଂଗ୍ରାମୀଙ୍କ କଥା ପଞ୍ଚମ ଶ୍ରେଣୀ ସାମାଜିକ ପାଠ୍ୟପୁସ୍ତକରେ ଅଛି । ଅନ୍ୟ ଅଞ୍ଚଳର ଦିଆଯାଇନାହିଁ କାହିଁକି ? ସେ ସଂପର୍କରେ ତାଙ୍କୁ ଚାଲୁଥିବା ବିଧାନ ସଭାରେ ଉତ୍ତର ଦେବାକୁ ପଡ଼ିବ । ସେଥିପାଇଁ ତାଙ୍କୁ ବିଧାନସଭା କାର୍ଯ୍ୟାଳୟରେ ଆମକୁ ବୁଝାଇବାକୁ ହେବ । ମୋତେ ସମସ୍ତ କାଗଜପତ୍ର ଓ ସିଲାବସ୍ ନେଇ ତାଙ୍କ ସହିତ ବିଧାନ ସଭାରେ ମନ୍ତ୍ରୀଙ୍କ ପ୍ରକୋଷ୍ଠକୁ ଯିବାକୁ ନିର୍ଦ୍ଦେଶକ କର କହିଲେ । ଆମେ ଦୁହେଁ ନିର୍ଦ୍ଦେଶକଙ୍କ ଗାଡ଼ିରେ ପରିଷଦରୁ ବିଧାନସଭା ଅଭିମୁଖେ ଗଲାବେଳେ ନିର୍ଦ୍ଦେଶକ କର ତତ୍‌ସଂପର୍କୀୟ ଏମିତି ସବୁ ପ୍ରଶ୍ନ କଲେ ଯେ ଯେମିତିକି ମୁଁ କିଛି ଗୋଟାଏ ବଡ଼ ଭୁଲ କରିଛି କିମ୍ବା ଏ ବ୍ୟତିକ୍ରମ ପାଇଁ ମୁଁ ହିଁ ଏକମାତ୍ର ମଣିଷ ଯେ ଦାୟୀ ।

ଏସ୍.ସି.ଇ.ଆଇ.ଟିରୁ ବିଧାନସଭା ଯିବାର ସ୍ୱଳ୍ପ ସମୟ ବ୍ୟବଧାନ ମଧ୍ୟରେ ମୁଁ ନିର୍ଦ୍ଦେଶକଙ୍କୁ କହିଲି, "ପଞ୍ଚମ ଶ୍ରେଣୀର ସିଲାବସ୍‌ରେ ଯେଉଁ ମହାପୁରୁଷମାନଙ୍କ ସଂପର୍କରେ ରହିବ ତାହା ସିଲାବସ କମିଟି ପ୍ରସ୍ତୁତ କରିଅଛନ୍ତି । ସିଲାବସ କମିଟି ଓ ସିଲାବସ୍‌ଟିକୁ ରାଜ୍ୟ ସରକାର ଅନୁମୋଦନ କରିଛନ୍ତି । ଏତଦ୍‌ବ୍ୟତୀତ ଯଦି ସବୁ ଅଞ୍ଚଳର ବିଶିଷ୍ଟ ଜନନାୟକଙ୍କ କଥା ରହିବ, ତେବେ ପାଠ୍ୟପୁସ୍ତକର କଳେବର ବଢ଼ିବ । ତେଣୁ ଗୋଟିଏ ବହିରେ ସମସ୍ତଙ୍କ କଥା ଦେବାର ଅବକାଶ ନ ଥିବା ହେତୁ ଯଦି ମନ୍ତ୍ରୀ ମହୋଦୟ ଅନୁଭବ କରିବେ, ତେବେ ଆମେ ପୁଣି ସିଲାବସ କମିଟି ଡକାଇ ସେମାନଙ୍କ ବିଷୟରେ ପରବର୍ତ୍ତୀ ଶ୍ରେଣୀର ପାଠ୍ୟ ପୁସ୍ତକରେ ଦେଇ ପାରିବା ।"

ମୋ କଥାକୁ ନିର୍ଦ୍ଦେଶକ କର ଗ୍ରହଣ କଲା ଭଳି ମୋର ମନେ ହେଲା ନାହିଁ । ମୋର ମନେ ହେଲା ସେ ଯେମିତି ମାନସିକ ଚାପ ମଧ୍ୟରେ ଅଛନ୍ତି । ସମସ୍ତ ଦୋଷ ମୋ ଆଡ଼କୁ ଟଳି ଦେବାକୁ ଚାହୁଁଛନ୍ତି । ଆମେ ଯାଇ ବିଧାନସଭାରେ ଥିବା ମନ୍ତ୍ରୀଙ୍କ ପ୍ରକୋଷ୍ଠରେ ପହଞ୍ଚିଲୁ । ମନ୍ତ୍ରୀ ମହୋଦୟ ଆମକୁ ସାଙ୍ଗେ ସାଙ୍ଗେ ବସିବାକୁ କହିଲେ ଓ ନିର୍ଦ୍ଦେଶକଙ୍କ ଆଡ଼କୁ ଚାହିଁଲେ ।

ସଙ୍ଗେ ସଙ୍ଗେ ନିର୍ଦ୍ଦେଶକ କର ଆରମ୍ଭ କଲେ, "ଆଜ୍ଞା ! ପାଠ୍ୟପୁସ୍ତକଟି ସିଲାବସ କମିଟି ଦ୍ୱାରା ପ୍ରସ୍ତୁତ କରାଯାଉଅଛି । ମନ୍ତ୍ରୀ ମହୋଦୟ ଯଦି ଚାହିବେ ଆମେ ପରବର୍ତ୍ତୀ ପାଠ୍ୟ ପୁସ୍ତକରେ ରାଜ୍ୟର ଅନ୍ୟ ଅଞ୍ଚଳର ସ୍ୱାଧନତା ସଂଗ୍ରାମୀ ଓ ବରପୁତ୍ରଙ୍କ ବିଷୟରେ ଦେଇ ପାରିବୁ । ଗୋଟିଏ ବହିରେ ସମସ୍ତଙ୍କ କଥା ଦେଲେ ବହିଟିର କଳେବର ବୃଦ୍ଧି ପାଇବ ।" ନିର୍ଦ୍ଦେଶକଙ୍କ କଥା ଶୁଣି ମନ୍ତ୍ରୀ ମହୋଦୟ କିଛି କହିଲେ ନାହିଁ ।

ଏଇ ଅବସରରେ ନିର୍ଦ୍ଦେଶକ କର ପୁଣି ଆରମ୍ଭ କଲେ, "ଆଜ୍ଞା ! ମାଧ୍ୟମିକ ଶିକ୍ଷା ପରିଷଦ ପରି ସରକାର ମୋତେ ବିଷୟ ବିଶେଷଜ୍ଞ ଦେଇ ନାହାଁନ୍ତି । ଏ ବ୍ରହ୍ମାବାବୁ ମ୍ଧ୍ୟ ଏସବୁ କାମକରିବା ନିମନ୍ତେ ନିର୍ଦ୍ଦେଶାଳୟରେ ଅବସ୍ଥାପିତ ହୋଇ ନାହାଁନ୍ତି । ସେ ହେଉଛନ୍ତି ଜଣେ ଶିକ୍ଷା ବିଭାଗର ଅଧ୍ୟାପକ । ମୁଁ କେବଳ ତାଙ୍କ ଜ୍ଞାନ ଦେଖି ଏ ପାଠ୍ୟପୁସ୍ତକ କାମଗୁଡ଼ିକୁ ତାଙ୍କ ଦ୍ୱାରା ଚଲାଇ ନେଉଛି ।"

ନିର୍ଦ୍ଦେଶକଙ୍କ କଥା ଶୁଣି ମନ୍ତ୍ରୀମହୋଦୟ ମୋ ଆଡ଼କୁ ଚାହିଁଲେ । ଟିକିଏ ହସି ଆମକୁ ଚା' ଦେବା ପାଇଁ ତାଙ୍କ ଦପ୍ତରର ଲୋକଙ୍କୁ କହିଲେ ।

ମନ୍ତ୍ରୀ, ନିର୍ଦ୍ଦେଶକ ଓ ମୁଁ ଏକତ୍ର ଚା' ପାନ କଲୁ । ସେଠାରୁ ବିଦାୟ ନେଲାବେଳେ ମୁଁ ଯାହା ଭାବୁଥିଲି, ତାହା ସଂପୂର୍ଣ୍ଣ ଓଲଟା ହେଲା । ନିର୍ଦ୍ଦେଶକଙ୍କ ଯୋଗୁଁ ସମୁଦାୟ ଘଟଣାକ୍ରମ ଆମ ସପକ୍ଷରେ ଗଲା ।

ଏସବୁ ଘଟଣାର କିଛିଦିନ ପରେ ସରକାରଙ୍କଠାରୁ ନେଇଥିବା ଅଧ୍ୟୟନ ଛୁଟି (Study Leave) ସମାପ୍ତ ହେବା ପରେ ଅଧ୍ୟାପକ ନିରଞ୍ଜନ ଜେନା ଯୋଗଦାନ କଲେ । ତାଙ୍କୁ ସଙ୍ଗେ ସଙ୍ଗେ ନିର୍ଦ୍ଦେଶାଳୟ ତରଫରୁ କୌଣସି କାମ ଦିଆଗଲା ନାହିଁ । ସିଏ ମୋର ପୂର୍ବ ପରିଚିତ ବନ୍ଧୁ ଥିବା ହେତୁ ଆସି ମୋ ପାଖରେ ତୃତୀୟ ମହଲାରେ ବସିଲେ । ସେଇ ସମୟରେ ନିର୍ଦ୍ଦେଶକ କର ସବାତଳ ମହଲାରେ ବସୁଥିଲେ । ତାଙ୍କ କାର୍ଯ୍ୟାଳୟର ଝରକା ମଧ୍ୟ ଖୋଲା ରହୁଥିଲା । ଦିନେ ଅପରାହ୍ଣରେ ଅଧ୍ୟାପକ ଜେନା କାର୍ଯ୍ୟାଳୟ ମଧ୍ୟକୁ ପ୍ରବେଶ କରୁଥିବା ନିର୍ଦ୍ଦେଶକ କରଙ୍କ ନଜର ପଡ଼ିଲା । ସେ ସଙ୍ଗେ ସଙ୍ଗେ ତାଙ୍କୁ ଡାକି ପଚାରିଲେ ଯେ ସେ କି କାମ କରୁଛନ୍ତି । ତାଙ୍କୁ କୌଣସି କାମ ଦିଆ ଯାଇନାହିଁ କହିବାରୁ ସେ ତତ୍‌କ୍ଷଣାତ୍ କହିଲେ, "ମୁଁ ଲକ୍ଷ୍ୟ କରୁଛି ବ୍ରହ୍ମାବାବୁଙ୍କ ଉପରେ ଅଧିକ କାର୍ଯ୍ୟ ଚାପ ପଡୁଅଛି । ତେଣୁ ତୁମେ ଶୀଘ୍ର ପାଠ୍ୟକ୍ରମ ଦାୟିତ୍ୱ ବ୍ରହ୍ମାବାବୁଙ୍କଠାରୁ ନେଇ ଦାୟିତ୍ୱ ନେଲ ବୋଲି ଆଜି ମୋତେ ଜଣାଅ ।" ସଙ୍ଗେ ସଙ୍ଗେ ଜେନାବାବୁ ଆସି ମୋତେ କହିଲେ, "ବ୍ରହ୍ମାବାବୁ ! ମୋତେ ନିର୍ଦ୍ଦେଶକ କହିଛନ୍ତି ଆପଣଙ୍କଠାରୁ ଶୀଘ୍ର ପାଠ୍ୟକ୍ରମ ବିଭାଗର ଦାୟିତ୍ୱ ନେଇ ତାଙ୍କୁ ଜଣାଇବା ପାଇଁ । ତେଣୁ ଆପଣ ଶୀଘ୍ର ପାଠ୍ୟକ୍ରମ ବିଭାଗର ସମସ୍ତ ବହି, ଫାଇଲପତ୍ର ଆଦିର ଦାୟିତ୍ୱ ଦେଇ ଦିଅନ୍ତୁ ।"

ସାଧାରଣତଃ ଜଣକୁ ଗୋଟିଏ ବିଭାଗର ଦାୟିତ୍ୱ ଦିଆଗଲାବେଳେ ନିର୍ଦ୍ଦେଶାଳୟ ତରଫରୁ ଏକ ବିଜ୍ଞପ୍ତି ବାହାରିଥାଏ । ଏ କ୍ଷେତ୍ରରେ ତାହା ଲାଗୁ ହେଲା ନାହିଁ ବା ଏ ବିଷୟରେ କେହି ନିର୍ଦ୍ଦେଶକଙ୍କୁ କିଛି କହିଲେ ନାହିଁ । ତେଣୁ ମୁଁ ଜେନାବାବୁଙ୍କ କଥା ଅନୁସାରେ "ମଲୁ ଖୋଜୁଥିଲା ଯାହା, ବଇଦ କହିଲା ତାହା" ନ୍ୟାୟରେ ପାଠ୍ୟକ୍ରମ ବିଭାଗର ସମସ୍ତ ଦାୟିତ୍ୱ ତାଙ୍କୁ ବିନା ଦ୍ୱିଧାରେ ଦେଇ ଆତ୍ମସନ୍ତୋଷ ଲାଭ କଲି ।

ଏ ଘଟଣାର କିଛିଦିନ ପରେ ପାଠ୍ୟପୁସ୍ତକ ମୁଦ୍ରଣାଳୟର ନିର୍ଦ୍ଦେଶକ ଶ୍ରୀଯୁକ୍ତ ନିରଞ୍ଜନ ମହାପାତ୍ର ପାଠ୍ୟପୁସ୍ତକ ସଂପର୍କିତ କେତେକ ବିଷୟରେ ଆଲୋଚନା କରିବା ନିମନ୍ତେ ଗବେଷଣା ପରିଷଦର ଦୁଇଜଣ ଅଧିକାରୀଙ୍କୁ ପଠାଇବାକୁ ନିର୍ଦ୍ଦେଶକଙ୍କୁ ଚିଠି କଲେ । ସେ କେଉଁ ବିଷୟରେ ଆଲୋଚନା କରିବେ, ତାହା ମଧ୍ୟ କହି ନ ଥିଲେ । ପୂର୍ବରୁ ଏଇ କାମରେ ମୁଁ ନିୟୋଜିତ ଥିବା ହେତୁ ଅଧ୍ୟାପକ ନିରଞ୍ଜନ ଜେନାଙ୍କ ସହ ଭୁବନେଶ୍ୱରସ୍ଥିତ ପାଠ୍ୟପୁସ୍ତକ ମୁଦ୍ରଣାଳୟର କାର୍ଯ୍ୟାଳୟରେ ନିର୍ଦ୍ଦେଶକଙ୍କୁ ଭେଟିଲୁ । ସେତେବେଳେ 'ପାଠ୍ୟପୁସ୍ତକରେ ତ୍ରୁଟି' ଶୀର୍ଷକ କେତେକ ଅଭିଯୋଗ ବିଭିନ୍ନ ସମ୍ବାଦପତ୍ରରେ 'ସଂପାଦକଙ୍କୁ ଚିଠି' ସ୍ତମ୍ଭରେ ପ୍ରକାଶ କରାଯାଇଥିଲା । ଏପରିକି ଯାହା

ତ୍ରୁଟିଯୁକ୍ତ ନୁହେଁ ତାହା ମଧ୍ୟ କେତେକ ବ୍ୟକ୍ତି ମଧ୍ୟ ଲେଖି ପ୍ରକାଶ କରୁଥିଲେ । ଆମର ଧାରଣା ଥିଲା ନିର୍ଦ୍ଦେଶକ ଶ୍ରୀଯୁକ୍ତ ନିରଞ୍ଜନ ମହାପାତ୍ର ଏ ସଂପର୍କରେ ଉଲ୍ଲେଖ କରି କିଛି ପ୍ରତିକୂଳ ମନ୍ତବ୍ୟ ଦେବେ । ମାତ୍ର ସେଭଳି କିଛି ଘଟିଲା ନାହିଁ । ସେ ଆମ ସହିତ ଅତି ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର କଲେ । ଅତି ଯତ୍ନରେ ପ୍ରସ୍ତୁତ କଫି ମଗାଇ ପିଇବାକୁ ଦେଲେ । କଥା ପ୍ରସଙ୍ଗରେ କହିଲେ, "ସାମାଜିକ ଶିକ୍ଷା" ବହିରେ ଯେଉଁ ପ୍ରମାଦଯୁକ୍ତ କଥା ବାହାରିଲା ସେଥିପାଇଁ ପ୍ରକାରାନ୍ତରେ ମୁଁ ମଧ୍ୟ ଦାୟୀ । କାରଣ ଯେତେବେଳେ ପାଣ୍ଡୁଲିପିଟି ସରକାରୀ ସ୍ତରରେ ପାଠ୍ୟପୁସ୍ତକ ନିମନ୍ତେ ମଞ୍ଜୁରୀ ଲାଭ କଲା, ସେତେବେଳେ ସେ କମିଟିରେ ମୁଁ ମଧ୍ୟ ଥିଲି । ମୋର ମଧ୍ୟ ପାଣ୍ଡୁଲିପିଟିକୁ ପଢ଼ିବାର ଥିଲା ।"

ଏହି ସମୟରେ ପାଠ୍ୟପୁସ୍ତକ ପ୍ରକାଶନ ସଂସ୍ଥାର ଜନୈକ ଉପନିର୍ଦ୍ଦେଶକ ମିଶ୍ରବାବୁ ସେ ପ୍ରକୋଷ୍ଠକୁ ପ୍ରବେଶ କଲେ । ସେ ପାଣ୍ଡୁଲିପିଟି ଟାଇପ୍ ହେଲା ପରେ ଚୂଡ଼ାନ୍ତ ବହିର ରୂପରେଖ ନେଇ ଆମ୍ଭମାନଙ୍କ ପାଖରେ ପହଞ୍ଚାଇ ଦେଉଥିଲେ । ଆବଶ୍ୟକ ସଂଶୋଧନ ସରିଗଲେ ସେଇ ଚୂଡ଼ାନ୍ତ ମୁଦ୍ରିତ ବହିର ପୃଷ୍ଠାଗୁଡ଼ିକୁ ମୁଦ୍ରଣାଳୟକୁ ନେଇ ଆସୁଥିଲେ । ସଂପୃକ୍ତ ପାଠ୍ୟ ପୁସ୍ତକ ଛପା ଯାଉଥିଲା ।

ମିଶ୍ରବାବୁଙ୍କୁ ନିର୍ଦ୍ଦେଶକ ମହାପାତ୍ର ଦେଖିଲା ମାତ୍ରେ କହିଲେ, "ମିଶ୍ରବାବୁ ! ଟିକିଏ ଦେଖିବେ । ଆମ୍ଭେମାନେ ପୂର୍ବ ବହି ପାଇଁ ବିଶେଷ ନିନ୍ଦିତ ହୋଇଅଛେ । ଏଥରକ ଯେମିତି ସେସବୁ କିଛି ନ ଘଟେ ।"

ମିଶ୍ରବାବୁ ସଙ୍ଗେ ସଙ୍ଗେ କହିଲେ, "ସେତେବେଳେ ସେ ସବୁ ଭୁଲ ଏସ୍.ସି.ଇ.ଆର୍.ଟି କରିଥିଲା । ଆମେ କୌଣସି ଭୁଲ କରିନାହୁଁ ।"

ତାଙ୍କ ମନ୍ତବ୍ୟ ଶୁଣି ନିର୍ଦ୍ଦେଶକ ମହାପାତ୍ର ଆମ ଉପସ୍ଥିତିରେ ମିଶ୍ରବାବୁଙ୍କ ଉପରେ ଭୀଷଣ ବିରକ୍ତି ପ୍ରକାଶ କରି କହିଲେ, "ଆପଣ କ'ଣ କହୁଛନ୍ତି ? ଯଦି ଏସ୍.ସି.ଇ.ଆର୍.ଟି ଦ୍ୱାରା ନିଯୁକ୍ତ ଲେଖକ ଲେଖିବେ ଯେ ଆଧୁନିକ ଯୁଗରମଣିଷ ଆଦିମ ମଣିଷ ଭଳି ଉଲଗ୍ନ ରହୁଛନ୍ତି, ତେବେ ତାହା ଆପଣ ଛପାଇ ଦେବେ ?'

ମିଶ୍ରବାବୁ ନୀରବ ରହିଲେ । ଏହାପରେ ପରେ ଆମର ଆଲୋଚନା ସେଇଠାରେ ହିଁ ଶେଷ ହେଲା । ଆମେ ପାଠ୍ୟପୁସ୍ତକ ମୁଦ୍ରଣାଳୟ ଛାଡ଼ି ଆମ କାର୍ଯ୍ୟାଳୟକୁ ଫେରି ଆସିଲୁ ।

## ପାଠ୍ୟପୁସ୍ତକ ଲେଖକ ହେବାର ସୌଭାଗ୍ୟ

ଗବେଷଣା ପରିଷଦରେ ପାଠ୍ୟ ପୁସ୍ତକ କାର୍ଯ୍ୟ କରୁ କରୁ ଯେ ମୋତେ ପାଠ୍ୟପୁସ୍ତକ ଲେଖକ ହେବାର ସୌଭାଗ୍ୟ ମିଳିବ, ସେ କଥା ମୁଁ କେବେ କଳ୍ପନା କରି ନ ଥିଲି । କେଉଁ ଶ୍ରେଣୀର କେଉଁ ବହି ପାଇଁ କିଏ ଲେଖକ ହେବେ, ତାହା ନିର୍ଦ୍ଦେଶକ ନିଜେ ସ୍ଥିର କରୁଥିଲେ । ନିର୍ଦ୍ଦେଶକ କର ଜଣେ ସ୍ୱାଧୀନଚେତା ମଣିଷ ଓ ତାଙ୍କର ସ୍ୱତନ୍ତ୍ର ଅନୁଧ୍ୟାନ ଥାଏ । ସେ ନିଜେ ଲେଖକମାନଙ୍କ ସଂପର୍କରେ ଆଲୋଚନା କରି ଚୟନ କରୁଥିଲେ । ଯଦି କୌଣସି ଫାଇଲ ପାଠ୍ୟକ୍ରମ ବିଭାଗର ସହକାରୀ ନିର୍ଦ୍ଦେଶକ ନିରଞ୍ଜନ ଜେନା ଦେଉଥିଲେ, ତାହା ସେ ନିଜେ ତର୍ଜମା କରୁଥିଲେ ଓ ନିଷ୍ପତ୍ତି ନେଉଥିଲେ ।

ଚତୁର୍ଥ ଶ୍ରେଣୀ ସାହିତ୍ୟ ବହିର ଲେଖକ ଫାଇଲ୍ ନିର୍ଦ୍ଦେଶକଙ୍କ ଅନୁମୋଦନ ଲାଭ କଲାବେଳେ ସେ ନିଜେ ମୋ ନାମ ସେଥିରେ ଜଣେ ଲେଖକ ହିସାବରେ ଭର୍ତ୍ତି କରିଥିଲେ । ମୋ ନାମ ଭର୍ତ୍ତି କଲାବେଳେ ଉପସ୍ଥିତ କର୍ମଚାରୀମାନଙ୍କୁ ସେ କହିଥିଲେ, "ବ୍ରହ୍ମାବାବୁଙ୍କ ଲେଖାର ଶୈଳୀ ଖୁବ୍ ଭଲ ଓ ଶିଶୁ ଉପଯୋଗୀ । ତାଙ୍କୁ ଲେଖକ ହେବାର ସୁଯୋଗ ଦିଆଯାଉ ।"

ମୋର ଓଡ଼ିଆରେ ଏମ୍.ଏ ନ ଥିଲା କିମ୍ବା ସ୍ନାତକ ସ୍ତରରେ ମଧ୍ୟ ଓଡ଼ିଆ ଇଚ୍ଛାଧୀନ ବିଷୟ ନ ଥିଲା । ଏ କଥା ନିର୍ଦ୍ଦେଶକ ଭଲଭାବେ ଜାଣିଥିଲେ ମଧ୍ୟ ମୋତେ ଯେଉଁ ନିଯୁକ୍ତି ଦେଲେ ତାହା ପରବର୍ତ୍ତୀ ସମୟରେ ମୋ ପାଇଁ ବରଦାନ ସ୍ୱରୂପ ହେଲା । କାରଣ ଚତୁର୍ଥ ଶ୍ରେଣୀ "ଆମ ଭାଷା ଆମ ସାହିତ୍ୟ"ରେ ଥିବା ମୋ ଗଳ୍ପ "ସାର୍ ଜନଙ୍କ ପ୍ରିୟ ସାଥୀ ଡ଼ିକ୍" ସେତେବେଳେ ରାଜ୍ୟର ପ୍ରାଥମିକ ଶିକ୍ଷକ, ଅଭିଭାବକ, ଛାତ୍ରଛାତ୍ରୀ ଓ ଗଣମାଧ୍ୟମର ପ୍ରତିନିଧିମାନଙ୍କ ଦ୍ୱାରା ବିଶେଷ ଆଦୃତ ହେଲା । ଏ ଲେଖା ସଂପର୍କରେ ସେ ସମୟରେ 'ଧରିତ୍ରୀ'ର ସହ ସଂପାଦକ ଜଗତଜ୍ୟୋତି ମାଝି ମୋର ଏକ ସାକ୍ଷାତକାର ନେଇଥିଲେ ଓ ଦୈନିକ ଧରିତ୍ରୀରେ ୧୯୯୨ ମସିହା ଫେବୃୟାରୀ ମାସ ୧୫ ତାରିଖ ଶନିବାର ଦିନ ପ୍ରକାଶ କରିଥିଲେ ।

ଏଇ ବହିଟିର ସମୀକ୍ଷକ ଥିଲେ ପ୍ରଫେସର ବୈଷ୍ଣବ ଚରଣ ସାମଲ । ଅନ୍ୟ ଲେଖକମାନଙ୍କ ମଧ୍ୟରେ ଥିଲେ ଭଗବାନ ମହାନ୍ତି ଓ ମଙ୍ଗୁଲୁ ଚରଣ ବିଶ୍ୱାଳ । ନିଯୁକ୍ତ ଲେଖକମାନେ ରାଜ୍ୟର ବିଶିଷ୍ଟ ଲେଖକମାନଙ୍କର ଲେଖା ମଧ୍ୟ ଚୟନ କରିଥିଲେ । ସେ ସବୁ ବିଭିନ୍ନ ଅଧିବେଶନରେ ପଢ଼ାଗଲା । ଆବଶ୍ୟକସ୍ଥଳେ ସଂଶୋଧନ କରାଗଲା । ମୁଁ ଲେଖିଥିବା "ସାର୍ ଜନଙ୍କ ପ୍ରିୟ ସାଥୀ ଡ଼ିକ୍" ବିଷୟଟିକୁ ପଢ଼ିଥିଲି । କେତେକ ସହ ଲେଖକ ସେ ଲେଖା ସଂପର୍କରେ କେତେକ ଆପତ୍ତି ଉଠାଇଲେ । ସେପରି ଆପତ୍ତି ହେବାରୁ ଲେଖାଟିକୁ ପାଣ୍ଡୁଲିପିରୁ ବାଦ୍ ଦେବାକୁ ମୁଁ ସମୀକ୍ଷକଙ୍କୁ କହିଲି । ମାତ୍ର

ସମୀକ୍ଷକ ପ୍ରଫେସର ସାମଲ କହିଲେ, "ଲେଖାଟିକୁ ବାଦ ଦେବାର କୌଣସି କାରଣ ମୁଁ ଦେଖୁନାହିଁ । ତେଣୁ ସେ ଲେଖାଟି ରହିବ ।" ପ୍ରଫେସର ସାମଲଙ୍କ ନିଷ୍ପତ୍ତି ଶୁଣି ଅନ୍ୟମାନେ ନୀରବ ରହିଲେ । ସେଇଦିନଠାରୁ ୧ ୯ ୯ ୧ ମସିହାରୁ ସାର୍ ଜନଙ୍କ ପ୍ରିୟ ସାଥୀ ଡିକ୍ ଏ ପର୍ଯ୍ୟନ୍ତ ଚତୁର୍ଥ ଶ୍ରେଣୀ ସାହିତ୍ୟ ବହିରେ ସ୍ଥାନ ପାଇଆସୁଅଛି । କେବଳ ବହିଟିର ନାମ ବଦଳି "ସାହିତ୍ୟ କଳିକା" ହୋଇଅଛି । ସାର୍ ଜନଙ୍କ ସ୍ଥାନରେ ବିଷୟଟିର ଶୀର୍ଷକ "**ଜନଙ୍କ ପ୍ରିୟ ସାଥୀ ଡିକ୍**" ରଖାଯାଇଛି ।

'ସାର୍' ଶବ୍ଦ ସଂପର୍କରେ ସାହିତ୍ୟ କଳିକାର ସଂପାଦନା ମଣ୍ଡଳୀ ବୋଧହୁଏ ଅନୁଭବ କଲେ ଯେ ଏହା ଏକ ଇଂରାଜୀ ଶବ୍ଦ । ମାତ୍ର ଏଇ ଶବ୍ଦକୁ ଆମର ଓଡ଼ିଆ ଅଭିଧାନ ଗ୍ରହଣ କରି ନେଇଛନ୍ତି । ପୁନଶ୍ଚ ଦୀର୍ଘଦିନ ତଳର ଜଣେ ଲେଖକଙ୍କର ଲେଖାର ଶୀର୍ଷକ ବଦଳାଇବା ଅଧିକାର ସଂପାଦନା ମଣ୍ଡଳୀର କାର୍ଯ୍ୟଧାରାର ମାନସିକତା ପ୍ରକାଶ କରୁଅଛି ।

ଚତୁର୍ଥ ଶ୍ରେଣୀ ସାହିତ୍ୟ ବହି "ଆମ ଭାଷା ଓ ଆମ ସାହିତ୍ୟ"ରେ ସ୍ଥାନିତ ହେବା ପାଇଁ ମୁଁ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ 'ରାଜା କିଏ ହେବ' ଗଳ୍ପ ସହିତ ପଲ୍ଲୀକବି ନନ୍ଦକିଶୋର ବଳଙ୍କ 'ଗଛ ଓ କାଠୁରିଆ' କବିତା, ଡକ୍ଟର ଭ୍ରମରବର ସାମଲଙ୍କ ପ୍ରବନ୍ଧ ବୈଜ୍ଞାନିକ ମେଘନାଦ ଶାହ ଓ ଡକ୍ଟର ସୁଧାକର କରଙ୍କ ଭିତରକନିକା ସ୍ଥାନ ପାଇବା ପାଇଁ ବାଛିଥିଲି । ଲେଖକମଣ୍ଡଳୀ ଦ୍ୱାରା ଏହିସବୁ ଲେଖା ମନୋନୀତ ହୋଇଥିଲା ।

ଆମେ ପାଠ୍ୟପୁସ୍ତକ ବିଭାଗରେ କାମ କଲାବେଳେ ପାଠ୍ୟପୁସ୍ତକର ତ୍ରୁଟି ଦର୍ଶାଇ ଅନେକ ଶିକ୍ଷକ ଓ ବ୍ୟକ୍ତିବିଶେଷ ନିର୍ଦ୍ଦେଶକଙ୍କ ପାଖକୁ ଚିଠି ଦେଉଥିଲେ । ସେମାନଙ୍କ ମଧ୍ୟରୁ ଖୁବ୍ କମ୍ ଥିଲେ ଯେଉଁମାନଙ୍କ ଅଭିଯୋଗର ଯଥାର୍ଥତା ଥିଲା । କିନ୍ତୁ ଅଧିକାଂଶଙ୍କ ଲେଖାରେ 'ପାଠ୍ୟ ପୁସ୍ତକରେ ତ୍ରୁଟି' ଲେଖିବାକୁ ଯାଇ ତ୍ରୁଟି ବନାନଟିକୁ ଭୁଲ କରି 'ତୃଟି' ଲେଖୁଥିଲେ । ଗୋଟିଏ ଗୋଟିଏ ଅଭିଯୋଗ ଫର୍ଦ୍ଦରେ ପ୍ରାୟ ଦଶ ପନ୍ଦରଟି ବନାନ ଭୁଲ ଥିଲା । ସେହିପରି ଜନୈକ ଡି.ଆଇ ଭଗବାନ ସାହୁ ଯେଉଁ ଶିକ୍ଷା ଜିଲ୍ଲାକୁ ଗଲେ ସେଠାରେ ପ୍ରାଥମିକ ଶିକ୍ଷକ ସମ୍ମିଳନୀରେ ମୋ ଲିଖିତ 'ସାର୍ ଜନଙ୍କ ପ୍ରିୟ ସାଥୀ ଡିକ୍' ଏକ ଭୁଲ ବିଷୟ ବୋଲି ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଧାରଣା ଦେଲେ । ଏଥିରେ ଥିବା ବିଲାତ ଶବ୍ଦ ମଧ୍ୟ ଭୁଲ ବୋଲି କହିଲେ । ଏପରି ଅଭିଯୋଗ ନିରାଧାର ଥିଲା ।

ପାଠ୍ୟପୁସ୍ତକରେ ପ୍ରକାଶିତ ଗୋଟିଏ ଗଳ୍ପ, ସାର୍ ଜନଙ୍କ ପ୍ରିୟ ସାଥୀ ଡ଼ିକ୍

କିପରି ଜନମାନସରେ ମୋତେ ପହଞ୍ଚାଇ ଦେଇ ପାରିଥିଲା, ତା'ର ପ୍ରତ୍ୟର୍ପଣ (feed-back) ମୁଁ ଦୀର୍ଘ ଦିନ ଧରି ପାଇ ଆସିଅଛି । ଥରେ ଶ୍ରୀଯୁକ୍ତ କରଙ୍କ ପରବର୍ତ୍ତୀ ନିର୍ଦ୍ଦେଶକ ପ୍ରଫେସର କାଳିକୁମାର ଦାସଙ୍କ ସହିତ ମୁଁ ବାଲେଶ୍ୱର ଜିଲ୍ଲାସ୍ଥ ଚନ୍ଦନେଶ୍ୱରସ୍ଥିତ ଏକ ପ୍ରାଥମିକ ଶିକ୍ଷକ ସମ୍ମିଳନୀରେ ଯୋଗଦାନ କରିଥିଲି । ସେଇ ସମ୍ମିଳନୀ କାର୍ଯ୍ୟକ୍ରମ ଚାଲିଥିଲାବେଳେ ନିର୍ଦ୍ଦେଶକଙ୍କୁ କେତେକ ପ୍ରବୀଣ ପ୍ରାଥମିକ ଶିକ୍ଷକ କହିଲେ, "ସାର୍‌ଜନଙ୍କ ପ୍ରିୟସାଥୀ ଡିକ୍"ର ଲେଖକ ଡକ୍ଟର ଦିଗରାଜ ବ୍ରହ୍ମା ଉପସ୍ଥିତ ଥିବା ହେତୁ ଆମେ ତାଙ୍କଠାରୁ ସେ ବିଷୟ ସହିତ ତାଙ୍କ ବିଲାତ ଅନୁଭୂତି ସଂପର୍କରେ କିଛି ଶୁଣିବାକୁ ଚାହୁଁଛୁ । ସେ ଚାଲିଗଲେ ଏ ସୁଯୋଗ ଆମେ ସହଜରେ ପାଇ ପାରିବୁ ନାହିଁ ।"

ମୋ ସାନପୁଅ ଶ୍ରୀମାନ୍ କାନ୍ତିପ୍ରକାଶ ବ୍ରହ୍ମା ୨୦୦୯ ମସିହାରେ ଭୁବନେଶ୍ୱରସ୍ଥ ଜାଭିଅର୍ ଇନିଷ୍ଟିଚ୍ୟୁଟ୍ ଅଫ ମ୍ୟାନେଜମେଣ୍ଟ (XIMB)ରେ ପଢୁଥିଲାବେଳେ ମୋତେ କହିଥିଲା, "ଆମ ପିଲା କିଛି ଆଲୋଚନା କରୁଥିଲେ । ସେଠାରେ ମୁଁ ପହଞ୍ଚିଲି । ସେମାନେ ପ୍ରାଥମିକ ସ୍ତରରେ ପଢ଼ିଥିବା "ସାର୍ ଜନଙ୍କ ପ୍ରିୟସାଥୀ ଡିକ୍" ବିଷୟରେ ଆଲୋଚନା କରୁଥିଲେ । ସେ ଗପଟି ଖୁବ୍ ଭଲ ଓ ପ୍ରେରଣାଦାୟକ ଥିଲା ବୋଲି ସେମାନଙ୍କର ମତ ଥିଲା ।"

ଶ୍ରୀମାନ୍ କାନ୍ତିପ୍ରକାଶଠାରୁ ଉପରୋକ୍ତ ତଥ୍ୟ ପାଇ ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ସାଧାରଣତଃ ଶିକ୍ଷାର ଅତି ଉଚ୍ଚସ୍ତରର ପିଲାମାନେ ଯେ ପ୍ରାଥମିକ ଶିକ୍ଷାରେ ସାହିତ୍ୟ ବହିରେ ପଢ଼ିଥିବା ଜଣେ ସାଧାରଣ ଲେଖକଙ୍କ ଗଳ୍ପ ଓ କବିତା ସଂପର୍କରେ ଆଲୋଚନା କରନ୍ତି, ସେ ଧାରଣା ମୋର ପୂର୍ବରୁ ନ ଥିଲା ।

ଏ ସଂପର୍କରେ ଆଉ ଗୋଟିଏ ଦୁଇଟି ଅନୁଭୂତି ବର୍ଣ୍ଣନା କରିବା ସମୀଚୀନ ହେବ ।

ଥରେ ଜିଲ୍ଲା ପ୍ରାଥମିକ ଶିକ୍ଷା ପ୍ରକଳ୍ପ (DPEP)ର ଏକ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ମୁଁ ବଲାଙ୍ଗୀରର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ଯାଇଥାଏ । ସେଇ କାର୍ଯ୍ୟକ୍ରମଟି ଚାଲିଥିବା ବେଳେ 'ପୁଷ୍ ପୁନେଇଁ' ପର୍ବ ପଡ଼ିଲା । ଏଇ ପର୍ବ ହେଉଛି ପଶ୍ଚିମାଞ୍ଚଳର ଏକ ପ୍ରଖ୍ୟାତ ପର୍ବ । ମୁଁ ସମ୍ବଲପୁରରେ ଥିଲାବେଳେ 'ପୁଷ୍ ପୁନେଇଁ' ପର୍ବ ଉପଲକ୍ଷେ ଅନେକଙ୍କ ଆତିଥ୍ୟ ଗ୍ରହଣ କରିଥିଲି । ପୁଷ୍ ପୁନେଇଁ ଦିନ ସ୍ଥିର ହେଲା ଯେ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପର୍ବ ହେତୁ ସକାଳେ ହେବ । ମୁଁ ଓ ମୋ ସହିତ ଯାଇଥିବା ଡ୍ରାଇଭର ଜଣକ ଆମର ଖାଦ୍ୟ ଗଣ୍ଡାକ ପାଇଁ ହୋଟେଲ ଉପରେ ନିର୍ଭର କରୁଥିଲୁ ।

ପୁଷ୍ ପୁନେଇଁ ପର୍ବର ପୂର୍ବଦିନ ମୋତେ ବଲାଙ୍ଗୀର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ଉତ୍ତମ କୁମାର ଜେନା ପଚାରିଲେ, "ସାର୍ ! କାଲି ତ ବଲାଙ୍ଗୀର ସହରର ସମସ୍ତ ଦୋକାନ ବଜାର ବନ୍ଦ ରହିବ । ବଜାରରେ କାଉ କୋଇଲି ବି ଉଡ଼ିବେ ନାହିଁ । ଆପଣ କ'ଣ ଖାଇବେ ?" ମୁଁ ହସି ହସି କହିଲି, "ଦେଖିବା, ଯେଉଁଠି ଯାହା କିଛି ମିଳିବ ଚଳେଇ ନେବା ।"

ସେ ମୋତେ ସଙ୍ଗେ ସଙ୍ଗେ କହିଲେ, "ଆପଣ କାଲି ଆମ ଘରେ ମଧ୍ୟାହ୍ନ ଭୋଜନ କରିଦେବେ ?"

ମୁଁ କହିଲି, "ଆପଣ ସେ ପ୍ରସ୍ତାବରୁ ଓହରି ଯାଆନ୍ତୁ । ମୁଁ ଏକୁଟିଆ ନାହିଁ । ମୋ ସହିତ ଡ୍ରାଇଭର ଦେବ ଅଛି ।" ସେ ତତ୍କ୍ଷଣାତ୍ କହିଲେ, "ସେ ବି ଆମ ଘରେ ଖାଇ ଦେବ । ସେଥିପାଇଁ ଆପଣ ବ୍ୟସ୍ତ ହେବା ଦରକାର ନାହିଁ ।"

ଯାହା ହେଉ ଗୋଟିଏ ସମସ୍ୟା ଚାଲିଗଲା । ମୁଁ ଅତି ଆଗ୍ରହର ସହିତ ଉତ୍ତମବାବୁଙ୍କ ନିମନ୍ତ୍ରଣ ଗ୍ରହଣ କରିନେଲି । ପୁଷ୍ ପୁନେଇଁ ଦିନ ସକାଳୁ ସକାଳୁ ଆମର ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପ୍ରାୟ ଦିନ ଗୋଟାଏ ବେଳେ ସରିଗଲା । ଯେ ଯାହା ଘରକୁ ଗଲେ । ଉତ୍ତମବାବୁ ମଧ୍ୟ କିଛି ନ କହି ତାଙ୍କ ଘରକୁ ଗଲେ । ମୁଁ ଭାବିଲି ବୋଧେହୁଏ ଘରେ ଖାଦ୍ୟପେୟର ଆୟୋଜନ କରି ଆସି ଡ଼ାକିବେ ।

ଗୋଟାକରୁ ଦିନ ଦୁଇଟା ହେଲା । ଦୁଇଟା ଗଡ଼ି ଗଡ଼ି ତିନିଟା ହେଲା । ଅଧ୍ୟାପକ ଜେନାଙ୍କ ଆଉ ଦେଖା ସାକ୍ଷାତ୍ ମିଳିଲା ନାହିଁ । ମୁଁ କଲେଜ ବାରଣ୍ଡାରେ ଏକଡ଼ ସେକଡ଼ ପଦଚାଳନା କଲି । ଏଇ ସମୟରେ ମୋତେ ଦେବ ପଚାରିଲା, "ସାର୍ ! ଆପଣ କ'ଣ ଭାବୁଛନ୍ତି ?"

ମୁଁ କହିଲି, "ଦେବ ! ଭାବୁଛି କ'ଣ କରିବା । ଉତ୍ତମ ବାବୁଙ୍କର ଆଉ ଆସିବାର ନାହିଁ । ତୁମ ଗାଡ଼ିରେ ଯଥେଷ୍ଟ ତେଲ ଅଛି ତ ?" ଦେବ ହଁ ମାରିଲା । ମୁଁ କହିଲି ଶୀଘ୍ର ଶୀଘ୍ର କାଳ ବିଳମ୍ବ ନ କରି ଗାଡ଼ି ବାହାର କର । ଏତେ ବଡ଼ ଦୁନିଆରେ କ'ଣ ଆମକୁ ଦାନା ଗଣ୍ଡାଏ ମିଳିବ ନାହିଁ ?" ଦେବ ଗାଡ଼ି ବାହାର କଲା । ଆମେ ବଲାଙ୍ଗୀର ସହର ମଧ୍ୟକୁ ପ୍ରବେଶ କଲୁ । ଚାରିଆଡ଼େ ଶୂନ୍‌ଶାନ୍ । ଗୋଟିଏ ଦୋକାନ ଖୋଲା ନାହିଁ । ଜଣେ ହେଲେ କେହି ରାସ୍ତା ଉପରେ ଦେଖାଯାଉ ନାହାଁନ୍ତି ।

ମୁଁ ଦେବକୁ କହିଲି ରାଜପଥ ଦେଇ ଆମେ ଆଗେଇ ଆଗେଇ ଯିବା । କୌଣସି ସ୍ଥାନରେ ଯଦି ଢାବାଟିଏ ପଡ଼େ ବା କିଛି ଖାଦ୍ୟମିଳେ ତେବେ ଖାଇ ନେବା ।" ଆମେ ଆଗେଇ ଆଗେଇ ଚାଲିଲୁ । ସମସ୍ତ ଢାବା ମଧ୍ୟ ସେଦିନ ବନ୍ଦ ଥିବାର ଦେଖିଲୁ ।

କ୍ରମଶଃ ବଲାଙ୍ଗୀର ଆମଠାରୁ ଦୂରେଇ ଯାଇଥାଏ । ଲେଇସିଂହା ପାଖାପାଖି ହେବା ସମୟରେ ଦେଖିଲୁ ରାସ୍ତା କଡ଼ରେ ଥିବା ଏକ ଛୋଟକାଟିଆ ଦୋକାନ ଘରେ ଲୋକେ କିଛି ଖେଚୁଡ଼ି ଦନାରେ ନେଇ ଖାଉଛନ୍ତି । ମୁଁ ଦେବକୁ ଗାଡ଼ି ରୋକିବାକୁ କହିଲି । ଦୋକାନରୁ କିଛି ଖାଦ୍ୟ ମିଳିବ କି ନାହିଁ ବୁଝି ଆସିବାକୁ କହି ପଛ ସିଟରେ ସେମିତି ବସି ରହିଲି ।

ଦେବ ଫେରିଲା । କହିଲା, "ସାର୍ ! ମିଳିବ । ଆପଣ ଓହ୍ଲେଇ ଆସନ୍ତୁ ।"

ମୁଁ ଗଲି । ଲକ୍ଷ୍ୟ କଲି ସେଇ ଦୋକାନଟି ଜଣେ ଭଦ୍ରମହିଳା ପରିଚାଳନା କରୁଛନ୍ତି । ସେ ଟେବୁଲ ଉପରେ ଖଲିପତ୍ର ଓ ଦନା ପକାଇ ଦେଲେ । ଅଳ୍ପ ଖେଚୁଡ଼ି ଓ ଦନାରେ ଡାଲମା ଟିକେ ଦେଲେ । ତାହା ସମୁଦ୍ରକୁ ଶଙ୍ଖେ ପାଣି ଭଳି ମନେ ହେଲା । ଆଉ ଖାଇବା ପାଇଁ ସରୁ ସରୁ ଭାତ ଓ ଅନ୍ୟାନ୍ୟ ସ୍ୱାଦିଷ୍ଟ ତରକାରୀ ଓ ପିଠା ଆସିଲା । ଆମେ ମନଭରି ଖାଇଲୁ ।

ଯାହା କହିଲେ, ତଦନୁଯାୟୀ ମିଲ୍ ବାବଦରେ ତାଙ୍କ ପାଉଣା ଦେଇ ଗାଡ଼ି ପାଖକୁ ଆସିଲୁ । ଗାଡ଼ିରେ ବସୁ ନ ବସୁଣୁ ମୋ ମୁଣ୍ଡକୁ ଢୁକିଲା ଆଜି ରାତିରେ ପୁଣି ବଲାଙ୍ଗୀରରେ ଉପବାସ ରହିବାକୁ ପଡ଼ିବ । ତେଣୁ ମୁଁ ଦେବକୁ କହିଲି, "ଦେବ ଆଜି ରାତିରେ ଯଦି ଖାଇବାକୁ ମିଳିବ ତେବେ ଆମେ ପୁଣି ଏଠାକୁ ଚାଲି ଆସିବା ।"

ଦେବ ଫେରି ମୋତେ କହିଲା ଯେ, "ସେ ଭଦ୍ର ମହିଳା କହିଲେ ରାତିରେ ଏ ଦୋକାନ ଖୋଲା ରହିବ ନାହିଁ । ଯଦି ଆମେ ଖାଇବାକୁ କହିବା ତେବେ ସେ ତାଙ୍କ ଘର ଦେଖାଇ ଦେବେ । ମାଂସ ତରକାରୀ ମଧ୍ଧ କରିବେ ।"

ମୁଁ ଏ ସୁଯୋଗକୁ ହାତଛଡ଼ା ନ କରି ଦେବକୁ କହିଲି, "ତୁମେ ତାହାହିଁ କୁହ । ଆମେ ରାତି ଆଠଟା ମଧ୍ୟରେ ଏଠାରେ ଆସି ପହଞ୍ଚିବା । ତେଣୁ ସେ ରାତିରେ ଆମ ପାଇଁ ଖାଦ୍ୟ ପ୍ରସ୍ତୁତ କରିବେ ।"

ଦେବ ପୁନଶ୍ଚ ତାଙ୍କୁ ଦେଖାକଲା । ତାଙ୍କ ସହିତ ଯାଇ ତାଙ୍କ ଘର ଦେଖି ଆସିଲା । ଆମେ ବଲାଙ୍ଗୀରକୁ ଫେରି ବିଶ୍ରାମ ନେଲୁ । ସନ୍ଧ୍ୟା ସମୟରେ ମୋ ପାଖକୁ ବଲାଙ୍ଗୀର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ଡକ୍ଟର ପ୍ରେମାନନ୍ଦ ବିଶ୍ୱାଳ ଆସି ଦେଖାକଲେ । ସେ ମୋ ସହିତ ବିଭିନ୍ନ ବିଷୟରେ ଆଲୋଚନା କଲେ । ଅଧ୍ୟାପକ ବିଶ୍ୱାଳ ଜଣେ ଆଦର୍ଶ ଅଧ୍ୟାପକ । ତାଙ୍କର ଶିକ୍ଷା ସଂପର୍କୀୟ ଆଲୋଚନା ଶୁଣୁ ଶୁଣୁ ରାତି ପ୍ରାୟ ଆଠଟା ହୋଇଗଲା । ସେ ମୋଠାରୁ ବିଦାୟ ନେଲାବେଳେ କହିଲେ, "ସାର୍ ! ବସାକୁ ଯାଉଛି । ରୋଷେଇ କରିବାକୁ ପଡ଼ିବ ।"

ତାଙ୍କୁ ମୁଁ ସାଥେ ସାଥେ କହିଲି, "ବିଶ୍ୱାଳ ବାବୁ ! ରୋଷେଇ କଥା ଭୁଲି ମୋ ସହିତ ଚାଲନ୍ତୁ । ମୋ ସହିତ ଆଜି ରାତି ଭୋଜନ କରିବେ ।"

ସେ, ମୁଁ ଓ ଦେବ ବଲାଙ୍ଗୀର ସହର ଛାଡ଼ି ଲୋଇସିଂହା ପାଖ ରାସ୍ତାକଡ଼ର ସେଇ ଦୋକାନ ଘର ପାଖରେ ଆମ ଗାଡ଼ି ରଖିଲୁ । ଖୋଜି ଖୋଜି ସେହି ଭଦ୍ରମହିଳାଙ୍କ ଘର ଆଗରେ ପହଁଞ୍ଚିଲୁ ।

ଘର ଆଗରେ ଏକ ବିରାଟ ବାମ୍ପୀ ଥାଏ । ସେଇ ବାମ୍ପୀର ଚାରିକଡ଼ରେ ବସିବା ଭଳି ସ୍ଥାନ ଥାଏ । ସେଠି ଗୋଟିଏ ଦୁଇଟି ଦଉଡ଼ିଆ ଖଟ ପଡ଼ିଥାଏ । ଆମେ ସେଇ ଦଉଡ଼ିଆ ଖଟରେ ବସିଥାଉ । ଏଇ ସମୟରେ ପୁଅଝିଅ ମିଶି ଚାରି ପାଞ୍ଚଜଣ ପିଲା ଆସି ବାମ୍ପୀ ଚାରିକଡ଼ରେ ବସିପଡ଼ି ଆମକୁ ଚାହିଁଲେ । ସେମାନଙ୍କର ବେଶ ଓ ପୋଷାକ ପରିଷ୍କାର ଓ ପରିଚ୍ଛନ ଥାଏ । ସେମାନେ ଯେ ପ୍ରାଥମିକ ସ୍କୁଲରେ ବିଦ୍ୟାଧ୍ୟୟନ କରୁଛନ୍ତି ଏକଥା ମୋତେ ବୁଝିବାକୁ ଡେରି ଲାଗିଲା ନାହିଁ । ଆମକୁ ଦେଖି ସେଇ ଭଦ୍ର ମହିଳା ଜଣକ କହିଲେ, "ଆପଣମାନେ କହିବା ଅନୁସାରେ ମୁଁ ମାଂସ ତରକାରୀ କରିଛି । ଆଉ କେହି ଆସି ଏଠାରେ ଖାଇବାର ନାହଁ । ଆପଣମାନେ ଆସିବା ଡ଼େରି ହେବାରୁ ଭାବିଲି, "କହିଲେ ସିନା, ବୋଧହୁଏ ଆସିବେ ନାହିଁ ।" ଏହାକହି ସେ ଖାଦ୍ୟ ପଦାର୍ଥ ବଢ଼ାବଢ଼ି କରିବା ପାଇଁ ଆୟୋଜନ କଲେ ।

ଏଇ ଅବସରରେ ମୁଁ ତାଙ୍କ ପିଲାମାନଙ୍କୁ ସେମାନେ ପଢୁଥିବା ସ୍କୁଲ ଓ ଶ୍ରେଣୀ ସଂପର୍କରେ ପଚାରି ବୁଝିଲି । ସେମାନେ ନିକଟସ୍ଥ ପ୍ରାଥମିକ ସ୍କୁଲରେ ପଢୁଥିଲେ । ସେମାନଙ୍କ ମଧ୍ୟରୁ ସେ ଭଦ୍ରମହିଳାଙ୍କ ପୁଅଟିଏ ଚତୁର୍ଥ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇ ନବୋଦୟ ବିଦ୍ୟାଳୟରେ ପଢୁଥିଲା । ମୁଁ ନବୋଦୟରେ ପଢୁଥିବା ପିଲାଟିକୁ ସାର୍ ଜନଙ୍କ ପ୍ରିୟ ସାଥୀ ଡିକ୍ ଗଳ୍ପର ଶେଷ ଦୁଇଧାଡ଼ି "ସାର ଜନଙ୍କ ଆଖି ନାହିଁ । ଡିକ୍‌ର ସେଇ ଆଖି କ'ଣ ସାର ଜନ୍‌ଙ୍କ ଆଖି ନୁହେଁ ।" ବୁଝେଇ ଦେବାକୁ କହିଲି ।"

ପିଲାଟି ନିର୍ଭୟରେ ଅନର୍ଗଳ କହି ଚାଲିଲା । ପିଲାଟି ଅନର୍ଗଳ କହିବା ଏକ ଦକ୍ଷତା । ସେ ଦକ୍ଷତା ଜାଣିଲା ବେଳେ ପିଲାଟି ତଥ୍ୟଗତ ଭୁଲ କହିଲେ ମଧ୍ୟ ତାହା ଧର୍ତ୍ତବ୍ୟ ନୁହେଁ । ସେଇ ଦୃଷ୍ଟି କୋଣରୁ ମୁଁ ଅତି ଆଗ୍ରହରେ ସେଇ ପିଲାଟିର ବର୍ଣ୍ଣନା ଶୁଣିବାକୁ ଲାଗିଲି । ସେ କହି ଚାଲିଲା :

"ବିଲାତରେ ସାର୍ ଜନ ନାମକ ଜଣେ ଅନ୍ଧବ୍ୟକ୍ତି ଥିଲେ । ତାଙ୍କର ଡିକ୍ ନାମକ ଏକ କୁକୁର ଥିଲା । ସେଇ କୁକୁରଟି ତାଙ୍କର ଆଖି ଭଳି କାମ କରୁଥଲା । ସେ

ତାକୁ ପୋଷ୍ଟଅଫିସ୍ ଯିବାକୁ କହିଲେ ସେ ସେଠାକୁ ଯାଏ । ବ୍ୟାଙ୍କରୁ ଟଙ୍କା ଆଣିଥାଏ । ସେଇସବୁ ଟଙ୍କା ଗଣି ତାଙ୍କୁ ଦେଇଥାଏ ।”

ମାତ୍ର ବ୍ୟାଙ୍କରୁ ଟଙ୍କା ଆଣି ସାର ଜନଙ୍କୁ ଟଙ୍କା ଗଣି ଦେବାର ସାମର୍ଥ୍ୟ ଡିକ୍‌ର ନ ଥିଲା । ଏହା ମଧ୍ୟ ଗଳ୍ପଟିରେ ଉଲ୍ଲେଖ ନ ଥିଲା, ତଥାପି ପିଲାଟି ଭାବପ୍ରବଣ ହୋଇ ଏ କଥା କହୁଚି ବୋଲି ମୁଁ ଜାଣି ପାରିଲି ।

ମୁଁ ସେ ଲେଖାର ଲେଖକ ବୋଲି କହିଲି । ଏ କଥା ଶୁଣିବା ମାତ୍ରେ ସେଠାରେ ବସିଥିବା ତା’ର ବଡ଼ ଭଉଣୀ ଘର ଭିତରକୁ ଚାଲିଗଲା । ଚତୁର୍ଥ ଶ୍ରେଣୀର “ଆମ ଭାଷା ଆମ ସାହିତ୍ୟ” ବହିର ଷଷ୍ଠପୃଷ୍ଠା ଖୋଲି ମୋ ନାମ ଦେଖିଲା । ମୁଁ କହୁଥିବା ନାମ ସହିତ ବହିରେ ମୁଦ୍ରିତ ନାମ ସମାନ ଥିବାରୁ ସେମାନେ ମୋତେ ଲେଖକ ହିସାବରେ ମାନିଲେ । ପୁଣି ଆସି ମୋ ସହିତ କଥାବାର୍ତ୍ତା ହେଲେ ।

କିଛି ସମୟ ପରେ ତା’ର ମାଆ ଖାଦ୍ୟ ପଦାର୍ଥ ବାଢ଼ି ଦେଲେ । ଖାଦ୍ୟ ପ୍ରସ୍ତୁତି ଅତୀବ ସ୍ୱାଦିଷ୍ଟ ଥିଲା । ଆମେ ଖାଇ ସାରିବା ପରେ ସେ କିଛିକ୍ଷଣ ଅପେକ୍ଷା କରିବାକୁ କହିଲେ ଓ ଘର ଭିତରକୁ ଚାଲିଗଲେ । କାକରା ପିଠା ଆଣି ଦେବାକୁ ଉଦ୍ୟତ ହେଲେ । ମୁଁ କହିଲି, “ଆଉ ଖାଇବାକୁ ଇଚ୍ଛା ନାହିଁ ।”

ସେ ଭଦ୍ର ମହିଳା କ’ଣ ଭାବିଲେ କେଜାଣି କହିଲେ, “ଆଜି ଆମର ପର୍ବ ଦିନ । ଆପଣ ଖାଆନ୍ତୁ, ଏଥିପାଇଁ କୌଣସି ପଇସାପତ୍ର ଆପଣଙ୍କଠାରୁ ଦାବି କରିବି ନାହିଁ ।”

ମୁଁ ତାଙ୍କ କଥା ଶୁଣି ହସିଲି । ସେ ଜବରଦସ୍ତ ଦୁଇଚାରିଟା ଗୁଆଘିଅରେ ଛଣା କାକରା ପିଠା ଦେଲେ ।

ମୁଁ ଖାଇଲାବେଳେ ମୋର ସ୍ୱର୍ଗବାସୀ ବୋଉର କଥା ମନେ ପଡ଼ିଲା । ସେ ପିଲାବେଳେ ଆମକୁ ମଝିରେ ମଝିରେ ପୁରଦିଆ କାକରା ପିଠା ଗୁଆ ଘିଅରେ ଛାଣି ଖାଇବାକୁ ଦେଉଥିଲା ।

ସେ ସ୍ଥାନ ଛାଡ଼ିଲାବେଳେ ମୁଁ ସେ ପରିବାର ସଂପର୍କରେ କିଛି ତଥ୍ୟ ଜାଣିବାର ସୁଯୋଗ ଲାଭ କଲି । ପରିବାରର ମୁଖ୍ୟ ନିକଟସ୍ଥ ଏକ ରାଇସ ମିଲ୍ (Rice Mill)ରେ ମ୍ୟାନେଜର ହିସାବରେ କାମ କରନ୍ତି । ପରିବାରଟିର ଚଳଣି ମଧ୍ୟମ ଧରଣର । କୋଠାଘର ଅଛି । ପିଲାମାନଙ୍କୁ ଯୋଗ୍ୟ କରିବା ନିମନ୍ତେ ଭବିଷ୍ୟତରେ ଅର୍ଥର ଆବଶ୍ୟକତା ଅଛି । ତେଣୁ ଅର୍ଥର ବିଶେଷ ଆବଶ୍ୟକତାକୁ ଆଖି ଆଗରେ ରଖି ଭଦ୍ର ମହିଳା ଜଣକ ଘର ପାଖରେ ଛୋଟ ଦୋକାନଟିଏ କରିଛନ୍ତି । ମହିଳା ସଶକ୍ତୀକରଣର ସେ ଥିଲେ ଏକ ଆଦର୍ଶ ନମୁନା ।

ଯଦି ସେଦିନ ଅଧ୍ୟାପକ ଜେନା ମୋତେ ତାଙ୍କର ଅଯାଚିତ ନିମନ୍ତ୍ରଣ ରକ୍ଷା କରିବାକୁ ତାଙ୍କ ଘରକୁ ଡାକି ନେଇଥାନ୍ତେ, ତେବେ ମୁଁ, ମୋ ସହିତ ଥିବା ଅଧ୍ୟାପକ ପ୍ରେମାନନ୍ଦ ବିଶ୍ୱାଳ ଓ ଦେବ ଏପରି ଏକ ନୂତନ ଅନୁଭୂତି ପାଇ ନ ଥାନ୍ତୁ ।

ପାଠ୍ୟ ପୁସ୍ତକ ଲେଖକ ହିସାବରେ ମୁଁ କେବଳ ରାଜ୍ୟ ସରକାରଙ୍କ ଚତୁର୍ଥ ଶ୍ରେଣୀର ସାହିତ୍ୟ ବହି ମଧ୍ୟରେ ସୀମାବଦ୍ଧ ନ ଥିଲି । ସେତେବେଳେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ବୃତ୍ତିଗତ ପାଠ୍ୟକ୍ରମ (Vocational Course)ର ଯୁକ୍ତ ଦୁଇ ମୂଳପାଠ୍ୟକ୍ରମ (Foundation Course)ର ମଧ୍ୟ ଜନୈକ ଲେଖକ ଥିଲି । ଏତଦ୍‌ବ୍ୟତୀତ ମାଧ୍ୟମିକ ଶିକ୍ଷା ପରିଷଦ ଆନୁକୂଲ୍ୟରେ ସିଟି ପାଠ୍ୟକ୍ରମ ପାଇଁ ପ୍ରସ୍ତୁତ ସ୍ୱାସ୍ଥ୍ୟ ଓ ଶାରୀରିକ ଶିକ୍ଷା ପୁସ୍ତକ ଓ ନବମ ଦଶମ ଶ୍ରେଣୀ ପାଇଁ ପ୍ରସ୍ତୁତ ଜନସଂଖ୍ୟା ଓ ପରିବେଶ ଶିକ୍ଷା ବହିର ଜନୈକ ଲେଖକ ହେବାର ସୁଯୋଗ ପାଇଥିଲି । ପରବର୍ତ୍ତୀ ସମୟରେ ମୁଁ ୨୦୦୭ ମସିହାରେ ସରକାରୀ ଚାକିରିରୁ ଅବସର ନେଲାପରେ ଓଡ଼ିଶା ରାଜ୍ୟ ସରକାରଙ୍କ ପ୍ରସ୍ତୁତ ଚତୁର୍ଥ ଶ୍ରେଣୀର ସାମାଜିକ ବହିର ଜନୈକ ଲେଖକ ଓ ସମୀକ୍ଷକ ହିସାବରେ କାମ କରିଥିଲାବେଳେ ପଞ୍ଚମ ଶ୍ରେଣୀର ସାମାଜିକ ବହିର ଜନୈକ ଲେଖକ ହେବାର ସୁଯୋଗ ପାଇଥିଲି ।

### ଜନସଂଖ୍ୟା ଶିକ୍ଷା ବିଭାଗର ଦାୟିତ୍ୱ ଗ୍ରହଣ

ନିର୍ଦ୍ଦେଶାଳୟର ଜନସଂଖ୍ୟା ଶିକ୍ଷା ବିଭାଗରେ ପ୍ରକଳ୍ପ ଅଧିକାରୀ ଭାବେ ଅଧ୍ୟାପକ ସୁରେନ୍ଦ୍ର ମୋହନ ପାଣି କିଛିଦିନ କାର୍ଯ୍ୟ କରିଥିଲେ । ପ୍ରତ୍ୟେକ ୱାର୍କସପ୍ ସମୟରେ ତାଙ୍କର ନିର୍ଦ୍ଦିଷ୍ଟ ଯୋଜନା ଥିଲା ଓ ୱାର୍କସପ୍ ଶେଷଦିନ ସେ ତତ୍ ସଂପର୍କୀୟ ସମସ୍ତ କାର୍ଯ୍ୟକୁ ଚୂଡ଼ାନ୍ତ କରୁଥିଲେ । ତାଙ୍କ କାର୍ଯ୍ୟଧାରାର ଏହା ଏକ ସଫଳ ରୂପାୟନ ଥିଲା । ଅଧ୍ୟାପକ ପାଣିଙ୍କ ପରେ ପରେ ପ୍ରାଧ୍ୟାପକ ନୀଳକଣ୍ଠ ମିଶ୍ର ଜନସଂଖ୍ୟା ବିଭାଗର ପ୍ରକଳ୍ପ ଅଧିକାରୀ ରୂପେ କାର୍ଯ୍ୟକଲେ । ୧୯୮୯ ମସିହାରୁ ୧୯୯୮ ମସିହା ପର୍ଯ୍ୟନ୍ତ ମୁଁ କେବଳ ଜଣେ ସଂଯୋଜକ ହିସାବରେ ଜନସଂଖ୍ୟା ଶିକ୍ଷା ବିଭାଗରେ ଅନ୍ୟ ଦାୟିତ୍ୱ ସହ କାମ କରୁଥିଲି । ମାତ୍ର ମୋତେ ଅନ୍ୟାନ୍ୟ ଦାୟିତ୍ୱ ସହିତ ଜନସଂଖ୍ୟା ବିଭାଗର ପ୍ରକଳ୍ପ ଅଧିକାରୀ ଭାବେ ୧୯୯୦ ମସିହାରୁ କାର୍ଯ୍ୟ କରିବାକୁ ପଡ଼ିଥିଲା ।

### ଜନସଂଖ୍ୟା ଶିକ୍ଷାର ନୂତନ ରୂପରେଖ

ଜନସଂଖ୍ୟା ଓ ବିକାଶ ଶିକ୍ଷା ସଂପର୍କରେ ୧୯୯୪ ମସିହାରେ କାଇରୋ ଠାରେ ଏକ ବିଶ୍ୱ ସମ୍ମିଳନୀ ହୋଇଥିଲା । ଏହି ସମ୍ମିଳନୀରେ ପୃଥିବୀର ପ୍ରାୟ ୧୬୯ ରାଷ୍ଟ୍ରର ଜନପ୍ରତିନିଧିଗଣ ଯୋଗ ଦେଇଥିଲେ । ସେମାନେ ଛୋଟ ପରିବାର ସୁଖୀ

ପରିବାର ଧାରଣା ଯେ କେତେ ମାରାତ୍ମକ ତାହା ଏଇ ସମ୍ମିଳନୀରେ ଆଲୋଚନା କଲେ । ସେମାନେ ଦ୍ରୁତ ଜନସଂଖ୍ୟା ବୃଦ୍ଧି ରୋକିବା ନିମନ୍ତେ ପରିବାର ନିୟୋଜନ କାର୍ଯ୍ୟକ୍ରମର ଆବଶ୍ୟକତା ଉପରେ ପ୍ରଶ୍ନବାଚୀ ଉଠାଇ ଜନସଂଖ୍ୟା ସହିତ ବିକାଶ ବିଷୟବସ୍ତୁକୁ ସଂଯୋଗ କଲେ । ଏଇ ସମ୍ମିଳନୀର ବାର୍ତ୍ତା ହେଲା : ବିକାଶ ହିଁ ଜନସଂଖ୍ୟା ସଂପର୍କୀୟ ସମସ୍ତ ସମସ୍ୟାର ସମାଧାନ । ତେଣୁ ଜନସଂଖ୍ୟା ଶିକ୍ଷାର ମୁଖ୍ୟ ବିଷୟବସ୍ତୁର ଆଧାର ରୂପେ ଯେଉଁ ଛଅଟି ଉପାଦାନ ରଖାଗଲା ସେଗୁଡ଼ିକ ହେଲା, ପରିବାରର ଆକାର ଓ ପରିବାରର କଲ୍ୟାଣ, ନାରୀ ଓ ପୁରୁଷ ମଧ୍ୟରେ ସମାନତା, କିଶୋର ପ୍ରଜନନ ସ୍ୱାସ୍ଥ୍ୟ , ଜନସଂଖ୍ୟା ପରିବର୍ତ୍ତନରେ ଶିକ୍ଷା ଓ ସ୍ୱାସ୍ଥ୍ୟର ଭୂମିକା, ପୋଷଣୀୟ ବିକାଶ (Sustainable Development), ସହରୀକରଣ ଏବଂ ଦେଶାନ୍ତର ।

ଏହି ସମ୍ମିଳନୀର କାର୍ଯ୍ୟକ୍ରମ ରୂପାୟନର ଦଲିଲ୍‌ରେ ଭାରତ ଏକ ସ୍ୱାକ୍ଷରକାରୀ ରାଷ୍ଟ୍ର ଥିଲା । ଆମ ଦେଶର ବିଦ୍ୟାଳୟ ଶିକ୍ଷାରେ ଏହାର କାର୍ଯ୍ୟକାରୀ ନିମନ୍ତେ ଜାତୀୟ ସ୍ତରରେ ଜାତୀୟ ଶିକ୍ଷା ଓ ଗବେଷଣା ପରିଷଦ, ନୂଆଦିଲ୍ଲୀକୁ ଦାୟିତ୍ୱ ଦିଆଯାଇଥିଲା । ଏନ୍.ସି.ଇ.ଆର୍.ଟିର ଜନସଂଖ୍ୟା ବିଭାଗର ଦାୟିତ୍ୱରେ ଥିବା ଜାତୀୟ ସଂଯୋଜକ ପ୍ରଫେସର ଜବାହରଲାଲ ପାଣ୍ଡେ ଥିଲେ । ସବୁ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳ ସହିତ ଯୋଗାଯୋଗ ଓ ସମନ୍ୱୟ ରକ୍ଷାକରି ରାଜ୍ୟସ୍ତରୀୟ କାର୍ଯ୍ୟକ୍ରମ ଓ ବଜେଟ ପ୍ରସ୍ତୁତ କରିବାର ସଂପୂର୍ଣ୍ଣ ଦାୟିତ୍ୱ ପ୍ରଫେସର ପାଣ୍ଡେଙ୍କ ଉପରେ ନ୍ୟସ୍ତ ଥିଲା ।

ସେ ଯେତେବେଳେ ଓଡ଼ିଶାର ଜନସଂଖ୍ୟା ପ୍ରକଳ୍ପ ସଂପର୍କରେ କିଛି କାମ କଲେ, ସେତେବେଳେ ତାଙ୍କୁ ଓଡ଼ିଶାରୁ ଆଶାନୁରୂପ ସାହାଯ୍ୟ ମିଳିଲା ନାହିଁ । ସେତେବେଳେ ସେ ବ୍ୟସ୍ତ ଓ ବିବ୍ରତ ହେଲେ । ଦିନେ ତତ୍‌କାଳୀନ ଉତ୍କଳ ବିଶ୍ୱବିଦ୍ୟାଳୟରେ ଜନଶିକ୍ଷା ବିଭାଗର କାର୍ଯ୍ୟରତ ନିର୍ଦ୍ଦେଶକ ପ୍ରଫେସର ସୁରେନ୍ଦ୍ର ମୋହନ ପାଣିଙ୍କଠାରୁ ମୋ ବିଷୟରେ ପଚାରି ଜାଣିଲେ ଯେ ଏସ.ସି.ଇ.ଆର.ଟିର କାର୍ଯ୍ୟରତ ଅନ୍ୟ ଅଫିସରଙ୍କ ପଦପଦବୀ ଓ ଦରମା ଦୃଷ୍ଟିରୁ ମୁଁ କୌଣସି ମତେ ନ୍ୟୂନ ନୁହେଁ । ତେଣୁ ସେ ମନେ ମନେ ସ୍ଥିର କରି ନେଲେ ଯେ ଜନସଂଖ୍ୟା ବିଭାଗ ପ୍ରକଳ୍ପ ମୁଖ୍ୟ ହିସାବରେ ମୋତେ ରଖିବା ପାଇଁ ସରକାରୀ ସ୍ତରରେ ହସ୍ତକ୍ଷେପ ଗ୍ରହଣ କରିବେ ।

ତେଣୁ ସେ ତତ୍‌କାଳୀନ ଏସ୍.ସି.ଇ.ଆର.ଟିର ନିର୍ଦ୍ଦେଶକ ପ୍ରଫେସର କାଳିକୁମାର ଦାସଙ୍କୁ ଫୋନ କରି ଗଣଶିକ୍ଷା ବିଭାଗର ସଚିବ ଶ୍ରୀଯୁକ୍ତ ମଦନ ମୋହନ ମହାନ୍ତିଙ୍କ ସହିତ ଏ ବିଷୟରେ ଆଲୋଚନା କରିବା ନିମନ୍ତେ ସମୟ ଧାର୍ଯ୍ୟ କଲେ । ଏହାର ପରିଣତି ସ୍ୱରୂପ ମୋତେ ୧୯୯୭ ମସିହା ଜୁଲାଇ ମାସରେ ଜନସଂଖ୍ୟା ଶିକ୍ଷା ବିଭାଗର

ପ୍ରକଳ୍ପ ଅଧିକାରୀ କରାଗଲା । ବିଭାଗର ମୁଖ୍ୟ ହେବା ଫଳରେ ମୁଁ ଜନସଂଖ୍ୟା ଓ ବିକାଶ ଶିକ୍ଷା ସଂପର୍କୀୟ ଜାତୀୟ ସ୍ତରରେ ଧାର୍ଯ୍ୟ ହୋଇଥିବା କର୍ମ-ଯୋଜନାର ସମସ୍ତ କାର୍ଯ୍ୟ ସମୟ ଅନୁସାରେ କରିବାକୁ ସମର୍ଥ ହେଲି ।

ପ୍ରଫେସର କାଳିକୁମାର ଦାସ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟରୁ ଅକ୍ଟୋବର ମାସ ୩୧, ୧୯୯୭ରେ ଅବସର ଗ୍ରହଣ କଲେ । ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ଅଳ୍ପଦିନ ମଧ୍ୟରେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ଭାବେ ଯୋଗ ଦେଲେ । ସେ ଜଣେ ମହାନୁଭବ, ଉଦାରଚେତା ବ୍ୟକ୍ତି ଥିଲେ । ସେ ପ୍ରତ୍ୟେକ ବିଭାଗରେ କାର୍ଯ୍ୟ କରୁଥିବା ଅଧିକାରୀମାନଙ୍କୁ ସ୍ୱାଧୀନ ଭାବେ ସେମାନଙ୍କ କାର୍ଯ୍ୟ କରିବାକୁ ସୁଯୋଗ ଦେଉଥିଲେ । ତାଙ୍କ ସମୟରେ ମୁଁ ପାଇଥିବା ଏ ସୁଯୋଗକୁ ହାତଛଡ଼ା ନ କରି ରାଜ୍ୟର ଜନସଂଖ୍ୟା ଶିକ୍ଷା କ୍ଷେତ୍ରରେ କିଛି ଦୃଷ୍ଟାନ୍ତମୂଳକ କାର୍ଯ୍ୟ ବିଦ୍ୟାଳୟସ୍ତରୀୟ ପିଲାମାନଙ୍କ ପାଇଁ କରିବାକୁ ଚେଷ୍ଟା କରିଥିଲି ।

ମୋର ପୂର୍ବସୂରୀମାନେ ଜନସଂଖ୍ୟା ଶିକ୍ଷା ବିଭାଗ ପ୍ରକଳ୍ପରେ ବାର୍ଷିକ ଦୁଇତିନି ଲକ୍ଷ ଟଙ୍କାର ବଜେଟ ମଧ୍ୟରେ କାମ କରୁଥିଲେ । ତିନି ଚାରିଜଣ ଅଧିକାରୀ ରହିଥିଲେ । ମାତ୍ର ମୋ ସମୟରେ ଅଧିକାରୀ ଭାବରେ ବିଦ୍ୟାଳୟ ସ୍ତରରୁ ଆସିଥିବା ଜଣେ ଶିକ୍ଷକ ଥିଲେ । ଆମକୁ ସାହାଯ୍ୟ କରିବା ପାଇଁ ଜଣେ କିରାଣି ଓ ଜଣେ ପିଅନକୁ ଦିଆଯାଇଥିଲା । ମାତ୍ର ଏହାର ବାର୍ଷିକ ବଜେଟ ପ୍ରାୟ ୨୮ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଥିଲା । ଏତେ ବଡ଼ କାର୍ଯ୍ୟର ଚାପ ଜଣେ ଅଧିକାରୀଙ୍କ ପକ୍ଷରେ ଚଳାଇବା ବଡ଼ କଷ୍ଟକର ଥିଲା ।

ସାଧାରଣତଃ ଜନସଂଖ୍ୟା ଶିକ୍ଷା ପ୍ରକଳ୍ପର ଏକ ବାର୍ଷିକ କର୍ମଯୋଜନା (Work Plan) ଜାତୀୟସ୍ତରର ବିଶେଷଜ୍ଞ, ୟୁ.ଏନ୍.ଏଫ୍.ପି.ଏ. ପ୍ରତିନିଧି, ଭାରତ ସରକାରଙ୍କ ପ୍ରତିନିଧି ଓ ରାଜ୍ୟସ୍ତରୀୟ ଅଧିକାରୀମାନଙ୍କୁ ନେଇ ତିଆରି କରାଯାଏ । ସେଥିରେ ପାଞ୍ଚଟି ବିଭାଗ ଉପରେ କାର୍ଯ୍ୟକ୍ରମ କରିବାର ପରିସର ଥାଏ । ସେଗୁଡ଼ିକ ହେଲା –

- ❖ ପାଠ୍ୟକ୍ରମ ଓ ସାମଗ୍ରୀ ପ୍ରସ୍ତୁତି
- ❖ ପ୍ରଶିକ୍ଷଣ ଭିତ୍ତିକ କାର୍ଯ୍ୟକ୍ରମ
- ❖ ସହ ପାଠ୍ୟକ୍ରମ ଭିତ୍ତିକ କାର୍ଯ୍ୟାବଳୀର ସଂଗଠନ
- ❖ ମୂଲ୍ୟାୟନ ଓ ଗବେଷଣା
- ❖ ପରିଚାଳନା (Monitoring)

ସମସ୍ତ କାର୍ଯ୍ୟକ୍ରମ ରାଜ୍ୟର ବିଶେଷଜ୍ଞମାନଙ୍କୁ ନେଇ ରାଜ୍ୟ ଓ ବିଦ୍ୟାଳୟସ୍ତରରେ କରାଯାଉଥିଲା । କୌଣସି ଏକ ବିଭାଗର କାର୍ଯ୍ୟାବଳୀ ଓ ତା'ର ରୂପାୟନ ସଂପର୍କରେ

ବ୍ୟକ୍ତି ବଶେଷଙ୍କୁ ତଥ୍ୟ ଦେବା ହେଉଛି ସେଇ ବିଭାଗର ଦାୟିତ୍ୱ । ସେଥିପାଇଁ ଏକ ତଥ୍ୟ ଭିତ୍ତିକ ପତ୍ରିକା (Newsletter)ର ଆବଶ୍ୟକତା ରହିଥାଏ । ମୁଁ ୧୯୯୮ ମସିହାରେ ଜାତୀୟ ଯୋଜନା ପ୍ରସ୍ତୁତି ସମୟରେ ଏଇପରି ଏକ ପତ୍ରିକାର ପ୍ରକାଶନର ବ୍ୟବସ୍ଥା ଜାତୀୟ ସଂଯୋଜକ ପ୍ରଫେସର ପାଣ୍ଡେଙ୍କୁ କହି କରାଇ ଆଣିଲି । ଏଇ ସମୟରେ ଓଡ଼ିଶା ସ୍କୁଲ ସେବାର ପ୍ରଧାନଶିକ୍ଷକ ସ୍ତରର ଶିକ୍ଷାବିତ୍ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମିଶ୍ରଙ୍କୁ ନିର୍ଦ୍ଦେଶକ ମହାପାତ୍ର ଜନସଂଖ୍ୟା ବିଭାଗରେ କାର୍ଯ୍ୟ କରିବା ନିମନ୍ତେ ନିର୍ଦ୍ଦେଶ ଦେଲେ । ଶ୍ରୀଯୁକ୍ତ ମିଶ୍ରଙ୍କୁ ଆମ ସମ୍ବାଦଭିତ୍ତିକ ପତ୍ରିକାର ନାମକରଣ କ'ଣ କଲେ ଭଲ ହେବ ବୋଲି ଅନୁଧ୍ୟାନ କରିବାକୁ କୁହାଗଲା । ସେ 'ଜନସଂଖ୍ୟା ଓ ବିକାଶ ସରଣୀ' ଦେବା ପାଇଁ ମତ ଦେଲେ । ଶେଷରେ ନିର୍ଦ୍ଦେଶକ ପ୍ରଫେସର ମହାପାତ୍ର ଏହି ନାମକରଣ ଉପରେ ମୋହର ଲଗାଇଲେ । ଜନସଂଖ୍ୟା ବିକାଶ ସରଣୀର ପ୍ରଥମ ସଂଖ୍ୟା ହିସାବରେ ଜାନୁୟାରୀ-ମାର୍ଚ୍ଚ ସଂଖ୍ୟା ୧୯୯୮ ମସିହାରେ ପ୍ରକାଶିତ ହେଲା ।

**ଜନସଂଖ୍ୟା ଓ ବିକାଶ ସରଣୀ: ବିକାଶ ଶବ୍ଦର ବ୍ୟାଖ୍ୟା**

ଜନସଂଖ୍ୟା ଓ ବିକାଶ ସରଣୀ ଦୁଇ ତିନି ବର୍ଷ ପ୍ରକାଶିତ ହେଲା ପରେ ମଧ୍ୟ କେହି ଏହାର ନାମକରଣ ନେଇ ପ୍ରଶ୍ନ ଉଠାଇ ନ ଥିଲେ । ଦିନେ ମୁଁ ମୋ ବିଭାଗରେ କାର୍ଯ୍ୟରତ ଅଛି । ଏଇ ସମୟରେ ଶିକ୍ଷକ ଶିକ୍ଷା ବିଭାଗ (Deptt. of Teacher Education)ରେ କାର୍ଯ୍ୟରତ ଥିବା ଉପନିର୍ଦ୍ଦେଶକ ଡକ୍ଟର ଭାସ୍କର ଚନ୍ଦ୍ର ମହାପାତ୍ର ମୋତେ ଆସି କହିଲେ, "ବ୍ରହ୍ମାବାବୁ ଆପଣ ଆମ ସମ୍ମିଳନୀ କକ୍ଷକୁ ଆସନ୍ତୁ । ରାଜ୍ୟର ମାଧ୍ୟମିକ ପ୍ରଶିକ୍ଷଣ ସ୍କୁଲ ଓ ଅନ୍ୟାନ୍ୟ ଅଧିକାରୀମାନଙ୍କ ଏକ ଆଲୋଚନା ଚାଲିଛି । ସେମାନେ ସମସ୍ତେ କହୁଛନ୍ତି ଯେ "ଜନସଂଖ୍ୟା ବିକାଶ ସରଣୀ ନାମକରଣଟି ଭୁଲ ।"

ମୁଁ ତାଙ୍କ କଥାକୁ ଏଡ଼ାଇ ଦେଇ କହିଲି, "ପତ୍ରିକାର ନାମକରଣ ଯଥାର୍ଥ । ସେମାନେ ଭୁଲ କହିଲେ କ'ଣ ଠିକ୍ ଭୁଲ୍ ହୋଇଯିବ । ମୁଁ ସେଠି ଯାଇ ଯାହା କହିଲେ ବି ସେମାନେ ବୁଝିବେ ନାହିଁ । ତେଣୁ ଆପଣ ଯାଇ କୁହନ୍ତୁ ଯେ ସେମାନେ ନାମକରଣ ସଂପର୍କରେ ଅଧିକ ଅନୁଧ୍ୟାନ କରିବେ । ମୁଁ କାର୍ଯ୍ୟବ୍ୟସ୍ତ ଅଛି, ଯାଇ ପାରିବି ନାହିଁ ।"

ସେ ସେଠାରୁ ଚାଲିଗଲେ । ପୂର୍ବରୁ ଜନସଂଖ୍ୟା ବିକାଶ ସରଣୀ ନାମକରଣଟି ଭୁଲ ବୋଲି ନିର୍ଦ୍ଦେଶାଳୟର ମଧ୍ୟ କିଛି ଅଧିକାରୀ ବିଭିନ୍ନ ସମୟରେ କହୁଥିଲେ । ସେପରି ମତ ମଧ୍ୟ ନିଜେ ଭାସ୍କରବାବୁ ରଖୁଛନ୍ତି । ସେମାନଙ୍କୁ ସ୍ପଷ୍ଟୀକରଣ ଦେଲେ ମଧ୍ୟ ସେମାନେ ବୁଝୁ ନାହାନ୍ତି । କିଛି ସମୟ ପରେ ପୁଣି ଭାସ୍କରବାବୁ ଆସି ମୋ

ପାଖରେ ପହଞ୍ଚିଲେ । କହିଲେ, "ଆପଣଙ୍କୁ ଯିବାକୁ ପଡ଼ିବ । ସେମାନେ ନିର୍ଦ୍ଦେଶକଙ୍କ ପାଖରେ ମଧ୍ୟ ସେଇ ପ୍ରଶ୍ନ ରଖିଛନ୍ତି । ନିର୍ଦ୍ଦେଶକ କିଛି ନ କହି କେବଳ ଏତିକି କହିଛନ୍ତି ଯେ ଆପଣ ସେମାନଙ୍କ ପାଖରେ ଏ ସଂପର୍କରେ ନିଜର ବକ୍ତବ୍ୟ ରଖିବେ ।"

ମୁଁ ଭାସ୍କର ବାବୁଙ୍କ କଥାଶୁଣି ନିର୍ଦ୍ଦେଶାଳୟର ସମ୍ମିଳନୀ କକ୍ଷକୁ ଗଲି । ଦେଖିଲି ସେଠାରେ ଉପସ୍ଥିତ କେତେକ ଅଧିକାରୀ ତଥା ମୋର ପୂର୍ବତନ ଏମ୍.ଏଡ୍ ଛାତ୍ର ଉପସ୍ଥିତ ଅଛନ୍ତି । ନାମକରଣଟି କେଉଁ ଦୃଷ୍ଟିକୋଣରୁ ଭୁଲ ବୋଲି ମୁଁ ସେମାନଙ୍କଠାରୁ ଜାଣିବାକୁ ଚାହିଲି ।

ଉପସ୍ଥିତ ଅଧିକାରୀମାନଙ୍କ ମଧ୍ୟରୁ ଜଣେ ଉଠିପଡ଼ି କହିଲେ, "ବିକାଶ ଶବ୍ଦର ଅର୍ଥ ବୃଦ୍ଧି । ତା'ହେଲେ ଆପଣଙ୍କ ବିଭାଗ କ'ଣ ଜନସଂଖ୍ୟା ବୃଦ୍ଧି ନିମନ୍ତେ କାର୍ଯ୍ୟ କରୁଛି ?"

ମୁଁ ଦେଖିଲି "ବିକାଶ" ଶବ୍ଦର ବ୍ୟାଖ୍ୟା ହିଁ ଏଇଠାରେ ଅଟକିଛି । ଏହାକୁ ମଧ୍ୟ ସେଠାରେ ଉପସ୍ଥିତ ଥିବା ଏସ୍.ସି.ଇ.ଆର.ଟିର କେତେକ ଅଧ୍ୟାପକ ସମର୍ଥନ କରୁଛନ୍ତି । ତେଣୁ ଏ ସଂପର୍କରେ ଏକ ସ୍ପଷ୍ଟୀକରଣ ଦେବା ଉଚିତ୍ ବୋଲି ମନେକଲି ।

କହିଲି 'ବିକାଶ' (Development)ଅର୍ଥ ସବୁବେଳେ ସକାରାତ୍ମକ । ଏହାର ବୃଦ୍ଧି (growth) ସହିତ କୌଣସି ସଂପର୍କ ନାହିଁ । ବୃଦ୍ଧି ସକାରାତ୍ମକ (positive) କିମ୍ବା ନକାରାତ୍ମକ (negative) ହୋଇ ପାରେ । ଏହାକୁ ଆଉ ଟିକିଏ ସ୍ପଷ୍ଟ କରିବା ପାଇଁ ମୋର ଡାହାଣ ଗୋଡ଼ଟିକୁ ସେଠାରେ ପଡ଼ିଥିବା ଗୋଟିଏ ପ୍ଲାଷ୍ଟିକ୍ ଚେୟାର ଉପରେ ରଖି କହିଲି, "ମନେ କରନ୍ତୁ ଏହା ଏକ ଗୋଦର ଗୋଡ଼ । ଏହାର ଅଭିବୃଦ୍ଧି ଦେଖି ଆପଣମାନେ କ'ଣ କହିବେ, "ଆଃ, ଗୋଡ଼ଟିର କି ସୁନ୍ଦର ବିକାଶ ଘଟିଛି ।"

ମୋ କଥା ଶୁଣି ସମ୍ମିଳନୀ କକ୍ଷରେ ଏକ ହାସ୍ୟରୋଳ ସୃଷ୍ଟି ହେଲା । ଏପରି କଥାକୁ ପ୍ରୋତ୍ସାହନ କରୁଥିବା ବ୍ୟକ୍ତିବିଶେଷ ମଧ୍ୟ ନିଜ ନିଜର ଅଜ୍ଞାନତା ବୁଝିପାରିଲେ ।

ଜନସଂଖ୍ୟାର ବିକାଶ କହିଲେ ମାନବ ସମ୍ବଳକୁ ଚାହିଁ ମଣିଷର ବାସସ୍ଥାନ, ଶିକ୍ଷା, ସ୍ୱାସ୍ଥ୍ୟ ଆଦିର ଯଥାଯଥ ବିକାଶକୁ ବୁଝାଇଥାଏ । ସେଇଦିନଠାରୁ ଜନସଂଖ୍ୟା ଓ ବିକାଶ ସରଣୀର ନାମକରଣକୁ ନେଇ କେହି କେବେ ପ୍ରଶ୍ନ ଉଠେଇ ନ ଥିଲେ ।

**ପ୍ରକଳ୍ପ ପରିଚାଳନା ସଂପର୍କୀୟ ଅନୁଭୂତି**

୧୯୯୮ ମସିହା ଜାନୁୟାରୀ ମାସର ଘଟଣା । ସେତେବେଳେ ୟୁ.ଏନ୍.ଏଫ.ପି.ଏ (UNFPA) ତରଫରୁ ରାଜ୍ୟର ଚାରୋଟି ଜିଲ୍ଲାରେ ସମନ୍ୱିତ ଜନସଂଖ୍ୟା ଓ ବିକାଶ ପ୍ରକଳ୍ପ (Integrated Population and Development

Project) କାର୍ଯ୍ୟକାରୀ ହେବ ବୋଲି ଭାରତ ସରକାର ଠିକ୍ କରିଥାନ୍ତି । ସେଇସବୁ ଜିଲ୍ଲା ହେଲା ରାୟଗଡ଼ା, କୋରାପୁଟ, ମାଲକାନାଗିରି ଓ ନବରଙ୍ଗପୁର । ସର୍ବ ଭାରତୀୟ ସ୍ତରରେ ଏଇ ଚାରୋଟି ଜିଲ୍ଲାର ସାକ୍ଷରତା ହାର କମ୍ ଥିବାରୁ ଭାରତ ସରକାର ଏଇ ଜିଲ୍ଲାଗୁଡ଼ିକରେ ସମନ୍ୱିତ ଜନସଂଖ୍ୟା ଓ ବିକାଶ ପ୍ରକଳ୍ପ କାର୍ଯ୍ୟକ୍ରମ ହେବା ନିମନ୍ତେ ବାଛି ଥାଆନ୍ତି ।

ସେଦିନ ହୋଇଥାଏ ଜାନୁୟାରୀ ମାସ ୨୮ ତାରିଖ । ମୁଁ କୌଣସି କାମରେ ସେକ୍ରେଟେରୀଏଟ୍ ଯାଇଥାଏ । ସେକ୍ରେଟେରୀଏଟ୍ ମଧ୍ୟରେ ମୋର ହଠାତ୍ ସେକ୍ରେଟେରୀଏଟ୍‌ର ସିନିୟର ଆସିଷ୍ଟାଣ୍ଟ କୁଞ୍ଜବାବୁ (ଶ୍ରୀଯୁକ୍ତ କୁଞ୍ଜବିହାରୀ ପ୍ରଧାନ)ଙ୍କ ସହିତ ଘରୋଇ ବିଭାଗର ବାରଣ୍ଡାରେ ଦେଖା ହେଲା । ସେ ମୋତେ କହିଲେ "ବ୍ରହ୍ମାବାବୁ ! ମୁଁ ଆପଣଙ୍କୁ ଖୋଜି ଖୋଜି ଏସ୍.ସି.ଇ.ଆର.ଟି ଯାଇଥିଲି । ସେଠାରୁ ଶୁଣିଲି ଯେ ଆପଣ ଆମ ଆଡ଼େ ଆସିଛନ୍ତି ବୋଲି । ଆସନ୍ତୁ ଆପଣ ଶୀଘ୍ର ଅତିରିକ୍ତ ଶାସନସଚିବ ଶ୍ରୀଯୁକ୍ତ ତ୍ରିନାଥ ହୋତାଙ୍କୁ ଦେଖା କରିବେ ।"

ଏହା କହି ସେ ମୋତେ ଶ୍ରୀଯୁକ୍ତ ହୋତାଙ୍କ ପାଖକୁ ନେଇଗଲେ । ମୋତେ ହୋତାବାବୁ ଦେଖିବା ମାତ୍ରେ କହିଲେ, "ଆପଣଙ୍କୁ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ତରଫରୁ ରାଜ୍ୟରେ ହେବାକୁ ଥିବା ସମନ୍ୱିତ ଜନସଂଖ୍ୟା ଓ ବିକାଶ ଶିକ୍ଷା ପ୍ରକଳ୍ପର କୋର ଗ୍ରୁପ୍ (Core Group)ରେ ପ୍ରତିନିଧିତ୍ୱ କରିବାକୁ ପଡ଼ିବ ।"

ଏଇ କଥା କହୁ କହୁ ମୋତେ ତାଙ୍କ ଆଗରେ କୁଞ୍ଜବାବୁ ୨୮.୧.୯୮ର ଆଦେଶନାମା ନମ୍ବର ୨୭୬୪ର ଏକ ନକଲ ଧରାଇ ଦେଲେ । ସେ ଚିଠିଟି ଓଡ଼ିଶା ସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ଅତିରିକ୍ତ ଶାସନ ସଚିବଙ୍କୁ ଲେଖାଯାଇଥିଲା । ସେଥିରେ ଲେଖାଥିଲା :

I am directed to say that Dr. Digaraj Brahma, Project Officer, Population Education Cell of the Directorate of T.E & SCERT, Orissa has been nominated to represent this Department in the State Core Group for implementation of Integrated Population and Development Project.

ମୋତେ ସରକାରଙ୍କ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ତରଫରୁ ପ୍ରତିନିଧିତ୍ୱ କରିବା ନିମନ୍ତେ ଶ୍ରୀଯୁକ୍ତ ମଦନମୋହନ ମହାନ୍ତି, ଆଇ.ଏ.ଏସ୍ କାହିଁକି ନିଷ୍ପତ୍ତି ନେଲେ ତାହା ଆଶ୍ଚର୍ଯ୍ୟ ଲାଗିଲା । ମୁଁ ଟିକିଏ ଭୟଭୀତ ହୋଇଗଲି । କିଛି ଅଧିକ ଭାବିବା

ପୂର୍ବରୁ ମୋତେ ଅତିରିକ୍ତ ଶାସନସଚିବ ମହୋଦୟ କହିଲେ, "ଆପଣ ଶୀଘ୍ର ଯାଆନ୍ତୁ । ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ଅତିରିକ୍ତ ଶାସନ ସଚିବଙ୍କୁ ଦେଖା କରନ୍ତୁ ।"

ମୁଁ ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ଅତିରିକ୍ତ ଶାସନ ସଚିବ ଶ୍ରୀଯୁକ୍ତ ବିଜୟ କୁମାର ନନ୍ଦଙ୍କୁ ଦେଖାକଲି । ସେ ମୋତେ କହିଲେ – "ଅଳ୍ପଦିନ ମଧ୍ୟରେ ଦିଲ୍ଲୀସ୍ଥିତ ୟୁଏନ୍‌ଏଫ୍.ପି.ଏ କାର୍ଯ୍ୟାଳୟରୁ ଏକ ବିଶେଷଜ୍ଞ ଦଳ ଆସିବେ । ସେମାନେ ସମନ୍ୱିତ ବିକାଶ ପ୍ରକଳ୍ପ ପାଇଁ ଚିହ୍ନଟ ହୋଇଥିବା ଜିଲ୍ଲାଗୁଡ଼ିକ ପରିଦର୍ଶନ କରିବେ । ଆପଣ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ତରଫରୁ ପ୍ରତିନିଧିତ୍ୱ କରିବେ । ଏହା ପୂର୍ବରୁ ରାଜ୍ୟସ୍ତରୀୟ ଆଲୋଚନା ହେବ । ସେଥିରେ ମଧ୍ୟ ଯୋଗ ଦେବେ ।"

ଯଥା ସମୟରେ ୟୁ.ଏନ୍.ଏଫ୍.ପି.ଏ ଦଳ ଆସି ପହଞ୍ଚିଲେ । ସେମାନଙ୍କ ରହଣି, ଯାତାୟାତ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ସମନ୍ୱୟ କଥା ୟୁ.ଏନ୍.ଏଫ୍.ପି.ଏ.(UNFPA) ଦ୍ୱାରା ନିଯୁକ୍ତ ବିଶିଷ୍ଟ ଗବେଷକ ଡକ୍ଟର ଚିତ୍ତରଞ୍ଜନ ସାମନ୍ତ ବୁଝୁଥିଲେ । ପ୍ରାରମ୍ଭିକ ସ୍ତରରେ ଏହି ଦଳ ରାଜ୍ୟ ସରକାରଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, ଶିଶୁମଙ୍ଗଳ ବିଭାଗର ସଚିବ ଓ ବିଭିନ୍ନ ଅଧିକାରୀଙ୍କୁ ଭେଟି ରାଜ୍ୟ ଓ ଜିଲ୍ଲାଗୁଡ଼ିକର ସ୍ଥିତି ସଂପର୍କରେ ଆଲୋଚନା କଲେ ।

ଏହି ଦଳରେ ନେତୃତ୍ୱ ନେଇଥିଲେ ଡାକ୍ତର ଶରଦ ଆୟଙ୍ଗାୟୋର । ଅନ୍ୟମାନଙ୍କ ମଧ୍ୟରେ ଥିଲେ ଡକ୍ଟର ମୃଦୁଳା ଶେଠ, ଡକ୍ଟର ରାଜେଶ କୁମାର, ଡଃ ରାମନାଥନ, ଡଃ କ୍ରିଷ୍ଣା ମହାପାତ୍ର ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର ଆଶା ହଂସ ।

ମୋ ବ୍ୟତୀତ ରାଜ୍ୟ କୋର ଗ୍ରୁପର ସଦ୍ୟସ ଭାବେ ମହିଳା ଓ ଶିଶୁ ବିଭାଗର ଶ୍ରୀଯୁକ୍ତ ପରମେଶ୍ୱର ସ୍ୱାଇଁ, ସ୍ୱାସ୍ଥ୍ୟ ବିଭାଗର ଡାକ୍ତର ରବୀନ୍ଦ୍ରନାଥ ରାଉତ ଓ ଡଃ ଅର୍ଜୁନ ସେନାପତି ଥିଲେ ।

ଓଡ଼ିଶା ପାଇଁ ଏଇ ପ୍ରକଳ୍ପ ମାଧ୍ୟମରେ ପ୍ରାୟ ତିରିଶି କୋଟି ଟଙ୍କା ବିନିଯୋଗ ହେବାର ଥିଲା । ଏଥିରେ ଶତକଡ଼ା ୭୫ ଭାଗ ଅର୍ଥ ସ୍ୱାସ୍ଥ୍ୟ ଓ ଶତକଡ଼ା ୨୫ ଭାଗ ଅର୍ଥ ସମାଜ କଲ୍ୟାଣ ଓ ଶିକ୍ଷା ଲାଗି ଖର୍ଚ୍ଚ ହେବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ।

ମୁଁ କୋର ଗ୍ରୁପ୍‌ର ସଦସ୍ୟମାନଙ୍କ ସହିତ ରାୟଗଡ଼ା, କୋରାପୁଟ, ମାଲକାନଗିରି ଓ ନବରଙ୍ଗପୁର ଜିଲ୍ଲାରେ ଫେବୃୟାରୀ ମାସ ୬ ତାରିଖରୁ ୧୪ ତାରିଖ ପର୍ଯ୍ୟନ୍ତ ଭ୍ରମଣ କରିବାର ସୁଯୋଗ ପାଇଥିଲି । ମେ ମାସ ୧୫ ତାରିଖରେ ରାଜ୍ୟର ମୁଖ୍ୟ

ଶାସନ ସଚିବ ଓ ଅନ୍ୟାନ୍ୟ ବରିଷ୍ଠ ଅଧିକାରୀମାନଙ୍କୁ ସମନ୍ୱିତ ଜନସଂଖ୍ୟା ଓ ବିକାଶ ପ୍ରକଳ୍ପ ସଂପର୍କୀୟ ଚିଠା ପ୍ରଦାନ କରାଯାଇଥିଲା । ଶିକ୍ଷା ସଂପର୍କୀୟ ଚିଠା ଭୁବନେଶ୍ୱରରେ ଆୟୋଜିତ ଏକ ସ୍ୱତନ୍ତ୍ର ଆଲୋଚନା ଚକ୍ରରେ ମୁଖ୍ୟଶାସନ ସଚିବ ଓ ବରିଷ୍ଠ ଅଧିକାରୀମାନଙ୍କ ଗହଣରେ ଉପସ୍ଥାପନ କରିବାର ସୁଯୋଗ ମୋତେ ଦିଆଯାଇଥିଲା ।

ୟୁ.ଏନ୍.ଏଫ୍.ପି.ଏ ର ମିଶନ ସହିତ କାର୍ଯ୍ୟ କରିବାର ଅଭିଜ୍ଞତା ମୋତେ ରାଜ୍ୟର ଶିଶୁ, ଶିକ୍ଷା, ସ୍ୱାସ୍ଥ୍ୟ ଆଦିର ସ୍ଥିତି ଆକଳନ କରିବାର ଅଭିଜ୍ଞତା ଆଣି ଦେଇଥିଲା ।

ଏହି ପ୍ରକଳ୍ପ ଆମ ରାଜ୍ୟରେ ଜନସଂଖ୍ୟା ପାଣ୍ଠି (UNFPA) ଓ ରାଜ୍ୟର ସରକାରୀ ଅନୁଷ୍ଠାନମାନଙ୍କ ସାହାଯ୍ୟରେ ୧୯୯୮-୨୦୦୧ ମଧ୍ୟରେ କାର୍ଯ୍ୟକାରୀ ହୋଇଥିଲା । ରାଜ୍ୟ ୟୁଏନ୍ଏଫ୍ପିଏର ମୁଖ୍ୟ ହିସାବରେ ଡଃ ରାମନାଥନ୍ ଯୋଗ ଦେଇଥିଲେ । ମୋ ସହିତ ସେ ପୂର୍ବରୁ କାର୍ଯ୍ୟ କରିଥିବା ହେତୁ ଓଡ଼ିଶାରେ ଅବସ୍ଥାପିତ ହେଲା ପରେ ଆମେ ଦୁହେଁ ମିଶି ଜନସଂଖ୍ୟା ଓ ବିକାଶ କାର୍ଯ୍ୟକ୍ରମରେ ସହାୟତା କରିଥିଲୁ ।

**ଥାଇଲାଣ୍ଡରେ ଜନସଂଖ୍ୟା ଶିକ୍ଷା ପ୍ରଶିକ୍ଷଣ କାର୍ଯ୍ୟକ୍ରମ**

୧୯୯୯ ମସିହା ନୂତନ ବର୍ଷର ପ୍ରଥମ ସପ୍ତାହରେ ମୋତେ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶର ଶିକ୍ଷା ବିଭାଗର ନିର୍ଦ୍ଦେଶକ (ମାଧ୍ୟମିକ ଶିକ୍ଷା) ଶ୍ରୀମତୀ ଆରତୀ କାନ୍ତଙ୍କର ଡ଼ିସେମ୍ବର ମାସ ୩୧ ତାରିଖ, ୧୯୯୮ ମସିହାର ଏକ ଚିଠି ମିଳିଲା । ଚିଠିରେ ସେ ଲେଖିଥିଲେ ଯେ ମୋତେ ମାନବ ସମ୍ବଳ ବିକାଶ ମନ୍ତ୍ରାଳୟର ଶିକ୍ଷାବିଭାଗ ତରଫରୁ ଜାତୀୟ ଜନସଂଖ୍ୟା ଶିକ୍ଷା ପ୍ରକଳ୍ପ ପରିଚାଳନା ଏବଂ ମୂଲ୍ୟାୟନ ବିଷୟରେ ଜାନୁୟାରୀ ମାସ ୧୧ ତାରିଖରୁ ଜାନୁୟାରୀ ୨୨ ତାରିଖ ପର୍ଯ୍ୟନ୍ତ ଏକ ସ୍ୱଳ୍ପକାଳୀନ ପ୍ରଶିକ୍ଷଣ ନେବା ନିମନ୍ତେ ବ୍ୟାଙ୍କକ୍‌ସ୍ଥିତ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟକୁ ଯିବା ନିମନ୍ତେ ମନୋନୀତ କରାଯାଇଅଛି ।

ସେଥିପାଇଁ ସେ ମୋତେ ମୋର ବାୟୋଡ଼ାଟା (Bio-data) ପଠାଇବା ପାଇଁ କହିଥିଲେ । ଏହା ବ୍ୟତୀତ ସେ ଓଡ଼ିଶା ସରକାରଙ୍କ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ସଚିବଙ୍କ ପାଖକୁ ମଧ୍ୟ ଏକ ସ୍ୱତନ୍ତ୍ର ଚିଠି ଦେଇଥିଲେ ବୋଲି ଉଲ୍ଲେଖ କରି ପାସପୋର୍ଟ ସଂପର୍କୀୟ ତଥ୍ୟ ଓ ଆନୁଷଙ୍ଗିକ କାଗଜପତ୍ର ହାସଲ କରିବା ନିମନ୍ତେ କହିଥିଲେ ।

ସେତେବେଳେ ରାଜ୍ୟ ସଚିବାଳୟର କେତେକ କର୍ମଚାରୀ ମୋର ଫାଇଲପତ୍ରକୁ ଆକ୍ରୋଶମୂଳକ ଭାବେ ଡ଼େରି କରିବାକୁ ଚେଷ୍ଟା କରୁଥିଲେ । ମୁଁ ସେମାନଙ୍କ ପାଖକୁ ଗଲି ନାହିଁ କିମ୍ବା ମୋର କାଗଜପତ୍ର ଠିକ୍‌ଠାକ୍ କରିବାକୁ କହିଲି ନାହିଁ । ସେ ସମୟରେ

ସେକ୍ରେଟେରୀଏଟ୍ କ୍ୟାଡ଼ରରୁ ଉଠି ଅତିରିକ୍ତ ଶାସନ ସଚିବ ପଦକୁ ଯାଇଥିବା ଶ୍ରୀଯୁକ୍ତ ବଂଶୀଧର ମହାନ୍ତି ଆମ ନିର୍ଦ୍ଦେଶାଳୟ ଦାୟିତ୍ୱରେ ଥାଆନ୍ତି । ହଠାତ୍ ତାଙ୍କ ପାଖରୁ ମୋ ପାଖକୁ ଫୋନ ଆସିଲା ତାଙ୍କୁ ସେକ୍ରେଟେରୀଏଟ୍‌ରେ ତୁରନ୍ତ ଦେଖା ନିମନ୍ତେ ।

ସେକ୍ରେଟେରୀଏଟ୍ ଯାଇ ତାଙ୍କୁ ଦେଖା କରିବା ମାତ୍ରେ ସେ ମୋତେ କହିଲେ, "ବ୍ରହ୍ମା ବାବୁ ! ଆପଣ କ'ଣ ଥାଇଲାଣ୍ଡ ଯିବାକୁ ଚାହାନ୍ତି ନାହିଁ ?" ଏହା କହି ସେ ଫାଇଲ ମଗାଇ ମୋର ସମସ୍ତ କାଗଜପତ୍ର କାମ କରାଇଦେଲେ । କହିଲେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଶାସନ ସଚିବଙ୍କର ଛୁଟିରେ ଯିବାର ଅଛି ।

ଏହା କହି ମୋତେ ପାଖରେ ବସାଇ ସେ ମହାଶୟ ସମସ୍ତ କାର୍ଯ୍ୟ କଲେ । ନିଜେ ଯାଇ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଶାସନ ସଚିବ ଶ୍ରୀଯୁକ୍ତ ଯୋଗେନ୍ଦ୍ର ନାରାୟଣ ପାତ୍ରଙ୍କଠାରୁ "No Objection Certificate" ଦସ୍ତଖତ କରାଇ ତା'ର ଗୋଟିଏ ନକଲ ମୋତେ ଦେଲେ ।

ସାଧାରଣତଃ ଜଣେ କର୍ମଚାରୀ ବିଦେଶ ଯାଉ ଏକଥା ଅନେକ ଚାହାନ୍ତି ନାହିଁ । କେତେକଙ୍କ ବିରୋଧ ସତ୍ତ୍ୱେ ମୋ ଫାଇଲପତ୍ର ଯେ ଏକ ନାଟକୀୟ ମୋଡ଼୍ ନେଇ ହୋଇଯିବ, ତାହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । କଥା ପ୍ରସଙ୍ଗରେ ମୁଁ ଅତିରିକ୍ତ ଶାସନ ସଚିବ ଶ୍ରୀଯୁକ୍ତ ମହାନ୍ତିଙ୍କୁ ପଚାରିଲି, "ସାର୍ ! କେଉଁ କାରଣରୁ ଆପଣମାନେ ମୋ ପ୍ରତି ଏତେ ସଦୟ ହେଲେ ?"

ସେ ମୋତେ ହସି ହସି କହିଲେ, "ଆପଣଙ୍କ ନିର୍ଦ୍ଦେଶକ କାମଟିକୁ ତାଙ୍କ ବ୍ୟକ୍ତିଗତ କାମଭଳି କରିବାକୁ ମୋତେ କହିଯାଇଥିଲେ । ସଚିବ ଛୁଟିରେ ଯିବାକୁ ଥିବାରୁ କାଳେ "No Objection Certificate" ପାଇବାରେ ବିଳମ୍ବ ହେବ ସେଥିପାଇଁ ସେ ତାଙ୍କୁ ମଧ୍ୟ ଛୁଟିରେ ଯିବା ପୂର୍ବରୁ ଏହି କାମଟି କରିଦେବାକୁ ଅନୁରୋଧ କରିଥିଲେ ।"

ଅନ୍ୟମାନଙ୍କୁ ଅଯାଚିତ ଭାବେ ସାହାଯ୍ୟ କରିବାର ଏକ ଦୃଷ୍ଟାନ୍ତ ହେଉଛନ୍ତି ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର । ସେ ମୋତେ ସାହାଯ୍ୟ କଲାଭଳି ଅନେକ ସମୟରେ ଉପରେ ପଡ଼ି ବିଭିନ୍ନ ବ୍ୟକ୍ତି ବିଶେଷଙ୍କୁ ସାହାଯ୍ୟ କରିଛନ୍ତି । କାହାଠାରୁ କିଛି ପାଇବାର ଆଶା ଓ ପ୍ରତ୍ୟାଶା ନ ଥିବାରୁ ସେ ଆଜି ମଧ୍ୟ ଆମ ରାଜ୍ୟର ଜଣେ ସମ୍ମାନନୀୟ ବ୍ୟକ୍ତିଭାବେ ନିଜର ସ୍ୱତନ୍ତ୍ର ପରିଚିତି ରଖିଛନ୍ତି ।

## ଦିଲ୍ଲୀରେ ପାସପୋର୍ଟ ପାଇବା ସମସ୍ୟା

ଥାଇଲାଣ୍ଡ ଯିବାପୂର୍ବରୁ ମୁଁ ଭୁବନେଶ୍ୱରର ପାସପୋର୍ଟ ଅଫିସରୁ ଏକ ବ୍ୟକ୍ତିଗତ ପାସପୋର୍ଟ ନଂ : ଏ୬୪୩୮ ୨୫୩ ତାରିଖ ୫.୧.୧୯୯୯ କରାଇ ନେଇଥିଲି । ଏହା ଜରୁରୀକାଳୀନ ଭିତ୍ତିରେ ନିର୍ଦ୍ଦେଶାଳୟର ନିର୍ଦ୍ଦେଶକ ପ୍ରଫେସର ମହାପାତ୍ରଙ୍କ ପ୍ରମାଣପତ୍ର ଆଧାରରେ ମୋ ପାଇଁ ପ୍ରସ୍ତୁତ ହୋଇଥିଲା । ପାଞ୍ଚତାରିଖରେ ଏନ୍.ସି.ଇ.ଆର.ଟି କାର୍ଯ୍ୟାଳୟରେ ପହଞ୍ଚି ଜାତୀୟ ସଂଯୋଜକ ପ୍ରଫେସର ପାଣ୍ଡେଙ୍କ ମାଧ୍ୟମରେ ଆବଶ୍ୟକ କାଗଜପତ୍ର ନେଇ ମାନବ ସମ୍ବଳ ବିକାଶ ବିଭାଗର ବିଦ୍ୟାଳୟ ଶିକ୍ଷାର ନିର୍ଦ୍ଦେଶକ ଆରତୀକାନ୍ତଙ୍କୁ ଦେଖା କରିବାକୁ ଥିବାରୁ ମୁଁ ଜାନୁୟାରୀ ମାସ ୪ ତାରିଖରେ ଦିଲ୍ଲୀ ଗଲି । ମୋ ସହିତ ନାଗାଲାଣ୍ଡ ଏସ୍.ସି.ଇ.ଆର୍.ଟିର ପ୍ରକଳ୍ପ ସଂଯୋଜକ ଏସ୍.ବି. ଆଇନ ଯିବାର ଥିବାରୁ ଆମେ ଦୁହେଁ ପ୍ରଫେସର ପାଣ୍ଡେଙ୍କୁ ତାଙ୍କ କାର୍ଯ୍ୟାଳୟରେ ଦେଖାକଲୁ । ମୋର ପାସପୋର୍ଟ ହୋଇଥିବା ହେତୁ ପ୍ରଫେସର ପାଣ୍ଡେ ଆଶ୍ୱସ୍ତ ହେଲେ । ବନ୍ଧୁ ଆଇନଙ୍କ ପାର୍ସପୋର୍ଟ କରିବା ନିମନ୍ତେ ସେ ମାନବ ସମ୍ବଳ ମନ୍ତ୍ରାଳୟକୁ ଲେଖିଲେ । ମନ୍ତ୍ରାଳୟର ଚିଠି ନେଇ ପାସପୋର୍ଟ ଅଫିସ, ପାସପୋର୍ଟ ଅଫିସରୁ ଭିସା ପାଇଁ ଥାଇଲାଣ୍ଡ ଦୂତାବାସ (Embassy) ଯିବାକୁ ଥିବାରୁ ଏନ୍.ସି.ଇ.ଆର୍.ଟି ତରଫରୁ ଆମକୁ ଏକ ଗାଡ଼ି ଦିଆଗଲା ।

ଆମେ ଯେମିତି ମନ୍ତ୍ରାଳୟର ବିଦ୍ୟାଳୟ ଶିକ୍ଷାର ଡାଇରେକ୍ଟରଙ୍କୁ ସାକ୍ଷାତ କଲୁ ସେ ସଙ୍ଗେ ସଙ୍ଗେ ପାସପୋର୍ଟ ଅଫିସକୁ ବନ୍ଧୁ ଆଇନ୍ ଓ ମୋ ପାଇଁ ପାସପୋର୍ଟ କରିବା ନିମନ୍ତେ ଚିଠି ଲେଖିଲେ । ମୋତେ କହିଲେ ଯେ ତୁମେ ସରକାରଙ୍କ ଦ୍ୱାରା ମନୋନୀତ ହୋଇ ଯାଉଥିବା ହେତୁ 'ସରକାରୀ ପାସପୋର୍ଟ' (Official Passport)ରେ ଯାତ୍ରା କରିବ । ମୋର ବ୍ୟକ୍ତିଗତ ପାସପୋର୍ଟ କାମ ଦେବ ନାହିଁ । ଏ କଥାର କୌଣସି ଯୁକ୍ତି ନ ଥିଲା । ଆମ ସହିତ ଜନଶିକ୍ଷା (Adult Education) ବିଭାଗର ଅନ୍ୟ ଆଠଜଣ ବ୍ୟକ୍ତିଙ୍କର ନିଜସ୍ୱ ପାସପୋର୍ଟ ଥିଲା । ସେଥିରେ ସେମାନେ ଯାତ୍ରା କରୁଛନ୍ତି ବୋଲି କହିଲେ ମଧ୍ୟ ଶ୍ରୀମତୀ ଆରତୀକାନ୍ତ କୌଣସି କଥା ଶୁଣିଲେ ନାହିଁ । ଅଗତ୍ୟା ପୁଣି ପାସପୋର୍ଟ ପାଇଁ ପୁନଃ କାର୍ଯ୍ୟ ଆରମ୍ଭ ହେଲା ।

ଆମକୁ ଛଅ ତାରିଖ ଦିନ ପୁଣି ମନ୍ତ୍ରାଳୟରୁ ଚିଠି ଧରି ଅପରାହ୍ଣରେ ପାସପୋର୍ଟ ଅଫିସରେ ସମସ୍ତ କାଗଜପତ୍ର ଦାଖଲ କରିବାକୁ ପଡ଼ିଲା । ଆଇନ୍ ବାବୁ ତାଙ୍କ କାଗଜପତ୍ର ଓ ମୋ କାଗଜପତ୍ର କାଉଣ୍ଟରସ୍ଥିତ ବ୍ୟକ୍ତିଙ୍କୁ ଦେଲେ । ସେ ସମସ୍ତ ରଖିଲା ପରେ ଆଇନ ବାବୁ ସଙ୍ଗେ ସଙ୍ଗେ ତାଙ୍କୁ କାମଟିକୁ କରିଦେବାକୁ କହିଲେ । ଏ କାମ କରିବାକୁ

ଦୁଇଦିନ ସମୟ ଲାଗିବ ଓ ଯେତେ ଶୀଘ୍ର ହେବ କରିଦେବେ ବୋଲି ସେ କହିଲେ । ଆମେ ପରଦିନ କରିଦେବାକୁ କହି ସେଠାରୁ ଚାଲି ଆସିଲୁ । ତା'ପର ଦିନ ଅର୍ଥାତ୍ ସାତ ତାରିଖ ଗୁରୁବାର ଦିନ ପହଞ୍ଚି ଦେଖିଲୁ ଯେ ଆମ କାମ ହୋଇ ନାହିଁ । ଆମଠାରୁ କାଗଜପତ୍ର ନେଇଥିବା କର୍ମଚାରୀ ଜଣକୁ ପଚାରିବାରୁ ସେ କହିଲେ ଯେ, "ମୁଁ କ'ଣ କରିବି, ଆପଣମାନେ ପାସପୋର୍ଟ ଅଫିସରଙ୍କୁ କୁହନ୍ତୁ ।"

ଆମେ ପାସପୋର୍ଟ ଅଫିସରଙ୍କୁ ଭେଟି ଜଣାଇଲୁ ଯେ ଆମକୁ ଦଶ ତାରିଖରେ ଥାଇଲାଣ୍ଡ ଅଭିମୁଖେ ଭାରତ ଛାଡ଼ିବାକୁ ପଡ଼ିବ । ସେଥିପାଇଁ ଟିକେଟ୍ ହୋଇଯାଇଛି । ପୁନଶ୍ଚ ୯ ତାରିଖ ଦିନ ଶନିବାର ପଡୁଥିବା ହେତୁ ଥାଇଲାଣ୍ଡ ଦୂତାବାସରୁ ଛୁଟି ଦିନରେ ଭିସା କରିବା ମଧ୍ୟ ସମ୍ଭବ ହେବ ନାହିଁ । ତେଣୁ ଆଜି (୭ ତାରିଖ, ଗୁରୁବାର)ଯଦି ପାସପୋର୍ଟ ହୋଇଯାଆନ୍ତା, ତେବେ ଆମେ ଆଠ ତାରିଖ ଦିନ ଥାଇଲାଣ୍ଡ ଦୂତାବାସରୁ ଭିସା କରେଇ ନେଇ ପାରନ୍ତୁ ।"

ଆମ କଥା ଶୁଣି ଭାରତ ସରକାରଙ୍କ ବିଦେଶ ମନ୍ତ୍ରାଳୟର ଅନୁସଚିବ ତଥା ପାସପୋର୍ଟ ଦାୟିତ୍ୱରେ ଥିବା ଅଧିକାରୀ ଜଣକ କହିଲେ, "ଆମେ କ'ଣ କରିବୁ ? ପାସପୋର୍ଟରେ ଆପଣଙ୍କ ଫଟୋ ଓ ଦସ୍ତଖତ ଯେଉଁ ପଦ୍ଧତିରେ ପ୍ରସ୍ତୁତ ହୁଏ, ସେଥିପାଇଁ ଅତିକମ୍‌ରେ ୨୪ ଘଣ୍ଟା ସମୟ ଲାଗିବ । ସେଥିପାଇଁ ଆଜି ଦେବା ସମ୍ଭବ ହେବ ନାହିଁ । ଆପଣମାନେ ଆସନ୍ତା କାଲି ଆସନ୍ତୁ ।"

ଅନ୍ୟୋନ୍ୟପାୟ ହୋଇ ଆମେ ଏନ୍.ସି.ଇ.ଆର.ଟି ଫେରି ଆସିଲୁ । ଆମଠାରୁ ଏକଥା ଶୁଣି ପ୍ରଫେସର ପାଣ୍ଡେ ମଧ୍ୟ ବ୍ୟସ୍ତ ଓ ବିବ୍ରତ ହୋଇ ପଡ଼ିଲେ । କହିଲେ, "ଆଇନର ଆଦୌ ପାସପୋର୍ଟ ନ ଥିଲା, ମାତ୍ର ବ୍ରହ୍ମାର ପାସପୋର୍ଟ ଥିଲା । ତାଙ୍କୁ ହଇରାଣ କରିବାର କି ଆବଶ୍ୟକତା ଥିଲା । ଆଗାମୀ କାଲି ଅର୍ଥାତ୍ ଆଠ ତାରିଖ ଦିନ ୟୁ.ଏନ୍.ଏଫ.ପି.ଏ ଅଫିସରେ ଆପଣମାନେ ଯେଉଁ ଏଗାର ଜଣ ଥାଇଲାଣ୍ଡ ଯାଉଛନ୍ତି, ସେମାନଙ୍କର ଏକ ପ୍ରାକ୍ ପ୍ରସ୍ଥାନ ଆଲୋଚନା ହେବ । ଆଲୋଚନା ଶେଷରେ ଆପଣମାନଙ୍କ ଖର୍ଚ୍ଚ ପାଇଁ ଆବଶ୍ୟକ ଅର୍ଥ ଚେକ୍ ମାଧ୍ୟମରେ ଦିଆଯିବ, ଯାହାର ଉଲ୍ଲେଖ ମଧ୍ୟ ପାସପୋର୍ଟରେ କରାଯିବ । ପୁଣି ନଅ ତାରିଖ ଦିନ ସମସ୍ତ ଅଫିସ୍ ଛୁଟି । ଆଠ ତାରିଖ ଦିନ ଯଦି ମଧ୍ୟାହ୍ନ ପୂର୍ବରୁ ପାସପୋର୍ଟ ମିଳିଯାଏ ତେବେ ସିଧାସିଧା ଥାଇଲାଣ୍ଡ ଦୂତାବାସକୁ ଯାଇ ଚେଷ୍ଟା କରନ୍ତୁ । ଯାହା ହେବାର ଥିବ ହେବ । ଆଉ କିଛି କରି ହେବ ନାହିଁ ।"

ଏହା କହି ସେ ତାଙ୍କ କାର ଚାଳକଙ୍କୁ କହିଲେ ଆମକୁ ପରଦିନ ସକାଳ ନଅଟା ମଧ୍ୟରେ ପାସପୋର୍ଟ କାର୍ଯ୍ୟାଳୟରେ ପହଞ୍ଚାଇ ଦେବା ପାଇଁ । ଆଠ ତାରିଖ

ଦିନ ଠିକ୍ ସକାଳ ନଅଟାରେ ଆମେ ପାସପୋର୍ଟ ଅଫିସରେ ପହଞ୍ଚି ଦେଖିଲୁ ଯେ ଆମଠାରୁ ଯେଉଁ କିରାଣି ଜଣକ ପାସପୋର୍ଟ କାଗଜପତ୍ର ନେଇଥିଲେ ନାହାଁନ୍ତି । ଆମେ ଆଉ ଯାହାକୁ ଯେତେ ପଚାରିଲେ ବି କେହି ପାସପୋର୍ଟର ସ୍ଥିତି ସଂପର୍କରେ କିଛି କହି ପାରିଲେ ନାହିଁ । ଯାହାହେଉ ସେ ଭଦ୍ରବ୍ୟକ୍ତି ଜଣକ ବାରଟାବେଳେ ଆସି ଆମକୁ କହିଲେ, "ମୁଁ ପ୍ରାଣପଣେ ଚେଷ୍ଟା କରୁଛି, ଗୋଟାଏ ମଧ୍ୟରେ ପାସପୋର୍ଟ ଦେଇଦେବା ପାଇଁ । ପ୍ରସ୍ତୁତ ପାସପୋର୍ଟ ଓଦା ଅଛି ଶୁଖି ନାହିଁ । ଶୁଖିଗଲେ ମୁଁ ଅଫିସରଙ୍କଠାରୁ ଆଣି ଦେବି । ଆପଣମାନେ ଏଠାରୁ ସିଧା ସିଧା ଥାଇଲାଣ୍ଡ ଦୂତାବାସକୁ ଭିସା ପାଇଁ ଚାଲିଯିବେ । ସେଥିପାଇଁ ଏଠାରେ ଥାଆନ୍ତୁ ଓ ନିଜର ଗାଡ଼ି ପ୍ରସ୍ତୁତ କରି ରଖିଥାନ୍ତୁ ।"

ସେ ମହାଶୟ ଆମକୁ ଗୋଟାକ ମଧ୍ୟରେ ପାସପୋର୍ଟ ଦେଲେ । ଏନ.ସି.ଇ.ଆର୍.ଟି ଗାଡ଼ି ଆମ ସହିତ ଥିବା ହେତୁ ଆମେ ସିଧାସିଧା ଥାଇଲାଣ୍ଡସ୍ଥିତ ଦୂତାବାସ ଅଭିମୁଖେ ଚାଲିଲୁ । ସେଠାରେ ଭିସା ନିମନ୍ତେ ସମସ୍ତ କାଗଜପତ୍ର ଓ ପାସପୋର୍ଟ ଦାଖଲ କଲୁ । ସେ ଅଫିସରେ ଭିଡ଼ ନଥିବାରୁ ଭାବିଥିଲୁ ଯେ କାମ ସହଜରେ ହୋଇଯିବ । ସେମାନେ ଭିସା କାମ କରିଦେଲେ ଓ ଆମକୁ କହିଲେ ଭିସାରେ ଦସ୍ତଖତ କରିବା ନିମନ୍ତେ କ୍ଷମତାପ୍ରାପ୍ତ ଅଧିକାରୀ ଜଣକ ବାହାରକୁ ଯାଇଛନ୍ତି । ସେ ଆସୁ ଆସୁ ରାତି ସାତଟା କି ଆଠଟା ହେବ ।" ଯାହାହେଉ ସେ ଭଦ୍ରବ୍ୟକ୍ତି ରାତି ସାଢ଼େ ଆଠଟାବେଳେ ଆସି ପହଞ୍ଚିଲେ । ସେ ଆସିବାର ପାଞ୍ଚ ଦଶମିନିଟ ମଧ୍ୟରେ ଆମର ଭିସା ହୋଇଗଲା ।

ସେଦିନ ଏନ୍.ସି.ଇ.ଆରଟିକୁ ଫେରୁ ଫେରୁ ରାତି ନଅଟା ହୋଇଗଲା । ଆମକୁ ପ୍ରଫେସର ପାଣ୍ଡେ ତାଙ୍କ କୋଠରିରେ ଅପେକ୍ଷା କରିଥିଲେ । ଆମ ସହିତ ଜନଶିକ୍ଷା ବିଭାଗର ଯାଉଥିବା ଅନ୍ୟ ନଅଜଣଙ୍କର ପାସପୋର୍ଟ ଥିବା ହେତୁ ତାଙ୍କୁ ଥାଇଲାଣ୍ଡ ଯିବା ପାଇଁ ଟିକେଟ ଓ ଆବଶ୍ୟକ ଚେକ୍ ମିଳିଯାଇଛି ବୋଲି ପ୍ରଫେସର ପାଣ୍ଡେ ସମ୍ବାଦ ଦେଲେ । ପରଦିନ ଛୁଟିଥିବା ହେତୁ ସେ ଆମକୁ ଥୋମାସକୁକ୍ ଟ୍ରାଭେଲ ଏଜେଣ୍ଟ ଯାଇ ଟିକେଟ ଆଣିବାକୁ କହିଲେ । ସେଠାରେ ଆମକୁ ମଧ୍ୟ ଚେକ୍ ଆଦି ଦେବାକୁ ୟୁ.ଏନ୍.ଏଫ.ପିଏ ଅଫିସର ଜଣେ କର୍ମଚାରୀ ଅପେକ୍ଷା କରି ରହିଥିବେ ବୋଲି କହିଲେ । ତେଣୁ ଆମେ ଜାନୁୟାରୀ ମାସ ୯ ତାରିଖ ଶନିବାର ଦିନ ସକାଳୁ

ସକାଳୁ ସେସବୁ କାମ କରି ଆଶ୍ୱସ୍ତ ହେଲୁ । ପରଦିନ ଆନ୍ତର୍ଜାତିକ ବିମାନରେ ଥାଇଲାଣ୍ଡ ଅଭିମୁଖେ ଦିଲ୍ଲୀରୁ ଯାତ୍ରା କଲୁ । ସେଦିନ ଥିଲା ରବିବାର, ୧୯୯୯ ମସିହା ଜାନୁୟାରୀ ମାସ ୧୦ ତାରିଖ ।

**ଥାଇଲାଣ୍ଡର ଐତିହାସିକ ପୃଷ୍ଠଭୂମି**

ଥାଇଲାଣ୍ଡ ଭାରତର ଦକ୍ଷିଣ ପୂର୍ବରେ ଅବସ୍ଥିତ ଏକ ସାମ୍ରାଜ୍ୟ । ୧୯୩୯ ମସିହା ପର୍ଯ୍ୟନ୍ତ ଏହା ଶ୍ୟାମ ଦେଶ ନାମରେ ପରିଚିତ ଥିଲା । ପରବର୍ତ୍ତୀ ସମୟରେ ଏହାର ନାମକରଣ ଥାଇଲାଣ୍ଡ କରାଯାଇଅଛି । 'ଥାଇ' ଶବ୍ଦର ଅର୍ଥ ହେଉଛି 'ମୁକ୍ତ' । ତେଣୁ ଏହା ମୁକ୍ତ ଅଧିବାସୀମାନଙ୍କର ରାଜ୍ୟ (The land of the free) ନାମରେ ଜଣାଶୁଣା । ୧୯୩୨ ମସିହାରେ ରାଜାଙ୍କର ଚରମ ଶାସନ ପଦ୍ଧତି ଲୋପ ପାଇଥିଲେ ମଧ୍ୟ ରାଜତନ୍ତ୍ର ଏ ପର୍ଯ୍ୟନ୍ତ ଅତୁଟ ରହିଅଛି । ଲୋକମାନେ ପିନ୍ଧୁଥିବା ଲକେଟ୍‌ରେ ରାଜା କିମ୍ବା ରାଜକୁମାରଙ୍କ ଛବି ସାଧାରଣତଃ ଦେଖିବାକୁ ମିଳିଥାଏ । ଏହା ହିଁ ରାଜତନ୍ତ୍ର ପ୍ରତି ଥାଇ ଅଧିବାସୀଙ୍କର ସମ୍ମାନ ସୂଚାଇ ଥାଏ ।

**ପ୍ରଶିକ୍ଷଣର କେନ୍ଦ୍ରବିନ୍ଦୁ : ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟ**

ବିଶ୍ୱବିଦ୍ୟାଳୟ ଶିକ୍ଷା ଓ ସଂସ୍କୃତିର ବାହକ ରୂପେ ଥାଇଲାଣ୍ଡର ପ୍ରତିଷ୍ଠିତ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର ସ୍ଥାନ ଅଛି । ଏହା ଏକ ଘରୋଇ ବିଶ୍ୱବିଦ୍ୟାଳୟ । ଏଇ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ, ଗବେଷଣା, ଗୋଷ୍ଠୀ ସେବା, ସାଂସ୍କୃତିକ ସୁରକ୍ଷା ଲାଗି ସାତଟି ବିଷୟରେ ନିମ୍ନ ସ୍ନାତକ (Under graduate) ସ୍ତର ପର୍ଯ୍ୟନ୍ତ ଶିକ୍ଷାଦାନ ଦିଆଯାଏ । ସେଇସବୁ ବିଷୟଗୁଡ଼ିକ ହେଲା, ବ୍ୟବସାୟ ପ୍ରଶାସନ, ହିସାବ ପ୍ରଶାସନ, ଅର୍ଥନୀତି, ଆଇନ, କଳା, ଯୋଗାଯୋଗ ଏବଂ ଯନ୍ତ୍ର ବିଦ୍ୟା । ଏହା ବ୍ୟତୀତ ସ୍ନାତକୋତ୍ତର ପର୍ଯ୍ୟନ୍ତ ଆଇନ, ବ୍ୟବସାୟ, ଯୋଗାଯୋଗ, କଳା, ଅର୍ଥନୀତି ଆଦି ଶିକ୍ଷା ଦିଆଯାଏ । ଏସିଆ-ଭିତ୍ତିକ ଯୋଗାଯୋଗ କେନ୍ଦ୍ର (Asia Specific Com-munication) ହେଉଛି ଏଇ ଅନୁଷ୍ଠାନର ଅନ୍ୟ ଏକ ଆକର୍ଷଣୀୟ କେନ୍ଦ୍ର । ଏଇ କେନ୍ଦ୍ର ମାଧ୍ୟମରେ ଆନ୍ତର୍ଜାତିକ ସ୍ତରରେ କାର୍ଯ୍ୟକରୁଥିବା ବିଭିନ୍ନ ଦେଶର ପ୍ରଶାସକ ଅଧିକାରୀମାନଙ୍କୁ ସ୍ୱଳ୍ପକାଳୀନ (Specific) ପ୍ରଶିକ୍ଷଣ ଦିଆଯାଇଥାଏ । ଜନସଂଖ୍ୟା ଶିକ୍ଷା ପ୍ରକଳ୍ପ ପରିଚାଳନା ଓ ମୂଲ୍ୟାୟନ ପ୍ରଶିକ୍ଷଣ କାର୍ଯ୍ୟ ଜାନୁଆରୀ ମାସ ୧୧ ତାରିଖରେ ଆରମ୍ଭ ହୋଇଥିଲା । ଏଇ କାର୍ଯ୍ୟକ୍ରମର ଉଦ୍‌ଘାଟନ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟର

ସଭାପତି ପ୍ରଫେସର ବ୍ରୁନସନ୍ ଓ୍ୟାକସଲ୍ କରିଥିଲେ । ଏଇ କାର୍ଯ୍ୟକ୍ରମର ଦାୟିତ୍ୱ ନେଇଥିଲେ ଏସିଆ ଭିତ୍ତିକ ଯୋଗାଯୋଗ କେନ୍ଦ୍ରର ମୁଖ୍ୟ ଡଃ କାପିଆ । କ୍ଷେତ୍ର ପରିଦର୍ଶନ (Field Trip) ସହିତ ସମୁଦାୟ ବାଇଶଟି ଶିକ୍ଷାଦାନ ଓ କାର୍ଯ୍ୟାବଳୀ ମଧ୍ୟରୁ ଡକ୍ଟର କାପିଆ ଏଗାରଟିର ଦାୟିତ୍ୱ ନିଜେ ନେଇଥିଲେ ।

**ପ୍ରଶିକ୍ଷଣର ଶୈଳୀ : କିଛି ଆଲୋଚନା ଓ ପାଠପଢ଼ା**

ପ୍ରଶିକ୍ଷଣର ଶୈଳୀ ମୁଖ୍ୟତଃ ଆଲୋଚନାଭିତ୍ତିକ ଥିଲା । ଡକ୍ଟର କାପିଆଙ୍କ ଶିକ୍ଷାଦାନ ସରଳ ଓ ସାବଲୀଳ ଥିଲା । ସେ ସମସ୍ତ ଜଟିଳ ତତ୍ତ୍ୱକୁ ପ୍ରାଥମିକ ଶ୍ରେଣୀର ପିଲାଙ୍କୁ ବୁଝାଇଲା ଭଳି ବୁଝାଉଥିଲେ । ଆଲୋଚନାକୁ ଆଗେଇ ନେବାପାଇଁ ସେ ମଝିରେ ମଝିରେ ପ୍ରଶ୍ନ ପଚାରୁଥିଲେ ଓ ଆମଠାରୁ ଉତ୍ତର ଆଦାୟ କରୁଥିଲେ ।

ଦିନେ ମଧ୍ୟାହ୍ନଭୋଜନ ସମୟରେ ମୁଁ ଏକାକୀ ଭୋଜନାଳୟର ଏକ କୋଣରେ ଥିବା ଡାଇନିଙ୍ଗ୍ ଟେବୁଲ ଟିକଟରେ ବସି ଖାଉଥିଲି । ତା'ର ଆଖପାଖ ଚେୟାର ଖାଲି ପଡ଼ିଥିଲା । ସେ ହଠାତ୍ ନିଜ ଖାଇବା ସ୍ଥାନରୁ ଉଠିଆସି ମୋ ପାଖରେ ବସିଲେ ଓ ମୋତେ ପ୍ରଶ୍ନ କଲେ, "ଡକ୍ଟର ବ୍ରହ୍ମା, ତୁମେ କ'ଣ ଜଣେ ଡାକ୍ତର ?" ମୁଁ ମନା କଲି, ଶିଶୁସାହିତ୍ୟର ଶିକ୍ଷାଗତ ପ୍ରୟୋଗ ସଂପର୍କରେ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ହାସଲ କରିଛି ବୋଲି କହିଲି । ସେ ମୋତେ କହିଲେ, "ଆପଣ ଆଲୋଚନା ସମୟରେ ଯେପରି ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କୀୟ ବିଷୟବସ୍ତୁ ଆଲୋଚନା କରୁଥିଲେ, ସେଥିରୁ ମୋର ଧାରଣା ହୋଇଥିଲା ଯେ ଆପଣ ଜଣେ ଡାକ୍ତର ହୋଇଥିବେ ।"

ମୁଁ ତାଙ୍କ କଥା ଶୁଣି ଟିକିଏ ହସିଲି । କିଛିକ୍ଷଣ ରହି ତାଙ୍କ ଶୈକ୍ଷିକ ପୃଷ୍ଠଭୂମି ସଂପର୍କରେ ପଚାରିଲି । ତାଙ୍କ କଥାରୁ ଜାଣିବାକୁ ପାଇଲି ଯେ ସେ ଶିକ୍ଷକ ଶିକ୍ଷା ଅନୁଷ୍ଠାନର ପୂର୍ବତନ ଡିନ୍ ଥିଲେ । ଶିଶୁ ଶିକ୍ଷା ଓ ଜନଶିକ୍ଷା ଉପରେ ତାଙ୍କର ତିରିଶ ବର୍ଷର ଅଭିଜ୍ଞତା ଅଛି । ଏହା ସହିତ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ମଧ୍ୟ ତାଙ୍କର ଉଲ୍ଲେଖନୀୟ ଅବଦାନ ଅଛି ।

ଡକ୍ଟର କାପିଆ ଏଇ ଏଗାର ଦିନିଆ ପ୍ରଶିକ୍ଷଣ ସମୟରେ ପ୍ରଶିକ୍ଷାର୍ଥୀମାନଙ୍କ କାର୍ଯ୍ୟଧାରା ଉପରେ ନିଜର ସନ୍ତୋଷ ପ୍ରକାଶ କରିଥିଲେ । କାର୍ଯ୍ୟକ୍ରମର ଶେଷ ଉତ୍ସବ ଦିନ ସେ ଖୋଲାଖୋଲି କହିଥିଲେ, "ଆପଣଙ୍କ ଭଳି ଯୋଗ୍ୟ ଲୋକମାନଙ୍କୁ ମନୋନୀତ କରିଥିବା ବ୍ୟକ୍ତିବିଶେଷଙ୍କୁ ଆମ ଅନୁଷ୍ଠାନ ତରଫରୁ ଧନ୍ୟବାଦ ଜଣାଇଦେବେ ।"

ସେ ତାଙ୍କର ମତାମତ ଭାରତ ସରକାର ଓ ବିଶ୍ୱ ଜନସଂଖ୍ୟା ପାଣ୍ଠିକୁ ଜଣାଇଲେ କି ନାହିଁ, ତାହା ଜାଣିବାର ସୁଯୋଗ ନ ଥିଲେ ମଧ୍ୟ ତାଙ୍କ କଥା କେଇପଦରେ ତାଙ୍କ ମହାନୁଭବତାର ପରିଚୟ ମିଳିଥିଲା ।

ପ୍ରଶିକ୍ଷଣ ସହ ଭ୍ରମଣ

ଆମ ଜନସଂଖ୍ୟା ଶିକ୍ଷା ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଭ୍ରମଣଭିତ୍ତିକ ଜ୍ଞାନ ଆହରଣ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥିଲା । ଆମେ ଜାନୁୟାରୀ ୧ ୨ ତାରିଖରେ ଥାଇଲାଣ୍ଡର ଶିକ୍ଷା ମନ୍ତ୍ରାଳୟ ଅନୁଧ୍ୟାନ କରିବାକୁ ଯାଇଥିଲୁ । ଥାଇଲାଣ୍ଡର ଅଣଆନୁଷ୍ଠାନିକ ଶିକ୍ଷା (Nonformal Education) ର ପରିସର ଅତି ବ୍ୟାପକ । ଏଇ ଶିକ୍ଷା ନିମ୍ନୋକ୍ତ ଲକ୍ଷ୍ୟ ହାସଲ ଦିଗରେ କାର୍ଯ୍ୟ କରି ଆସୁଅଛି

- ମୌଳିକ ଶିକ୍ଷା ଓ ପ୍ରାଥମିକ ଶିକ୍ଷା
- ମାଧ୍ୟମିକ ଶିକ୍ଷା : ଉଚ୍ଚ ଓ ନିମ୍ନ ମାଧ୍ୟମିକ ଶିକ୍ଷା
- ତଥ୍ୟ ସଂଗ୍ରହ ଓ ପରିବେଷଣ

ଅଣଆନୁଷ୍ଠାନିକ ବିଭାଗ ଯେ ଆନୁଷ୍ଠାନିକ ବିଦ୍ୟାଳୟ ଶିକ୍ଷା ଓ ଶିକ୍ଷକତାକୁ ସାହାଯ୍ୟ କରୁଅଛି ଏ ଧାରଣା ସେଠାର ଆଲୋଚନାରୁ ସ୍ପଷ୍ଟ ହେଲା । ଯେଉଁମାନେ ପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ଅଧ୍ୟୟନ କରୁଛନ୍ତି, ସେମାନଙ୍କୁ ଶିକ୍ଷଣ ଓ ଶିକ୍ଷାଦାନ ସାମଗ୍ରୀ, ରେଡ଼ିଓ ଓ ଟେଲିଭିଜନ କାର୍ଯ୍ୟକ୍ରମ, ଉପଗ୍ରହ ମାଧମରେ ଦୂରଶିକ୍ଷା କାର୍ଯ୍ୟକ୍ରମ, ବିଜ୍ଞାନ ପ୍ରଦର୍ଶନୀର ଆୟୋଜନ ଆଦିରେ ସହାୟତା ଏଇ ବିଭାଗ ତରଫରୁ ଦିଆ ହେଉଅଛି । ଏତଦ୍‌ବ୍ୟତୀତ ସମଗ୍ର ଥାଇଲାଣ୍ଡରେ ଜନଶିକ୍ଷା କାର୍ଯ୍ୟକ୍ରମର ଦାୟିତ୍ୱ ମଧ୍ୟ ଏଇ ଅଣଅନୁଷ୍ଠାନିକ ବିଭାଗ ଉପରେ ନ୍ୟସ୍ତ ରହିଅଛି ।

ଆମେ ଜାନୁୟାରୀ ୨ ୦ ତାରିଖରେ ଥାଇଲାଣ୍ଡର ଏକ ଅଣଆନୁଷ୍ଠାନିକ କେନ୍ଦ୍ର ବୁଲିବାର ସୁଯୋଗ ପାଇଥିଲୁ । ଏହା ସୁଆଁଗ ଜିଲ୍ଲାସ୍ଥ ବ୍ଲାଇଟ୍ ପନିୟର ଅଣଆନୁଷ୍ଠାନିକ କେନ୍ଦ୍ର ଥିଲା । ଏଠାରେ ଗାଁ ଲୋକେ ପଢ଼ିବା ପାଇଁ ଏକ ଅଧ୍ୟୟନ କେନ୍ଦ୍ର (Reading Center) ଥିଲା । ଏଇ ଅଧ୍ୟୟନ କେନ୍ଦ୍ରକୁ ଲୋକେ ଖବରକାଗଜ, ଉପନ୍ୟାସ ଓ ଅନ୍ୟାନ୍ୟ ଜନପ୍ରିୟ ସାହିତ୍ୟ ପଢ଼ିବାକୁ ଆସୁଥିଲେ । ଗାଁର ମୁଖିଆ ଆମକୁ କହିଥିଲେ ଯେ, "ଏଇ ଅଧ୍ୟୟନ କେନ୍ଦ୍ର ହେଉଛି ମୌଳିକ ଶିକ୍ଷା, ପୌର ଜନଜୀବନ ଓ ସ୍ୱାସ୍ଥ୍ୟ ସଂପର୍କୀୟ କାର୍ଯ୍ୟକ୍ରମର ଏକ ସ୍ଥଳୀ ।"

**କାନ୍‌ବେରୀ ପ୍ରୋଭିନ୍‌ସରେ କୈଶୋର ଶିକ୍ଷା**

ଥାଇଲାଣ୍ଡର ପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ସେକ୍ସ ଏଜୁକେଶନ୍ (Sex Education), କୈଶୋର ଶିକ୍ଷା ମୂଳଦୁଆ ଉପରେ ପର୍ଯ୍ୟବସିତ । ଆମ ଦେଶରେ ଆମର

ସାଂସ୍କୃତିକ ସ୍ଥିତିକୁ ନେଇ ଆମେ ଏଇ ଶିକ୍ଷାକୁ କୈଶୋର ଶିକ୍ଷା (Adolecence Education) କହିଲା ବେଳେ, ସେଠାରେ ସେକ୍ସ ଏଜୁକେସନ୍ କୁହାଯାଉଅଛି । ଏହି ଶିକ୍ଷା ଥାଇଲାଣ୍ଡରେ କିପରି ଚାଲିଛି ତା'ର ଦୃଷ୍ଟାନ୍ତ ଅଧ୍ୟୟନ କରିବା ନିମନ୍ତେ ଆମେ କନ୍‌ବରୀ ମାଧ୍ୟମିକ ବିଦ୍ୟାଳୟ ଯାଇଥିଲୁ । ସେଠାରେ ପ୍ରଶିକ୍ଷାର୍ଥୀମାନେ ପ୍ରାୟ ଷାଠିଏ ଜଣ ଶିକ୍ଷାର୍ଥୀଙ୍କ ସହିତ ଏକ ଶ୍ରେଣୀଗୃହରେ ଆଲୋଚନା କରିଥିଲେ ।

ସେମାନଙ୍କୁ ମୁଁ ଗୋଟିଏ ପ୍ରଶ୍ନ ପଚାରିଥିଲି । ସେ ପ୍ରଶ୍ନଟି ହେଲା, "ସେମାନେ କ'ଣ ପିତାମାତାଠାରୁ ସେକ୍ସ ଏଜୁକେସନ୍ ପାଇବାକୁ ଚାହାନ୍ତି ?"ଏହାର ଉତ୍ତରରେ ସେମାନେ କହିଥିଲେ ଯେ ସେମାନେ ଶିକ୍ଷକଙ୍କଠାରୁ ଏଇ ଶିକ୍ଷା ପାଇବାକୁ ପସନ୍ଦ କରିବେ । ମାତ୍ର ପିତାମାତାଙ୍କଠାରୁ ନୁହେଁ । ସାଧାରଣତଃ ଆମ ଦେଶର ଅଧ୍ୟୟନରୁ କିଶୋରମାନଙ୍କ ମନୋଭବ ଏଇ ଭାବେ ପ୍ରତିଫଳିତ ହୋଇଥାଏ । ପୁନଶ୍ଚ ସେମାନଙ୍କ ସହିତ ଆଲୋଚନାରୁ ସ୍ପଷ୍ଟଚିତ୍ର ମିଳିଥିଲା ଯେ ସେମାନେ ପ୍ରଜନନ ପଦ୍ଧତି ଓ କାର୍ଯ୍ୟ, ପରିବାର ନିୟୋଜନ ପ୍ରଣାଳୀ, ଏଡ୍‌ସ୍‌ର କାରଣ ଓ ନିରାକରଣ, ପରିବାରର ଆକାର, ବିବାହର ଯଥାର୍ଥ ବୟସ ସଂପର୍କରେ ଆବଶ୍ୟକ ଜ୍ଞାନ ଆହରଣ କରିଛନ୍ତି । ଏସବୁ ବିଷୟ ସେମାନଙ୍କ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ।

**ପ୍ରଶିକ୍ଷଣ ସହିତ ସାଂସ୍କୃତିକ ଭ୍ରମଣ**

ଥାଇଲାଣ୍ଡରେ ଆମର ସ୍ୱଳ୍ପକାଳୀନ ପ୍ରଶିକ୍ଷଣ ମଧ୍ୟରେ ଗୋଟିଏ ଦିନ ସାମାଜିକ ସାଂସ୍କୃତିକ ଭ୍ରମଣ ପାଇଁ ଉଦ୍ଦିଷ୍ଟ ଥିଲା । ଜାନୁୟାରୀ ୧୫ ତାରିଖରେ ଗୋଟିଏ ଗ୍ରାମର ଲୋକମାନଙ୍କୁ ଭେଟି ଆମେ କିଛି ତଥ୍ୟ (data) ସଂଗ୍ରହ କରିଥିଲୁ । ସନ୍ଧ୍ୟା ସମୟରେ ଆମେ ଏକ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ହୋଟେଲରେ ଆମର ଜିନିଷପତ୍ର ରଖି ରାତି ଆଠଟା ବେଳକୁ ସଙ୍ଗୀତ ଆସରର ଏକ କେନ୍ଦ୍ରସ୍ଥଳକୁ ଯାଇଥିଲୁ । ଏହାର ନେତୃତ୍ୱ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟର ପ୍ରୋଗ୍ରାମ ଅଫିସର ସିଲଡ଼େ ନେଇଥିଲେ ।

ପଟ୍ଟାୟା ଶବ୍ଦର ଅର୍ଥ ରାତ୍ରି । ଏଇ ମନୋରମ ସହର ଉପରେ ସନ୍ଧ୍ୟା ନଇଁ ଆସିଲେ ରାତ୍ରିର ଗଭୀରତାର ତାଳେ ତାଳେ ପଟ୍ଟାୟାର ଦୃଶ୍ୟ ଲଘୁ ସଙ୍ଗୀତରେ ଚଳଚଞ୍ଚଳ ଓ ରମଣୀୟ ହୋଇ ଉଠେ । ପଟ୍ଟାୟାର ଉପାନ୍ତରେ ସମୁଦ୍ର ବେଳାଭୂମି, ବେଳାଭୂମିର ମନୋମୁଗ୍ଧକର ସ୍ପର୍ଶ ଛୁଇଁ ଦେଶ ବିଦେଶର ଅଗଣିତ ଯାତ୍ରୀମାନଙ୍କର ଯାତାୟାତ ଓ ମୃଦୁ ସଙ୍ଗୀତର ମୂର୍ଚ୍ଛନା ପଟ୍ଟାୟାକୁ ଭୂସ୍ୱର୍ଗରେ ସତେ ଯେମିତି ପରିଣତ କରେ ! ମାତ୍ର ଶୃଙ୍ଖଳାର ସୀମା ଡେଇଁଲେ ଏଇ ସ୍ୱର୍ଗ ପୁଣି ନର୍କରେ ପରିଣତ ହୁଏ । ମଣିଷ ଆପେ ଆପେ ମୃତ୍ୟୁକୁ ନିଜ ପାଇଁ ନିମନ୍ତ୍ରଣ କରି ଆଣେ ।

ପରଦିନ ଆମେ ନଙ୍ଗ୍‌ନୁଚ୍ ଗାର୍ଡ଼େନ ବୁଲି ଯାଇଥିଲୁ । ସେଠାରେ ପ୍ରଦର୍ଶିତ ସାଂସ୍କୃତିକ କାର୍ଯ୍ୟକ୍ରମରେ ଗ୍ରାମିଣ ଜୀବନ, ବୈବାହିକ ଉତ୍ସବ, ଗତାନୁଗତିକ ଯୁଦ୍ଧ ଶୈଳୀ ଆଦି କଳାକାରଙ୍କ ଦ୍ୱାରା ପ୍ରଦର୍ଶିତ ହୋଇଥିଲା । ଏଇସବୁ ଶୈଳୀ ସହିତ ଆମ ଦେଶର ସଂସ୍କୃତିର ମଧ୍ୟ ସାମଞ୍ଜସ୍ୟ ରହିଥିଲା । ଏହାଛଡ଼ା ଥାଇଲାଣ୍ଡରେ ଥିଲାବେଳେ ଆମେ କୁମ୍ଭୀର ସହିତ ମଣିଷର ଖେଳ ଓ କୁମ୍ଭୀର ପାଟିରେ ମଣିଷ ନିଜ ମୁଣ୍ଡ ପୂରେଇବାର ଦୃଶ୍ୟ ଦେଖିଥିଲୁ । ଏକ ସ୍ଥାନରେ ହାତୀମାନଙ୍କ ଖେଳ ମଧ୍ୟ ଆମକୁ ଚମତ୍କୃତ କରିଥିଲା । ଏହି ଭ୍ରମଣ ସୁଯୋଗରେ ଆମେ ବହୁ ବୌଦ୍ଧ ଧର୍ମପୀଠ ବୁଲି ବୌଦ୍ଧ ଧର୍ମ ଓ ସଂସ୍କୃତି ସଂପର୍କରେ ଅବଗତ ହୋଇଥିଲୁ ।

**ବିଦାୟ ଉତ୍ସବ :**

ଚାହୁଁ ଚାହୁଁ ଦିନ କେଇଟା କେମିତି ବିତିଗଲା, ତାହା ଜାଣିବା କଷ୍ଟକର ହେଲା । ଆମର ବିଦାୟ ଦିନ ଜାନୁୟାରୀ ୨୨ ତାରିଖ ଉପସ୍ଥିତ ହେଲା । ସକାଳ ବେଳା ଡକ୍ଟର କାପିୟା ରୀତିମତ ପାଠ ପଢ଼ାଇଲେ ।

ଅପରାହ୍ନରେ ଧୂରକଜୀ ବିଶ୍ୱବିଦ୍ୟାଳୟର ପ୍ରେସିଡ଼େଣ୍ଟ ଡକ୍ଟର ଓ୍ୟାକସଲ ଯୋଗ ଦେଇଥିଲେ । ପ୍ରତିନିଧିମାନଙ୍କ ତରଫରୁ ମୋତେ ମତାମତ ଦେବାକୁ କୁହାଯାଇଥିଲା । ମୁଁ ମୋର ମତାମତରେ ଧୂରକଜୀ ବିଶ୍ୱବିଦ୍ୟାଳୟର ଶିକ୍ଷାର୍ଥୀଙ୍କର ଆମପ୍ରତି ଅତି ଭଦ୍ର, ଶାନ୍ତ ଓ ନମନୀୟ ବ୍ୟବହାର ସଂପର୍କରେ ଉଲ୍ଲେଖ କରି ବିଶ୍ୱବିଦ୍ୟାଳୟର ସାଂସ୍କୃତିକ ସଂସ୍ଥିତି ଓ ପରମ୍ପରା ସଂପର୍କରେ ଏକ ସଂକ୍ଷିପ୍ତ ଭାଷଣ ଦେଇଥିଲି । ଶାନ୍ତି, ଶୃଙ୍ଖଳା ମଧ୍ୟରେ ଜନସଂଖ୍ୟା ଶିକ୍ଷା ପରିଚାଳନା ଓ ମୂଲ୍ୟାୟନ ପ୍ରଶିକ୍ଷଣ କାର୍ଯ୍ୟ ସମାପ୍ତ ହୋଇଥିବା ହେତୁ ସାଥୀମାନଙ୍କ ତରଫରୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରିଥିଲି । ପରିଶେଷରେ ପ୍ରେସିଡ଼େଣ୍ଟ ଡକ୍ଟର ଓ୍ୟାକ୍‌ସଲ ପ୍ରଶିକ୍ଷଣ ପ୍ରମାଣ ପତ୍ର ସହ ବିଶ୍ୱବିଦ୍ୟାଳୟର ପ୍ରତୀକ ଥିବା ସ୍ୱର୍ଣ୍ଣ ପଦକ ଦେଇ ପ୍ରତ୍ୟେକଙ୍କୁ ସମ୍ବର୍ଦ୍ଧିତ କରିଥିଲେ ।

**ଥାଇଲାଣ୍ଡରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ :**

ଥାଇଲାଣ୍ଡରୁ ଜାନୁୟାରୀ ୨୩ ତାରିଖ ରାତିରେ ଫେରିବାର ଥିଲା । ଉଦ୍ଦିଷ୍ଟ ସମୟରେ ବେଶପୋଷାକ ପିନ୍ଧି ଆମେ ରହୁଥିବା ଭଡ଼ାଘରେ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟର ପ୍ରୋଗ୍ରାମ ଅଧିକାରୀ ସିଲ୍‌ଡ଼େଙ୍କୁ ଅପେକ୍ଷା କରିଥିଲୁ । କିଛିକ୍ଷଣ ପରେ ସେ ଆସି ସମସ୍ତଙ୍କୁ ଗୋଟିଏ ସ୍ଥାନରେ ଏକତ୍ର ହେବାକୁ କହିଲେ । ଆମେ ଏକତ୍ର ହେଲା ପରେ ସେ କହିଲେ, "ଦିଲ୍ଲୀରେ ପାଗ ଅନୁକୂଳ ନ ଥିବାରୁ ଆମର ଉଡ଼ାଣ (Flight) ରଦ୍ଦ କରାଯାଇଅଛି । ଆମକୁ ପରଦିନ ଯିବାକୁ ହେବ । ଚାହୁଁ ଚାହୁଁ ସମସ୍ତଙ୍କର

ମନ ଊଣା ଅଧିକେ ଖରାପ ହୋଇଗଲା । କାରଣ ସେତେବେଳକୁ ଆମେ ରହୁଥିବା ଭଡ଼ାଘରର ମାଲିକାଣୀଙ୍କୁ ତାଙ୍କର ସମସ୍ତ ପାଉଣାପତ୍ର ଦେଇ ସାରିଥିଲୁ । ପରଦିନ ଆସିଲାବେଳକୁ ଯେତେ କହିଲେ ବି ସେ ସେଦିନର ପ୍ରାପ୍ୟ ପାଇଁ ଅଡ଼ି ବସିଲେ ଓ ନେଲେ ମଧ୍ୟ ।

ଯାହାହେଉ ୨୪ ତାରିଖ ଦିନ ଆମେ ସମସ୍ତେ ଥାଇଲାଣ୍ଡର ବିମାନଘାଟିରୁ ବିଦାୟ ନେଇ ଦିଲ୍ଲୀସ୍ଥିତ ଇନ୍ଦିରା ଗାନ୍ଧୀ ଆନ୍ତର୍ଜାତିକ ବିମାନଘାଟିରେ ଅବତରଣ କଲୁ ।

ଜାନୁୟାରୀ ୨୫ ତାରିଖ ଦିନ ୟୁ.ନି.ଏଫ୍.ପି.ଏ କାର୍ଯ୍ୟାଳୟରେ ୟୁ,ଏନ୍.ଏଫ୍.ପି.ଏର ବୈଷୟିକ ପରାମର୍ଶଦାତା ଡକ୍ଟର ମୃଦୁଳା ସେଠ୍ ଓ ଅନ୍ୟାନ୍ୟ ଅଫିସରମାନଙ୍କୁ ଆମେ ପ୍ରଶିକ୍ଷଣ ସମୟରେ ନେଇଥିବା ପ୍ରଶିକ୍ଷଣ ଓ ତା'ର କାର୍ଯ୍ୟକାରିତା ସଂପର୍କରେ ପ୍ରୋଜେକ୍ଟର ମାଧ୍ୟମରେ ଆମର ବକ୍ତବ୍ୟ ଉପସ୍ଥାପନା କଲୁ । ଏଇ ପ୍ରଶିକ୍ଷଣ କିପରି ବିଦ୍ୟାଳୟ ଶିକ୍ଷାକୁ ସାହାଯ୍ୟ କରିବ ମୁଁ ସେ ସଂପର୍କରେ ବୁଝାଇଥିଲି । ସେ କାର୍ଯ୍ୟକ୍ରମରେ ଏନ୍.ସି.ଇ.ଆର୍‌ଟି ତରଫରୁ ଜନସଂଖ୍ୟା ବିଭାଗର ପ୍ରାଧ୍ୟାପକ ଡକ୍ଟର ସରୋଜା ଯାଦବ ଯୋଗଦାନ କରିଥିଲେ ।

ମୁଁ ଓ ମୋର ବନ୍ଧୁ ଶ୍ରୀଯୁକ୍ତ ଆଇନ ୨୬ ତାରିଖ ଦିନ ଏନ୍.ସି.ଇ.ଆଇ.ଟିର ଜାତୀୟ ସଂଯୋଜକ ପ୍ରଫେସର ପାଣ୍ଡେଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରିବା ନିମନ୍ତେ ଅପେକ୍ଷା କଲୁ । ମାତ୍ର ଶୁଣିଲୁ ଯେ ସେ ଅନ୍ୟାନ୍ୟ କାମରେ ଦିଲ୍ଲୀ ବାହାରକୁ ଯାଇଛନ୍ତି ।

ସେ ସମୟର ସେ ସ୍ମୃତି ମନେ ପଡ଼ିଲେ ମୋ ଆଖି ଆଗକୁ ଚାଲି ଆସନ୍ତି ପ୍ରଫେସର ପାଣ୍ଡେ, ଯେ କି ତିନି ଚାରିଦିନ କାଳ ଆମକୁ ତାଙ୍କ ପାଇଁ ଉଦ୍ଦିଷ୍ଟ ଗାଡ଼ି ଦେଇ ବିଦେଶ ମନ୍ତ୍ରାଳୟ, ୟୁ.ଏନ୍.ଏଫ୍.ପି.ଏ.କାର୍ଯ୍ୟାଳୟ, ଥାଇଲାଣ୍ଡ ଦୂତାବାସକୁ ଯିବାରେ ସାହାଯ୍ୟ କରିଥିଲେ । ତାଙ୍କର ଅଯାଚିତ ସାହାଯ୍ୟ ଯୋଗୁଁ ଆମେ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟରେ ସ୍ୱଳ୍ପକାଳୀନ ପ୍ରଶିକ୍ଷଣ ପାଇଁ ନିଜ ନିଜ ରାଜ୍ୟ ପାଇଁ ଚିହ୍ନି କରିବାର ସୁଯୋଗ ପାଇଲୁ ।

**ଜନସଂଖ୍ୟା ଶିକ୍ଷାରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମ :**

କାଇରୋସ୍ଥିତ ଆନ୍ତର୍ଜାତିକ ସମ୍ମିଳନୀ, ୧୯୯୪ରେ ଜନସଂଖ୍ୟା ପ୍ରକଳ୍ପ ମାଧ୍ୟମରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦିଆଯାଇଥିଲା । ସେଥିପାଇଁ ପ୍ରଫେସର ଜବାହରଲାଲ୍ ପାଣ୍ଡେ ମୋତେ ବ୍ୟକ୍ତିଗତ ଭାବେ କହିଥିଲେ ଯେ ଭୁବନେଶ୍ୱର ପାଖାପାଖି ଚାଳିଶଟି ବିଦ୍ୟାଳୟକୁ ପ୍ରାରମ୍ଭିକ ସ୍ତରରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରିବା ପାଇଁ । କାରଣ କୈଶୋର ଶିକ୍ଷା ଅନ୍ତର୍ଭୁକ୍ତ ସମ୍ବେଦନଶୀଳ ବିଷୟବସ୍ତୁ

ଆଲୋଚନା କଲାବେଳେ ହୁଏତ ଶିକ୍ଷାର୍ଥୀ କିମ୍ବା ସେମାନଙ୍କ ପିତାମାତା ଏହାକୁ ସହଜରେ ଗ୍ରହଣ କରିବେ ନାହିଁ । ସେଥିପାଇଁ ଶିକ୍ଷକ ଯଦି କିଛି ସମସ୍ୟା କିମ୍ବା ବିରୋଧାଭାସର ସମ୍ମୁଖୀନ ହୁଅନ୍ତି, ତେବେ ସେମାନଙ୍କ ସହିତ ଆଲୋଚନା କରିବା ନିମନ୍ତେ ସେ ମୋତେ ପରାମର୍ଶ ଦେଇଥିଲେ ।

କୈଶୋର ଶିକ୍ଷା ଆଧାରଭୁକ୍ତ କେତେକ ବିଷୟବସ୍ତୁ ହେଲା :

- ଶାରୀରିକ ଅଭିବୃଦ୍ଧି (Process of Growing up)
- ପ୍ରଜନନ ସ୍ୱାସ୍ଥ୍ୟ (Reproductive Health)
- ଏଚ୍.ଆଇ.ଭି / ଏଡ୍ସ (HIV/ AIDS)
- ଔଷଧର ଅପବ୍ୟବହାର (Drug Abuse)

କିନ୍ତୁ ପରବର୍ତ୍ତୀ ସ୍ତରରେ ରାଜ୍ୟର ଜିଲ୍ଲା ସଦର ମହକୁମା ବିଦ୍ୟାଳୟକୁ ନେବା ପାଇଁ ସ୍ଥିର ହେଲା । କିନ୍ତୁ ଅନେକ ଜିଲ୍ଲା ସଦରମହକୁମା ସ୍କୁଲର ପ୍ରଧାନ ଶିକ୍ଷକମାନେ ସମ୍ବେଦନଶୀଳ କୈଶୋର ଶିକ୍ଷା କାର୍ଯ୍ୟକ୍ରମ ହାତକୁ ନେବା ପାଇଁ ରାଜି ହେଲେ ନାହିଁ । ତେଣୁ ସେମାନଙ୍କ ସ୍ଥାନରେ ଖୋର୍ଦ୍ଧା ସର୍କଲର ତେରୋଟି ସ୍କୁଲକୁ ନିଆଗଲା ।

୧୯୯୯ ମସିହାଠାରୁ କ୍ରମଶଃ ଏଇ କାର୍ଯ୍ୟକ୍ରମକୁ ଆଉ ଅଧିକ ମାଧ୍ୟମିକ ବିଦ୍ୟାଳୟରେ ଯେମିତି ଅନ୍ତର୍ଭୁକ୍ତ କରାଯାଇ ପାରିବ, ସେଥିପାଇଁ ମଧ୍ୟ ପଦକ୍ଷେପମାନ ଗ୍ରହଣ କରାଗଲା ।

କୈଶୋର ଶିକ୍ଷା କାର୍ଯ୍ୟକ୍ରମ ନିମନ୍ତେ ସାରା ରାଜ୍ୟରେ କାର୍ଯ୍ୟକ୍ରମ ସପକ୍ଷରେ ଆଲୋଚନା ସଭାମାନ କରାଗଲା । ଏହିସବୁ କାର୍ଯ୍ୟକ୍ରମରେ ତତ୍କାଳୀନ ବାଚସ୍ପତି ମାନ୍ୟବର ଚିନ୍ତାମଣି ଦ୍ୟାନ ସାମନ୍ତରାୟ, ସ୍ୱାସ୍ଥ୍ୟମନ୍ତ୍ରୀ ମାନବ୍ୟର ନିରଞ୍ଜନ ପଟ୍ଟନାୟକ, ଶିକ୍ଷାମନ୍ତ୍ରୀ ସେକ୍ ମତଲୁବ୍ ଅଲ୍ଲୀ, ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ଜୟଦେବ ଜେନା, ରିପୁନାଥ ସେଠ, ମାନ୍ୟବର ମନ୍ତ୍ରୀ ଭାଗବତ ବେହେରା ପ୍ରମୁଖ ବିଭିନ୍ନ ସମୟରେ ଯୋଗଦାନ କରିଥିଲେ । ଆମେ ଏଇସବୁ କାର୍ଯ୍ୟକ୍ରମରେ ରାଜ୍ୟର ଯେଉଁସବୁ ବରେଣ୍ୟ ଅତିଥିମାନଙ୍କୁ ପାଇଥିଲୁ ସେମାନଙ୍କ ମଧ୍ୟରେ ଥିଲେ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ବିମଳେନ୍ଦୁ ମହାନ୍ତି, ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ନିର୍ଦ୍ଦେଶକ ଡ଼ାକ୍ତର ବିଜୟକୁମାର ସି, ଭାରତୀୟ ପରିବାର ନିୟୋଜନ ସଂସ୍ଥାର ସଭାପତି ପରିକ୍ଷିତ ଦାସ, ଆଡ଼ଭୋକେଟ୍ ଗୋରୋଚାନ୍ଦ ପଟ୍ଟନାୟକ, ଭାରତୀୟ ପରିବାର ନିୟୋଜନ ସଂସ୍ଥାର ସଂପାଦକ ଡକ୍ଟର ମନୋରଞ୍ଜନ ମିଶ୍ର, ଡାକ୍ତର ଚୌଧୁରୀ ସତ୍ୟନାରାୟଣ ଦାସ, ଉତ୍କଳ ବିଶ୍ୱବିଦ୍ୟାଳୟର ଜନସଂଖ୍ୟା ବିଭାଗର ମୁଖ୍ୟ ଡକ୍ଟର ବି.ବି. ହୋତା ପ୍ରମୁଖ ଅନେକ

ବ୍ୟକ୍ତି ବିଶେଷ । ଏତଦ୍‌ବ୍ୟତୀତ ଏ କାର୍ଯ୍ୟକ୍ରମରେ ଜନସଂଖ୍ୟା ଶିକ୍ଷା ବିଭାଗର ପ୍ରାକ୍ତନ ପ୍ରକଳ୍ପ ଅଧିକାରୀ ଡକ୍ଟର ନୀଳକଣ୍ଠ ମିଶ୍ର ଓ ପ୍ରଫେସର ସୁରେନ୍ଦ୍ର ମୋହନ ପାଣି ସହାୟତାର ହାତ ବଢ଼ାଇଥିଲେ ।

ରାଜ୍ୟସ୍ତରୀୟ କୈଶୋର ଶିକ୍ଷା ସଂପର୍କୀୟ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ସାଧାରଣତଃ ପଞ୍ଚଦିବସୀୟ ଥିଲା । ଏହି କାର୍ଯ୍ୟକ୍ରମରେ କୈଶୋର ଶିକ୍ଷା ସଂପର୍କୀୟ ବିଭିନ୍ନ ବିଷୟବସ୍ତୁ ସଂପର୍କରେ ଯେଉଁମାନେ ବିଭିନ୍ନ ସମୟରେ ତାଲିମ ଦେଇଥିଲେ ସେମାନଙ୍କ ମଧ୍ୟରେ ଡ଼ାକ୍ତର ବିଜୟକୁମାର ସି, ଡାକ୍ତର ଅନିତା ଚୌଧୁରୀ, ଡାକ୍ତର ସଂଘମିତ୍ରା ପତି, ପ୍ରଫେସର ଭି.ବି. ଶାସ୍ତ୍ରୀ, ପ୍ରଫେସର ଗୌରୀ ଶଙ୍କର ମହାପାତ୍ର, ପ୍ରଫେସର ସୁରେନ୍ଦ୍ର ମୋହନ ପାଣି, ଡକ୍ଟର ଶରତ କୁମାର ବିଶ୍ୱାଳ, ପ୍ରଧାନଶିକ୍ଷକ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ, ପ୍ରଧାନଶିକ୍ଷକ ବିଷ୍ଣୁଚରଣ ଜେନା, ପ୍ରଧାନଶିକ୍ଷକ ଲକ୍ଷ୍ମୀପ୍ରସାଦ ସାହୁ, ପ୍ରଧାନଶିକ୍ଷକ ସହଦେବ ପଣ୍ଡା, ପ୍ରଧାନଶିକ୍ଷକ ଜବାହର ଲାଲ ସୁବୁଦ୍ଧି, ପ୍ରଧାନଶିକ୍ଷୟିତ୍ରୀ ବିଜୟଲକ୍ଷ୍ମୀ ମହାନ୍ତି ପ୍ରମୁଖ ଅନେକ ବିଶେଷଜ୍ଞ ।

ଏତଦ୍‌ବ୍ୟତୀତ ଏଇସବୁ କାର୍ଯ୍ୟକ୍ରମ ପରିଚାଳନାରେ ଜନସଂଖ୍ୟା ଶିକ୍ଷା ବିଭାଗ ସିନିୟର ଆସିଷ୍ଟାଣ୍ଟ୍ ବିନୋଦ ନାୟକ ରାତିଦିନ କାମ କରୁଥିଲେ । ସେ ଜାଣିଥିଲେ ଯେ ଏଥିରେ ରାଜ୍ୟର ସ୍ୱାର୍ଥ ସଂଶ୍ଳିଷ୍ଟ ଥିଲା । ତେଣୁ ଏକମାତ୍ର ଆସିଷ୍ଟାଣ୍ଟ୍ ହେଲେ ମଧ୍ୟ ସେ ସମସ୍ତ ଚିଠିପତ୍ରଠାରୁ ପ୍ରମାଣପତ୍ର ଲେଖିବା ପର୍ଯ୍ୟନ୍ତ ଦାୟିତ୍ୱ, ସୁଚାରୁ ରୂପେ ସଂପାଦନ କରୁଥିଲେ । ଏତଦ୍‌ବ୍ୟତୀତ ଚତୁର୍ଥ ଶ୍ରେଣୀ କର୍ମଚାରୀ ଗଗନର ଅବଦାନ ମଧ୍ୟ ଭୁଲିବାର ନୁହେଁ ।

ସମଗ୍ର ପୃଥିବୀରେ ଜୁଲାଇ ୧୧ ତାରିଖକୁ ବିଶ୍ୱ ଜନସଂଖ୍ୟା ଦିବସ ରୂପେ ପାଳନ କରାଯାଏ । ସର୍ବପ୍ରଥମେ ୧୯୯୭ ମସିହାରେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଆନୁକୂଲ୍ୟର ରାଜ୍ୟ ରାଜଧାନୀରେ ବିଦ୍ୟାଳୟସ୍ତରୀୟ ପିଲାମାନଙ୍କ ଦ୍ୱାରା ଏକ ଜନ ସଚେତନତାଭିତ୍ତିକ ରାଲୀ (Rally) ଆୟୋଜିତ ହୋଇଥିଲା । ପ୍ରଥମ ଥର ପାଇଁ ରାଜ୍ୟ ସୂଚନା ଭବନ (ବର୍ତ୍ତମାନର ଜୟଦେବ ଭବନ)ରୁ ବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କର ପଦଯାତ୍ରା ବାହାରି ରାମମନ୍ଦିର ଦେଇ ମାଷ୍ଟରକ୍ୟାଣ୍ଟିନ୍ ଛକ ଦେଇ ପୁଣି ଆସି ସୂଚନା ଭବନରେ ଶେଷ ହେଉଥିଲା । ଏ କାର୍ଯ୍ୟକ୍ରମରେ ଜନସଂଖ୍ୟା ବିଭାଗର ଯମେଶ୍ୱର ଦାସ, ବିନୋଦ ନାୟକ ପ୍ରମୁଖ ସାହାଯତା କରିଥିଲେ । ପରବର୍ତ୍ତୀ ସମୟରେ ରାଜ୍ୟସ୍ତରୀୟ ସମନ୍ୱୟ କମିଟିରେ ସ୍ଥିର ହେଲା ଯେ ଏ ରାଲୀ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ, ଭାରତୀୟ ପରିବାର ନିୟୋଜନ ସଂସ୍ଥା (FPAI), ରାଜ୍ୟ ସ୍ୱାସ୍ଥ୍ୟ ଓ

ପରିବାର କଲ୍ୟାଣ ପ୍ରତିଷ୍ଠାନ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଦ୍ୱାରା ମିଳିତ ଭାବେ ଆୟୋଜିତ ହେବ । ରାଲି ସରିଗଲାପରେ ସୂଚନା ଭବନରେ ୟୁ.ଏନ୍.ଏଫ୍.ପି.ଏ ଦ୍ୱାରା ସ୍ଥିରୀକୃତ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଆଲୋଚନା ଚକ୍ର ଅନୁଷ୍ଠିତ ହେବ । ୧ ୯ ୯ ୨ ମସିହାର ଆଲୋଚନା ଚକ୍ରକୁ ତତ୍‌କାଳୀନ ମାନ୍ୟବର ରାଜ୍ୟପାଳ ଗୋପାଳ ରାମାନୁଜନ ଉଦ୍‌ଘାଟନ କରିଥିଲେ । ମଞ୍ଚାସୀନ ଅତିଥିମାନଙ୍କ ଗହଣରେ ଏହି ଆଲୋଚନା ଚକ୍ର ସଂପର୍କରେ ପ୍ରାରମ୍ଭିକ ସୂଚନା ଦେବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥିଲା ।

**ଓଡ଼ିଶା ଜନସଂଖ୍ୟା ଶିକ୍ଷା ପ୍ରକଳ୍ପ : ଜାତୀୟ ସ୍ତରରେ ପ୍ରଥମ**

୧ ୯ ୯ ୯ ମସିହା ନଭେମ୍ବର ମାସ ୨୩ ତାରିଖରୁ ୨୭ ତାରିଖ ପର୍ଯ୍ୟନ୍ତ ଆନ୍ଧ୍ର ପ୍ରଦେଶର ହାଇଦ୍ରାବାଦଠାରେ ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ନୂଆଦିଲ୍ଲୀ ପକ୍ଷରୁ ରାଜ୍ୟର ବିଦ୍ୟାଳୟସ୍ତରୀୟ ଜନସଂଖ୍ୟା ଶିକ୍ଷା ଓ ବିକାଶ ପ୍ରକଳ୍ପମାନଙ୍କର ମୂଲ୍ୟାୟନ କରାଯାଇଥିଲା । ଏକ ପଞ୍ଚଦିବସୀୟ କର୍ମଶାଳାର ଶେଷ ଦିବସରେ ଭାରତର ୨ ୯ଟି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରେ ପ୍ରବର୍ତ୍ତିତ ଜନସଂଖ୍ୟା ଶିକ୍ଷା ପ୍ରକଳ୍ପ ମଧ୍ୟରେ ଓଡ଼ିଶାର ପ୍ରକଳ୍ପ ପ୍ରଥମ ବୋଲି ଜାତୀୟ ସଂଯୋଜକ ପ୍ରଫେସର ଜବାହରଲାଲ ପାଣ୍ଡେ ପ୍ରକାଶ କରି ଓଡ଼ିଶା ଅନ୍ୟାନ୍ୟ ରାଜ୍ୟମାନଙ୍କର ଆଦର୍ଶ ହେବ ବୋଲି ଆଶା ପ୍ରକାଶ କରିଥିଲେ । ସେଥିପାଇଁ ସେ ଆମ ରାଜ୍ୟର ଜନଶିକ୍ଷା ପ୍ରକଳ୍ପର କର୍ମକର୍ତ୍ତାମାନଙ୍କୁ ସାଧୁବାଦ ଜଣାଇଥିଲେ ।

ମଣିଷ ଏକ ସାମାଜିକ ଜୀବ । ସମାଜର ସାହାଯ୍ୟ ବିନା ବ୍ୟକ୍ତି ବିଶେଷର ଉତ୍‌ଥାନ ସମ୍ଭବପର ନୁହେଁ । ତା'ର ଦୃଷ୍ଟାନ୍ତ ମଧ୍ୟ ଆମେ ଆମର ପାରିବାରିକ ଜୀବନରେ ପାଇଥାଉ । ପରିବାରର ସ୍ନେହ ଶ୍ରଦ୍ଧା ସାହାଯ୍ୟ ସହାନୁଭୂତି ପାଇ ମାନବ ଶିଶୁଟିର ବିକାଶ ଘଟିଥାଏ । ସେ ଦେଶର ଉପଯୁକ୍ତ ନାଗରିକ ହେବାର ସୌଭାଗ୍ୟ ଅର୍ଜନ କରିଥାଏ ।

ଆମ ରାଜ୍ୟ ଓ ଦେଶର ବିକାଶ ନିମନ୍ତେ ଉଭୟ ରାଜନୈତିକ ଇଚ୍ଛାଶକ୍ତି ସରକାରୀ ସ୍ତରରେ କାର୍ଯ୍ୟ କରୁଥିବା ବ୍ୟକ୍ତିବିଶେଷଙ୍କ ମିଳିତ ଉଦ୍ୟମରୁ ସମ୍ଭବପର ହୋଇ ପାରିଛି । ଯେଉଁଠି ବ୍ୟକ୍ତି କୈନ୍ଦ୍ରିକ ବ୍ୟବହାର ସ୍ୱାର୍ଥ କୈନ୍ଦ୍ରିକ ହୋଇଛି, ସେଇଠି କିଛିକ୍ଷଣ ପାଇଁ ବିକାଶର ଧାରା ବ୍ୟାହତ ହେଲେ ମଧ୍ୟ ସ୍ୱାର୍ଥ ସର୍ବସ୍ୱ ବ୍ୟକ୍ତି ନିଜର ସତ୍ତା ହରାଇଛି ।

ମୁଁ ଜନସଂଖ୍ୟା ଶିକ୍ଷା ବିଭାଗର ଅଧିକାରୀ ଥିଲାବେଳେ ଦେଶ ବିଦେଶ ଭ୍ରମଣର ସୁଯୋଗ ପାଇଛି । ମୋର ଚାକିରି ଜୀବନ ସମ୍ବଲପୁର, ଅନୁଗୁଳ ଓ ଭୁବନେଶ୍ୱର ମଧ୍ୟରେ ସୀମାବଦ୍ଧ ଥିଲାବେଳେ ଜନସଂଖ୍ୟା ଓ ବିକାଶ ପ୍ରକଳ୍ପ ଯୋଗୁଁ ରାଜ୍ୟର ଅଗଣିତ

ସ୍କୁଲ, ବିଶେଷତଃ ଆଦିବାସୀ ଅଞ୍ଚଳରେ ଅବସ୍ଥିତ ସ୍କୁଲ ଯିବାର ସୁଯୋଗ ଲାଭ କରିଛି । ରାଜ୍ୟର କେତେକ ଇଂରାଜୀ ମାଧ୍ୟମ ସ୍କୁଲରେ ମଧ୍ୟ ଯୋଗଦାନ କରିଛି । ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀ ଛାତ୍ରଛାତ୍ରୀଙ୍କ ଗହଣରେ ନିଜେ ନିଜକୁ ଚିହ୍ନିବାର ସୁଯୋଗ ମଧ୍ୟ ସୃଷ୍ଟି କରିଛି ।

ଏକଥା ସ୍ୱୀକାର୍ଯ୍ୟ ଯେ ମୋତେ ନିହାତି ଆକସ୍ମିକ ଭାବେ ନିର୍ଦ୍ଦେଶକ ରଜତକୁମାର କର ଏସ୍.ସି.ଇ.ଆର୍.ଟିରେ୧୯୮୯ ମସିହାରେ ଅବସ୍ଥାପିତ ହେବାର ସୁଯୋଗ ଦେଇଥିଲେ । ନିଜେ ପୂର୍ବରୁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟର ନିର୍ଦ୍ଦେଶକ ଥିବା ହେତୁ ୧୯୯୦ ମସିହା ଜାନୁୟାରୀ ମାସ ୧୫ ତାରିଖରେ ନିଜର ପଦମର୍ଯ୍ୟାଦା ଦୃଷ୍ଟିକୋଣରୁ ରାଜ୍ୟ ଶିକ୍ଷା ଗବେଷଣା ପରିଷଦକୁ ନିଜସ୍ୱ ଉଦ୍ୟମ ବଳରେ ଏକ ସ୍ୱତନ୍ତ୍ର ନିର୍ଦ୍ଦେଶାଳୟରେ ପରିଣତ କରିବାରେ ସମର୍ଥ ହୋଇଥିଲେ । ଏହା ଫଳରେ ରାଜ୍ୟରେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଅଭ୍ୟୁଦୟ ଘଟିଥିଲା । ଶ୍ରୀଯୁକ୍ତ କର ୩୧-୧୦-୧୯୯୨ ମସିହାରେ ସରକାରୀ ଚାକିରିରୁ ଅବସର ନେଇଥିଲେ ।

ଏଇ ନିର୍ଦ୍ଦେଶାଳୟରେ ନିର୍ଦ୍ଦେଶକ ଭାବେ ପ୍ରଫେସର କାଳିକୁମାର ଦାସ ୧-୧୧-୯୨ରୁ ୩୧-୧୦-୯୨ ପର୍ଯ୍ୟନ୍ତ ଅବସ୍ଥାପିତ ଥିଲେ । ତାଙ୍କ ସମୟରେ ମହୀଶୂର ଭାଷା ସଂସ୍ଥାନ ତରଫରୁ ଏକ ଶିଶୁଗୀତିକା ପୁସ୍ତକ କର୍ମଶାଳା ମାଧ୍ୟମରେ ପ୍ରସ୍ତୁତ ଏବଂ ପ୍ରକାଶ ହେବାର ଥିଲା । ସାଧାରଣତଃ ଏ କାର୍ଯ୍ୟଟି ରାଜ୍ୟ ଶିକ୍ଷା ଗବେଷଣା ପରିଷଦର ପ୍ରାକ୍ ବିଦ୍ୟାଳୟ ବିଭାଗ (Pre-School Department) ଦ୍ୱାରା ହେବାରେ ଥିଲେ ମଧ୍ୟ ସେ କୌଣସି କାରଣରୁ ପ୍ରାକ୍ ବିଦ୍ୟାଳୟ ବିଭାଗର ମୁଖ୍ୟ ଡଃ ତ୍ରୈଲୋକ୍ୟନାଥ ଦାସଙ୍କୁ ଏ ଦାୟିତ୍ୱ ନ ଦେଇ ମୋ ଉପରେ ଲଦି ଦେଲେ । ମୋ ଉପରେ କାର୍ଯ୍ୟର ଅଧିକ ଚାପ ପଡ଼ିବ ବୋଲି କହିଲେ ମଧ୍ୟ ସେ ମୋତେ କହିଲେ, "ତୁମେ ଶିଶୁମାନଙ୍କ ପାଇଁ ଲେଖୁଛ । ଶିଶୁ ସାହିତ୍ୟରେ ଗବେଷଣା କରିଛ । ତେଣୁ ତୁମକୁ ଏ ଦାୟିତ୍ୱ ନେବାକୁ ହେବ ।" ବାଧ୍ୟ ହୋଇ ମୁଁ ଏ ଦାୟିତ୍ୱ ନେଲି ।

**ଶିଶୁ ଗୀତିକା କର୍ମଶାଳା ଓ ପ୍ରକାଶନର ଅତିରିକ୍ତ ଦାୟିତ୍ୱ :**

୧୯୯୪ ମସିହା ନଭେମ୍ବର ମାସ ୨୭ ତାରିଖଠାରୁ ଡ଼ିସେମ୍ବର ମାସ ୯ ତାରିଖ ପର୍ଯ୍ୟନ୍ତ ଏକ ସତରଦିନିଆ କର୍ମଶାଳାରେ ୩+ ଓ ୪+ ଶିଶୁମାନଙ୍କ ପାଇଁ ଶିଶୁଗୀତ ରଚନା କରାଗଲା । ରଚିତ ଶିଶୁଗୀତ ଗୁଡ଼ିକୁ ୧୪ଟି ବିଭାଗରେ ବିଭକ୍ତ କରାଗଲା । ସେହିସବୁ ବିଭାଗଗୁଡ଼ିକ ହେଲା (କ) ଜ୍ଞାତିକୁଟୁମ୍ବ ସମ୍ବନ୍ଧୀୟ (ଖ) ଅଙ୍ଗ

ପ୍ରତ୍ୟଙ୍ଗ ଓ ବ୍ୟକ୍ତିଗତ ଜିନିଷପତ୍ର ସମ୍ବନ୍ଧୀୟ (ଗ) ଖେଳ ଓ ଖେଳଣା ସମ୍ବନ୍ଧୀୟ (ଘ) ଖାଦ୍ୟ ସମ୍ବନ୍ଧୀୟ (ଙ) ଘର ଜିନିଷପତ୍ର ସମ୍ବନ୍ଧୀୟ (ଚ) ଶିଶୁ ସମ୍ବନ୍ଧୀୟ (ଛ) ପଶୁପକ୍ଷୀ ଜଗତ ସମ୍ବନ୍ଧୀୟ (ଜ) ଉଦ୍ଭିଦ ଜଗତ ସମ୍ବନ୍ଧୀୟ (ଝ) ନାଚଗୀତ ସମ୍ବନ୍ଧୀୟ (ଞ) ସୂର୍ଯ୍ୟ, ଚନ୍ଦ୍ର, ଦିନରାତି ଓ ସକାଳ ସମ୍ବନ୍ଧୀୟ (ଟ) ଗମନାଗମନ ସମ୍ବନ୍ଧୀୟ (ଠ) ବୃତ୍ତି ସମ୍ବନ୍ଧୀୟ (ଡ଼) ପବନ ଓ ବର୍ଷା ସମ୍ବନ୍ଧୀୟ (ଢ଼) ବିବିଧ ବିଷୟ ବସ୍ତୁ ସମ୍ବନ୍ଧୀୟ । ଏଥିରେ ସର୍ବମୋଟ ୫୫୦ଟି ଶିଶୁଗୀତ ବିଭିନ୍ନ ଆଲୋଚନା ଓ ପର୍ଯ୍ୟାଲୋଚନା ପରେ ପ୍ରକାଶ ହେବା ପାଇଁ ମନୋନୀତ କରାଯାଇଥିଲା ।

ଏହି କର୍ମଶାଳାରେ ଯେଉଁମାନେ ଅଂଶଗ୍ରହଣ କରିଥିଲେ, ସେମାନେ ହେଲେ – ସର୍ବଶ୍ରୀ ରାମ ପ୍ରସାଦ ମହାନ୍ତି, ନିରଞ୍ଜନ ବେହେରା, ସୂର୍ଯ୍ୟମଣି ସାମନ୍ତରାୟ, ଡକ୍ଟର ମହେଶ୍ୱର ମହାନ୍ତି, ଡକ୍ଟର ଜଗନ୍ନାଥ ମହାନ୍ତି, ଦାଶ ବେନହୁର, ବରିଷ୍ଠ ଶିକ୍ଷକ ଜୟକୃଷ୍ଣ ସାହୁ, ଡକ୍ଟର ଭାଗବତ ପ୍ରସାଦ ଲେଙ୍କା, ଶ୍ରୀମତୀ ବିନୋଦିନୀ ଦେବୀ, ଶ୍ରୀ ନନ୍ଦକିଶୋର ସାମଲ, ଶ୍ରୀ ଇନ୍ଦୁଭୂଷଣ ମିଶ୍ର, ଶ୍ରୀମତୀ ସୁକୃତି ତନୟା ସାମନ୍ତରାୟ, ଡକ୍ଟର ମନୋରମା ବିଶ୍ୱାଳ (ମହାପାତ୍ର) ଓ ଶ୍ରୀ ଫାଶିଆର ଆଚାର୍ଯ୍ୟ । କର୍ମଶାଳା ସଂଯୋଜନା ଓ ସଂପାଦନା ଦାୟିତ୍ୱରେ ଭାରତୀୟ ଭାଷା ସଂସ୍ଥାନ, ମହୀଶୂରର ବି. ଶ୍ୟାମଳା କୁମାରୀ, ଭାରତୀୟ ପ୍ରୟୋଗାତ୍ମକ ଭାଷା ବିଜ୍ଞାନ ସଂସ୍ଥାନ, ମହୀଶୂରର ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ, ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ, ଓଡ଼ିଶା, ଭୁବନେଶ୍ୱରର ଡକ୍ଟର ଦିଗରାଜ ବ୍ରହ୍ମା ।

କର୍ମଶାଳାର ଆର୍ଥିକ ପରିଚାଳନା ନିଜେ ବି. ଶ୍ୟାମଳାକୁମାରୀ କରୁଥିଲେ । କିଏ ଚା' ଆଣି ଦେବ, ତାହା ମଧ୍ୟ ସେ ଠିକ୍ କରୁଥିଲେ ଓ ତାଙ୍କୁ ପଇସାପତ୍ର ଦେଉଥିଲେ । କେବଳ ଚା' ଜଳଖିଆ ଦେବା ପିଲା ଅଜୟକୁ ମୁଁ ତାଙ୍କ ସହିତ ଚିହ୍ନାଇ ଦେଇଥିଲି ।

ଦିନେ ଚା'ର ଗୁଣାତ୍ମକମାନ ଖରାପ ହେଉଛି ବୋଲି ସେ ମୋ ଉପରେ ବିରକ୍ତି ପ୍ରକାଶ କଲେ । ମୁଁ ଭଦ୍ରତାର ସହିତ କହିଲି, "ମାଡ଼ାମ୍ । ଚା' ଦେଉଥିବା ପିଲା ଅଜୟ ଏସ.ସି.ଇ.ଆର.ଟିର ସମସ୍ତଙ୍କୁ ଚା' ଦେଉଛି । ଏଥିରେ ଆପଣ ମୋ ଉପରେ କାହିଁକି ବିରକ୍ତି ପ୍ରକାଶ କରୁଛନ୍ତି ଓ ଚା' ବାଲାକୁ ମଧ୍ୟ ଏଣୁତେଣୁ କହୁଛନ୍ତି । ତା'ର ଚା' ଦେବା ନ ଦେବାରେ ମୋର ଟିକେମାତ୍ର ସ୍ୱାର୍ଥ ନାହିଁ ।"

ଭାରତୀୟ ଭାଷା ସଂସ୍ଥାନର ନିର୍ଦ୍ଦେଶକ ଭାବେ ପ୍ରଫେସର ଦେବୀ ପ୍ରସନ୍ନ ପଟ୍ଟନାୟକ ଅତୀତରେ କାମ କରୁଥିଲେ । ଶ୍ରୀମତୀ ବି. ଶ୍ୟାମଳାକୁମାରୀ ମଧ୍ୟ ତାଙ୍କ ପାଖରେ କାମ କରୁଥିଲେ । ଚା' ପ୍ରସଙ୍ଗରେ ଶ୍ୟାମଳା କୁମାରୀ ଅଜୟ ଉପରେ ବିରକ୍ତ

ହେବା ଓ ମୋତେ ଏଥିପାଇଁ ଦାୟୀ କରିବା ପ୍ରସଙ୍ଗ ମୁଁ ପ୍ରଫେସର ପଟ୍ଟନାୟକଙ୍କ ପାଖରେ ଉଠାଇଲି । ମୋ କଥା ଶୁଣି ପ୍ରଫେସର ପଟ୍ଟନାୟକ ହସି ହସି କହିଲେ, "ସେ ଚା' ପିଲା ଉପରେ କାହିଁକି ବିରକ୍ତି ହେଉଛନ୍ତି ? ମୁଁ ମହୀଶୂରରେ କାମ କଲାବେଳେ ଜଣେ ଅଧିକାରୀ ଚା' ଯୋଗାଉଥିବା ପିଲା ଉପରେ ବାରମ୍ବାର ବିରକ୍ତ ହେବାରୁ, ସେ ପ୍ରତିଦିନ ତାଙ୍କ ଚା' ଗ୍ଲାସରେ ଚା' ଆଣିଲାବେଳେ ଲଣ୍ଡାଏ ଛେପ ପକାଇ ଆଣୁଥିଲା ?"

ମୁଁ ପ୍ରଫେସର ପଟ୍ଟନାୟକଙ୍କ ହାଲୁକା ମନ୍ତବ୍ୟ ଶୁଣି ହସିଲି । ଏ ପ୍ରସଙ୍ଗ ଏକ ମାମୁଲି କଥା ହୋଇଥିବା ହେତୁ ନିର୍ଦ୍ଦେଶକ ପ୍ରଫେସର କାଳିକୁମାର ଦାସଙ୍କ ପାଖରେ ଉଠାଇବାକୁ ମଧ୍ୟ ଉଚିତ ମନେ କଲି ନାହିଁ । କେମିତି କର୍ମଶାଳାର ଆଠଦଶଦିନ ଅତିବାହିତ ହେବ, ତାହା ମଧ୍ୟ ଚିନ୍ତାର ବିଷୟ ହେଲା । ମୋ ଆଗରେ ମଝିରେ ମଝିରେ ସେ ଭଦ୍ର ମହିଳା ପ୍ରକାଶ କଲେ, "ଡକ୍ଟର ବ୍ରହ୍ମା, ତୁମକୁ ଦେଖିଲେ ମୋତେ ବଡ଼ ବିରକ୍ତ ଲାଗୁଛି । କିନ୍ତୁ ତୁମେ ଏ କର୍ମଶାଳା ନିମନ୍ତେ ଯେଉଁମାନଙ୍କୁ ଅଂଶଗ୍ରହଣ କରିବାକୁ ସୁଯୋଗ ଦେଇଛ, ସେମାନଙ୍କୁ ଦେଖିଲେ ମୋତେ ଖୁସି ଲାଗୁଛି । ସେମାନଙ୍କ ଶିଶୁ ଗୀତ ରଚନା ଶୈଳୀ ଓ ଅଂଶ ଗ୍ରହଣ ମଧ୍ୟ ଉନ୍ନତ ଧରଣର । ସେଥିପାଇଁ ମୋ ମନରେ ତୁମପ୍ରତି ଥିବା ସମସ୍ତ ରାଗ ମିଳେଇ ଯାଉଛି ।"

କର୍ମଶାଳାର ଶେଷଦିନ ଅଧାପୃଷ୍ଠାରେ ଲେଖା ହୋଇଥିବା ୫୫୦ଟି ଶିଶୁଗୀତ, ପାଣ୍ଡୁଲିପିର ମଲାଟ ପୃଷ୍ଠାର ଲେଖା ଉପକ୍ରମଣିକା ଆଦି ଶ୍ରୀମତୀ ବି. ଶ୍ୟାମଳା କୁମାରୀ ମୋତେ ଦେଲେ । ସମସ୍ତ ଅଂଶଗ୍ରହଣକାରୀ (Participant) ଗଲାପରେ ସେ ମୋତେ ହସି ହସି କହିଲେ, "ଡଃ ବ୍ରହ୍ମା, ତୁମେ ହିଁ ଏଠାରେ ଏକମାତ୍ର ବିଶ୍ୱାସଯୋଗ୍ୟ ବ୍ୟକ୍ତି । ମୋର ଆଉ କାହା ଉପରେ ବିଶ୍ୱାସ ନାହିଁ । ତେଣୁ ତୁମେ ପାଣ୍ଡୁଲିପିଟି କାହାଦ୍ୱାରା ପ୍ରସ୍ତୁତ କରିଦେବ । ସେଥିପାଇଁ ସେ ପାଞ୍ଚଶହ ଟଙ୍କା ପ୍ରଦାନ କରିଲେ । ମୁଁ ତ ତୁମକୁ କର୍ମଶାଳାରେ ଯୋଗଦାନ ନିମନ୍ତେ ନୀତି ନୟମ ଦୃଷ୍ଟିରୁ ପାଞ୍ଚଟି ପଇସା ଦେଇ ପାରିଲି ନାହିଁ । ତେଣୁ ତୁମେ ତୁମ ସ୍ତ୍ରୀଙ୍କୁ ଏଇ ପାଣ୍ଡୁଲିପି ପ୍ରସ୍ତୁତ କରିବାକୁ କହିବ ଓ ତାଙ୍କୁ ପାଞ୍ଚଶହ ଟଙ୍କା ଦେବ ।"

ମୁଁ ତାଙ୍କ କଥା ଶୁଣି ହସିଲି । ମୋ ମନରେ ଶିଶୁ ସାହିତ୍ୟ ଓ ଶିଶୁମାନଙ୍କ ପାଇଁ ଅହେତୁକ ଶ୍ରଦ୍ଧା ଥିବା ହେତୁ ତାଙ୍କୁ କହିଲି, "ମାଡ଼ାମ୍ ! ଆପଣ ଦେଖିବେ ନିଶ୍ଚିତ ଭାବେ କର୍ମଶାଳାରେ ପ୍ରସ୍ତୁତ 'ଶିଶୁଗୀତିକା' ଦିନର ଆଲୋକ ନିର୍ଦ୍ଧାରିତ ସମୟ ମଧ୍ୟରେ

ଦେଖିବ । ତା'ର ପ୍ରକାଶନ ପାଇଁ ସେ ମହୀଶୂର ଭାଷା ପ୍ରତିଷ୍ଠାନ ତରଫରୁ ନିର୍ଦ୍ଦେଶାଳୟକୁ ପଚାଶ ହଜାର ଟଙ୍କାର ଅନୁଦାନ ପରବର୍ତ୍ତୀ ସମୟରେ ପଠାଇଥିଲେ ।

୧୯୯୫ ମସିହାର ମାର୍ଚ୍ଚମାସ ମଧ୍ୟରେ **ଶିଶୁଗୀତିକା** ପ୍ରକାଶିତ ହେଲା । ଏହାର ଖଣ୍ଡିଏ ଖଣ୍ଡିଏ ବହି ଓଡ଼ିଶାର ପ୍ରାକ୍ ଶୈଶବ ବିଦ୍ୟାଳୟ କେନ୍ଦ୍ରଗୁଡ଼ିକୁ ପଠାଇବା ନିମନ୍ତେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟର ପ୍ରାକ୍ ଶୈଶବ ବିଭାଗ (Department of Preschool)କୁ ସେସବୁ ବହି ହସ୍ତାନ୍ତର କରି ଦିଆଗଲା ।

ମୁଦ୍ରିତ ପୁସ୍ତକ ମଧ୍ୟରୁ ଦଶଖଣ୍ଡ ଭାରତୀୟ ଭାଷା ସଂସ୍ଥାନକୁ ମଧ୍ୟ ପଠାଯାଇଥିଲା । ପୁସ୍ତକଗୁଡ଼ିକୁ ପାଇ ବି. ଶ୍ୟାମଳା କୁମାରୀ ମୋ ନିକଟକୁ କୃତଜ୍ଞତା ଜଣାଇ ଚିଠିଟିଏ ଦେଇଥିଲେ ।

**ଏନ୍.ସି.ଟି.ଇ. କାର୍ଯ୍ୟର ଅତିରିକ୍ତ ଦାୟିତ୍ୱ**

ପ୍ରଫେସର କାଳିକୁମାର ଦାସ ନିର୍ଦ୍ଦେଶକ ଥିଲାବେଳେ ନବଗଠିତ ଜାତୀୟ ଶିକ୍ଷକ ଶିକ୍ଷା ପରିଷଦ (NCTE)ର ଚେୟାରମ୍ୟାନ ପ୍ରଫେସର ରାଜପୁତଙ୍କ ଏକ ଚିଠି ତାଙ୍କ ପାଖକୁ ଆସିଥିଲା । ସେଥିରେ ସେ ଲେଖିଥିଲେ ଯେ ପୂର୍ବାଞ୍ଚଳ ଶିକ୍ଷକ ଶିକ୍ଷା ପରିଷଦର କାର୍ଯ୍ୟାଳୟ ଭୁବନେଶ୍ୱରେ ପ୍ରତିଷ୍ଠିତ ହେବ । କାର୍ଯ୍ୟାଳୟର ଭଡ଼ାଘର ଠିକ୍ ହେବା ପର୍ଯ୍ୟନ୍ତ ଏହାର କାର୍ଯ୍ୟାଳୟର ପ୍ରାରମ୍ଭିକ ଦାୟିତ୍ୱ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟକୁ ନେବାକୁ ହେବ ଓ ସେଥିପାଇଁ ଜଣେ ଅଧିକାରୀଙ୍କୁ ନିର୍ଦ୍ଦେଶକ ଦାୟିତ୍ୱ ଦେଇ ତାଙ୍କୁ ଜଣାଇବେ ।

ପ୍ରଫେସର ଦାସ ମୋତେ ସେ ଦାୟିତ୍ୱ ଦେବେ ବୋଲି ନିଷ୍ପତ୍ତି ନେଲେ । ପ୍ରାରମ୍ଭିକ ସ୍ତରରେ ଏହାର ଉଦ୍‌ଘାଟନ ନିମନ୍ତେ ରାଜ୍ୟପାଳଙ୍କୁ ନିମନ୍ତ୍ରଣ କରାଯିବ ବୋଲି ସ୍ଥିର କରାଗଲା । ସେଥିପାଇଁ ରାଜ୍ୟପାଳଙ୍କ ସଚିବଙ୍କ ପାଖକୁ ନିର୍ଦ୍ଦେଶକଙ୍କ ଏକ ଚିଠି ନେଇ ମୁଁ ରାଜଭବନ ଯାଇଥିଲି । ଆମ୍ଭ ଚିଠି ଉପରେ ରାଜ୍ୟପାଳ ଦିନେ ଦୁଇଦିନ ମଧ୍ୟରେ ସମ୍ମତି ପ୍ରଦାନ କରିଥିଲେ । ହଠାତ୍ ଦିନେ ରାଜ୍ୟପାଳ ଭବନରୁ ନିର୍ଦ୍ଦେଶକଙ୍କ ପାଖକୁ ଖବର ଆସିଲା ମୋ ସହିତ ତାଙ୍କୁ ସାକ୍ଷାତ କରିବା ପାଇଁ ।

ପ୍ରଫେସର ଦାସଙ୍କ ସହିତ ମୁଁ ରାଜଭବନ ଗଲି । ରାଜଭବନରେ ତତ୍‌କାଳୀନ କାର୍ଯ୍ୟରତ ଅଧିକାରୀ ରାଜକିଶୋର ଚୌଧୁରୀ ନିର୍ଦ୍ଧାରିତ ସମୟରେ ଆମକୁ ରାଜ୍ୟପାଳଙ୍କ ସହିତ ତାଙ୍କ କାର୍ଯ୍ୟାଳୟରେ ସାକ୍ଷାତ କରାଇ ଦେଲେ । ରାଜ୍ୟପାଳ ବି. ସତ୍ୟନାରାୟଣ ରେଡ୍ଡି ଆମକୁ ଦେଖିବା ମାତ୍ରେ ସଙ୍ଗେ ସଙ୍ଗେ ବସିବାକୁ କହିଲେ । ନିର୍ଦ୍ଦେଶକଙ୍କ ମୁହଁରୁ କାର୍ଯ୍ୟକ୍ରମ ସଂପର୍କରେ ଦୁଇ ଚାରିଧାଡ଼ି ଶୁଣିବା ପରେ ମାନ୍ୟବର ରାଜ୍ୟପାଳ

ମହୋଦୟ କହିଲେ, "ଶିକ୍ଷକମାନଙ୍କ କାର୍ଯ୍ୟକ୍ରମରେ ମୁଁ ଯୋଗଦେବାରେ ଆନନ୍ଦ ପାଇଥାଏ । ତେଣୁ ନିଶ୍ଚିତ ଭାବେ ସେଦିନ ଯିବି ।"

ତିନି ଚାରିଦିନ ପୂର୍ବରୁ ମୋ ପାଖକୁ ରାଜଭବନରୁ ଖବର ଆସିଲା ଚୌଧୁରୀବାବୁଙ୍କୁ ସାକ୍ଷାତ କରିବା ପାଇଁ । ଚୌଧୁରୀବାବୁଙ୍କୁ ମୁଁ ସାକ୍ଷାତ କରୁ କରୁ ସେ କହିଲେ, "ଆମର ଧାରଣା ନ ଥିଲା ଏସ୍.ସି.ଇ.ଆର.ଟିର ସମ୍ମିଳନୀ କକ୍ଷ ଦ୍ୱିତୀୟ ମହଲାରେ ଅବସ୍ଥିତ । ସେଠାକୁ ରାଜ୍ୟପାଳ ଉଠି ଉଠି ଯିବା କଷ୍ଟକର ହେବ । ସେ ପରେ ଏକଥା ଜାଣିଲେ ଆମ ଉପରେ ବିରକ୍ତି ପ୍ରକାଶ କରିବେ । ତେଣୁ ଯାହା ହେଉ ଏକଥା ତାଙ୍କୁ ଜଣାଇବାକୁ ପଡ଼ିବ ।"

ଏକଥା ରାଜ୍ୟପାଳଙ୍କୁ ଜଣାଇବାକୁ ପଡ଼ିଲା । ମାନ୍ୟବର ରାଜ୍ୟପାଳ କହିଲେ, "ମୁଁ ଯିବାକୁ ସମ୍ମତି ଦେଇଛି । ତାହା ହେଉଛି ଶିକ୍ଷକମାନଙ୍କର ସମ୍ମିଳନୀ । ତେଣୁ ଯାହା ବାଧାବନ୍ଧନ ଆସୁ ପଛକେ ମୁଁ ଯିବି ।" ଯାହା ହେଉ ଗୋଟାଏ ବିପତ୍ତି ଟଳିଗଲା ! କିନ୍ତୁ କାର୍ଯ୍ୟକ୍ରମ ପୂର୍ବରୁ ତିନି ଚାରିଦିନ ଲଗାଣ ବର୍ଷା ଦିନରାତି ହେଲା । ଭୁବନେଶ୍ୱରର ଜନଜୀବନ ଲଗାଣ ବର୍ଷା ଯୋଗୁଁ ବିପର୍ଯ୍ୟସ୍ତ ହେଲା । ଏ କାର୍ଯ୍ୟକ୍ରମ ହେବକି ନାହିଁ, ତାହା ମଧ୍ୟ ଚିନ୍ତାର ବିଷୟ ହେଲା ।

ମାତ୍ର କାର୍ଯ୍ୟକ୍ରମର ପୂର୍ବଦିନ ପାଗ ଟିକିଏ ବଦଳି ଗଲା । ପରଦିନ ସକାଳୁ ସକାଳୁ ଓଦାଳିଆ ହୋଇଥିବା ସମ୍ମିଳନୀ କକ୍ଷ ଓ ନିର୍ଦ୍ଦେଶାଳୟର ପରିସରକୁ ସଫାସୁତୁରା କରାଗଲା । ନୂତନଭାବେ ସମ୍ମିଳନୀ କକ୍ଷରେ ସ୍କ୍ରିନ୍ ଲଗାଇ ସୁସଜ୍ଜିତ କରିବା ପାଇଁ ଯୁଦ୍ଧକାଳୀନ ଭିତ୍ତିରେ ଟେଣ୍ଟ ହାଉସ ଲୋକ ଲାଗି ପଡ଼ିଲେ ।

ଏହି ସମୟରେ ରାଜଭବନ କାର୍ଯ୍ୟାଳୟର କିଛି ଅଧିକାରୀ କୋଠାଘରର ସ୍ଥିତି ଜାଣିବା ପାଇଁ ଏକ ଯନ୍ତ୍ର ନେଇ ଏସ.ସି.ଇ.ଆର.ଟିରେ ଆସି ପହଞ୍ଚିଲେ । କାର୍ଯ୍ୟାଳୟର କୋଠାବାଡ଼ି ଭାଙ୍ଗି ପଡ଼ିବ କି ନାହିଁ, ତାହା ପରୀକ୍ଷା କଲେ ।

ସେମାନେ ଏପରି କାହିଁକି କରୁଛନ୍ତି ବୋଲି ପଚାରିବାରୁ କହିଲେ, "ଲଗାତର ଝଡ଼ ବର୍ଷା ଯୋଗୁଁ ଏସ୍.ସି.ଇ.ଆର.ଟି.ର ତିନିମହଲା କୋଠାଘରଟି ଭୁଷୁଡ଼ି ପଡ଼ିବ ବୋଲି ଆଶଙ୍କା କରାଯାଉଛି । ତେଣୁ କୋଠାଘରର ସ୍ଥିତି କ'ଣ ଅଛି ତାହା ଆକଳନ କରାଯାଉଛି ।"

ମୁଁ ପ୍ରଶ୍ନ କଲି, "ଏପରି ଆଶଙ୍କା ହେବାର କାରଣ କ'ଣ ?" ମୋତେ ପୂର୍ବରୁ ଜାଣିଥିବା ରାଜଭବନର ଜଣେ କର୍ମଚାରୀ କହିଲେ, "ଆମେ କ'ଣ କରିବୁ । ଆପଣଙ୍କ

କାର୍ଯ୍ୟାଳୟର ଜନୈକ କର୍ମଚାରୀ ଗତକାଲି ରାଜଭବନ ଆସିଥିଲେ । ସେଠାରେ କଥା ପ୍ରସଙ୍ଗରେ ସର୍ବସମକ୍ଷରେ ସେ ଏଇ କଥା କହିବାରୁ ଆପେ ଆପେ ଦାୟିତ୍ୱ ଆସି ଆମ ଉପରେ ପଡ଼ିଲା ।”

ଯାହାହେଉ ତିନିମହଲା ବିଶିଷ୍ଟ କୋଠାଘରର ସ୍ଥିତି ଠିକ୍ ଅଛି ବୋଲି ସେମାନେ ମନ୍ତବ୍ୟ ଦେଲେ । ସେଦିନ ଏଗାରଟା ବେଳେ ମାନ୍ୟବର ରାଜ୍ୟପାଳ କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କଲେ । ଏଇ ଅବସରରେ ମୋ ସଂପାଦନାରେ ‘ଶିକ୍ଷକ ଶିକ୍ଷା’ ଉପରେ କେତେକ ପ୍ରବନ୍ଧକୁ ନେଇ ଏକ ସ୍ୱତନ୍ତ୍ର ପ୍ରବନ୍ଧଭିତ୍ତିକ ଜର୍ଣ୍ଣାଲ ପ୍ରକାଶିତ ହୋଇଥିଲା । ଏହାକୁ ମାନ୍ୟବର ରାଜ୍ୟପାଳ ବି. ସତ୍ୟନାରାୟଣ ରେଡ୍ଡି ଉନ୍ମୋଚିତ କରିଥିଲେ ।

ଏଇ କାର୍ଯ୍ୟକ୍ରମର କିଛିମାସ ପରେ ପୂର୍ବାଞ୍ଚଳ ଶିକ୍ଷକ ଶିକ୍ଷା ପରିଷଦର ନିର୍ଦ୍ଦେଶକ ଓ ଅନ୍ୟାନ୍ୟ ଅଧିକାରୀ ନିଯୁକ୍ତ ହେଲାପରେ ଏ ଦାୟିତ୍ୱ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ହାତରୁ ଯାଇଥିଲା । ମୁଁ ମଧ୍ୟ ଆନୁଷଙ୍ଗିକ କାର୍ଯ୍ୟରୁ ଅବ୍ୟାହତ ନେଇଥିଲି ।

**ଜନସଂଖ୍ୟା ଶିକ୍ଷାର ମଧ୍ୟବର୍ତ୍ତୀକାଳୀନ ମୂଲ୍ୟାୟନ**

ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟର ଜନସଂଖ୍ୟା ବିଭାଗକୁ ରାଜ୍ୟରେ ଶ୍ରେଷ୍ଠତ୍ୱ ପଥରେ ଆଗେଇ ନେବାରେ ତତ୍‌କାଳୀନ ନିର୍ଦ୍ଦେଶକ ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କ ଦାନ ଅତୁଳନୀୟ । ସେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟରେ ଆପାତତଃ ଦୁଇବର୍ଷ (ତା ୨୧-୧୧-୯୭ରୁ ୨୮-୨-୯୯) କାର୍ଯ୍ୟ କରିଥିଲେ ମଧ୍ୟ ମୋତେ ପ୍ରକଳ୍ପ ପରିଚାଳନାରେ ସଂପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ । ଏହାଫଳରେ ରାଜ୍ୟର ମାଧ୍ୟମିକ ବିଦ୍ୟାଳୟକୁ ପ୍ରଶାସନିକ ଶିକ୍ଷାଗତ ପରିଚାଳନା ଦାୟିତ୍ୱରେ ଥିବା ଶିକ୍ଷା ମଣ୍ଡଳାଧୀଶମାନେ ମନପ୍ରାଣ ଦେଇ ସେମାନଙ୍କ ସର୍କଲରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମ ସହିତ ଅନ୍ୟାନ୍ୟ କାର୍ଯ୍ୟକ୍ରମ ପରିଚାଳନା କରିଥିଲେ । ମୋର ସୌଭାଗ୍ୟ ଥିଲା ଯେ ମୁଁ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ ଥିଲାବେଳେ ମୋର କେତେକ ଛାତ୍ର ପରବର୍ତ୍ତୀ ସମୟରେ ଶିକ୍ଷା ମଣ୍ଡଳାଧୀଶ ପଦବୀରେ ଅଧିଷ୍ଠିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ବାଲ୍ମିକୀ ପ୍ରଧାନ, ଶ୍ରୀଯୁକ୍ତ କ୍ଷିତିଭୂଷଣ ମହାପାତ୍ର, ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ବେହେରା, ଶ୍ରୀଯୁକ୍ତ ଗୋକୁଳ ଚନ୍ଦ୍ର ହୋତା ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏଇ କାର୍ଯ୍ୟକ୍ରମରେ ଅନ୍ୟ ଯେଉଁମାନେ ସହାୟତାର ହାତ ବଢ଼ାଇଥିଲେ ସେମାନେ ହେଲେ ଡକ୍ଟର ଶରତ କୁମାର ବିଶ୍ୱାଳ, ଶ୍ରୀମତୀ ମନସ୍ୱିନୀ ଦାଶ, ଶ୍ରୀଯୁକ୍ତ ଅରକ୍ଷିତ ଦାସ, ଶ୍ରୀଯୁକ୍ତ ପ୍ରସନ୍ନ ପାଣିଗ୍ରାହୀ, ଡକ୍ଟର ଧ୍ରୁବ ଚରଣ ପରିଡ଼ା, ଶ୍ରୀଯୁକ୍ତ କୃଷ୍ଣ ଚରଣ ସେଠୀ, ଶ୍ରୀଯୁକ୍ତ ଭାସ୍କର ଦାସ, ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାଶ ଆଦି ଅନେକ ବିଦ୍ୟାଳୟ ଶିକ୍ଷା ସେବାର ବରିଷ୍ଠ ପ୍ରଶାସକ ।

ଏତଦ୍‌ବ୍ୟତୀତ ମୁଁ ବ୍ୟକ୍ତିଗତ ଭାବେ ରାଜ୍ୟର ଯେଉଁ ପ୍ରକଳ୍ପ ବିଦ୍ୟାଳୟଗୁଡ଼ିକୁ ଯାଇଛି ସେଠି କୈଶୋର ଶିକ୍ଷାର ବିଭିନ୍ନ ସହ ପାଠ୍ୟକ୍ରମ ଭିତ୍ତିକ କାର୍ଯ୍ୟମାନ ତାଲିମପ୍ରାପ୍ତ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ଦ୍ୱାରା କରାଇଛି । ଏହା ଫଳରେ ଏଇ କାର୍ଯ୍ୟକ୍ରମ ୨୦୦୩ ମସିହା ପର୍ଯ୍ୟନ୍ତ ରାଜ୍ୟର ସମସ୍ତ ଜିଲ୍ଲାର ପ୍ରକଳ୍ପ ବିଦ୍ୟାଳୟଗୁଡ଼ିକରେ ପରିଚାଳିତ ହୋଇ ପାରିଥିଲା ।

ସାଧାରଣତଃ ଜନସଂଖ୍ୟା, ଶିକ୍ଷା ପ୍ରକଳ୍ପ ଭାରତର ପଞ୍ଚବାର୍ଷିକ ଯୋଜନା ସହିତ ସମତାଳ ଦେଇ ପରିଚାଳିତ ହୋଇଥାଏ । ମୁଁ ଦାୟିତ୍ୱରେ ଥିବା ପ୍ରକଳ୍ପ ୧୯୯୮ ମସିହାରେ ଆରମ୍ଭ ହୋଇ ୨୦୦୩ ମସିହାରେ ଶେଷ ହେବାର ଥିଲା । ତେଣୁ ଏନ୍.ସି.ଇ.ଆର.ଟି କର୍ତ୍ତୃପକ୍ଷ ସ୍ଥିର କଲେ ଯେ ସର୍ବଭାରତୀୟ ସ୍ତରରେ ଜନସଂଖ୍ୟା ପ୍ରକଳ୍ପର ଏକ ମଧ୍ୟବର୍ତ୍ତୀକାଳୀନ ମୂଲ୍ୟାୟନ ହେବ । ଓଡ଼ିଶାରେ ଏଇ ମୂଲ୍ୟାୟନ କାର୍ଯ୍ୟ ଜୁନମାସ ତୃତୀୟ ସପ୍ତାହରେ କରାଯିବ ବୋଲି ଜାତୀୟ ସଂଯୋଜକ ପ୍ରଫେସର ପାଣ୍ଡେ ମୋତେ ଜଣାଇଦେଲେ । ଏହାର ମୂଲ୍ୟାୟନ ଦାୟିତ୍ୱ ମୁମ୍ବାଇସ୍ଥିତ ଭାରତୀୟ ଜନସଂଖ୍ୟା ଅଧ୍ୟୟନ ପ୍ରତିଷ୍ଠାନ (Indian Institute of Population Studies)ର ପ୍ରଫେସର ରବି ବର୍ମାଙ୍କୁ ଦିଆଯାଇଥିଲା । ପ୍ରଫେସର ବର୍ମା ଏଇ କାର୍ଯ୍ୟକ୍ରମର ମୂଲ୍ୟାୟନ ନିମନ୍ତେ ତା ୨୦-୨୩ ଜୁନ, ୨୦୦୦ ମସିହାରେ ଚାରିଦିନ ପାଇଁ ଆସିଥିଲେ । ସେ ପ୍ରଥମ ଦିନ ଜନସଂଖ୍ୟା ବିଭାଗର ସମସ୍ତ ପ୍ରକାଶନ, କାର୍ଯ୍ୟକ୍ରମ ପରିଚାଳନାର କାଗଜପତ୍ର ଆଦି ଦେଖିଥିଲେ ଓ ସନ୍ଧ୍ୟାରେ ମୋତେ ସମ୍ମିଳନୀ କକ୍ଷରେ ବିଭିନ୍ନ ପ୍ରଶ୍ନ ପଚାରି ଉତ୍ତର ଆଦାୟ କରିଥିଲେ । ରାତି ସାତଟାରୁ ରାତି ନଅଟା ତିରିଶ ମିନିଟ୍ ପାଖାପାଖି ଉଭୟଙ୍କ ମଧ୍ୟରେ ଆଲୋଚନା ହୋଇଥିଲା । ଦୀର୍ଘ ସମୟ ଧରି ଆଲୋଚନା ହୋଇଥିଲେ ମଧ୍ୟ ସେସବୁ ସମୟ କେମିତି ଅତିବାହିତ ହେଲା ମୁଁ ଜାଣି ପାରିଲି ନାହିଁ । ମୋତେ ଯେମିତି ଜଣାଗଲା ଆମେ ଅଧଘଣ୍ଟା ମାତ୍ର କଥାବାର୍ତ୍ତା ହୋଇଅଛୁ ।

ପରଦିନ ତାଙ୍କ ସହିତ ଖୋର୍ଦ୍ଧା ଜିଲ୍ଲାର ଜଙ୍କିଆସ୍ଥ ଭଗବତ ଦେବ ବିଦ୍ୟାପୀଠରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମର ମୂଲ୍ୟାୟନ କରିବା ନିମନ୍ତେ ସେ ମୋ ସହିତ ଭୁବନେଶ୍ୱରରୁ ବାହାରିଲେ । ଏହା ଏକ ମୂଲ୍ୟାୟନଭିତ୍ତିକ କାର୍ଯ୍ୟକ୍ରମ ହୋଇଥିବା ହେତୁ ସେ ମୋତେ ବହୁ ଆଗରୁ କହିଥିଲେ ଯେ ଯେମିତି ସ୍କୁଲ ତରଫରୁ କେହି ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କରିବେ ନାହିଁ କିମ୍ବା ପୁଷ୍ପଗୁଚ୍ଛ ଦେବେ ନାହିଁ । ଏଇକଥା ମୁଁ ପୂର୍ବରୁ ଭଗବତଦେବ ବିଦ୍ୟାପୀଠ, ଜଙ୍କିଆର ତତ୍‌କାଳୀନ ପ୍ରଧାନଶିକ୍ଷକ ଲକ୍ଷ୍ମୀପ୍ରସାଦ ସାହୁଙ୍କୁ କହିଥିଲି ।

ମାତ୍ର ଜୁନ୍ ମାସ ୨୧ ତାରିଖ ଦିନ ଏଗାରଟାବେଳେ ସେଠାରେ ପହଞ୍ଚିଲା ପରେ ଦେଖିଲି ଯେ ବିଦ୍ୟାଳୟରେ ଛାତ୍ରଛାତ୍ରୀ, ଶିକ୍ଷକ ଶିକ୍ଷୟିତ୍ରୀ ଓ ପ୍ରଧାନଶିକ୍ଷକ ପ୍ରଫେସର ବର୍ମାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଲେ । ଏହା ପ୍ରଫେସର ବର୍ମାଙ୍କ ଇଚ୍ଛା ବିରୋଧରେ ହୋଇଥିବା ହେତୁ ମୁଁ ମନେ ମନେ ବିରକ୍ତି ହେଲି ଯେ ଜଣେ ଅଭିଜ୍ଞ ପ୍ରଧାନଶିକ୍ଷକ କାହିଁକି ଏପରି କଲେ ।

ଖରାଦିନ ଛୁଟି ଥିବାରୁ ପ୍ରଫେସର ବର୍ମାଙ୍କୁ ମଧ୍ୟ ସାକ୍ଷାତ ଆଲୋଚନା କରିବାକୁ ସେଦିନ ଖୋର୍ଦ୍ଧା ସର୍କଲର ଅନେକ ପ୍ରଧାନଶିକ୍ଷକ ଆସିଥିଲେ । ସେମାନେ ଓ ପିଲାମାନଙ୍କ ଗହଣରେ କୈଶୋର ଶିକ୍ଷା ଅନ୍ତର୍ଭୁକ୍ତ ପ୍ରଶ୍ନବାକ୍ସ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ବାକ୍ସରେ ପଡ଼ିଥିବା ପ୍ରଶ୍ନଗୁଡ଼ିକର ଉତ୍ତର ବିଦ୍ୟାଳୟର ତାଲିମପ୍ରାପ୍ତ ଶିକ୍ଷକ ଓ ରାମେଶ୍ୱର ସ୍ୱାସ୍ଥ୍ୟ କେନ୍ଦ୍ରର ଡାକ୍ତର ଗଣେଶ ଚନ୍ଦ୍ର ମହାପାତ୍ର ଦେଇଥିଲେ । ଏପରିକି ସ୍ୱତପ୍ରବୃତ୍ତ ଭାବେ ପ୍ରଫେସର ବର୍ମା ମଧ୍ୟ କେତେକ ପ୍ରଶ୍ନର ଉତ୍ତର ଦେଇଥିଲେ । ସତେ ଯେମିତି ସେ ଆମ ଭିତରୁ ଜଣେ ।

ଏତଦ୍‌ବ୍ୟତୀତ ରାଜ୍ୟର ବିଦ୍ୟାଳୟସ୍ତରରେ କାର୍ଯ୍ୟକାରୀ ହେଉଥିବା ଜନସଂଖ୍ୟା ଓ ବିକାଶ ଶିକ୍ଷାର ଫଳପ୍ରଦ ରୂପାୟନ ସଂପର୍କରେ ପ୍ରଫେସର ବର୍ମା ଉପସ୍ଥିତ ପ୍ରଧାନ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କ ସହିତ ଆଲୋଚନା କରିଲେ । କଥା ପ୍ରସଂଗରେ ସେ ପ୍ରଶ୍ନବାକ୍ସ କାର୍ଯ୍ୟକ୍ରମରେ କେତେକ ସମ୍ବେଦନଶୀଳ ବିଷୟ ଆଲୋଚନାର ପରିସର ମଧ୍ୟକୁ ଆସୁଥିବା ହେତୁ ପ୍ରଥମ କେତୋଟି ଅଧିବେଶନ କିଶୋର ଓ କିଶୋରୀମାନଙ୍କ ପାଇଁ ଏକତ୍ର ନ କରି ସ୍ୱତନ୍ତ୍ରଭାବେ କରିବାକୁ ପରାମର୍ଶ ଦେଇଥିଲେ । କାରଣ ଆମର ସାଂସ୍କୃତିକ ପରିସର ମଧ୍ୟରେ କେତେକ ପ୍ରଶ୍ନର ଉତ୍ତର ଛାତ୍ରୀମାନେ ଏକତ୍ର ଶୁଣିବାକୁ ପସନ୍ଦ କରିବେ ନାହିଁ । କେତୋଟି ସ୍ୱତନ୍ତ୍ର ଅଧିବେଶନ ପରେ ଏ ପରିସ୍ଥିତି ରହିବ ନାହିଁ ବୋଲି ପ୍ରଫେସର ବର୍ମା ମତପୋଷଣ କରିଥିଲେ ।

ସେଦିନ ଅପରାହ୍ନରେ ଭଗବତ ଦେବ ବିଦ୍ୟାପୀଠରୁ ବିଦାୟ ନେଲାବେଳେ ପ୍ରଫେସର ବର୍ମା ସମସ୍ତଙ୍କ ସମକ୍ଷରେ ପ୍ରକାଶ କରିଥିଲେ ଯେ ୧୯୯୮ ମସିହାରୁ କାର୍ଯ୍ୟକାରୀ ହେଉଥିବା କୈଶୋର ଶିକ୍ଷା କାର୍ଯ୍ୟକ୍ରମ ମାତ୍ର ଦୁଇବର୍ଷ ମଧ୍ୟରେ ରାଜ୍ୟରେ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିଅଛି । ମାତ୍ର ଏହି ବାତାବରଣକୁ ଅବ୍ୟାହତ ରଖିବା ନିମନ୍ତେ ସେ ଉପସ୍ଥିତ ପ୍ରଧାନଶିକ୍ଷକ ଓ ପ୍ରଧାନଶିକ୍ଷୟିତ୍ରୀମାନଙ୍କୁ ଜଣେ ଶିକ୍ଷାବିତ୍ ହିସାବରେ ଅନୁରୋଧ କରିଥିଲେ ।

ସେଠାରୁ ଫେରିବା ସମୟରେ ସେ ମୋତେ କହିଥିଲେ "ଡକ୍ଟର ବ୍ରହ୍ମା, ଆମ ଭାରତୀୟ ସଂସ୍କୃତି ଏତେ ଉନ୍ନତ ଯେ ସେଥିରେ ନୀତି ନିୟମକୁ ଆଧାର କରି ଆମେ କୌଣସି କଥା କାହାରି ଉପରେ ଲଦି ଦେଇ ପାରିବା ନାହିଁ । ମୋ ଆସିବା ସମୟରେ ସମ୍ବର୍ଦ୍ଧନା ନ ଦେବା ପାଇଁ ମନାକରିଯାଇଥିଲେ ମଧ୍ୟ ବିଦ୍ୟାଳୟର କର୍ତ୍ତୃପକ୍ଷ ମାନିଲେ ନାହିଁ । ସମ୍ବର୍ଦ୍ଧନା ଓ ସ୍ୱାଗତ ଭାଷଣ ଉଭୟ ଚାଲିଲା । ମୁଁ ଆଗରୁ ଏହା ଜାଣିଥିଲି ।"

ପ୍ରଫେସର ବର୍ମା ଜଣେ ଜାତୀୟ ତଥା ଆନ୍ତର୍ଜାତୀୟ ଖ୍ୟାତି ସଂପନ୍ନ ଶିକ୍ଷାବିତ୍ । ତାଙ୍କ ସହିତ ତିନି ଦିନ ବିଭିନ୍ନ କାର୍ଯ୍ୟକ୍ରମରେ ମତ ବିନିମୟ କରି ଏହି କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ ବ୍ୟକ୍ତିବିଶେଷ ଉପକୃତ ହୋଇଥିଲେ ।

**କୈଶୋର ଶିକ୍ଷା କାର୍ଯ୍ୟକ୍ରମରେ ଖୋର୍ଦ୍ଧା ଶିକ୍ଷା ଜିଲ୍ଲାର ଅନୁଭୂତି**

୧୯୯୮ ମସିହାଠାରୁ ୨୦୦୩ ମସିହା ପର୍ଯ୍ୟନ୍ତ ରାଜ୍ୟର ବିଭିନ୍ନ ପ୍ରକଳ୍ପ ବିଦ୍ୟାଳୟରେ କୈଶୋର ଶିକ୍ଷା କାର୍ଯ୍ୟକ୍ରମ ଶତାଧିକ ମାଧ୍ୟମିକ ବିଦ୍ୟାଳୟରେ କାର୍ଯ୍ୟକାରୀ ହେଉଥିଲେ ହେଁ ଖୋର୍ଦ୍ଧା ଶିକ୍ଷାଜିଲ୍ଲାର ବିଭିନ୍ନ ସମୟରେ ରହିଥିବା ଶିକ୍ଷା ମଣ୍ଡଳାଧୀଶମାନେ ଏହାକୁ ନିଜ ବିଦ୍ୟାଳୟର ସହ ପାଠ୍ୟକ୍ରମଭିତ୍ତିକ କାର୍ଯ୍ୟକ୍ରମ ରୂପେ ଗ୍ରହଣ କରିବାକୁ ପ୍ରୟାସ କରିଥିଲେ । ସେଥିପାଇଁ ସେମାନେ ପ୍ରକଳ୍ପ ବିଦ୍ୟାଳୟଗୁଡ଼ିକର ପ୍ରଧାନଶିକ୍ଷକମାନଙ୍କୁ ସ୍ୱାଧୀନତା ଦେଇଥିଲେ । ସେମାନଙ୍କ ମଧ୍ୟରେ ଡକ୍ଟର ଶରତ କୁମାର ବିଶ୍ୱାଳ, ଶ୍ରୀମତୀ ମନସ୍ୱିନୀ ଦାଶ, ଶ୍ରୀ ଅରକ୍ଷିତ ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଖୋର୍ଦ୍ଧା ଶିକ୍ଷା ମଣ୍ଡଳାଧୀଶ ଭାବେ ଡଃ ଶରତ କୁମାର ବିଶ୍ୱାଳ ୧୭ ଅଗଷ୍ଟ, ୧୯୯୮ ମସିହାରେ ଯୋଗଦାନ କରିଥିଲେ । ତାଙ୍କ ଯୋଗଦାନର କିଛି ମାସ ପୂର୍ବରୁ ଭଗବତ ଦେବ ବିଦ୍ୟାପୀଠ, ଜଙ୍କିଆ, ବଡ଼ତୋଟା-ବେଲପଡ଼ା ଉଚ୍ଚ ବିଦ୍ୟାଳୟ, ବଡ଼ତୋଟା, କୁଦିଆରୀ ଉଚ୍ଚ ବିଦ୍ୟାଳୟ, କୁଦିଆରୀ; ଲବଣଗିରି ବିଦ୍ୟାପୀଠ, ଜାମୁକୋଳି, ନନ୍ଦନକାନନ ଉଚ୍ଚ ବିଦ୍ୟାଳୟ, ନନ୍ଦନକାନନ; ଶ୍ରୀ ସତ୍ୟସାଇ ଉଚ୍ଚ ବିଦ୍ୟାଳୟ, ଭୁବନେଶ୍ୱର; ସରକାରୀ ଉଚ୍ଚ ବିଦ୍ୟାଳୟ, ସହିଦ ନଗର; ସହିଦ ମମତାଜ ଅଲ୍ଲୀ ଉଚ୍ଚବିଦ୍ୟାଳୟ, ନୟାପଲ୍ଲୀ; ସୀତାନାଥ ଉଚ୍ଚ ବିଦ୍ୟାଳୟ, ଶୈଳଶ୍ରୀ ବିହାର; ବାଲୁଗାଁ ହାଇସ୍କୁଲ, ବାଲୁଗାଁ; ବ୍ରଜେନ୍ଦ୍ରନାଥ ଉଚ୍ଚବିଦ୍ୟାଳୟ, ନୟାଗଡ କୈଶୋର ଶିକ୍ଷା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଥିଲା । ଏଇସବୁ ହାଇସ୍କୁଲର ପ୍ରଧାନଶିକ୍ଷକମାନଙ୍କ ସହିତ ରାଜ୍ୟର ସର୍ବମୋଟ ଚାଳିଶ ଜଣ ପ୍ରଧାନଶିକ୍ଷକଙ୍କୁ ୧୯୯୮ ମସିହା ଅଗଷ୍ଟ ମାସ ୧୨ ତାରିଖରେ ଜାତୀୟ ଶିକ୍ଷା ଗବେଷଣା ପରିଷଦର ପ୍ରଫେସର ଜବାହରଲାଲ ପାଣ୍ଡେ କୈଶୋର ଶିକ୍ଷା କାର୍ଯ୍ୟକ୍ରମର ପରିଚାଳନା ସଂପର୍କରେ ଏକଦିବସୀୟ ଆଲୋଚନା

ଚକ୍ର ଶିକ୍ଷକ ଶିକ୍ଷାନିର୍ଦ୍ଦେଶାଳୟର ସମ୍ମିଳନୀ କକ୍ଷରେ ଅନୁଷ୍ଠିତ କରିଥିଲେ । ଏଇ କାର୍ଯ୍ୟକ୍ରମରେ ଯେଉଁ ପ୍ରଧାନଶିକ୍ଷକମାନେ ଆଗ୍ରହର ସହିତ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ, ସେମାନେ ହେଲେ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ, ଶ୍ରୀଯୁକ୍ତ ଲକ୍ଷ୍ମୀପ୍ରସାଦ ସାହୁ, ଶ୍ରୀଯୁକ୍ତ ଜବାହର ଲାଲ ସୁବୁଦ୍ଧି, ଶ୍ରୀଯୁକ୍ତ ମନୋରଞ୍ଜନ ଦାସ, ଶ୍ରୀମତୀ ସଂଯୁକ୍ତା ରାଉତ, ଶ୍ରୀଯୁକ୍ତ ସହଦେବ ପଣ୍ଡା, ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଶ୍ରୀଯୁକ୍ତ ଶରତ କୁମାର ପାଇକରାୟ, ଶ୍ରୀଯୁକ୍ତ ନଗେନ୍ଦ୍ର ଦତ୍ତ ଓ ଶ୍ରୀଯୁକ୍ତ ବି. ରାମଦାସ ।

ସେସବୁ ପ୍ରଧାନଶିକ୍ଷକମାନଙ୍କ ସହିତ ଆଲୋଚନା ପରେ ମୋତେ ପ୍ରଫେସର ପାଣ୍ଡେ କହିଥିଲେ, "ମୁଁ ଅତ୍ୟନ୍ତ ଖୁସି ଯେ ଓଡ଼ିଶାର କୈଶୋର ଶିକ୍ଷା କାର୍ଯ୍ୟକ୍ରମ ପ୍ରବୀଣ ଓ ଦକ୍ଷ ପ୍ରଧାନଶିକ୍ଷକମାନଙ୍କ ହାତରେ ପଡ଼ିଅଛି । ରାଜ୍ୟର ସମସ୍ତ ଜିଲ୍ଲାର ପ୍ରକଳ୍ପ ବିଦ୍ୟାଳୟର ପ୍ରଧାନଶିକ୍ଷକମାନେ କାର୍ଯ୍ୟକ୍ରମରେ ଯୋଗ ଦେଇ ଯେପରି ସେମାନଙ୍କ ବିଦ୍ୟାଳୟର କୈଶୋର ଶିକ୍ଷା କାର୍ଯ୍ୟକ୍ରମ ସଂପର୍କରେ ଅବଗତ କରାଇଲେ ସେପରି ଆଭାସ ମୁଁ ଅନ୍ୟ ରାଜ୍ୟମାନଙ୍କଠାରୁ ପାଇ ନ ଥିଲି ।"

ଏତଦ୍‌ବ୍ୟତୀତ୍ ସେଦିନ ଏଇ ଆଲୋଚନାଚକ୍ରକୁ ସେ କୈଶୋର ଶିକ୍ଷା କାର୍ଯ୍ୟକ୍ରମରେ ରାଜ୍ୟସ୍ତରୀୟ ପ୍ରଶିକ୍ଷଣ ଶିକ୍ଷାଦାନର ବିଶେଷଜ୍ଞମାନଙ୍କୁ ମଧ୍ୟ ଆମନ୍ତ୍ରଣ କରିବାକୁ ମୋତେ ପୂର୍ବରୁ କହିଥିଲେ । ସେଥିପାଇଁ ରାଜ୍ୟସ୍ତରୀୟ ବିଶେଷଜ୍ଞ ପ୍ରଫେସର ଭି.ବି. ଶାସ୍ତ୍ରୀ, ପ୍ରାଧ୍ୟାପକ ଗୌରୀଶଙ୍କର ମହାପାତ୍ର, ଡ଼ାକ୍ତର ବିଜୟ କୁମାର ସି ପ୍ରମୁଖଙ୍କ ସହିତ ସେ ବିଚାର ବିମର୍ଷ କରିଥିଲେ । ସେମାନଙ୍କ ଅନୁପସ୍ଥିତିରେ ମୋତେ କହିଥିଲେ, "ମୋ ସହିତ ଆଲୋଚନା କରିଥିବା ବିଶେଷଜ୍ଞଗଣ ଅତି ଉନ୍ନତମାନର । ତୁମେ ସେମାନଙ୍କ ସାହାଯ୍ୟ ଓ ପରାମର୍ଶ ସବୁ ସମୟରେ ନେବ ।"

ତାଙ୍କର ପରାମର୍ଶ ଅନୁଯାୟୀ କୈଶୋର ଶିକ୍ଷା ସଂପର୍କୀୟ ସମସ୍ତ ଶିକ୍ଷକ ପ୍ରଶିକ୍ଷଣ ପୁସ୍ତକ, ଗବେଷଣା, ଶିକ୍ଷକ ପ୍ରଶିକ୍ଷଣରେ ସେମାନଙ୍କ ସହିତ ଅନ୍ୟାନ୍ୟ ବିଶେଷଜ୍ଞମାନଙ୍କ ସାହାଯ୍ୟ ନିଆଯାଇଥିଲା ।

ପ୍ରତ୍ୟେକ ବିଦ୍ୟାଳୟର କାର୍ଯ୍ୟକ୍ରମରେ ଅଂଶଗ୍ରହଣର ଅନୁଭୂତି ସ୍ୱତନ୍ତ୍ର ଓ ନିଆରା ଥିଲା । ଭୁବନେଶ୍ୱରରୁ ଆରମ୍ଭ କରି ମାଲକାନଗିରି ଜିଲ୍ଲାର ଖଇରପୁଟ କାର୍ଯ୍ୟକ୍ରମ ମୋତେ କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ ବ୍ୟକ୍ତି ବିଶେଷଙ୍କୁ ଜାଣିବାର ସୁଯୋଗ ଦେଇଥିଲା । ଏହା ଫଳରେ ଜଣେ ଶିକ୍ଷାବିତ୍ ଓ ଅଭିଭାବକ ଭାବେ ମୋର ଅଭିଜ୍ଞତା ଓ ଅନ୍ତର୍ଦୃଷ୍ଟି ଅଧିକରୁ ଅଧିକତର ବ୍ୟାପକ ହୋଇଥିଲା ।

ଡମଣା ବିଦ୍ୟାଳୟର ଏକ ଅନୁଭୂତି :

ଭୁବନେଶ୍ୱରସ୍ଥ ଡମଣା ଉଚ୍ଚ ବିଦ୍ୟାଳୟର ବାର୍ଷିକ ପୁରସ୍କାର ବିତରଣ ଉତ୍ସବର ଏକ ଅନୁଭୂତି । ସେ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଭୁବନେଶ୍ୱରର ସାଂସଦ ଡକ୍ଟର

ପ୍ରସନ୍ନ ପାଟଶାଣୀ ଯୋଗ ଦେଇଥାନ୍ତି । ଅନ୍ୟ ସମ୍ମାନିତ ଅତିଥିମାନଙ୍କ ମଧ୍ୟରେ ମୁଁ ଓ ଖୋର୍ଦ୍ଧା ଶିକ୍ଷା ମଣ୍ଡଳାଧୀଶ ଡକ୍ଟର ଶରତ କୁମାର ବିଶ୍ୱାଳ ଯୋଗଦାନ କରିଥାଉ । ଏଇ ଉତ୍ସବ ଡକ୍ଟର ବିଶ୍ୱାଳଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା ।

ସାଂସଦ ଡକ୍ଟର ପ୍ରସନ୍ନ ପାଟଶାଣୀ ତାଙ୍କ ବକ୍ତବ୍ୟ ମଝିରେ ଭାବ ବିହ୍ୱଳିତ ହୋଇ କହି ପକାଇଲେ, "ପ୍ରସନ୍ନ ପାଟଶାଣୀ ସମ୍ମାନର ସହିତ ନମସ୍କାର କରେ ଡକ୍ଟର ଦିଗରାଜ ବ୍ରହ୍ମାଙ୍କୁ । ଡକ୍ଟର ଶରତ କୁମାର ବିଶ୍ୱାଳଙ୍କ ଭଳି ଅଫିସରମାନଙ୍କୁ, ଯେଉଁମାନେ କି କେବଳ ନିଜ ସ୍ୱାର୍ଥ ପାଇଁ କାମ କରନ୍ତି ନାହିଁ; ବରଂ ରାଜ୍ୟର ସ୍ୱାର୍ଥ ପାଇଁ କାମ କରନ୍ତି । ଶିକ୍ଷାର ବିକାଶ ପାଇଁ ସମୟ ଦିଅନ୍ତି ।"

ସାଂସଦଙ୍କର ବୌଦ୍ଧିକ ଭାଷଣ ମଝିରେ ଏପରି ଆମଭଳି ଶିକ୍ଷା ଅଧିକାରୀମାନଙ୍କ ଉଦ୍ଦେଶ୍ୟରେ କହିଥିବା କେତେକ କଥା ମୋତେ ବିସ୍ମିତ କରିଥିଲା । ମାତ୍ର ଏଇ କଥାର ଏତେ ସତ୍ୟତା ଥିଲା ଯେ ଥରେ ଜନସଂଖ୍ୟା ବିକାଶ ପ୍ରକଳ୍ପର ରାଜ୍ୟ ଉପଦେଷ୍ଟା କମିଟି (State Advisory Committee) ଆଲୋଚନା ବେଳେ ତତ୍‌କାଳୀନ ଗଣଶିକ୍ଷା କମିଶନର - ତଥା - ସଚିବ ଶ୍ରୀଯୁକ୍ତ ଅଶୋକ କୁମାର ତ୍ରିପାଠୀ ଡକ୍ଟର ବିଶ୍ୱାଳଙ୍କୁ ଲକ୍ଷ୍ୟକରି କହିଥିଲେ, "ଆପଣ ତ ପିଲାମାନଙ୍କ ପାଇଁ କିଛି କାମ କରୁଛନ୍ତି, ସେପରି କାର୍ଯ୍ୟ ମୁଁ ଅନ୍ୟମାନଙ୍କଠାରେ ଦେଖିବାକୁ ପାଉନାହିଁ ।" ଆଉ ଥରେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଓ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦର ସମ୍ମିଳନୀ କକ୍ଷରେ ୧୯୯୯ ମସିହା ଅକ୍ଟୋବର ମାସ ୧୨ ତାରିଖରେ ପାଳିତ ହେଉଥିବା ଏକ ସ୍ୱତନ୍ତ୍ର ଉତ୍ସବରେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ବିମଳେନ୍ଦୁ ମହାନ୍ତି କଥା ପ୍ରସଙ୍ଗରେ ସମ୍ମିଳନୀ କକ୍ଷରେ କହିଥିଲେ, "ମୁଁ ଏଠାରେ କାହାରି କଥାରେ ଯୋଗଦେଇ ନାହିଁ । ମୋତେ ଜନୈକ ଭଦ୍ରବ୍ୟକ୍ତି ଡକ୍ଟର ଦିଗରାଜ ବ୍ରହ୍ମା ବ୍ୟକ୍ତିଗତ ଭାବେ ନିମନ୍ତ୍ରଣ କରିଥିବା ହେତୁ ତାଙ୍କର ସମ୍ମାନ ରକ୍ଷା କରି ଆସିଅଛି ।" ସେଇପରି ଜନସଂଖ୍ୟା ପ୍ରକଳ୍ପର ଅଗ୍ରଗତିର ସମୀକ୍ଷା କରିବା ନିମନ୍ତେ ଥରେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଜଏଣ୍ଟ ସେକ୍ରେଟେରୀ-ତଥା-ଓପେପାର ତତ୍‌କାଳୀନ ନିର୍ଦ୍ଦେଶକ ଶ୍ରୀଯୁକ୍ତ ବିଜୟ କୁମାର ଆରୋରା, ଆଇ.ଏ.ଏସ୍ ଆସିଥିଲେ । ସେ ଗଲାବେଳେ ମୁଁ ଯେତେବେଳେ ତାଙ୍କୁ ବିଦାୟ ଦେବାକୁ ତୃତୀୟ ମହଲାରୁ ତାଙ୍କ ସହିତ ତଳକୁ ଗଲି, ସେ ମୋତେ କହିଲେ, "ଆପଣ ଜଣେ କାମିକା ଲୋକ । କାମଛାଡ଼ି କାହିଁକି ମୋ ପଛରେ ଆସିଲେ ?" ତାଙ୍କ କଥାଶୁଣି ମୁଁ ସଙ୍ଗେ ସଙ୍ଗେ ମଝି ପାହାଚରୁ ମୋ ସ୍ଥାନକୁ ଚାଲି ଆସିଲି । ଏସବୁ ମନ୍ତବ୍ୟ ହେଉଛି ସେମାନଙ୍କର ନିଜସ୍ୱ । କିନ୍ତୁ ଏଥିରୁ ମୋର

ଧାରଣା ହୋଇଥିଲା ଯେ ପ୍ରତ୍ୟେକ ବ୍ୟକ୍ତି ଯାହା କରନ୍ତି, ତାହା ମଧ୍ୟ ଆପେ ଆପେ ଅନ୍ୟମାନଙ୍କର ଅନୁଧ୍ୟାନ ପରିସର ମଧ୍ୟକୁ ଆସିଥାଏ ।

ଏଇ ସମୟରେ ମୁଁ ତୃଣମୂଳ ସ୍ତରରୁ ଅନେକ ସାହାଯ୍ୟ ପାଇଥିଲି । ରାଜ୍ୟର ଗଣମାଧ୍ୟମଗୁଡ଼ିକରେ ଜନସଂଖ୍ୟା ଓ ବିକାଶ ସଂପର୍କୀୟ ଖବର ନିରନ୍ତର ସ୍ଥାନ ପାଉଥିଲା । ଖୋର୍ଦ୍ଧାସର୍କଲର ଜନୈକ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଲକ୍ଷ୍ମୀପ୍ରସାଦ ସାହୁ ଓ ପ୍ରଧାନଶିକ୍ଷକ ଜବାହାରଲାଲ ସୁବୁଦ୍ଧିଙ୍କ ବିଭିନ୍ନ ଗଣମାଧ୍ୟମ ପ୍ରତିନିଧିମାନଙ୍କ ସହିତ ସୁସମ୍ପର୍କ ଥିଲା । ସେ ଜନସଂଖ୍ୟା ବିଭାଗ ଦ୍ୱାରା ଅନୁଷ୍ଠିତ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମର ସମ୍ବାଦ ବିଭିନ୍ନ ସମ୍ବାଦପତ୍ର, ଆକାଶବାଣୀ ଓ ଦୂରଦର୍ଶନରେ ପ୍ରଚାର ଓ ପ୍ରସାର ପାଇଁ ସୁଯୋଗ ସୃଷ୍ଟି କରିପାରୁଥିଲେ । ତାଙ୍କ ସହିତ ଅନ୍ୟତମ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଜବାହରଲାଲ ସୁବୁଦ୍ଧିଙ୍କର ସହାୟତା ମଧ୍ୟ ଜନସଂଖ୍ୟା ବିଭାଗର କାର୍ଯ୍ୟକ୍ରମର ପ୍ରଚାର ଓ ପ୍ରସାରରେ ସାହାଯ୍ୟ କରୁଥିଲା । ସମଗ୍ର ଭାରତ ବର୍ଷରେ ଏଇ ପ୍ରକଳ୍ପକୁ ସେ ସମୟରେ ପ୍ରଥମ ସ୍ଥାନ ଦେବାରେ ଯେଉଁମାନେ ସ୍ତମ୍ଭ ସ୍ୱରୂପ କାର୍ଯ୍ୟ କରିଥିଲେ ସେମାନେ ହେଲେ, ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର, ଶିକ୍ଷା ମଣ୍ଡଳାଧୀଶ ଡକ୍ଟର ଶରତ କୁମାର ବିଶ୍ୱାଳ, ପ୍ରଧାନଶିକ୍ଷକ ଲକ୍ଷ୍ମୀପ୍ରସାଦ ସାହୁ, ପ୍ରଧାନଶିକ୍ଷକ ଜବାହରଲାଲ ସୁବୁଦ୍ଧି, ପ୍ରଧାନଶିକ୍ଷକ ସହଦେବ ପଣ୍ଡା ଓ ଅନ୍ୟାନ୍ୟ ବହୁ ଉତ୍ସର୍ଗୀକୃତ ଶିକ୍ଷକ ଓ ଶିକ୍ଷାବିତ୍ ।

ଯେପରି, ଗୋଟିଏ ରାଜ୍ୟର ବିକାଶ ରାଜନୈତିକ ଇଚ୍ଛାଶକ୍ତି ଉପରେ ନିର୍ଭର କରିଥାଏ, ସେହିପରି ଶିକ୍ଷାକ୍ଷେତ୍ରରେ କାର୍ଯ୍ୟକାରୀ ହେଉଥିବା ପ୍ରକଳ୍ପ ତୃଣମୂଳ ସ୍ତରରେ କାମ କରୁଥିବା ଶିକ୍ଷକ ବନ୍ଧୁମାନଙ୍କଠାରୁ ଆରମ୍ଭ କରି ଶିକ୍ଷା ସଚିବମାନଙ୍କ ସଦିଚ୍ଛା ଉପରେ ନିର୍ଭର କରିଥାଏ । ୧୯୯୮ ମସିହାରୁ ୨୦୦୦ ମସିହା ପର୍ଯ୍ୟନ୍ତ ଏଇ ପ୍ରକଳ୍ପର ବିକାଶ ଦିଗରେ ଶ୍ରୀଯୁକ୍ତ ମଦନମୋହନ ମହାନ୍ତି, ଆଇ.ଏ.ଏସ୍ ଓ ଶ୍ରୀଯୁକ୍ତ ଅଶୋକ କୁମାର ତ୍ରିପାଠୀ, ଆଇ.ଏ.ଏସ୍ ବିଶେଷ ଯତ୍ନବାନ ଥିଲେ । ଶ୍ରୀଯୁକ୍ତ ତ୍ରିପାଠୀ ରାଜ୍ୟର ଜନସଂଖ୍ୟା ପ୍ରକଳ୍ପ ନିମନ୍ତେ କେମିତି ଅଧିକ ଅର୍ଥ ଆସିବ ସେଥିପାଇଁ ଯତ୍ନବାନ ହେବାକୁ ବିଭିନ୍ନ ସମୟରେ ପରାମର୍ଶ ଦେଉଥିଲେ । ନିଜେ ମଧ୍ୟ ବିଦ୍ୟାଳୟ ସ୍ତରରେ ଏଇ କାର୍ଯ୍ୟକ୍ରମକୁ ଅନୁଧ୍ୟାନ କରୁଥିବାର ସୂଚନା ମୋତେ ସମ୍ବଲପୁର ଟାଉନ ସ୍କୁଲର ପ୍ରଧାନଶିକ୍ଷକ ମୋର ଛାତ୍ର ଶ୍ରୀମାନ୍ ରାଜେନ୍ଦ୍ର ପଣ୍ଡା ଦେଇଥିଲେ । ଯେଉଁ ଖୋର୍ଦ୍ଧା ସର୍କଲ ଡକ୍ଟର ଶରତ କୁମାର ବିଶ୍ୱାଳଙ୍କ ସମୟରେ ଜନସଂଖ୍ୟା ଓ ବିକାଶ କାର୍ଯ୍ୟକ୍ରମରେ ନବଜାଗରଣର ସୂତ୍ରପାତ କରିଥିଲା, ସେଥିରେ ଭଟ୍ଟା ପଡ଼ିଥିଲା ଏଇ ସର୍କଲରୁ ତାଙ୍କର

ଜୁଲାଇ ମାସ ୪ ତାରିଖ ୨୦୦୦ ମସିହାରେ ଅନ୍ୟତ୍ର ଅବସ୍ଥାପିତ ହେବାପରେ ।

**ମୋ ଶିକ୍ଷକ ଆପଣଙ୍କ କାର୍ଯ୍ୟକ୍ରମରେ ଯିବେ କାହିଁକି ?**

ଡକ୍ଟର ବିଶ୍ୱାଳଙ୍କ ପରେ ଶିକ୍ଷା ମଣ୍ଡଳାଧୀଶ ଭାବେ ଶ୍ରୀଯୁକ୍ତ ଲିଙ୍ଗରାଜ ଦଳାଇ ଖୋର୍ଦ୍ଧା ସର୍କଲରେ ଅବସ୍ଥାପିତ କଲେ । ସେ ମହାଶୟ ଏଇ ସର୍କଲରେ ୪ ଜୁଲାଇ, ୨୦୦୦ ମସିହାରୁ ୬ ଅଗଷ୍ଟ, ୨୦୦୫ ମସିହା ପର୍ଯ୍ୟନ୍ତ ଅବସ୍ଥାପିତ ଥିଲେ । ସେ ବିଭିନ୍ନ ସମୟରେ କହିବୁଲିଲେ ଯେ ବ୍ରହ୍ମାବାବୁ ମୋ ଶିକ୍ଷକମାନଙ୍କୁ କାହିଁକି ବିଭିନ୍ନ କାର୍ଯ୍ୟକ୍ରମରେ ସାମିଲ କରୁଛନ୍ତି ? ଏପରିକି କେତକ କାର୍ଯ୍ୟକ୍ରମକୁ ସେ ଜନସଂଖ୍ୟା ଓ ବିକାଶ କାର୍ଯ୍ୟକ୍ରମରେ ଯୋଗ ଦେଉଥିବା ଶିକ୍ଷକମାନଙ୍କ ଉପରେ ରୋକ ଲଗାଇଲେ ।

ଏଇ ଶିକ୍ଷା ମଣ୍ଡଳାଧୀଶ ଜଣକ ନିଜର ସୀମା ସରହଦ ଭୁଲି ମୋତେ ଯେଉଁଠି ଦେଖିଲେ ସଙ୍ଗେ ସଙ୍ଗେ ପ୍ରଶ୍ନ କଲେ, "ଆପଣ କ'ଣ ମୋ ଶିକ୍ଷକମାନଙ୍କୁ ଏସ୍.ସି.ଇ.ଆର.ଟିର ବିଭିନ୍ନ ପ୍ରଶିକ୍ଷଣ କାର୍ଯ୍ୟକ୍ରମକୁ ଡ଼ାକି ନେଉଛନ୍ତି ?" ତାଙ୍କର ଏପରି ପ୍ରଶ୍ନ ଶାଳୀନତା ବିହୀନ ଥିଲା ଓ ତାଙ୍କ ଅଧିକାରର ବାହାରେ ଥିଲା । ସେ ଭୁଲି ଯାଉଥିଲେ ଯେ ମୁଁ ଜଣେ ଶିକ୍ଷକଙ୍କର ଶିକ୍ଷକ ଥିଲି । ଶିକ୍ଷା ନିର୍ଦ୍ଦେଶାଳୟରେ ଓଡ଼ିଶା ସରକାରଙ୍କ ଦ୍ୱାରା ଅବସ୍ଥାପିତ ହୋଇ ରାଜ୍ୟ ପାଇଁ କାମ କରୁଥିଲି । ମୋର ବରିଷ୍ଠତା ଓ ଯୋଗ୍ୟତା ତାଙ୍କଠାରୁ ଏତେ ଅଧିକ ଥିଲା ଯେ ତାଙ୍କ ଅଧୀନରେ କୌଣସି ପରିସ୍ଥିତିରେ କାର୍ଯ୍ୟ କରିବାର ଅବକାଶ ମଧ୍ୟ ନ ଥିଲା । ମାତ୍ର ତତ୍‌କାଳୀନ ମାନ୍ୟବର ଶିକ୍ଷାମନ୍ତ୍ରୀ ତାଙ୍କୁ ଖୋର୍ଦ୍ଧା ସର୍କଲ ଭଳି ରାଜ୍ୟର ଏକ ଅଗ୍ରଣୀ ସର୍କଲକୁ ଆଣିଥିବା ହେତୁ ମୁଁ ତାଙ୍କର କୌଣସି ପ୍ରଶ୍ନର ଉତ୍ତର ଦେବାକୁ ଉଚିତ୍ ମନେ କରି ନ ଥିଲି ।

ମାତ୍ର ଘଟଣାପ୍ରବାହରେ ମୋର ମାନ୍ୟବର ମନ୍ତ୍ରୀ ଶ୍ରୀଯୁକ୍ତ ଭାଗବତ ବେହେରାଙ୍କ ସହିତ ପରିଚୟ ହେବାର ସୁଯୋଗ ମିଳିଲା । ତାଙ୍କ ଇଚ୍ଛାକ୍ରମେ ନାଗମୁଣ୍ଡଳୀସ୍ଥିତ ମଧୁକେଶ ବିଦ୍ୟାପୀଠରେ ୨୦୦୦ ମସିହା ସେପ୍ଟେମ୍ବର ମାସ ୨୬ ତାରିଖରେ କୈଶୋର ଶିକ୍ଷା ସପକ୍ଷରେ ଏକ କାର୍ଯ୍ୟକ୍ରମ କରାଗଲା । ସେଇ କାର୍ଯ୍ୟକ୍ରମରେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟର ନିର୍ଦ୍ଦେଶକ ଡକ୍ଟର ଶ୍ରୀବତ୍ସ ଲାଞ୍ଛନ ଜେନା, ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅବସରପ୍ରାପ୍ତ ଅଧ୍ୟକ୍ଷ ପ୍ରଫେସର ଭି.ବି ଶାସ୍ତ୍ରୀ ଓ ନିଜେ ମନ୍ତ୍ରୀ ମଧ୍ୟ ଉପସ୍ଥିତ ଥିଲେ । ମନ୍ତ୍ରୀଙ୍କ ଯୋଗଦାନ ଯୋଗୁଁ ପ୍ରାୟ ପାଞ୍ଚଶହ ପର୍ଯ୍ୟନ୍ତ ଅଭିଭାବକ, ଶିକ୍ଷକ ଓ ଅନ୍ୟାନ୍ୟ ନେତୃସ୍ଥାନୀୟ ଲୋକ ସେଇ କାର୍ଯ୍ୟକ୍ରମରେ ଯୋଗଦାନ କରିଥିଲେ ।

ଏଇ ବର୍ଷ ଡିସେମ୍ବର ମାସରେ କୌଣସି କାର୍ଯ୍ୟରେ ମୁଁ ରାଜ୍ୟ ବାହାରକୁ ଯାଇଥିଲି । ଫେରି ଦେଖିଲି ଯେ ମାନ୍ୟବର ମନ୍ତ୍ରୀଙ୍କ ତରଫରୁ ନାଗମୁଣ୍ଡଳୀସ୍ଥ ମଧୁକେଶ

ବିଦ୍ୟାପୀଠରେ ପରିସର ମଧ୍ୟରେ ଆୟୋଜିତ ଏକ ସ୍ୱତନ୍ତ୍ର ଉତ୍ସବରେ ସମ୍ମାନିତ ଅତିଥିଭାବେ ଯୋଗଦେବାକୁ ଏକ ନିମନ୍ତ୍ରଣପତ୍ର ମୋ ଟେବୁଲ ଉପରେ ଅଛି । ମୋତେ ନିର୍ଦ୍ଦେଶକ ପ୍ରଫେସର ଜେନା ତୁରନ୍ତ ସେ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ କହିଲେ ।

ସେତେବେଳେ ସାରା ରାଜ୍ୟରେ ଏକ୍ମାସ ଛୁଟି ଚାଲିଥାଏ । ମୁଁ ଗଲାବେଳେ ଏକା ଏକା ନ ଯାଇ ଜଟଣୀ ନିକଟସ୍ଥ ବଡ଼ତୋଟା ବେଲପଡ଼ା ସ୍କୁଲରେ ପହଞ୍ଚି ବିଦ୍ୟାଳୟର ପ୍ରଧାନଶିକ୍ଷକ ଜବାହରଲାଲ ସୁବୁଦ୍ଧିଙ୍କୁ ମୋ ସହିତ ଯିବାକୁ କହିଲି । ସେତେବେଳେ ସେ ମାଟ୍ରିକ୍ ପରୀକ୍ଷା ପାଇଁ ମାଧ୍ୟମିକ ଶିକ୍ଷା ପରିଷଦର ଆବଶ୍ୟକ ଫର୍ମ ପୂରଣ କାର୍ଯ୍ୟରେ ନିୟୋଜିତ ଥିଲେ । ପ୍ରଧାନ ଶିକ୍ଷକ ସୁବୁଦ୍ଧି ମୋ ସହିତ ନାଗମୁଣ୍ଡଳୀ ଯିବା ନିମନ୍ତେ ରାଜି ହେଲେ । ଆମେ ଦୁଇବନ୍ଧୁ ଯାଇ ମଧୁକେଶ ବିଦ୍ୟାପୀଠରେ ପହଞ୍ଚିଲୁ ।

ମାନବ୍ୟର ମନ୍ତ୍ରୀଙ୍କ କାର୍ଯ୍ୟକ୍ରମ ଅପରାହ୍ନ ପାଞ୍ଚଟାବେଳେ ଥାଏ । ଆମେ ୪ଟା ବେଳେ ପହଞ୍ଚିଲୁ । ଦେଖିଲୁ ଯେ ଶିକ୍ଷାମଣ୍ଡଳାଧୀଶ ଦଳେଇ ପ୍ରଧାନଶିକ୍ଷକଙ୍କ କାର୍ଯ୍ୟାଳୟରେ ପଶି ଭାରପ୍ରାପ୍ତ ପ୍ରଧାନଶିକ୍ଷକ ନଟବର ଭଞ୍ଜଙ୍କୁ ବିଭିନ୍ନ ରେକର୍ଡ଼ପତ୍ର ମାଗୁଛନ୍ତି ଓ ଏଣୁତେଣୁ ବିଭିନ୍ନ ପ୍ରଶ୍ନ ପଚାରି ବ୍ୟତିବ୍ୟସ୍ତ କରୁଛନ୍ତି । ସେତେବେଳକୁ ଅତି ଅମାୟିକ ଭଦ୍ର ପ୍ରଧାନଶିକ୍ଷକ ମ୍ରିୟମାଣ ହୋଇ ପଡ଼ିଲେଣି । ଏଇ ସମୟରେ ସେ ମୋ ସହିତ ଆସିଥିବା ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଜବାହର ଲାଲ ସୁବୁଦ୍ଧିଙ୍କୁ ଦେଖି ତାଙ୍କୁ ପଚାରିଲେ, "ଆପଣଙ୍କୁ ଏଠାକୁ କିଏ ଆସିବାକୁ କହିଲା ?" ଶ୍ରୀଯୁକ୍ତ ସୁବୁଦ୍ଧି କହିଲେ, "ମୁଁ ନିମନ୍ତ୍ରିତ ହୋଇ ଆସିଛି ।" ସେ ସଙ୍ଗେ ସଙ୍ଗେ ତାଙ୍କୁ ନିମନ୍ତ୍ରଣପତ୍ର ଦେଖାଇବାକୁ କହିଲେ । ସେ ଯୋଗକୁ ନିମନ୍ତ୍ରଣପତ୍ର ରଖିଥିଲେ ଓ ଦେଖାଇଲେ ।

ମୁଁ ଆଉ ପ୍ରଧାନ ଶିକ୍ଷକଙ୍କ କୋଠରି ମଧ୍ୟକୁ ପ୍ରବେଶ ନ କରି ବିଦ୍ୟାଳୟ ପରିସର ମଧ୍ୟରେ ପଡ଼ିଥିବା ଏକ ଚେୟାରରେ ବସି ବହିଟିଏ ପଢ଼ିବାକୁ ଲାଗିଲି । ଛୁଟି ଦିନରେ ମନ୍ତ୍ରୀଙ୍କ ହାତଗଢ଼ା ବିଦ୍ୟାଳୟରେ ଓ ତାଙ୍କ କାର୍ଯ୍ୟକ୍ରମର କିଛି ଘଣ୍ଟାପୂର୍ବରୁ ଦଳେଇ ମହାଶୟଙ୍କ ଏପରି କାଣ୍ଡକାରଖାନା ସେଠାରେ ଉପସ୍ଥିତ କୌଣସି ଲୋକଙ୍କୁ ଭଲ ଲାଗିଲା ନାହିଁ ।

ଠିକ୍ ସନ୍ଧ୍ୟା ସମୟରେ ଅଦୂରରେ ମାନ୍ୟବର ମନ୍ତ୍ରୀଙ୍କର ଆସିବାର ସଂକେତ ପୂର୍ବକ ଢ଼ୋଲ ମହୁରି ଆଦି ବାଜି ଉଠିଲା । ମନ୍ତ୍ରୀ ମହାଶୟ ଆସି ବିଦ୍ୟାଳୟ ଗେଟ ପାଖାପାଖି ହେଲେଣି; ମାତ୍ର ପ୍ରଧାନଶିକ୍ଷକ ଭଞ୍ଜ ତଥାକଥିତ ପରିଦର୍ଶନ କାର୍ଯ୍ୟକ୍ରମରୁ କ୍ଷାନ୍ତ ପାଇଲେ ନାହିଁ ।

ଏହି ସମୟରେ ସ୍ଥାନୀୟ ଜନୈକ ଗଣ୍ୟମାଣ୍ୟ ବ୍ୟକ୍ତି ଆସି ଦଳେଇଙ୍କ ପ୍ରତି କଠୋର ଶବ୍ଦରେ କହିଲେ, "ଏଠି କ'ଣ ଚାଲିଛି ?"

ସେ କହିଲେ, "ଆପଣଙ୍କ ସ୍କୁଲର ଭଲ ମନ୍ଦର ସମୀକ୍ଷା ଚାଲିଛି ।"

ସେ ସଙ୍ଗେ ସଙ୍ଗେ କହିଲେ, "ସ୍କୁଲ ଗଢ଼ାହେଲା ଦିନରୁ ଆଜିଯାଏ ତୁମେ କେଉଁଠି ଥିଲ ? ପ୍ରଧାନ ଶିକ୍ଷକ ତ ସ୍କୁଲ ପାଇଁ କେତେ ଇଟା ବୋହିଛନ୍ତି, ତୁମେ କେତୋଟି ଇଟା ବୋହିଛ ? ବିଦ୍ୟାଳୟ ଗେଟ ପାଖରେ ମନ୍ତ୍ରୀ ପହଞ୍ଚିଲେଣି । ଏ ପ୍ରହସନ ବନ୍ଦ କର । ଏପରି କାର୍ଯ୍ୟକୁ ଆମେ ବରଦାସ୍ତ କରିବୁ ନାହିଁ ।" ଏହା କହି ସେ ତାଙ୍କପ୍ରତି କେତେକ କଟୁମନ୍ତବ୍ୟ ଦେଲେ ।

ଚାହୁଁ ଚାହୁଁ ଏକ ଅବାଞ୍ଛିତ ପ୍ରହସନର ଯବନିକା ପଡ଼ିଲା । ସମସ୍ତେ ମନ୍ତ୍ରୀ ମହୋଦୟଙ୍କୁ ବିଦ୍ୟାଳୟ ପରିସର ମଧ୍ୟକୁ ପାଛୋଟି ଆଣିଲେ । ମନ୍ତ୍ରୀଙ୍କୁ ଏକ ପ୍ରକୋଷ୍ଠରେ ବସାଇଲେ । ମନ୍ତ୍ରୀ ତାଙ୍କ ପାଖରେ ମୋତେ ବସାଇଲେ । ଶିକ୍ଷା ମଣ୍ଡଳାଧୀଶଙ୍କୁ କିଛି କହିଲେ ନାହିଁ । ସେ ସେମିତି ଠିଆ ହୋଇ ରହିଲେ ।

ଏଥିରୁ ମୁଁ ସ୍ପଷ୍ଟ ଭାବରେ ଜାଣିଲି ଯେ ମାନ୍ୟବର ମନ୍ତ୍ରୀଙ୍କ ମୋ ପ୍ରତି ଅନୁକୂଳ ମନୋଭାବ ଅଛି ।

ପ୍ରାୟ ସନ୍ଧ୍ୟା ସାଢ଼େ ଛଅଟାବେଳେ ମନ୍ତ୍ରୀଙ୍କ ସହିତ ଆସିଥିବା ଅଫିସର ଓ ଅନ୍ୟାନ୍ୟ ଅତିଥିଗଣଙ୍କ ସହିତ ମୁଁ ମଞ୍ଚ ଉପରକୁ ଉଠିଲାବେଳେ ମୋତେ ଶିକ୍ଷାମଣ୍ଡଳାଧୀଶ ବଡ଼ ପାଟିରେ ମନ୍ତ୍ରୀ ଶୁଣିଲା ଭଳି ସ୍ୱରରେ କହିଲେ, "ବ୍ରହ୍ମାବାବୁ ! ଆପଣ କାହିଁକି ଆମ ଶିକ୍ଷକମାନଙ୍କୁ ଆପଣଙ୍କ କାର୍ଯ୍ୟକ୍ରମରେ ନେଇ ଯାଉଛନ୍ତି ?"

ଏଥରକ ମୁଁ ଆଉ ପୂର୍ବଦିନଗୁଡ଼ିକ ଭଳି ଚୁପ୍ ନ ରହି ତାଙ୍କୁ କହିଲି, "ଏ ପ୍ରଶ୍ନର ଉତ୍ତର ଆପଣ ଏଠାରେ ପାଇ ପାରିବେ ନାହିଁ । ଯଦି ଜାଣିବାକୁ ଚାହୁଁଛନ୍ତି ତେବେ ନିର୍ଦ୍ଦେଶାଳୟ ଚାଲନ୍ତୁ । ସେଠି ନିର୍ଦ୍ଦେଶକଙ୍କୁ ଏ ପ୍ରଶ୍ନ ପଚାରିବେ । ମୋତେ ନୁହେଁ ।"

ମୋ ପ୍ରଶ୍ନର ଉତ୍ତର ଓ ମୁହଁ ତୋଡ଼ ଜବାବ ଶୁଣି ଶିକ୍ଷାମଣ୍ଡଳାଧୀଶ ଆଉ କିଛି କହିବାକୁ ସାହସ କଲେ ନାହିଁ ।

ସେ ଯାହାହେଉ ଶ୍ରୀଯୁକ୍ତ ଦଳେଇଙ୍କୁ ଆଉ ନିର୍ଦ୍ଦେଶକଙ୍କ ଚାମ୍ବରକୁ ଆସିବାକୁ ପଡ଼ିଲା ନାହିଁ । ସେ ଯାହା ବୁଝିପାରୁ ନ ଥିଲେ ତାହା ତାଙ୍କୁ ତତ୍କାଳୀନ ବିଜ୍ଞ ଶିକ୍ଷା ସଚିବ ଶ୍ରୀଯୁକ୍ତ ଅଶୋକ କୁମାର ତ୍ରିପାଠୀ କେତୋଟି ପ୍ରଶାସନିକ ଶବ୍ଦ ମାଧ୍ୟମରେ ଘଟଣାକ୍ରମେ ବୁଝାଇ ଦେଇଥିଲେ । ସେ କହିଥିଲେ, "ମୋ ନିର୍ଦ୍ଦେଶାଳୟ ତରଫରୁ

ହେଉଥିବା ବିଭିନ୍ନ ଶୈକ୍ଷିକ କାର୍ଯ୍ୟକ୍ରମରେ ଶିକ୍ଷକମାନେ ଯୋଗଦାନ କରିବେ । ଶିକ୍ଷକମାନଙ୍କୁ ବାରଣ କରିବାର ଅଧିକାର ତାଙ୍କର ନାହିଁ ।"

ବାସ୍ ! ସେତିକିରେ ଶିକ୍ଷାମଣ୍ଡଳାଧୀଶ ନିଜର ସ୍ଥିତି ବୁଝି ଯାଇଥିଲେ । ଶ୍ରୀ ଦଳେଇ ଖୋର୍ଦ୍ଧା ସର୍କଲରୁ ଅଗଷ୍ଟ ୬, ୨୦୦୧ ମସିହାରେ ଶିକ୍ଷାମଣ୍ଡଳାଧୀଶ ଭାବେ ଶ୍ରୀଯୁକ୍ତ ଅରକ୍ଷିତ ଦାସଙ୍କୁ ଦାୟିତ୍ୱ ହସ୍ତାନ୍ତର କଲେ ।

ମୁଁ ଭଦ୍ରକ ହାଇସ୍କୁଲରେ ୧୯୯୯ ମସିହା ଡିସେମ୍ବର ମାସରେ ବିଶ୍ୱ ଜନସଂଖ୍ୟା ଦିବସ ଓ ସପ୍ତାହ ପାଳନର ଉଦ୍‌ଯାପନ ଦିବସରେ ଯୋଗଦାନ କରି ବିଭିନ୍ନ ପ୍ରତିଯୋଗିତାରେ କୃତକାର୍ଯ୍ୟ ହୋଇଥିବା ଶିକ୍ଷାର୍ଥୀମାନଙ୍କୁ ସାର୍ଟିଫିକେଟ୍ ସହ ପ୍ରାଇଜ ବଣ୍ଟନ କରିଥିଲି । ଏଇ କାର୍ଯ୍ୟକ୍ରମରେ ଭଦ୍ରକ ଶିକ୍ଷା ଜିଲ୍ଲାର ମଣ୍ଡଳାଧୀଶ ଶ୍ରୀଯୁକ୍ତ ଅରକ୍ଷିତ ଦାସ ଯୋଗଦାନ କରିଥିଲେ । ସେଦିନ ସେ ଜନସଂଖ୍ୟାର ଭୟାବହତା ସଂପର୍କରେ ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କୁ ଏକ ସାରଗର୍ଭକ ଭାଷଣ ଦେଇଥିଲେ । ତାଙ୍କର ଜ୍ଞାନ ଓ ଉପସ୍ଥାପନା ଶୈଳୀ ସମସ୍ତଙ୍କୁ ମୁଗ୍ଧ କରିଥିଲା ।

ଖୋର୍ଦ୍ଧା ସର୍କଲରେ ସେ ଅବସ୍ଥାପିତ ଥିଲାବେଳେ (୬.୮.୨୦୦୧-୧୮.୪.୨୦୦୨) ମୋତେ ଯେଉଁଠି ଦେଖୁଥିଲେ କହୁଥିଲେ, "ବ୍ରହ୍ମାବାବୁ, ଯାହାହେଉ ଆପଣ ମୋ କାମକୁ ଟିକିଏ ହାଲକା କରି ଦେଇଛନ୍ତି । ଆପଣ ଖୋର୍ଦ୍ଧା ସର୍କଲର ବିଦ୍ୟାଳୟଭିତ୍ତିକ ଅନେକ କାର୍ଯ୍ୟକ୍ରମରେ ଯୋଗ ଦେଉଥିବା ହେତୁ ମୁଁ ଟିକିଏ ମୋ ଦାୟିତ୍ୱରୁ ଛାଡ଼ ପାଇ ଯାଉଅଛି ।"

ଏହାଥିଲା ଜଣେ ଦରଦୀ ଶିକ୍ଷାବିତ୍‌ଙ୍କର ଭାଷା । ତାଙ୍କର ବାପା ଓ ମା' କେଉଁ ଦୃଷ୍ଟିକୋଣରୁ ତାଙ୍କର ନାମ 'ଅରକ୍ଷିତ' ରଖିଥିଲେ ତାହା ଅଜଣା ଥିଲେ ମଧ୍ୟ ତାଙ୍କ ମଧ୍ୟରେ ସନ୍ଥ ଅରକ୍ଷିତ ଦାସଙ୍କ ଚିନ୍ତା ଓ ଚେତନାର ସ୍ୱଷ୍ଟ ଛାପ ଥିଲା ।

**ଚା' କପ୍‌ଟିଏ ରହିଗଲା :**

ଥରେ ଶ୍ରୀଯୁକ୍ତ ଅରକ୍ଷିତ ଦାସ କୌଣସି ଏକ କାର୍ଯ୍ୟକ୍ରମରେ ତାଙ୍କ ସହିତ ଯୋଗଦେବା ନିମନ୍ତେ ଭୁବନେଶ୍ୱରର ବରମୁଣ୍ଡାସ୍ଥିତ ରେଣ୍ଟାଲ୍ କଲୋନୀରେ ମୁଁ ରହୁଥିବା ତିନି ମହଲାରେ ଥିବା ସରକାରୀ ଘରକୁ ଆସିବା ପୂର୍ବରୁ ଘରତଳ ରାସ୍ତାରୁ ଡ଼ାକ ଛାଡ଼ିଲେ, "ବ୍ରହ୍ମାବାବୁ, ଶୀଘ୍ର ଆସନ୍ତୁ, ତେଣେ କାର୍ଯ୍ୟକ୍ରମ ଡେରି ହୋଇଯାଉଛି ।"

ମୁଁ ତାଙ୍କୁ ଘରର ବାଲ୍‌କୋନୀରେ ଥାଇ କହିଲି, "ଆପଣ ମୋ ପାଖକୁ ପ୍ରଥମ କରି ଆସିଛନ୍ତି । ଅତି କମ୍‌ରେ ଚା' କପ୍‌ଟିଏ ଖାଇଯିବା ।"

ଏ ଚା' ଆରଥରକୁ ରହିଲା । ମୁଁ ନିଶ୍ଚିତ ଭାବେ ଆରଥରକୁ ଆସିବି । ଶୀଘ୍ର ଶୀଘ୍ର ଚାଲି ଆସନ୍ତୁ । ତେଣେ ଶିକ୍ଷକମାନେ ଯେ ଆମକୁ ଅପେକ୍ଷା କରିଥିବେ ।"

ସମୟ ଦୃଷ୍ଟିକୋଣରୁ ମୁଁ ଆଉ ତାଙ୍କୁ ବାଧ କରିନାହିଁ । ସଙ୍ଗେ ସଙ୍ଗେ ତଳକୁ ଚାଲିଲି । ଆମେ ଦୁଇ ବନ୍ଧୁ ନିର୍ଦ୍ଦିଷ୍ଟ ସ୍ଥାନ ଅଭିମୁଖେ ଚାଲିଲୁ ।

ଏହା ହେଉଛି ୨୦୦୧ ମସିହା ଏପ୍ରିଲ୍ ମାସର ଦ୍ୱିତୀୟ ସପ୍ତାହର ଘଟଣା । ହଠାତ୍ ମୁଁ ଏପ୍ରିଲ ମାସ ୧୮ ତାରିଖରେ ଖବର ପାଇଲି ଯେ ଅରକ୍ଷିତ ବାବୁ ହୃଦଘାତରେ ପରଲୋକ ଗମନ କରିଛନ୍ତି । ତାଙ୍କର ଶବାଧାର ସେଦିନ କ୍ୟାପିଟାଲ ହାଇସ୍କୁଲ ପରିସର ମଧ୍ୟକୁ ଦିନ ଏଗାରଟାବେଳେ ଆସିବ ।

ମୁଁ କ୍ୟାପିଟାଲ ହାଇସ୍କୁଲରେ ପହଞ୍ଚି ତାଙ୍କର ଶେଷ ଦର୍ଶନ କଲି । ସେ ସେମିତି ଅତି ନିଶ୍ଚଳ ଶାନ୍ତ ଭାବେ ସ୍ୱର୍ଗଦ୍ୱାର ଅଭିମୁଖେ ଯିବା ଗାଡ଼ିରେ ଶୋଇ ରହିଥିଲେ । ଜୀବାତ୍ମା ତାଙ୍କର ଚାଲିଯାଇଥିଲା ପରମାତ୍ମାଙ୍କ ପାଖକୁ । ମୋଠାରୁ ପ୍ରାପ୍ୟ ତାଙ୍କର ଟା' କପଟିଏ ମୋ ପାଖରେ ସେମିତି ରହିଗଲା ।

ତାଙ୍କୁ ଆଉ ଦ୍ୱିତୀୟ ଥର ମୋ ବସାକୁ ଆସିବାକୁ ପଡ଼ିଲା ନାହିଁ । ତାଙ୍କ ପରେ ଖୋର୍ଦ୍ଧା ଶିକ୍ଷାମଣ୍ଡଳାଧୀଶ ଭାବେ ୨୦୦୨ ମସିହା ଜୁନ ମାସ ୨୮ ତାରିଖରେ ଶ୍ରୀମତୀ ମନସ୍ୱିନୀ ଦାଶ ଯୋଗ ଦେଇଥିଲେ । ସେ ଶିକ୍ଷାବିତ୍-ତଥା- ରାଜ୍ୟ ଶିକ୍ଷା ନିର୍ଦ୍ଦେଶାଳୟର ପ୍ରାକ୍ତନ ଡେପୁଟି ଡାଇରେକ୍ଟର ସ୍ୱର୍ଗୀୟ ଗଜେନ୍ଦ୍ର ଦାଶଙ୍କ ସୁପୁତ୍ରୀ ଥିଲେ । ଥରେ ମୋତେ ତାଙ୍କର ଶିଶୁ କବିତା ପୁସ୍ତକ "ଅକଲ ମକଲ ଟକଲ ଟିଆଁ"ର ମୁଖବନ୍ଧ ଲେଖିବା ପାଇଁ ପୁସ୍ତକର ପାଣ୍ଡୁଲିପି ସହିତ ଶ୍ରୀଯୁକ୍ତ ଲକ୍ଷ୍ମୀପ୍ରସାଦ ସାହୁ ଓ ଶ୍ରୀଯୁକ୍ତ ଜବାହରଲାଲ ସୁବୁଦ୍ଧିଙ୍କୁ ମୋ ପଟିଆ ନିକଟସ୍ଥ ବ୍ରହ୍ମ ନିବାସ ମହାବୀରବିହାରକୁ ପଠାଇଥିଲେ । ମୁଁ ସାଧାରଣତଃ ପ୍ରତିଷ୍ଠିତ ଲେଖିକା ଓ ଲେଖକଙ୍କ ପୁସ୍ତକରେ ଅଭିମତ ଲେଖିବାକୁ ଯଥାର୍ଥ ମନେ କରେ ନାହିଁ । ଏଥିରେ ଅଯଥା ବହିଟିର କଳେବର ବଢ଼ିବ ଓ ଖର୍ଚ୍ଚ ମଧ୍ୟ ବଢ଼େ । କିନ୍ତୁ ଶ୍ରୀମତୀ ଦାଶଙ୍କ ଅନୁରୋଧ ରକ୍ଷା କରି ଅଭିମତ ଲେଖିଥିଲି । ଏହା ସେ ବହିରେ ପ୍ରକାଶିତ ହେଲା । ୨୦୦୯ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏଇ ପୁସ୍ତକଟି ଶିଶୁ ସାହିତ୍ୟ ବିଭାଗରେ ଶ୍ରେଷ୍ଠ ପୁସ୍ତକ ରୂପେ ପୁରସ୍କାର ଲାଭ କରିଅଛି ।

**ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟରୁ ବିଦାୟ ପର୍ବ**

ମୁଁ ରାଜ୍ୟ ଶିକ୍ଷା ଗବେଷଣା ପରିଷଦରେ ଶିକ୍ଷା ଔଦ୍ୟୋଗିକ ବିଭାଗରେ ଅଧ୍ୟାପକ ଭାବେ ଯୋଗଦାନ କରିଥିଲେ ମଧ୍ୟ ଏଇ ବିଭାଗର ସାମୟିକ କାର୍ଯ୍ୟ ସହିତ ପାଠ୍ୟକ୍ରମ ବିଭାଗ, ଜନସଂଖ୍ୟା ଶିକ୍ଷା ବିଭାଗ ଓ ପ୍ରତିଷ୍ଠାନ ଅଧିକାରୀ (Establishment Officer) ଦାୟିତ୍ୱରେ ବିଭିନ୍ନ ସମୟରେ ରହିଥିଲି । ଏହାଦ୍ୱାରା ମୋର ଅନୁଭୂତି ଓ

ଅଭିଜ୍ଞତା ଯେତିକି ମଧୁର ଥିଲା କାଳକ୍ରମେ କେତେକ ନ୍ୟସ୍ତ ସ୍ୱାର୍ଥପର ବ୍ୟକ୍ତି ବିଶେଷଙ୍କ କାର୍ଯ୍ୟକଳାପରେ ସହାୟତା ନ ଦେବାରୁ ସେତିକି ତିକ୍ତ ମଧ୍ୟ ହେଲା ।

ମୁଁ ପାଠ୍ୟକ୍ରମ ବିଭାଗରେ କାମ କରୁଥିଲାବେଳେ ଏକ ଅଦ୍ଭୁତ ପରିସ୍ଥିତିର ସମ୍ମୁଖୀନ ହୋଇଥିଲି ।

ଆମ ରାଜ୍ୟର ପାଠ୍ୟପୁସ୍ତକ ୧୯୬୪ ମସିହାରେ ଜାତୀୟକରଣ କରାଯାଇଥିଲା । ସେସବୁ ପାଠ୍ୟପୁସ୍ତକ ରାଜ୍ୟ ସରକାର ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରସ୍ତୁତ କରୁଥିଲେ । ତଦନୁଯାୟୀ ପ୍ରଥମ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସାହିତ୍ୟ ବହି ମଧ୍ୟ ପ୍ରକାଶିତ ହୋଇଥିଲା । ଏଇସବୁ ସାହିତ୍ୟ ବହିରେ କେତେକ କାଳଜୟୀ କବିତା ଆଜି ପର୍ଯ୍ୟନ୍ତ ପାଠ୍ୟପୁସ୍ତକରେ ସ୍ଥାନିତ ହୋଇ ଆସୁଅଛି । ସେଥିରେ କୌଣସି ଲେଖକ ବା କବିଙ୍କର ନାମ ନାହିଁ ।

ରାଜ୍ୟ ସରକାରଙ୍କ ତରଫରୁ ଯେତେବେଳେ ୧୯୮୬ ମସିହାରେ ନୂତନ ଶିକ୍ଷାନୀତି ଅନୁଯାୟୀ ସାହିତ୍ୟ ବହି ପ୍ରକାଶିତ ହେଲା ସେତେବେଳେ ସେଇସବୁ କବିତା ମଧ୍ୟରୁ କେତେକ ନୂତନ ବହିରେ ସ୍ଥାନିତ ହେଲା । ସେଥିରେ ଲେଖକଙ୍କ ନାମ ପୂର୍ବପରି ନ ଥିଲା ।

ମାତ୍ର ନିର୍ଦ୍ଦେଶାଳୟର ସାହିତ୍ୟ ବହି ପ୍ରକାଶିତ ହେଲାପରେ କେତେକ ସାହିତ୍ୟିକ ଆସି ସେ ସବୁ ଲେଖା ତାଙ୍କର ବୋଲି ଦାବି କଲେ ଓ ପରବର୍ତ୍ତୀ ସଂସ୍କରଣରେ ତାଙ୍କ ନାମ ଦେବାକୁ କହିଲେ । ଏପରିକି ଗୋଟିଏ ଗୋଟିଏ 'କବିତା'ର ଦାବିଦାର ତିନି ଚାରିଜଣ ରହିଲେ । ଜଣେ ଅଧେ ମଧ୍ୟ ଆସି ଅନ୍ୟପାଇଁ ଓକିଲାତି କଲେ । ମାତ୍ର ସେ କବିତାଟି ଯେ ତାଙ୍କ ଦ୍ୱାରା ଲିଖିତ, ତା'ର କୌଣସି ପ୍ରମାଣ ଦେଖାଇ ପାରିଲେ ନାହିଁ । ସେଇସବୁ କବିତାର କବି ବୋଲି ସେମାନେ କହି ପରବର୍ତ୍ତୀ ସମୟରେ ଏମିତି ପ୍ରଚାର ଓ ପ୍ରସାର କଲେ ଯେ ଏବେ ମଧ୍ୟ କେତେକ ବ୍ୟକ୍ତି ତାହା ସେମାନଙ୍କ ଲେଖା ବୋଲି କହି ବୁଲୁଛନ୍ତି । ମାତ୍ର ସେଇ ସବୁ ମୁଷ୍ଟିମେୟ ଲେଖକଙ୍କର ଅସୂୟାଭାବ ମଧ୍ୟ ବିଭିନ୍ନ ରୂପେ ପ୍ରତିଫଳିତ ହେଲା ।

ଜନସଂଖ୍ୟା ବିଭାଗ କହିଲେ ଜଣେ ଅଧିକାରୀ, ଜଣେ କ୍ଲର୍କ ଓ ଜଣେ ପିଅନ । ଲକ୍ଷାଧିକ ଟଙ୍କାର ପ୍ରକଳ୍ପର ପରିଚାଳନା ଆମ ସମସ୍ତଙ୍କର ମାନସିକ ଚାପର କାରଣ ହେଲା । ଏପରିକି ମୋତେ ୨୦୦୨ ମସିହାରେ ତତ୍‌କାଳୀନ ଅତିରିକ୍ତ ଶାସନ ସଚିବ ଶ୍ରୀ ପି.ଏସ୍. ଗୁହା, ଆଇ.ଏ.ଏସ୍ ଓ ତତ୍‌କାଳୀନ ଏଫ୍.ଏ. ଶ୍ରୀ ଗୁହାଙ୍କ ଚାମ୍ବରରେ ଡାକି ଏତେ ଟଙ୍କା କିପରି ଖର୍ଚ୍ଚ ହେଉଛି ବୋଲି ପ୍ରଶ୍ନ କଲେ । ସାଧାରଣତଃ ଜନସଂଖ୍ୟା

ଶିକ୍ଷା ପ୍ରକଳ୍ପର ଏକ କର୍ମଯୋଜନା (Workplan) ଅନୁଯାୟୀ ଅର୍ଥର ବ୍ୟବସ୍ଥା ଥାଏ ଓ ଏନ୍.ସି.ଇ.ଆର.ଟି ଗାଇଡ୍‌ଲାଇନସ୍ ଅନୁସାରେ ଟଙ୍କା ଖର୍ଚ୍ଚ ହୁଏ ବୋଲି କହିଲି । ଏଇ ଖର୍ଚ୍ଚ ସିଏଜି ଓ ରାଜ୍ୟ ସରକାରଙ୍କ ଅଡ଼ିଟ ବିଭାଗ ଦ୍ୱାରା ମଧ୍ୟ ନିୟମିତ ଅଡ଼ିଟ୍ କରାଯାଏ । ମାତ୍ର ତତ୍‌କାଳୀନ ଏଫ୍.ଏ ଏପରି ଏକ ମନ୍ତବ୍ୟ ଦେଲେ ତାହା ମୋର ଗ୍ରହଣ ଯୋଗ୍ୟ ହେଲା ନାହିଁ । ସେହିପରି ଶ୍ରୀଯୁକ୍ତ ଗୁହା ମୋତେ ବିରକ୍ତିରେ କହିଲେ, "ତୁମକୁ ପ୍ରକଳ୍ପ କାର୍ଯ୍ୟ କରିବାକୁ କିଏ କହୁଛି ?"

ମୁଁ ସେମାନଙ୍କ କଥାରେ ମନ୍ଦ ଉଦ୍ଦେଶ୍ୟର ଗନ୍ଧ ବାରି ପାରିଲି ଓ ବଡ଼ ବିରକ୍ତିର ସହିତ ସେ ଯେମିତି ଟାଣରେ କଥା କହୁଥିଲେ ସେଇ ସ୍ୱରରେ କହିଲି, "ଏ ପ୍ରକଳ୍ପ କରିବାକୁ ଆପଣ ମୋତେ କହିଅଛନ୍ତି ?"

ସେ ତତ୍‌କ୍ଷଣାତ୍ କହିଲେ, "ମୁଁ କହିନାହିଁ ।" ମୁଁ କହିଲି, "ଆପଣ ବ୍ୟକ୍ତିଭାବେ କହି ପାରି ନଥାନ୍ତି । ମାତ୍ର ରାଜ୍ୟ ସରକାର ଭାରତ ସରକାରଙ୍କ ସହିତ ଚୁକ୍ତିବଦ୍ଧ ହୋଇଛନ୍ତି । ଏହାର ସତ୍ୟତା ସେତେବେଳର କମିଶନର-ତଥା-ସଚିବ ମଦନମୋହନ ମହାନ୍ତିଙ୍କୁ ଆପଣ ପଚାରି ପାରନ୍ତି । ଆପଣ ସେ ଚୁକ୍ତିଭିତ୍ତିକ କାଗଜପତ୍ରରେ ଦସ୍ତଖତ କରି ନଥିଲେ ମଧ୍ୟ ସରକାରଙ୍କ ତରଫରୁ ଅନ୍ୟ କେହି ଦସ୍ତଖତ କରିଛନ୍ତି ।" ଏହା କହି ମୁଁ ନୀରବ ରହିଲି ।

ମୋ କଥା ଶୁଣି ଯେଉଁ ଏଫ୍.ଏ ଏଣୁତେଣୁ କହି ମୋତେ ଡରେଇ ଦେବେ ବୋଲି ଭାବିଥିଲେ, ସେ ସେଠାରୁ ସଙ୍ଗେ ସଙ୍ଗେ ଚାଲିଗଲେ ।

କିଛି ସମୟ ପରେ ମୋତେ ଶ୍ରୀଯୁକ୍ତ ଗୁହା କହିଲେ, "ଦେଖନ୍ତୁ, ବ୍ରହ୍ମାବାବୁ, ଆମେ ସରକାରରେ ଅଛୁ । ଆମର ମଧ୍ୟ ସମୀକ୍ଷା କରିବାର ଅଧିକାର ଅଛି ।"

ମୁଁ ତତ୍‌କ୍ଷଣାତ୍ କହିଲି, "ଆପଣଙ୍କର ସିନା ଅଧିକାର ଅଛି; ମାତ୍ର ଏଫ୍.ଏ. କିଏ ? ସେ ମୋତେ କାହିଁକି ଏଣୁତେଣୁ କହିବେ ? ପୁଣି ପ୍ରତିବର୍ଷ ତ ରାଜ୍ୟ ଉପଦେଷ୍ଟା ମଣ୍ଡଳୀ (State Advisory Committee) ଡକାଇ ନିଜେ କମିଶନର ସମୀକ୍ଷା କରୁଛନ୍ତି । ଆପଣ ନିର୍ଦ୍ଦେଶକଙ୍କୁ ବାଦ୍ ଦେଇ ମୋତେ ପଚାରିବା କ'ଣ ଠିକ୍ ?"

ତା'ପରେ ତାଙ୍କର କଥାବାର୍ତ୍ତାର ସ୍ୱର ଆପେ ଆପେ ବଦଳିଗଲା । ସେ ମୋତେ କହିଲେ, "ମୁଁ ତ ବର୍ତ୍ତମାନ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ନିର୍ଦ୍ଦେଶକ ଅଛି । ତେଣୁ ଆପଣଙ୍କୁ ସେଠାକାର କେତେକ ଦାୟିତ୍ୱ ଦେବି ବୋଲି ଭାବୁଛି ।"

ମୁଁ ସଙ୍ଗେ ସଙ୍ଗେ କହିଲି, "ଦେଖନ୍ତୁ ମୁଁ ନିଜ ଇଚ୍ଛାନୁସାରେ ନିର୍ଦ୍ଦେଶାଳୟରେ ଜନସଂଖ୍ୟା ଶିକ୍ଷା ବିଭାଗରେ ନାହିଁ । ଦୀର୍ଘଦିନ ହେଲା ଏଇ ପ୍ରକଳ୍ପର ପରିଚାଳନା ମୋ

ପାଇଁ ବଡ଼ କଷ୍ଟଦାୟକ ହୋଇଅଛି । ଆପଣ ଯେତେଶୀଘ୍ର ମୋତେ ଏଇ ଦାୟିତ୍ୱରୁ ଅବ୍ୟାହତି ଦେବେ, ତାହା ମୋ ପାଇଁ ମଙ୍ଗଳଦାୟକ ହେବ ।"

ଏହା କହି ମୁଁ ସେଠାରୁ ଚାଲି ଆସିଲି । ଏଇ ଘଟଣାର ବହୁ ପୂର୍ବରୁ ମୁଁ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଛାଡ଼ିବା ପାଇଁ ମନସ୍ଥ କରିଥିଲି । ସେଥିପାଇଁ ନିର୍ଦ୍ଦେଶକ ପ୍ରଫେସର ପ୍ରଫୁଲ୍ଲଚନ୍ଦ୍ର ମହାପାତ୍ରଙ୍କୁ କହିଥିଲି । ତାଙ୍କର ସରକାରୀ ଚାକିରିରୁ ଫେବୃୟାରୀ ୨୮, ୧୯୯୯ ମସିହାରେ ଅବସର ନେବାରେ ଥିଲା । ସେ ଯାହା ଚାହୁଁଥିଲେ କିମ୍ବା ସରକାରଙ୍କୁ ଯେଉଁ ପ୍ରସ୍ତାବ ଦେଉଥିଲେ ତାହା ଅନୁମୋଦିତ ହେଉଥିଲା । ତେଣୁ ମୋର ବଦଳି ନିକଟସ୍ଥ କୌଣସି ମହାବିଦ୍ୟାଳୟକୁ ହେବ ବୋଲି ଭାବିଥିଲି । ମାତ୍ର ଯେତେବେଳେ ବଦଳି ଆଦେଶ ବାହାରିଲା ସେଥିରେ ମୋ ନାମ ନ ଥିଲା । ମୁଁ ତାଙ୍କୁ ଦେଖାକରି କହିଲି, "ସାର୍ ! ଆପଣଙ୍କୁ ଯିଏ ଯେଉଁଠିକୁ ଯିବାକୁ କହିଲେ, ଆପଣ କରିଦେଲେ । ସମସ୍ତଙ୍କର ସୁବିଧା କଲେ । ମାତ୍ର ମୋ ପାଇଁ ଏପରି ଅନ୍ୟାୟ କଲେ କାହିଁକି ?"

ସେ ହଠାତ୍ ମୋ ଉପରେ ବିରକ୍ତି ପ୍ରକାଶ କରି କହିଲେ, "ମୁଁ କ'ଣ ନିର୍ଦ୍ଦେଶକ ହୋଇଛି, ତୁ ଯାହା କହିବୁ ତାହା କରିବି ?"

ମୁଁ ସଙ୍ଗେ ସଙ୍ଗେ ତାଙ୍କ କୋଠରିରୁ ବାହାରି ଆସିଲି । ଅଲକ୍ଷ୍ୟରେ ମୋ ଆଖିରୁ ଦୁଇବୁନ୍ଦା ଲୁହ ନିଗିଡ଼ି ଆସିଲା । ମୁଁ ସାରଙ୍କ ଛାତ୍ରଥିଲି । ସେ ଯଦି ମୋର ନିର୍ଦ୍ଦେଶାଳୟରେ ଦୀର୍ଘବର୍ଷ ରହିବାକୁ ପସନ୍ଦ କରି ମୋତେ ଅଧିକ ବିପଦରେ ପକାଇବାକୁ ଚାହୁଁଛନ୍ତି, ଆଉ କହିବି କାହାକୁ ?"

ସେ ଦିନ ସନ୍ଧ୍ୟାରେ ଇଂରାଜୀ ଭାଷା ଶିକ୍ଷା ପ୍ରତିଷ୍ଠାନରେ ଆମର ପୂର୍ବତନ କମିଶନର ଶ୍ରୀଯୁକ୍ତ ମଦନମୋହନ ମହାନ୍ତିଙ୍କ ବିଦାୟ ସମ୍ବର୍ଦ୍ଧନା ଗଣଶିକ୍ଷା ବିଭାଗର ଅଫିସରମାନଙ୍କ ଦ୍ୱାରା ଆୟୋଜିତ ହୋଇଥିଲା । ସନ୍ଧ୍ୟା ପାଞ୍ଚଟା ବାଜିଲା ମାତ୍ରେ ମୁଁ ଚନ୍ଦ୍ରଶେଖରପୁର ଅଞ୍ଚଳରେ ଥିବା ଭାଷା ଶିକ୍ଷା ପ୍ରତିଷ୍ଠାନକୁ ଗଲି । ପ୍ରତିଷ୍ଠାନର ସଭା ଗୃହରେ ଅଳ୍ପ ସଂଖ୍ୟକ ଲୋକ ଥିବାରୁ ପଦାରେ ବୁଲାବୁଲି କଲି । ସେଇ ସମୟରେ ନିର୍ଦ୍ଦେଶକ ମହାପାତ୍ରଙ୍କ ଗାଡ଼ି ପହଞ୍ଚିଲା । ସେ ଗାଡ଼ିରୁ ଓହ୍ଲେଇ ମୋତେ ଦୂରରୁ ଡ଼ାକ ଛାଡ଼ିଲେ, "ବ୍ରହ୍ମା ଆସ ! ପାଖ ଚା' ଦୋକାନକୁ ଯିବା ।"

ଆମେ ଦୁହେଁ ବାହାର ରାସ୍ତାରେ ଚାଲିଚାଲି ଗୋଟିଏ ଚା' ଦୋକାନରେ ପହଞ୍ଚିଲୁ । ସେ ଦୁଇକପ ଚା' ସେଠାରେ ମଗାଇଲେ । ଆମେ ଦୁହେଁ ଚା' ପାନ କରୁଥିବା ସମୟରେ ସେ କହିଲେ, "ଆରେ ବୁଝୁନୁ କାହିଁକି ? ତୋର ପିଲାମାନେ ଭୁବନେଶ୍ୱରରେ ପାଠ ପଢୁଛନ୍ତି । ତୁ ଗୋଟିଏ ସରକାରୀ ଘର ପାଇଛୁ । ତୋତେ

କେମିତି ତୋ କଥା ଉପରେ ବଦଳି କରି ଦେଇଥାନ୍ତି । ମୋର ତ ପୁଣି ବିବେକ ବୋଲି କିଛି ଅଛି !"

ମୁଁ ତାଙ୍କ କଥା ଶୁଣି ନୀରବ ରହିଲି । ସେ ପୁଣି କହିଲେ, "ଯଦି ତୁ କହିବୁ ମୁଁ କାଲି ତୋର ବଦଳି ଆଦେଶ ସରକାରଙ୍କଠାରୁ ଧରି ଆସିବି । କିନ୍ତୁ ମୁଁ ଭାବୁଛି ଆମେ ସମୟ ଉପରେ ସବୁ ଛାଡ଼ି ଦେବା ।"

ମୁଁ ସାରଙ୍କ ପ୍ରସ୍ତାବରେ ରାଜି ହେଲି । ତା'ପରେ ଆମେ ଦୁହେଁ କମିଶନରଙ୍କ ବିଦାୟ ଉତ୍ସବରେ ଯୋଗଦାନ କଲୁ । ସେଦିନର ବିଦାୟ ଉତ୍ସବ କାର୍ଯ୍ୟକ୍ରମରୁ ଆମେ ପ୍ରାୟ ରାତି ଦଶଟା ବେଳେ ନିଜ ନିଜ ବସାକୁ ଫେରି ଆସିଥିଲୁ ।

ପ୍ରଫେସର ମହାପାତ୍ରଙ୍କ ନିଷ୍ପତ୍ତି ଯୋଗୁଁ ମୁଁ ୨୦୦୩ ମସିହା ପର୍ଯ୍ୟନ୍ତ ନିର୍ଦ୍ଦେଶାଳୟରେ ରହିଗଲି ସିନା, ମାତ୍ର ୨୦୦୨ ମସିହାରେ ମୋର ବଦଳି ପାଇଁ ତତ୍କାଳୀନ ନିର୍ଦ୍ଦେଶକ ଶ୍ରୀବତ୍ସ ଲାଞ୍ଛନା ଜେନା ମନପ୍ରାଣ ଦେଇ ଲାଗି ପଡ଼ିଲେ । ସେ ମୋତେ କୋରାପୁଟ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ବଦଳି ନିମନ୍ତେ ତତ୍କାଳୀନ ଅଧ୍ୟକ୍ଷ ରାମଚନ୍ଦ୍ର ପାଢ଼ୀଙ୍କୁ ଅବସରର ବହୁ ପୂର୍ବରୁ ସରକାରଙ୍କୁ ପ୍ରସ୍ତାବ ଦେଲେ । କିନ୍ତୁ କୌଣସି କାରଣରୁ ସେ ପ୍ରସ୍ତାବ ବିଳମ୍ବିତ ହେବା ଯୋଗୁଁ ସେ ପୁନଶ୍ଚ ସରକାରଙ୍କୁ ଲେଖିଲେ । ତା'ର ଫଳସ୍ୱରୂପ କୋରାପୁଟକୁ ସରକାରଙ୍କ ବିଜ୍ଞପ୍ତି ନଂ : ୧୯୮୧ ତା ୧୩.୮.୦୩ ଅନୁଯାୟୀ ମୋର ଅଧ୍ୟକ୍ଷ ଭାବେ ବଦଳି ଆଦେଶ ଆସିଲା । ଚାକିରି ଜୀବନର ଶେଷ ତିନିବର୍ଷ ମୋତେ ଘରଠାରୁ ଦୂରରେ ରହିବାର ସୁଯୋଗ ମିଳିଲା ।

ମୁଁ କୋରାପୁଟ ଯିବା ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇଥିଲି । କିନ୍ତୁ ମୋତେ ସାଙ୍ଗେ ସାଙ୍ଗେ କାର୍ଯ୍ୟରୁ ମୁକ୍ତ କରାଗଲା ନାହିଁ ବରଂ ବିଭିନ୍ନ କାର୍ଯ୍ୟ ଗୋଟିଏ ପରେ ଗୋଟିଏ କର୍ତ୍ତୃପକ୍ଷ ଦେଇ ଚାଲିଲେ । ଏଇପରି ଭାବେ ଅଗଷ୍ଟ ମାସ ବିତିଗଲା ।

ସେପ୍ଟେମ୍ବର ମାସ ପହିଲା ସୋମବାର ଦିନ ମୋ ପାଖକୁ ଜଣେ ଭଦ୍ରବ୍ୟକ୍ତି ଆସିଲେ । ସେତେବେଳେ ସେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ତରଫରୁ ଏସ.ସି.ଇ.ଆର.ଟି.ର ବିଭିନ୍ନ କାମ ବୁଝାଶୁଝା କରୁଥିଲେ । ସେ ମୋତେ କହିଲେ, "ସାର୍ ! ଆପଣ ଏସ୍.ସି.ଇ.ଆର.ଟି ଛାଡ଼ି ଯାଆନ୍ତୁ, ତାହା ଆମେ ଚାହୁଁ ନାହୁଁ । ଆପଣ ଯଦି ଦଶହଜାର ଟଙ୍କା ଆମକୁ ଦେବେ ଆପଣଙ୍କ ବଦଳି ଆଦେଶ ବାତିଲ ହୋଇଯିବ ।"

ତାଙ୍କ କଥା ଶୁଣି ମୁଁ କହିଲି, "ଦେଖନ୍ତୁ ! ମୋର ପିଲାମାନେ ପାଠ ପଢୁଛନ୍ତି । ମୋ ପାଖରେ ପଇସାଟିଏ ନାହିଁ । ତେଣୁ ମୁଁ ଆପଣଙ୍କୁ ଦଶ ଟଙ୍କା ମଧ୍ୟ ଦେଇ ପାରିବି ନାହିଁ ।"

ତା'ର ପରଦିନ ସେ ପୁଣି ମୋ ପାଖକୁ ଆସି କହିଲେ, "ସାର୍ ! ଆପଣ ଦଶହଜାର ଟଙ୍କା ନ ଦେଲେ ନାହିଁ, ପାଞ୍ଚ ହଜାର ଟଙ୍କା ଭୋଜିଭାତ ପାଇଁ ଦିଅନ୍ତୁ । ଏଠାରୁ ଆଉ ବଦଳି ହୋଇ ଯାଆନ୍ତୁ ନାହିଁ । ଆପଣଙ୍କ ପାଇଁ ଆମେ ସମସ୍ତେ ସମ୍ବେଦନଶୀଳ ।"

ମୁଁ କହିଲି, "ଦେଖନ୍ତୁ ! ଥରେ ମୁଁ ଅପଣଙ୍କୁ ମୋ ଅସୁବିଧା କଥା କହିଛି । ମୋ ପିଲାମାନେ ପାଠ ପଢୁଛନ୍ତି । ମୋ ପାଖରେ ପାଞ୍ଚ ହଜାର ଟଙ୍କା ମଧ୍ୟ ନାହିଁ । ଯଥା ତଥା ମୁଁ ମୋର ଗୁଜୁରାଣ ମେଣ୍ଟାଉଛି ।"

ସେ ମୋତେ ନମସ୍କାର ପକାଇ ମୋ ବସିବା ସ୍ଥାନରୁ ଉଠି ଚାଲିଗଲେ । ପୁଣି ସେଦିନ ସନ୍ଧ୍ୟାରେ ଆସି କହିଲେ, "ସାର୍ ! ଆପଣ ଟଙ୍କା ନ ଦେଲେ ନାହିଁ, ମାତ୍ର ବଦଳି ଆଦେଶ ବାତିଲ ହେଲାପରେ ଦେବେ ବୋଲି କହନ୍ତୁ । ଆମେ ଆପଣଙ୍କ ଅସୁବିଧା ଓ ଆର୍ଥିକ ଅବସ୍ଥା କଥା ଜାଣିଛୁ । ଚାକିରିର ଶେଷଭାଗ ଓ ପରିଣତ ବୟସରେ ଆପଣ କ'ଣ କୋରାପୁଟ ଯିବା ଉଚିତ ହେବ । ଆପଣଙ୍କୁ ସିନା ଅବିବେକୀ ଲୋକମାନେ ଅସୁବିଧାରେ ପକାଉଛନ୍ତି । ମାତ୍ର ଆମ ଭିତରେ ପୁଣି ମାନବିକତା ବୋଲି କିଛି ଅଛି ତ ?"

ମୁଁ ମୋଠାରୁ ଖୁବ୍ କମ୍ ବୟସର ସେହି ଯୁବ ଭଦ୍ରବ୍ୟକ୍ତି ଜଣଙ୍କ ମୁହଁକୁ ଚାହିଁଲି । ତାଙ୍କର ସରକାରୀ ସ୍ତରରେ କାହା ସହିତ କ'ଣ ସଂପର୍କ ଥିଲା ତାହା ମୁଁ ଜାଣି ନ ଥିଲି । ମାତ୍ର ଏସ୍.ସି.ଇ.ଆର.ଟି ପରିସରରେ ଅନ୍ୟମାନଙ୍କ ପାଖରେ ତାଙ୍କର ବେଶୀ ଖାତିର ଥିବାର ମୁଁ ଲକ୍ଷ୍ୟ କରିଥିଲି ।

ମୁଁ ତାଙ୍କୁ ଏଥରକ ଅତି ଭଦ୍ରଭାବରେ କହିଲି, "ଆପଣମାନେ ମୋ ପାଇଁ ସମ୍ବେଦନଶୀଳ, ତାହା ମୁଁ ବୁଝିଛି । ଆପଣମାନେ ଚାହିଁଲେ ବିନା ଅର୍ଥରେ ମୋ ବଦଳି ନିଶ୍ଚିତ ଭାବେ ବାତିଲ ହେବ । ମୁଁ ମଧ୍ୟ ଚାହିଁଲେ ଉଚ୍ଚ ସ୍ତରରୁ ଏ ବଦଳି ଆଦେଶକୁ ବାତିଲ କରି ଦେଇ ପାରିବି । ମାତ୍ର ଦୀର୍ଘ ଦିନ ଗୋଟିଏ କାର୍ଯ୍ୟାଳୟରେ ଅବସ୍ଥାପିତ ହେଲାପରେ ଆଉ ଗୋଟିଏ ଦିନ ରହିବାକୁ ଇଚ୍ଛା ପ୍ରକାଶ କରୁନାହିଁ ।"

ମୋ କଥା ଶୁଣି ସେ ମୋ ପାଖରୁ ଚାଲିଗଲେ । ମୁଁ ମୋ ତରଫରୁ ପଦ ତ୍ୟାଗ କରିବା ନିମନ୍ତେ ସମସ୍ତ କାଗଜପତ୍ର ପୂରଣ କରି ନିର୍ଦ୍ଦେଶାଳୟରେ ଦାଖଲ କଲି । ୨୦୦୩ ସେପ୍ଟେମ୍ବର ମାସ ୪ ତାରିଖରେ, ନିର୍ଦ୍ଦେଶକଙ୍କୁ ମୋତେ କାର୍ଯ୍ୟମୁକ୍ତ (re-lieve) କରିବାକୁ କହିଲି । ତତ୍କାଳୀନ ଉପନିର୍ଦ୍ଦେଶକ (ପ୍ରଶାସନ) ଡକ୍ଟର ସୁରେନ୍ଦ୍ର ମୋହନ ପାଠୀ ମଧ୍ୟ ମୋ କଥାନୁସାରେ ଆଗରୁ ନିର୍ଦ୍ଦେଶକଙ୍କ ପାଖକୁ ମୋ ଫାଇଲ

ପଠାଇ ଦେଇଥିଲେ । ନିର୍ଦ୍ଦେଶକ ଜେନା ମୋ ଫାଇଲ ଖୋଲି ଆଦେଶନାମା ଦେବା ବେଳକୁ ମୋତେ କହିଲେ, "ବ୍ରହ୍ମାବାବୁ ! ଆଜି ଗୁରୁବାର, ଗୁରୁବାରରେ ମୁଁ ଆପଣଙ୍କୁ ନିର୍ଦ୍ଦେଶାଳୟରୁ ବିଦାୟ ଦେବାକୁ ଚାହୁଁନି । ଆପଣ କାଲି ଯିବେ । ସେ ତାଙ୍କ କଥାନୁସାରେ ମୋତେ ତା' ପରଦିନ ସେପ୍ଟେମ୍ବର ୫, ୨୦୦୩ ଶୁକ୍ରବାର ଦିନ କାର୍ଯ୍ୟମୁକ୍ତ କରିଦେଲେ ।

ସରକାରୀ ଚାକିରି କଲେ ବଦଳି ସ୍ୱାଭାବିକ । ତେଣୁ ଏ ବଦଳି ମୋ ଉପରେ କୌଣସି ପ୍ରଭାବ ପକାଇ ପାରିଲା ନାହିଁ । ମୋ ଦ୍ୱିତୀୟ ପୁତ୍ର ଶ୍ରୀମାନ୍ ଦୀପ୍ତିପ୍ରକାଶ ମୋତେ ଦିନେ କହିଲା, "ବାପା, ତୁମେ କାହିଁକି ଆମକୁ ପର କରି ଦେଉଛ ?" ସେ ହୁଏତ ଭଲଭାବେ ଜାଣିଥିଲା ଯେ ମୁଁ ଚାହିଥିଲେ କୋରାପୁଟ ଯିବା ବନ୍ଦ ହୋଇଯାଇଥାନ୍ତା । କିନ୍ତୁ ମୁଁ ତା'ର ମନ୍ତବ୍ୟ ଉପରେ କୌଣସି ମତାମତ ଦେଲି ନାହିଁ । ମାତ୍ର ଏତିକି ଜାଣିଥିଲି ଯେ ମୋ ଅନୁପସ୍ଥିରେ ମୋ ପିଲାମାନେ ଅସୁବିଧାରେ ପଡ଼ିବେ । ସେମାନେ ମଧ୍ୟ ମୋ ସହିତ କୋରାପୁଟ ଯିବାର ସ୍ଥିତିରେ ନ ଥିଲେ ।

**ଡିଏଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ, କୋରାପୁଟ**

ମୁଁ ସେପ୍ଟେମ୍ବର ମାସ ୧୦ ତାରିଖ ୨୦୦୩ରେ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟରେ ଅଧକ୍ଷ ଭାବେ ଯୋଗଦାନ କଲି । ମୋତେ ଉପସ୍ଥିତ ଅଧ୍ୟାପକ ଓ ଅନ୍ୟାନ୍ୟ କର୍ମଚାରୀମାନେ ସ୍ୱାଗତ ଜଣାଇଲେ । ମୋର ଯୋଗଦାନ ସଂପର୍କରେ ସ୍ଥାନୀୟ ସମ୍ବାଦପତ୍ରରେ ସାମ୍ବାଦିକମାନେ ପ୍ରକାଶ କରିଥିଲେ ।

ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ, କୋରାପୁଟରେ ୨୦୦୩ ମସିହାରେ ୭୫ ଜଣ ଛାତ୍ରଛାତ୍ରୀ ପଢ଼ିବାର ବ୍ୟବସ୍ଥା ଥିଲା । ସେମାନେ ସମସ୍ତେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟରୁ ବଛାଯାଇ ସେଠାରେ ନାମ ଲେଖାଉଥିଲେ । ସେମାନଙ୍କୁ ବାଛିବାରେ ମହାବିଦ୍ୟାଳୟର କୌଣସି ଭୂମିକା ନ ଥିଲା । ସେ ବର୍ଷ କଲେଜରେ ନାମ ଲେଖା ପାଇଁ ଜନୈକ ଛାତ୍ରୀଙ୍କୁ ନିର୍ଦ୍ଦେଶାଳୟ ପଠାଇଥିଲା । ତା'ର ନାମ ଲେଖା ନିମନ୍ତେ ସରକାର ସ୍ଥିର କରିଥିବା ନ୍ୟୂନତମ ନମ୍ବର ନ ଥିଲା । ତେଣୁ ତା'ର ଦରଖାସ୍ତ ଫର୍ମରେ ଏସ୍.ସି.ଇ.ଆର.ଟି ସ୍ତରରେ ତଦାରଖ କରୁଥିବା କର୍ମଚାରୀମାନେ 'Rejected' ବୋଲି ଲେଖିଥିଲେ । ସେଇ ଦରଖାସ୍ତ ଫର୍ମଟି ମୋ ପାଖକୁ ଏସ୍.ସି.ଇ.ଆର୍.ଟି ତରଫରୁ ପଠାଯାଇ ଲେଖାଗଲା ଯେ କଲେଜ ସ୍ତରରେ ତା'ର ସମସ୍ତ ପ୍ରମାଣପତ୍ରଗୁଡ଼ିକୁ ତଦାରଖ କରାଯିବ । ଯଦି ନୀତିନିୟମର କୌଣସି ବ୍ୟତିକ୍ରମ ଦେଖାଯିବ, ତାଙ୍କୁ କଲେଜରେ ଭର୍ତ୍ତି କରାଯିବ ନାହିଁ ।

ସେହି ଛାତ୍ରୀ ଜଣକ ଜନୈକ ପ୍ରଭାବଶାଳୀ ବ୍ୟକ୍ତି ତଥା ତତ୍‌କାଳୀନ ମନ୍ତ୍ରୀଙ୍କ କନ୍ୟା ଥିଲେ । ସେତେବେଳେ ମୁଁ କଲେଜରୁ କୌଣସି ସରକାରୀ କାମରେ ଭୁବନେଶ୍ୱର ଆସିଥିଲି । କଲେଜର ଦାୟିତ୍ୱରେ ସର୍ବଜ୍ୟେଷ୍ଠ ଅଧ୍ୟାପକ ଡକ୍ଟର ପ୍ରଦୀପ କୁମାର ଡାଙ୍ଗ ଥିଲେ । ତାଙ୍କୁ ଛାତ୍ରୀଜଣକୁ କୌଣସି ନୀତିନିୟମ ନ ଦେଖି କଲେଜରେ ଭର୍ତ୍ତି କରିଦେବା ପାଇଁ ନିର୍ଦ୍ଦେଶକ ଜେନା ଟେଲିଫୋନରେ ଆଦେଶ ଦେଲେ । ଏଇ ସମୟରେ ସମଗ୍ର ଘଟଣା ବର୍ଣ୍ଣନା କରି ଡାଙ୍ଗବାବୁ ମୋତେ ଫୋନ କଲେ । ମୁଁ ମଧ୍ୟ ଭୁବନେଶ୍ୱରର ପ୍ରତିଷ୍ଠିତ ପ୍ରଶାସକମାନଙ୍କୁ ଏକ୍ଷେତ୍ରରେ କ'ଣ କରାଯାଇ ପାରିବ ପଚାରି ସମାନଙ୍କ ପରାମର୍ଶ ନେଲି । ସେମାନେ କିପରି ନିର୍ଦ୍ଦେଶକଙ୍କ କଥାରେ କାମକରି ଭୁବନେଶ୍ୱରସ୍ଥ ଆଞ୍ଚଳିକ ଶିକ୍ଷା ନିର୍ଦ୍ଦେଶାଳୟର ଯୁଗ୍ମ ନିର୍ଦ୍ଦେଶକ ଡକ୍ଟର ରମାକାନ୍ତ ରାଉତ ସେ ସମୟରେ ଅଦାଲତର ସମ୍ମୁଖୀନ ହୋଇଥିଲେ, ସେ ସଂପର୍କରେ କହିଲେ । ଯଦି ସେଇ ଛାତ୍ରୀଟିକୁ କଲେଜରେ ଭର୍ତ୍ତି କରାଯାଏ, ତେବେ ନିର୍ଦ୍ଦେଶକ ନିଜ ମୁଣ୍ଡରୁ ସମସ୍ତ ଦୋଷ ଛଡ଼େଇ ମୋ ମୁଣ୍ଡରେ ଥାପି ଦେବେ । ଆଇନ ଅଦାଲତର ସମ୍ମୁଖୀନ ହେଲେ ମୋତେ ପେନ୍‌ସନ୍ ଗଣ୍ଡାକ ମଧ୍ୟ ମିଳିବ ନାହିଁ ।

ତେବେ ଅଧ୍ୟାପକ ଡାଙ୍ଗ ସିଧାସିଧା ଛାତ୍ରୀ ଜଣକୁ କଲେଜରେ ଭର୍ତ୍ତି କରିବାକୁ ସମସ୍ତ ଚାପ ସତ୍ତ୍ୱେ ମନା କଲେ ।

ତା'ପରେ ନିର୍ଦ୍ଦେଶକ ଭୁବନେଶ୍ୱରସ୍ଥିତ ମୋର ବସାକୁ ଫୋନ କରି କହିଲେ, "ବ୍ରହ୍ମାବାବୁ ! ସେ ଡାଙ୍ଗ ଛାତ୍ରୀଟିକୁ କଲେଜରେ ଆଡ୍‌ମିଶନ କରୁ ନାହିଁ । ଆପଣ ଆଗାମୀ କାଲି ଯାଇ ତା'ର ଆଡ୍‌ମିଶନ୍ କରି ଦିଅନ୍ତୁ ।"

ତାଙ୍କ କଥା ଶୁଣି ମୁଁ କହିଲି, "ଛାତ୍ରୀଜଣକ ଯଦି ନିୟମ ଅନୁସାରେ ବଛା ଯାଇଥିବେ, ତେବେ ତାଙ୍କୁ କଲେଜରେ ଭର୍ତ୍ତି କରିବାରେ କୌଣସି ଅସୁବିଧା ନାହିଁ ।"

ସେ ମୋ କଥା ଶୁଣି ହଠାତ୍ ବିରକ୍ତି ପ୍ରକାଶ କରି କହିଲେ, "ଆପଣ କି ନିୟମ କଥା ମୋତେ କହୁଛନ୍ତି ?"ଏହା କହି ସେ ଟେଲିଫୋନଟିକୁ କାଟି ଦେଲେ ।

ସେଇଦିନଠାରୁ ନିର୍ଦ୍ଦେଶକ ଜେନାଙ୍କର ମୋ ପ୍ରତି ବ୍ୟକ୍ତିଗତ ଆକ୍ରୋଶ ରହିଲା । ସେ ନିଜେ ସାପମାରି ମୋ ଗଳାକୁ ଫିଙ୍ଗିବାକୁ ପଛାଇଲେ ନାହିଁ । ଯେଉଁ କଥାରେ ମୋର ଓ ଡକ୍ଟର ଡାଙ୍ଗଙ୍କର କୌଣସି ଦୋଷ ନାହିଁ, ସେଥିରେ ଆମ ଦୁଇଜଣଙ୍କ ନାମ ଯୋଡ଼ି ମୋତେ କୈଫୟତ ମଗାଇଲେ । ସେ ସମସ୍ତ କୈଫିୟତର ଯଥାଯଥ ଉତ୍ତର ଦେଇ ମୁଁ ତା'ର ଏକ କିତା ନକଲ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ସଚିବଙ୍କର ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ତାଙ୍କ ଘରୋଇ ସଚିବଙ୍କ ପାଖକୁ ପଠାଇଲି । କାରଣ ତା'

ପୂର୍ବରୁ ମୋତେ ତତ୍‌କାଳୀନ ଗଣଶିକ୍ଷା ମନ୍ତ୍ରୀଙ୍କ ଅଞ୍ଚଳର କେତେକ ବି.ଏଡ୍ ଛାତ୍ର ନିର୍ଦ୍ଦେଶକ ମୋ ବିରୋଧରେ ଗଣଶିକ୍ଷା ମନ୍ତ୍ରୀ ମାନ୍ୟବର ସୁରେନ୍ଦ୍ର ନାୟକଙ୍କୁ କହୁଥିବାର ଶୁଣିଥିଲେ । କିନ୍ତୁ ଗଣଶିକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ସୁରେନ୍ଦ୍ର ନାୟକ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ପଚାରିଥିଲେ, "ସେ ଅଧ୍ୟକ୍ଷ କାହିଁକି ସେ ପ୍ରଭାବଶାଳୀ ବ୍ୟକ୍ତିଙ୍କର ଝିଅର ଆଡ଼ମିଶନ୍ କରୁନାହିଁ ।"

ସେତେବେଳେ ଗଣଶିକ୍ଷା ମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବ କୁଆଡ଼େ କହିଥିଲେ, "ତାଙ୍କ ଝିଅର ତ ବି.ଏଡ୍ ଆଡ଼ମିଶନ ପାଇଁ ଆବଶ୍ୟକ ୪୫% ନାହିଁ । ସେ ପିଲାର କ'ଣ ଆଡ଼ମିଶନ୍ କରି ଅଧ୍ୟକ୍ଷ ଜଣକ ନିଜର ଚାକିରି ନିମନ୍ତେ ବିପଦ ଆଣିବେ ?" ଏହାପରେ ସଙ୍ଗେ ସଙ୍ଗେ ଗଣଶିକ୍ଷା ମନ୍ତ୍ରୀ କୁଆଡ଼େ ସେ ଭଦ୍ରବ୍ୟକ୍ତିଙ୍କୁ ସିଧାସିଧା ତାଙ୍କ ଝିଅ ବି.ଏଡ୍ ଭର୍ତ୍ତିହେବ ନାହିଁ ବୋଲି କହିଥିଲେ । ସେହିପରି ମୋତେ ପରବର୍ତ୍ତୀ ସମୟରେ ଏସ୍.ସି.ଇ.ଆର.ଟିର ଜନୈକ ଅଧ୍ୟାପକ ଖବର ଦେଲେ ଯେ ଜନୈକ ରଶ୍ମିତା କୁମାରୀ ବେହେରାଙ୍କ କଲେଜର ଭର୍ତ୍ତି କାଗଜ ଦେଖାଇ ମୋ ବିରୋଧରେ କାର୍ଯ୍ୟାନୁଷ୍ଠାନ ନେବା ପାଇଁ ନିର୍ଦ୍ଦେଶକ ଜେନା ଗଣଶିକ୍ଷା ସଚିବଙ୍କୁ କହୁଥିଲେ । ତା'ର ଉତ୍ତରରେ ତତ୍‌କାଳୀନ ଗଣଶିକ୍ଷା ସଚିବ କୁଆଡ଼େ କହିଲେ, "ଏ କାଗଜ ତ ତୁମ କାର୍ଯ୍ୟାଳୟର । ତୁମ କାର୍ଯ୍ୟାଳୟ ଶ୍ରୀମତୀ ବେହେରାଙ୍କୁ ଭର୍ତ୍ତିହେବା ପାଇଁ ମନୋନୀତ କଲା ଓ ତୁମ ଆଦେଶ ଅନୁସାରେ ତୁମେ ଯାହା କାଗଜପତ୍ର ପଠାଇଥିଲ ତାହା ତାଙ୍କ କାର୍ଯ୍ୟାଳୟରେ ଯାଞ୍ଚ କରାଯାଇ ତାଙ୍କୁ ଭର୍ତ୍ତି କରାଗଲା । ଏଥିରେ ଅଧ୍ୟକ୍ଷଙ୍କ ଦୋଷ ରହିଲା କେଉଁଠି ?"

ସେ ମୋ ବିରୋଧରେ ଆଉ ଅଧିକ ନ ଲାଗି ଅଧ୍ୟାପକ ଡଃ ପ୍ରଦୀପ ଡାଙ୍ଗଙ୍କୁ କଳାହାଣ୍ଡି ବି.ଏଡ୍ କଲେଜ, ଭବାନୀପାଟଣାକୁ ନିୟୋଜିତ କରି ପଠାଇଲେ ।

ସେ ଆଦେଶନାମା ୫ । ୧୨ । ୨୦୦୩ରେ ଆସି ଆମ କଲେଜରେ ପହଞ୍ଚିଲା । ସେଦିନ ମୁଁ ସୁନାବେଡ଼ା ଏରୋନଟିକ୍ସ ଗାର୍ଲସ ହାଇସ୍କୁଲରେ ଏସ୍.ସି.ଇ.ଆର.ଟି ତରଫରୁ ଅନୁଷ୍ଠିତ ହେଉଥିବା ଏକ ହିନ୍ଦୀ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ପାଠ୍ୟ ନିର୍ଦ୍ଦେଶକ (Course Director) ହିସାବରେ ଯାଇଥିଲି । ଏପରି ଆଦେଶ ମୋତେ ନିର୍ଦ୍ଦେଶାଳୟ ତରଫରୁ ମଧ୍ୟ ଦିଆଯାଇଥିଲା ।

ଡକ୍ଟର ଡାଙ୍ଗଙ୍କ ବଦଳି ଆଦେଶ ବି.ଏଡ୍ ପିଲାମାନେ ମୋର ଅନୁପସ୍ଥିତିରେ କୌଣସି ସୂତ୍ରରୁ ଜାଣିଗଲେ । କଲେଜର ସଭାପତି ତ୍ରିନାଥ ପ୍ରଧାନ କିଛି ପିଲାମାନଙ୍କୁ ଧରି ମୋ ଅନୁପସ୍ଥିତିରେ ତତ୍‌କାଳୀନ ଜିଲ୍ଲାପାଳ ଶ୍ରୀମତୀ ଉଷା ପାଢ଼ୀଙ୍କୁ ସେଦିନ

ସନ୍ଧ୍ୟାରେ ଜିଲ୍ଲାପାଳଙ୍କ ଆବାସିକ କାର୍ଯ୍ୟାଳୟରେ ସାକ୍ଷାତ କଲେ । ଶ୍ରୀମତୀ ପାଢ଼ୀ ଖୁବ୍ ଅଳ୍ପ ସଂଖ୍ୟକ ଅଧ୍ୟାପକ କଲେଜରେ ଥିବା ହେତୁ ପିଲାମାନଙ୍କ ଶିକ୍ଷାଦାନ ବାଧାପ୍ରାପ୍ତ ହେବ ବୋଲି ଅନୁଭବ କଲେ । ମୁଁ ସୁନାବେଡ଼ାରେ ଥିବାହେତୁ ସେ ମୋ ସହିତ ଯୋଗାଯୋଗ କରିପାରିଲେ ନାହିଁ । ଜିଲ୍ଲାପାଳ ତା'ଙ୍କ ଆଦେଶନାମା ନଂ 598 / Res / 03 Dt 5 / 12/ 03 ରେ ଅନ୍ୟାଦେଶ ପର୍ଯ୍ୟନ୍ତ ଡକ୍ଟର ଡାଙ୍ଗଙ୍କୁ କାର୍ଯ୍ୟମୁକ୍ତ ନ କରିବା ପାଇଁ ମୋତେ ଆଦେଶ ଦେଇଥିଲେ ଓ ଏହାର ଏକ ନକଲ ମଧ୍ୟ ନିର୍ଦ୍ଦେଶକଙ୍କ ପାଖକୁ ପଠାଇଥିଲେ ।

ତଥାପି ୯ । ୧୨ । ୨୦୦୩ ତାରିଖରେ ଏସ୍.ସି.ଇ.ଆର.ଟିର ଉପନିର୍ଦ୍ଦେଶକ (ପ୍ରଶାସନ) ଅର୍ଦ୍ଧେନ୍ଦୁ ଶେଖର ଭୋଳ କଲେଜରେ ପହଞ୍ଚି ମୋତେ କହିଲେ, "ବ୍ରହ୍ମାବାବୁ ! ନିର୍ଦ୍ଦେଶକ କହିଛନ୍ତି ଆପଣ ଶୀଘ୍ର ଡଃ ଡ଼ାଙ୍ଗଙ୍କୁ ରିଲିଭ ଆଦେଶ ଦେଇ ଦିଅନ୍ତୁ ।"

ମୁଁ ତାଙ୍କୁ ହସି ହସି କହିଲି, "ଦେଖନ୍ତୁ, ତାଙ୍କୁ କାର୍ଯ୍ୟମୁକ୍ତ କରିବା ବର୍ତ୍ତମାନ ମୋ କ୍ଷମତାର ବାହାରେ । ଆପଣ ତାଙ୍କୁ ନିର୍ଦ୍ଦେଶକଙ୍କ ତରଫରୁ କାର୍ଯ୍ୟମୁକ୍ତ କରାନ୍ତୁ । ମୋର କୌଣସି ଆପତ୍ତି ନାହିଁ ।"

ଏହାକହି ମୁଁ ଜିଲ୍ଲାପାଳଙ୍କ ଆଦେଶନାମା ତାଙ୍କୁ ଦେଖାଇଲି । ସେ ଜିଲ୍ଲାପାଳଙ୍କ ଆଦେଶନାମା ପଢ଼ିଲେ । ଆଉ ସେ ସଂପର୍କରେ କିଛି ଆଲୋଚନା ନକରି, କଲେଜ ଛାଡ଼ି ଅନ୍ୟତ୍ର ଚାଲିଗଲେ ।

ଡକ୍ଟର ଡାଙ୍ଗଙ୍କ ଏହି ସ୍ଥାନାନ୍ତର ଆଦେଶ ୨୭ ନଭେମ୍ବର, ୨୦୦୩ରେ ହୋଇଥିଲା । ଜିଲ୍ଲାପାଳ ତାଙ୍କ ଅନ୍ୟତ୍ର ସ୍ଥାନାନ୍ତରକୁ ତାଙ୍କ ଆଦେଶନାମା 598 / 03 Res / Dt.5.12.03 ରେ ସ୍ଥଗିତ ରଖିଥିଲେ । ଏଥିରେ ଅଧ୍ୟକ୍ଷ ହିସାବରେ ମୋର କୌଣସି ନେଣ ଦେଣ ନ ଥିଲା । ମାତ୍ର ଏଇ ଘଟଣାର ପ୍ରାୟ ଚାରିମାସ ପରେ ନିର୍ଦ୍ଦେଶକ ଜେନା ତାଙ୍କର ଚିଠି ନଂ 159/ Dt. 20.3.2004 ରେ ମୋତେ ଲେଖିଲେ, "the students of your college were instigated and were made an instrument to meet the Collector for cancellation of the deployment order of Sri P.K. Dang, the Lecturer of the College. How is it that the students could meet the Collector, when the Principal was present ".

ଜଣେ ରାଜନୀତି ଓ ଶିକ୍ଷା ବିଭାଗର ଛାତ୍ର ହିସାବରେ ମୋତେ ନିର୍ଦ୍ଦେଶକ ତଥା ଜଣେ ଶିକ୍ଷା ପ୍ରଶାସକଙ୍କ ଏତାଦୃଶ ପ୍ରଶ୍ନ ଆଶ୍ଚର୍ଯ୍ୟ କରିଥିଲା । ଜିଲ୍ଲା ପ୍ରଶାସନର

ମୁଖ୍ୟ ହେଉଛନ୍ତି ଜିଲ୍ଲାପାଳ । ମାତ୍ର ନିର୍ଦ୍ଦେଶକ ଜେନା କେଉଁ ଗୁଇନ୍ଦା ବିଭାଗ କିମ୍ବା ଖଳନାୟକଙ୍କ ମାଧ୍ୟମରେ ଜାଣିଲେ ଯେ ମୁଁ କୋରାପୁଟରେ ଅନୁପସ୍ଥିତ ଥିବା ଦିନ ପିଲାମାନଙ୍କୁ ମତାଇ ଜିଲ୍ଲାପାଳଙ୍କ ପାଖକୁ ପଠାଇଥିଲି । ତାଙ୍କ ପ୍ରଶ୍ନର ଉତ୍ତର ଅଧ୍ୟକ୍ଷଙ୍କ କାର୍ଯ୍ୟାଳୟ ଚିଠି ନଂ. ୨୪୬/୪, ତା ୧୨.୫.୨୦୦୪ରେ ନିମ୍ନମତେ ଦିଆଯାଇଥିଲା ।

"In a democratic set up administration, the students are well aware of the role of the functioning of the District Magistrate and Collector who is also the Chairman of the Governing Body of the College. When they thought that their interest of the study would be hampered, they met the Collector, to solve the problem. In view of the Collector's letter under reforence, I had no other option other than obeying the order of the Collector who is not only the head of the District Administration, but also the authority of law and order situation of the District."

ବିଭିନ୍ନ ପ୍ରସଙ୍ଗ ଥାଇ ତାଙ୍କର ଅପ୍ରାସଙ୍ଗିକ ଉଦ୍ଦେଶ୍ୟମୂଳକ କୈଫିୟତ ଏକ ସମ୍ବେଦନଶୀଳ ପ୍ରସଙ୍ଗ ହୋଇଥିବା ହେତୁ ମୁଁ ଗଣଶିକ୍ଷା କମିଶନରଙ୍କ ଘରୋଇ ସେକ୍ରେଟେରୀଙ୍କୁ କମିଶନରଙ୍କ ଅବଗତି ନିମନ୍ତେ ପଠାଇଲି । ଏତଦ୍‌ବ୍ୟତୀତ ଜିଲ୍ଲା ମାଜିଷ୍ଟ୍ରେଟ୍ ତଥା କଲେକ୍ଟରଙ୍କ ପାଖକୁ ମଧ୍ୟ ଏକକିତା ନକଲ ପଠାଇଲି ।

୨୦୦୪-୨୦୦୫ ଶିକ୍ଷାବର୍ଷରେ ଜନୈକ ରଶ୍ମିତା କୁମାରୀ ବେହେରା ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟରେ ନାମ ଲେଖାଇଥିଲେ । ସେ ନିର୍ଦ୍ଦେଶାଳୟକୁ ବି.ଏଡ୍‌ରେ ଭର୍ତ୍ତି ହେବାକୁ ଦରଖାସ୍ତ କରିଥିଲେ । ନିର୍ଦ୍ଦେଶାଳୟ ତାଙ୍କୁ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ନାମ ଲେଖାଇବା ପାଇଁ ବାଛି ତାଙ୍କର ସମସ୍ତ କାଗଜ ପତ୍ର ପଠାଇଲେ ଓ ସେ ନେଇଥିବା ଜେରକ୍ସ ନକଲ ମୂଳ ପ୍ରମାଣପତ୍ର ସହ ଯାଞ୍ଚ କରି ନାମ ଲେଖାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ତଦନୁଯାୟୀ ସେ ନାମ ଲେଖାଇଥିଲେ । ସେତେବେଳେ ସେ ଏମ୍.ଏଲ୍.ଏ.ଙ୍କଠାରୁ ଜାତିଗତ ପ୍ରମାଣପାତ୍ର ଦେଖାଇଥିଲେ ଓ ସେ ପ୍ରମାଣପତ୍ରକୁ ନିର୍ଦ୍ଦେଶାଳୟର ଅଫିସରମାନେ ମଧ୍ୟ ଗ୍ରହଣ କରିଥିଲେ । କିନ୍ତୁ କିଛି ମାସ ପରେ ନିର୍ଦ୍ଦେଶକ କାହିଁକି ଏମ୍.ଏଲ.ଏ.ଙ୍କ ଜାତିଗତ ପ୍ରମାଣପତ୍ର ଗ୍ରହଣ କରାଗଲା ବୋଲି ମୋତେ ନିର୍ଦ୍ଦେଶାଳୟ ଚିଠି ନଂ 23D ତା 13.1.05 ରେ କୈଫିୟତ ମାଗିଲେ ଏବଂ ତାଙ୍କର ବି.ଏଡ୍. **ପରୀକ୍ଷାର** ଫର୍ମ ପୁରଣକୁ ବନ୍ଦ କରିଦେଲେ । ତା'ର ଉତ୍ତର ମୁଁ

ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ଚିଠି ନଂ ୮୩ । ୨୬ ।୨।୦୫ ରେ ଦେଇଥିଲି । ସେଥିରେ ମୁଁ ସମସ୍ତ ପ୍ରମାଣପତ୍ର ସହିତ ଦର୍ଶାଇଥିଲି ଯାହାକିଛି ହୋଇଛି ତାହା ନିର୍ଦ୍ଦେଶାଳୟର ନିର୍ଦ୍ଦେଶରେ । ତେଣୁ ଶ୍ରୀମତୀ ବେହେରାଙ୍କୁ ବିଶ୍ୱବିଦ୍ୟାଳୟ ବି.ଏଡ୍ ପରୀକ୍ଷା ଦେବା ପାଇଁ ଅନୁମତି ଦିଆଯିବ କି ନାହିଁ ପ୍ରଶ୍ନ କରିଥିଲି । ଏତଦ୍‌ବ୍ୟତୀତ ସମସ୍ତ ବି.ଏଡ୍ ଛାତ୍ରଛାତ୍ରୀ ଫର୍ମ ପୂରଣ କରିଥିଲାବେଳେ ଶ୍ରୀମତୀ ବେହେରାଙ୍କୁ କେଉଁ କାରଣରୁ ଫର୍ମପୂରଣ ସୁଯୋଗ ଦିଆଗଲା ନାହିଁ ତା'ର ମଧ୍ୟ କାରଣ ଜଣାଇ ଏକ ଚିଠି ଦେଇଥିଲି ।

ଏହା ଫଳରେ ଶ୍ରୀମତୀ ବେହେରା ନିର୍ଦ୍ଦେଶକଙ୍କୁ ଭୁବନେଶ୍ୱରରେ ଦେଖାକରି କହିଥିଲେ ଯେ ତାଙ୍କୁ ଫର୍ମପୂରଣର ସୁଯୋଗ ଦିଆ ନ ଗଲେ, ସେ ନ୍ୟାୟପାଇଁ ଉଚ୍ଚ ନ୍ୟାୟାଳୟ ଯିବେ । ତାଙ୍କର ସମସ୍ତ ପ୍ରମାଣପତ୍ର ଠିକ୍ ଥିବା ସତ୍ତ୍ୱେ କେଉଁ ଖଳନାୟକମାନଙ୍କ ଅଭିଯୋଗ ଫଳରେ ସେ ସେଗୁଡ଼ିକ ବିନା ପ୍ରମାଣରେ ଜାଲ ବୋଲି ପ୍ରଶ୍ନ କରୁଛନ୍ତି ବୋଲି ପ୍ରଶ୍ନ କଲେ । ମାମଲା ଆଇନଗତ ଦିଗଆଡ଼କୁ ଯାଇଛି ବୋଲି ଅନୁଭବ କରି ନିର୍ଦ୍ଦେଶକ ଜେନା ତାଙ୍କର ଚିଠି ନ : ୧୯୯୭ ତାରିଖ ମାର୍ଚ୍ଚ ୪, ୨୦୦୫ରେ ଶ୍ରୀମତୀ ବେହେରାଙ୍କୁ ପରୀକ୍ଷାଦେବା ନିମନ୍ତେ ଅନୁମତି ଦେଲେ ଓ ସେଇ ଚିଠିରେ ଅଧ୍ୟକ୍ଷ ଏବଂ ନାମଲେଖା ଦାୟିତ୍ୱରେ ଥିବା ଅଧ୍ୟାପକ ଡଃ ଡାଙ୍ଗଙ୍କ ବିରୋଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନିଆଯିବ ବୋଲି ଲେଖିଲେ । ନିର୍ଦ୍ଦେଶାଳୟର ନିର୍ଦ୍ଦେଶରେ ଶ୍ରୀମତୀ ବେହେରା ବି.ଏଡ୍‌ରେ ଭର୍ତ୍ତି ହେଲେ ଏବଂ ଦୋଷୀ ହେଲେ ଅଧ୍ୟକ୍ଷ ଓ ନାମଲେଖା ଦାୟିତ୍ୱରେ ଥିବା ଅଧ୍ୟାପକ ।

ମାର୍ଚ୍ଚମାସ ୪, ୨୦୦୫ରେ ଆମ ମହାବିଦ୍ୟାଳୟର ବାର୍ଷିକ ଉତ୍ସବ ଥାଏ । ସାଧାରଣତଃ ଅଳ୍ପସଂଖ୍ୟକ ପିଲାଥିବା ଏଇ ମହାବିଦ୍ୟାଳୟର ବାର୍ଷିକ ଉତ୍ସବ ଦିନ ବେଳେ କରାଯାଏ । ପ୍ରାୟ ଦିନ ତିନିଟାବେଳେ ଆମର ଉତ୍ସବ ସରିଗଲା । ଅତିଥି ଓ ପିଲାମାନେ ବିଦା ହୋଇ ଚାଲିଗଲେ । ଦିନଯାକର ବ୍ୟସ୍ତତା ମଧ୍ୟରେ ମୁଁ ମଧ୍ୟାହ୍ନ ଭୋଜନ ପରେ ପରେ ଆସି ମୋ ଚେୟାରରେ ବସି ଟିକିଏ ବିଶ୍ରାମ ନେଉଛି ଏଇ ସମୟରେ ମୋତେ ନିର୍ଦ୍ଦେଶକଙ୍କ ବ୍ୟକ୍ତିଗତ ସହାୟକ ଶ୍ରୀମତୀ ଶୈଳ ବେହେରା କହିଲେ, "ସାର୍, ନିର୍ଦ୍ଦେଶକ ଆପଣଙ୍କ ସହିତ କଥାବାର୍ତ୍ତା ହେବେ ।"

ଏହାକହି ସେ ନିର୍ଦ୍ଦେଶକଙ୍କୁ ଫୋନ ଧରାଇଦେଲେ । ସେ ମୋତେ ହଠାତ୍ ପ୍ରଶ୍ନ କଲେ, "ଆପଣ ରଶ୍ମିତା କ୍ଷେତ୍ରରେ ଏପରି କୈଫିୟତ କାହିଁକି ଦେଲେ । ଏସବୁ କ'ଣ ? ଆପଣ କାହିଁକି ଏ କୈଫିୟତର ଏକକିତା ନକଲ ସଚିବଙ୍କ ଗୋଚରାର୍ଥେ ତାଙ୍କ ପ୍ରାଇଭେଟ ସେକ୍ରେଟେରୀଙ୍କୁ ଦେଇଛନ୍ତି ?"

ମୁଁ ଏମ.ଏଡ୍ ପଢୁଥିବା ବେଳେ ନିର୍ଦ୍ଦେଶକ ଜେନା କିଛିଦିନ ପାଇଁ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟାପକଭାବେ କାର୍ଯ୍ୟରତ ଥିଲେ । ସେଥିପାଇଁ ମୁଁ କୌଣସି କ୍ଷେତ୍ରରେ ତାଙ୍କୁ କେବେ ଅବମାନନା କରି ନାହିଁ । ସେ ଦୀର୍ଘ ଦୁଇବର୍ଷ କାଳ ମୋତେ ବିଭିନ୍ନ ଆଳରେ ବିଭିନ୍ନ କୈଫିୟତ ମଗାଇ ମୋର ମୂଲ୍ୟବାନ ସମୟ ନଷ୍ଟ କରିଛନ୍ତି । ସେଥିରେ ମୁଁ ଯେତିକି ପୃଷ୍ଠା କୈଫିୟତରେ ଦେଇଅଛି, ତାହା ଯଦି ରଚନାତ୍ମକ ଦିଗରେ ଖର୍ଚ୍ଚ ହୋଇଥାନ୍ତା, ତେବେ ମୋର ଆଉ ଗୋଟିଏ ସାରସ୍ୱତ ସୃଷ୍ଟି ଆତ୍ମପ୍ରକାଶ କରିଥାନ୍ତା ।

ତେଣୁ ମୋ ମନର ତାଙ୍କ ପ୍ରତି ଥିବା ସମସ୍ତ ଅତୀତର ମାୟା ଓ ମମତାର ବନ୍ଧନ କ୍ଷଣିକ ମଧ୍ୟରେ ଅପସରି ଗଲା । ସେଦିନ ମୁଁ ଜଣେ ଅଧ୍ୟକ୍ଷ ହିସାବରେ ତାଙ୍କୁ ପ୍ରଶ୍ନ କଲି, "ଆପଣ ତ ମୋତେ ଲିଖିତ କୈଫିୟତ ମଗାଇଲେ । ତା'ର ଉତ୍ତର ମୁଁ ଲିଖିତ ଭାବେ ଦେଲି । ଆପଣ ଏମିତି ମୋ ପଛରେ ଲାଗିଛନ୍ତି କାହିଁକି ? Do you think that I am a barren land and whatever you will do I will go on accepting ?"

ସେଦିନ ମୋ କଥା ଓ ସ୍ୱର ଶୁଣି ସେ ସଙ୍ଗେ ସଙ୍ଗେ ତାଙ୍କର ଫୋନ ରଖିଦେଲେ । ଏ ଘଟଣା ପରଠାରୁ ତାଙ୍କର ନିର୍ଦ୍ଦେଶକ ପଦରୁ ଅବସର ନେବା ପର୍ଯ୍ୟନ୍ତ ୩୦ ନଭେମ୍ବର, ୨୦୦୫ ପର୍ଯ୍ୟନ୍ତ ମୁଁ ଆଉ ତାଙ୍କଠାରୁ କୌଣସି କୈଫିୟତ ପାଇ ନ ଥିଲି ।

ପୁନଶ୍ଚ ଶ୍ରୀମତୀ ରଶ୍ମିତା କୁମାରୀ ବେହେରାଙ୍କ ନାମଲେଖାକୁ ନେଇ ଯେଉଁ ଖଳନାୟକମାନେ ବେନାମୀ ଦରଖାସ୍ତ ଦେଇ ଲାଗିଥିଲେ, ସେମାନେ ମଧ୍ୟ ମୋ ବିରୋଧରେ ମାନ୍ୟବର ରାଜ୍ୟପାଳଙ୍କ ନିକଟକୁ ଏକ ଦରଖାସ୍ତ ଦେଇଥିଲେ । ମାନ୍ୟବର ରାଜ୍ୟପାଳଙ୍କ କାର୍ଯ୍ୟାଳୟରୁ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟକୁ ଏହାର ତଦନ୍ତ ପାଇଁ ନିର୍ଦ୍ଦେଶ ଆସିଥିଲା । ମୁଁ ଓ ଡକ୍ଟର ଡାଙ୍ଗ ଏଇ ତଦନ୍ତର ସମ୍ମୁଖୀନ ହେଉଥିଲୁ । ତଦନ୍ତରୁ ସ୍ପଷ୍ଟ ହେଲା ଯେ ଶ୍ରୀମତୀ ବେହେରାଙ୍କ କୌଣସି ପ୍ରମାଣପତ୍ର ଜାଲ ନ ଥିଲା । ତାଙ୍କର ଜାତିଗତ ପ୍ରମାଣପତ୍ର ମଧ୍ୟ ଠିକ୍ ଥିଲା । ଆମେ ସଂପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ତଦନ୍ତ ଅଧିକାରୀ ତାଙ୍କ ରିପୋର୍ଟରେ ଜଣାଇଲେ ।

ଏକଥା ସତ୍ୟ ଯେ ମୋର ଦୀର୍ଘ ତିନି ଦଶନ୍ଧିର ଚାକିରି ସମୟ ୧୯୭୦-୨୦୦୭ ମଧ୍ୟରେ ମୋତେ କେହି କେବେ ଲିଖିତ ଭାବେ କୈଫିୟତ ମଗାଇ ନ ଥିଲେ । ନିର୍ଦ୍ଦେଶକ ଜେନାଙ୍କ ସମସ୍ତ କୈଫିୟତ ନିରାଧାର ଓ ଉଦ୍ଦେଶ୍ୟମୂଳକ ଥିଲା ।

ସେ ବର୍ଷ ଶ୍ରୀମତୀ ବେହେରା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ଅନୁଷ୍ଠିତ ହୋଇଥିବା ବି.ଏଡ୍ ପରୀକ୍ଷାରେ ମହାବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ମଧ୍ୟରେ ପ୍ରଥମ ହୋଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ।

**ମହାବିଦ୍ୟାଳୟର ବିକାଶମୂଳକ କାର୍ଯ୍ୟକ୍ରମ**

ମୁଁ ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟରେ ଯୋଗଦାନ ପରେ ଲକ୍ଷ୍ୟ କଲି ଯେ ସେ ଅନୁଷ୍ଠାନର ନିଜସ୍ୱ ପ୍ରବେଶ ଦ୍ୱାରଟିଏ ନାହିଁ । ପ୍ରତିବର୍ଷ କଲେଜରେ ନାମ ଲେଖାଇବା ସମୟରେ ପିଲାମାନେ କଲେଜକୁ ଖୋଜି ଖୋଜି ଅନତିଦୂରରେ ଥିବା ଏକ ଶ୍ମଶାନରେ ପହଞ୍ଚୁଥିଲେ । ସେଥିପାଇଁ ମୁଁ ଅନୁଷ୍ଠାନର ମୁଖ୍ୟ କିରାଣି ଶ୍ରୀଯୁକ୍ତ ଚିନ୍ତାମଣି ସାହୁଙ୍କ ସହିତ ଆଲୋଚନା କରି କଲେଜର ଅବସ୍ଥିତି ସୂଚନା ଥାଇ ଦୁଇଟି ସ୍ଥାନରେ କଂକ୍ରିଟ ନିର୍ମିତ ଦୁଇଟି ଫାଟକ ସ୍ଥାପନ କରାଇଲି । ସେଥିରେ କଲେଜର ନାମ, ଦିଗସୂଚକ ସହ ତା'ର ତଳେ ଥିବା ବଳକା ସ୍ଥାନରେ ଶିକ୍ଷଣୀୟ କ୍ଷୁଦ୍ର ଉକ୍ତି ମଧ୍ୟ ଲେଖାହେଲା । ପୁନଶ୍ଚ କଲେଜର ଗଚ୍ଛିତ ପାଣ୍ଠିରୁ ପ୍ରାୟ ଚାଳିଶ ହଜାର ଟଙ୍କା କଲେଜର ଗେଟ ନିର୍ମାଣ ପାଇଁ ନିର୍ଦ୍ଦେଶକ ଜେନାଙ୍କୁ ଖର୍ଚ୍ଚ କରିବା ନିମନ୍ତେ ଅନୁମତି ଦେବା ପାଇଁ ଅର୍ଦ୍ଧ ସରକାରୀ ଚିଠି (D.O.) ମଧ୍ୟ ଲେଖିଲି ଓ ପରବର୍ତ୍ତୀ ସମୟରେ ସାକ୍ଷାତ କରି ଅନୁରୋଧ କଲି । କିନ୍ତୁ ସେ ସଂପର୍କରେ ନିର୍ଦ୍ଦେଶାଳୟ ତରଫରୁ କୌଣସି ଅନୁମତି ପତ୍ର ମିଳିଲା ନାହିଁ ।

ଏଇ ସମୟରେ ମୁଁ ଦିନେ ମୋର ପ୍ରଥମ ସହକାରୀ ଅଧ୍ୟାପକ ଡକ୍ଟର ପ୍ରଦୀପକୁମାର ଡାଙ୍ଗଙ୍କୁ ପଚାରିଲି ଯେ କୋରାପୁଟର କାର୍ଯ୍ୟନିର୍ବାହୀ ଇଂଜିନିୟର କିଏ ଅଛନ୍ତି । ସେ ସଙ୍ଗେ ସଙ୍ଗେ କହିଲେ, "ଇଂ. ପ୍ରଦୀପ କୁମାର ଦାସ ଅଛନ୍ତି ।" ମୋର ପଚାରିବାର ଉଦ୍ଦେଶ୍ୟ ଜାଣିଲା ପରେ ସେ ମୋତେ କହିଲେ, "ସାର୍ ! ଆମେ ଆଗାମୀ କାଲି ତାଙ୍କ ପାଖକୁ ଯିବା ।"

ଆମେ ଦୁହେଁ ଇଂଜିନିୟର ଦାସବାବୁଙ୍କ ପାଖକୁ ପରଦିନ ଗଲୁ । ସେ ଯେ ଡକ୍ଟର ଡାଙ୍ଗଙ୍କ ପୂର୍ବ ପରିଚିତ, ସେ କଥା ସେତେବେଳେ ସେମାନଙ୍କ କଥାବାର୍ତ୍ତାରୁ ଜାଣିଲି । ତାଙ୍କ ସହିତ ପଡ଼ି ରହିଥିବା ମହାବିଦ୍ୟାଳୟର କୋଠାବାଡ଼ି କାମ ସଂପର୍କରେ ଆଲୋଚନା କଲି । କଥା ପ୍ରସଙ୍ଗରେ ତାଙ୍କ ତରଫରୁ ସେ ଯଦି କଲେଜ ପାଇଁ ଗେଟ୍‌ଟି କରି ଦିଅନ୍ତେ, ତେବେ ଅନୁଷ୍ଠାନ ଉପକୃତ ହୁଅନ୍ତା ବୋଲି କହିଲି ।

ସେ ମୋତେ ସମ୍ମାନର ସହିତ କହିଲେ, "ସାର୍ ! ଆପଣ କହୁଛନ୍ତି । ଏ କାମଟି ନିଶ୍ଚିତ ଭାବେ ହେବ ।" ମୁଁ ତାଙ୍କୁ କହିଲି, "ସାଧାରଣତଃ ଆମେ

ମହାବିଦ୍ୟାଳୟର ବାର୍ଷିକ ଉତ୍ସବ ମାର୍ଚ୍ଚ କିମ୍ବା ଏପ୍ରିଲ ମାସରେ କରୁ । ଆପଣ ବାର୍ଷିକ ଉତ୍ସବ ପୂର୍ବରୁ ତାହା କରିଦେଲେ ଭଲ ହେବ ।"

ସେଇ ଉଦୀୟମାନ ନିଷ୍ଠାପର ଇଞ୍ଜିନିୟର ଦାସ ମହୋଦୟ ସେ ବର୍ଷ ବାର୍ଷିକ ଉତ୍ସବ ପୂର୍ବରୁ ସେ କାମଟିକୁ କରିଦେଇଥିଲେ । ଗେଟ୍ କେଉଁଠାରେ ହେବ ସେ ସଂପର୍କରେ ମୁଁ ତତ୍କାଳୀନ କୋରାପୁଟ ଏମ୍.ଏଲ୍.ଏ ମାନ୍ୟବର ତାରାପ୍ରସାଦ ବାହିନୀପତିଙ୍କ ପରାମର୍ଶ ନେଇଥିଲି । କଲେଜର ସମସ୍ତ ପ୍ରକାର ଉନ୍ନତିମୂଳକ କାର୍ଯ୍ୟରେ ଡକ୍ଟର ଡାଙ୍ଗ, ମୁଖ୍ୟ କିରାଣି ଚିନ୍ତାମଣି ସାହୁ, ବରିଷ୍ଠ କିରାଣି ଏଲ.ଡ଼ି. ରାଜୁ ଓ ଅନ୍ୟମାନେ ଅକୁଣ୍ଠିତ ସାହାଯ୍ୟ କରୁଥିଲେ ।

ସେତେବେଳେ କଲେଜର ଅଧ୍ୟାପକ ଡକ୍ଟର ପ୍ରଦୀପ କୁମାର ଡାଙ୍ଗ, ଡକ୍ଟର ଖଲି ନାୟକ, ଡକ୍ଟର ଦିବାକର ଷଡ଼ଙ୍ଗୀ, ଅଧ୍ୟାପକ ରବୀନ୍ଦ୍ର କୁମାର ନାୟକ, ଡକ୍ଟର ପୂର୍ଣ୍ଣଚନ୍ଦ୍ର ବେହେରା ପ୍ରମୁଖ ଥିଲେ । ସେହିପରି କାଷ୍ଠଶିଳ୍ପ ପ୍ରଶିକ୍ଷକ ରମେଶଚନ୍ଦ୍ର ମହାରଣା ଓ ସୀବନଶିଳ୍ପ ପ୍ରଶିକ୍ଷକ ଗଙ୍ଗାଧର ସାହୁ ସେମାନଙ୍କ ବୃତ୍ତିରେ ଏତେ ପାରଙ୍ଗମ ଥିଲେ ଯେ କୌଣସି ଅଧ୍ୟାପକ ନ ଥିଲେ, ସେମାନେ ଦୀର୍ଘ ସମୟ ପିଲାମାନଙ୍କୁ ସେମାନଙ୍କ ବିଷୟ ଶିକ୍ଷାଦାନରେ ନିୟୋଜିତ କରୁଥିଲେ । ଏହାଛଡ଼ା ସହପାଠ୍ୟକ୍ରମଭିତ୍ତିକ କାର୍ଯ୍ୟକ୍ରମରେ ସେମାନଙ୍କ ସହଯୋଗ ମଧ୍ୟ ପ୍ରଶଂସାଯୋଗ୍ୟ ଥିଲା ।

ଏତଦ୍‌ବ୍ୟତୀତ ଯେଉଁ କର୍ମଚାରୀମାନେ ମୋତେ ସବୁବେଳେ ସହଯୋଗର ହାତ ବଢ଼ାଉଥିଲେ ସେମାନେ ହେଲେ ମହାବିଦ୍ୟାଳୟର ବରିଷ୍ଠ କର୍ମଚାରୀ ଏଲ୍.ଡ଼ି.ରାଜୁ, ଲାଇବ୍ରେରୀୟାନ୍ ରବୀନ୍ଦ୍ର କୁମାର ରାଉତ, ସତ୍ୟବାନ ପ୍ରଧାନ । ଚତୁର୍ଥଶ୍ରେଣୀ କର୍ମଚାରୀ କୈଳାସଚନ୍ଦ୍ର ପ୍ରଧାନ, ସମଦୁ ଚଣ୍ଡାଳ, କିଶୋର ଚନ୍ଦ୍ର ଡାକୁଆ ଓ ନାରାୟଣ ନାୟକ । ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ଚାରିବର୍ଷର ରହଣି ମଧ୍ୟରେ ମହାବିଦ୍ୟାଳୟର ମୁଖପତ୍ର 'ଶିକ୍ଷାର୍ଣ୍ଣବ' ପ୍ରତିବର୍ଷ ଆତ୍ମପ୍ରକାଶ କରିଥିଲା । ସରସ୍ୱତୀ ପୂଜା ଓ ଗଣେଶ ପୂଜା ମଧ୍ୟ ଯଥାବିଧି ପାଳିତ ହୋଇଥିଲା ।୨୦୦୫-୨୦୦୬ ଶିକ୍ଷାବର୍ଷରେ କଲେଜର ଛାତ୍ର ସଂସଦର ସଭାପତି ଶ୍ରୀମାନ୍ ଚିତ୍ତରଞ୍ଜନ ଦାଶ, ଏମ୍.ଏସ୍‌ସି ଥିଲେ । ସେ ବର୍ଷ ସେ ସରସ୍ୱତୀ ପୂଜା ନିମନ୍ତ୍ରଣ ନେଇ ବ୍ୟକ୍ତିଗତଭାବେ କଲେକ୍ଟର ଓ ଏସ୍.ପିଙ୍କୁ ଦେଲେ । ମୋତେ ନିମନ୍ତ୍ରଣ ପତ୍ର ବଣ୍ଟନ ପରେ ଆସି କହିଲେ, "ସାର୍ ! ଏସ୍.ପି କହିଛନ୍ତି ଯେହେତୁ ଆମ ଅନୁଷ୍ଠାନ, ଏକ ପ୍ରଶିକ୍ଷଣ ଅନୁଷ୍ଠାନ ସେ ଆମ ନିମନ୍ତ୍ରଣ ରକ୍ଷାକରି ନିଶ୍ଚିତ ଆସିବେ ।"

ସରସ୍ୱତୀ ପୂଜାଦିନ ପୁଷ୍ପାଞ୍ଜଳି ସମୟ ହେଲା । ମୋ ପାଖରେ ଆସି କୋରାପୁଟ ଶିକ୍ଷା ଜିଲ୍ଲା ସ୍କୁଲ ସମୂହର ପରିଦର୍ଶକ ଡକ୍ଟର ଧ୍ରୁବଚରଣ ପରିଡ଼ା ପହଞ୍ଚିଲେ । ମୁଁ ତାଙ୍କୁ କହିଲି; "ଶ୍ରୀଯୁକ୍ତ ଅରୁଣ ବୋଥ୍ରା, ଏସ୍.ପି ମହୋଦୟ ଆସିବେ ବୋଲି କହିଛନ୍ତି । ପୁଷ୍ପାଞ୍ଜଳି ସମୟ ଗଡ଼ି ଯାଉଛି । ଆମେ କ'ଣ କରିବା ।"

ସେ ମୋତେ କହିଲେ ଯେହେତୁ ନିଜ ତରଫରୁ କହିଛନ୍ତି, ଆପଣ ତାଙ୍କୁ ଫୋନ କରନ୍ତୁ । ମୋ ଫୋନ ପାଇ ଶ୍ରୀଯୁକ୍ତ ବୋଥ୍ରା କହିଲେ, "ମୁଁ ସଙ୍ଗେ ସଙ୍ଗେ ଯାଉଛି ।" ସେଦିନ ତାଙ୍କର ଆଲୋଚନା ଓ ଆମ ସହିତ ଯୋଗଦାନ ସମସ୍ତଙ୍କୁ ଉତ୍ସାହିତ କଲା । ପୁଷ୍ପାଞ୍ଜଳି ପରେ ସେ ପ୍ରସାଦ ସେବନ କଲେ ନାହିଁ । ସରସ୍ୱତୀ ଓ ଗଣେଶ ପୂଜାଦିନ ସେ କେବଳ ଜଳପାନ କରନ୍ତି ବୋଲି କହି ଆମଠାରୁ ବିଦାୟ ନେଲେ । ଭବିଷ୍ୟତରେ ବି.ଏଡ୍ ପିଲାଙ୍କର ଏକ କ୍ଲାସ ନେବା ପାଇଁ ତାଙ୍କୁ ସୁଯୋଗ ଦେବାକୁ ମୋତେ କହିଗଲେ ।

୨୦୦୬ ବାର୍ଷିକ ଉତ୍ସବରେ ସେ ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ ହୋଇ ତାଙ୍କର ମୂଲ୍ୟବାନ ବକ୍ତବ୍ୟ ରଖିଥିଲେ । ପ୍ରତିବର୍ଷର ବାର୍ଷିକ ପୁରସ୍କାର ବିତରଣ ଉତ୍ସବରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ବିଧାୟକ ମାନ୍ୟବର ତାରା ପ୍ରସାଦ ବାହିନୀପତି, ଅଧ୍ୟକ୍ଷ ନାରାୟଣ ପଣ୍ଡା, ସମାଜସେବୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଅଧ୍ୟାପକ ଡକ୍ଟର ଜଗବନ୍ଧୁ ସାମଲ, ଅଧ୍ୟକ୍ଷ ପ୍ରୀତିଧାରା ସାମଲ, ଦାମନଯୋଡି ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିରର ଅଧ୍ୟକ୍ଷ ଡକ୍ଟର ଭାଗବତ ଶୁକ୍ଳ, କୋରାପୁଟର ତତ୍କାଳୀନ ଆରକ୍ଷୀ ଅଧୀକ୍ଷକ ଅରୁଣ କୁମାର ବୋଥ୍ରା ଓ ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ।

ଏତଦ୍‌ବ୍ୟତୀତ ପ୍ରତିବର୍ଷ ମୋ ନିଜସ୍ୱ ଆୟୋଜନରେ ମହାବିଦ୍ୟାଳୟରେ ସାହିତ୍ୟ ସଂପର୍କୀୟ ସଂପାନମାନ ମଧ୍ୟ ଆୟୋଜିତ ହେଉଥିଲା । ସେଇସବୁ ସାହିତ୍ୟ ସଂପାନରେ ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ନିଜର ବକ୍ତବ୍ୟ ରଖିଥିଲେ ସେଥିମଧ୍ୟରେ ମହିଳା ମହାବିଦ୍ୟାଳୟ, କୋରାପୁଟର ଅଧ୍ୟକ୍ଷ ନାରାୟଣ ପଣ୍ଡା, ଜୟପୁର ଇଂରାଜୀ ବିଭାଗର ମୁଖ୍ୟ ଡକ୍ଟର ଚିତ୍ତରଞ୍ଜନ ମିଶ୍ର, ସୁନାବେଡ଼ା ଏରୋନଟିକସ୍ କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଡକ୍ଟର ବସନ୍ତ କିଶୋର ସାହୁ, ଜିଲ୍ଲା କୃଷି ଅଧିକାରୀ ତଥା ରାଜ୍ୟର ବିଶିଷ୍ଟ ଶିଶୁ ସାହିତ୍ୟିକ ସୂର୍ଯ୍ୟମଣି ସାମନ୍ତରାୟ, କୋରାପୁଟର ବିଶିଷ୍ଟ ସାହିତ୍ୟିକ ଜଳଧର ସ୍ୱାଇଁ, ନନ୍ଦପୁର ମହାବିଦ୍ୟାଳୟର ଭାଷା ଓ ସାହିତ୍ୟ ବିଭାଗର ମୁଖ୍ୟ ଅଧ୍ୟାପକ ରବି ଶତପଥୀ, ଜୟପୁରର ବିଶିଷ୍ଟ କବି କମଳାକୃଷ୍ଣ ତ୍ରିପାଠୀ ପ୍ରମୁଖ ବହୁ ବ୍ୟକ୍ତି ବିଶେଷ । ଏହିସବୁ ଆଲୋଚନା ଚକ୍ରରେ ବି.ଏଡ୍ ଛାତ୍ରଛାତ୍ରୀ , ଅଧ୍ୟାପକଗଣ,

କର୍ମଚାରୀଗଣ ଯୋଗଦାନ କରୁଥିଲେ । ସ୍ଥଳବିଶେଷରେ ମଧ୍ୟ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ । କଲେଜ ସ୍ତରୀୟ ବୌଦ୍ଧିକ ବିକାଶରେ ଏଇସବୁ ଆଲୋଚନାଚକ୍ର ସାହାଯ୍ୟ କରୁଥିଲା ।

ଗଣମାଧ୍ୟମର ସହଯୋଗ ଯୋଗୁଁ ମହାବିଦ୍ୟାଳୟସ୍ତରୀୟ ପ୍ରାୟ ଅଧିକାଂଶ କାର୍ଯ୍ୟକ୍ରମ ସଂପର୍କରେ ସର୍ବସାଧାରଣ ଜାଣିପାରୁଥିଲେ । ମୁଁ ମଧ୍ୟ ବିଭିନ୍ନ ସ୍ଥାନୀୟ ଶିକ୍ଷାନୁଷ୍ଠାନର ବାର୍ଷିକ ଉତ୍ସବରେ ନିମନ୍ତ୍ରିତ ହୋଇ ଯୋଗଦାନ କରୁଥିଲି । ଏତଦ୍‌ବ୍ୟତୀତ କୋରାପୁଟ ଜିଲ୍ଲାର ବହୁ ସ୍ଥାନୀୟ ଅନୁଷ୍ଠାନ ଯଥା - ବିକାଶ ବିଦ୍ୟାଳୟ, ସରସ୍ୱତୀ ଶିଶୁ ବିଦ୍ୟା ମନ୍ଦିର, ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ବିବେକାନନ୍ଦ ବିଦ୍ୟାଳୟ ଆଦି ସେମାନଙ୍କ କାର୍ଯ୍ୟକ୍ରମରେ ଅତିଥି ହିସାବରେ ଯୋଗଦାନ କରିବାକୁ ସୁଯୋଗ ଦେଇଥିଲେ ।

**ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ ଜୟପୁରର ଦାୟିତ୍ୱ ଗ୍ରହଣ**

ନିର୍ଦ୍ଦେଶକ ଜେନାଙ୍କ ଅବସରର କିଛିଦିନ ପରେ ପ୍ରଫେସର ସେବକ ତ୍ରିପାଠୀ ନିର୍ଦ୍ଦେଶାଳୟର ଦାୟିତ୍ୱରେ ୨୦୦୬ ମସିହା, ଜାନୁୟାରୀ ମାସ ୩୧ ତାରିଖରେ ଯୋଗଦାନ କଲେ । ସେ ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କ ପ୍ରତି ଭଦ୍ରୋଚିତ ବ୍ୟବହାର କରି ନିର୍ଦ୍ଦେଶାଳୟର ଉନ୍ନତି ସହିତ ନିର୍ଦ୍ଦେଶାଳୟର ଅଧୀନରେ ଥିବା ସମସ୍ତ ପ୍ରଶିକ୍ଷଣ ଅନୁଷ୍ଠାନର ଉନ୍ନତି ପ୍ରତି ଧ୍ୟାନ ଦେଇଥିଲେ । ତାଙ୍କର ଶୈକ୍ଷିକ ଆଲୋଚନା ବୌଦ୍ଧିକ ଥିଲା । ସେ ଅନେକ ସମୟରେ ଅଧ୍ୟକ୍ଷମାନଙ୍କୁ ଡକାଇ ଅନୁଷ୍ଠାନର ମୌଳିକ ସମସ୍ୟା ସଂପର୍କରେ ଅବଗତ ହେଉଥିଲେ ଓ ସମସ୍ୟାର ସମାଧାନ ନିମନ୍ତେ ପ୍ରଚେଷ୍ଟା କରୁଥିଲେ ।

ମୁଁ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ, କୋରାପୁଟର ଅଧ୍ୟକ୍ଷ ଥିଲାବେଳେ ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ, ଜୟପୁରର ଅଧ୍ୟକ୍ଷ କୈଳାଶ ଚନ୍ଦ୍ର ଗୁରୁ ଏପ୍ରିଲ ୩୦, ୨୦୦୬ ମସିହାରେ ଅବସର ଗ୍ରହଣ କରିଥିଲେ । ତେଣୁ ସେ ପ୍ରତିଷ୍ଠାନର ମୁଖ୍ୟ ହିସାବରେ ମୋତେ ନିର୍ଦ୍ଦେଶାଳୟର ଆଦେଶନାମା ନଂ.୨୮୦୩ ତା ୧୯ । ୫ । ୨୦୦୬ରେ ଦାୟିତ୍ୱ ଦିଆଗଲା । ମୁଁ ଆଦେଶ ପାଇବାର ସପ୍ତାହକ ମଧ୍ୟରେ ସେଠାରେ ଯୋଗ ଦେଲି । ସେ ସମୟରେ ଭାରତ ସରକାରଙ୍କ ମାନବସମ୍ବଳ ବିକାଶ ମନ୍ତ୍ରାଳୟର ଅତିରିକ୍ତ ସଚିବ ଶ୍ରୀଯୁକ୍ତ କେ.ଏମ୍. ଆଚାର୍ଯ୍ୟଙ୍କ କୋରାପୁଟ, କଳାହାଣ୍ଡି ଆଦି ଜିଲ୍ଲାର ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନ ପରିଦର୍ଶନ କରିବାର ଥିଲା । ତା'ପରେ ସୁନାବେଡ଼ାଠାରେ ଏକ ସ୍ୱତନ୍ତ୍ର ଆଲୋଚନା ଚକ୍ରରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଜିଲ୍ଲାପାଳ ଓ ଶିକ୍ଷାବିତ୍‌ମାନଙ୍କ ସହିତ ଶୈକ୍ଷିକ ଆଲୋଚନା କରିବାର ଥିଲା ।

ପୂର୍ବରୁ ଦିଆଯାଇଥିବା କାର୍ଯ୍ୟକ୍ରମ ଅନୁଯାୟୀ ଶ୍ରୀଯୁକ୍ତ ଆଚାର୍ଯ୍ୟ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର କୋଠାବାଡ଼ି କାର୍ଯ୍ୟ କାହିଁକି ନ ହୋଇ ଦୀର୍ଘଦିନ ହେଲା ପଡ଼ି ରହିଛି ଅନୁଧ୍ୟାନ କରିବାକୁ ଆସିଲେ । ତା' ପୂର୍ବରୁ ଏସ୍.ସି.ଇ.ଆର.ଟିର ଉପନିର୍ଦ୍ଦେଶକ ଡକ୍ଟର ବାଳକୃଷ୍ଣ ପ୍ରହରାଜ କଲଜରେ ପହଞ୍ଚି ସମସ୍ତ କାଗଜପତ୍ର ପ୍ରସ୍ତୁତିରେ ସହାଯ୍ୟ କରିଥିଲେ । ମୋତେ ଭୁବନେଶ୍ୱରରୁ ନିର୍ଦ୍ଦେଶକ ତ୍ରିପାଠୀ ଫୋନ ମାଧ୍ୟମରେ କହିଥିଲେ, "ବ୍ରହ୍ମାବାବୁ, ଭାରତ ସରକାରଙ୍କ ଅତିରିକ୍ତ ଶାସନ ସଚିବ ଶ୍ରୀଯୁକ୍ତ କେ.ଏମ୍. ଆଚାର୍ଯ୍ୟଙ୍କ ପାଖରେ ଆମେ ଯେମିତି ଆମ ଦୋଷ ଦୁର୍ବଳତା ପକାଇବା ନାହିଁ । ସେଥିପାଇଁ ଆପଣ ଟିକିଏ ଦୃଷ୍ଟି ଦେବେ ।"

ସେତେବେଳେ ମୁଁ ତାଙ୍କୁ କହିଥିଲି, "କୋଠାବାଡ଼ି ପ୍ରସଙ୍ଗରେ ଦୀର୍ଘଦିନ ହେଲା କାହିଁକି କାର୍ଯ୍ୟ ହେଉ ନାହିଁ ତା'ର ସମସ୍ତ କାଗଜପତ୍ର ସହ ଏକ ସଂକ୍ଷିପ୍ତ ଟିପ୍ପଣୀ ମୁଁ ଆପଣଙ୍କୁ ଦେଇଅଛି । ସେସବୁ ତାଙ୍କୁ ଦେଇ ବୁଝାଇବାରେ ଆମର କୌଣସି ଅସୁବିଧା ହେବ ନାହିଁ ।"

ମୋ କଥା ଶୁଣି ପ୍ରଫେସର ତ୍ରିପାଠୀ କହିଲେ, "ବ୍ରହ୍ମାବାବୁ ! ସେ ସବୁ କାଗଜପତ୍ରରୁ ସରକାରୀ କଳର ଦୁର୍ବଳତା ଆପେ ଆପେ ଧରାପଡ଼ିଯିବ । ତେଣୁ ଆମକୁ ସତର୍କତାର ସହିତ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ପଡ଼ିବ ।"

ଯାହାହେଉ ଉଦ୍ଦିଷ୍ଟ ଦିନ ଶ୍ରୀଯୁକ୍ତ ଆଚାର୍ଯ୍ୟ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟରେ ପହଞ୍ଚିଲେ । ତାଙ୍କ ସହିତ ପଛକୁ ପଛ ବିଭିନ୍ନ ଗାଡ଼ିରୁ ବିଦ୍ୟାଳୟ ଗଣଶିକ୍ଷା ସଚିବ, ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟର ନିର୍ଦ୍ଦେଶକ ପ୍ରଫେସର ତ୍ରିପାଠୀ, ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ଶ୍ରୀଯୁକ୍ତ ଦେବେନ୍ଦ୍ର ମିଶ୍ର, ଆଇ.ଏ.ଏସ୍ ଆଦି ଓହ୍ଲାଇଲେ ।

ମୁଁ ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କୁ ସ୍ୱାଗତ ଜଣାଇଲି । ସେ ଅଧ୍ୟକ୍ଷଙ୍କ କାର୍ଯ୍ୟାଳୟକୁ ସିଧାସିଧା ନଯାଇ ଅର୍ଦ୍ଧ ତିଆରି ଭଗ୍ନ କୋଠାଘର ପାଖକୁ ଯାଇ କହିଲେ, "ଓଃ ! ଏହାତ ପୁରୁଣା ମହେନ୍-ଜୋ-ଦାରୋ ଓ ହରପ୍ପା ସଭ୍ୟତାର ଖଣ୍ଡ ବିଖଣ୍ଡିତ ସ୍ମୃତି ।"

ତା'ପରେ ସେ ମୋତେ ପଚାରିଲେ, "ଏ ପର୍ଯ୍ୟନ୍ତ ଭାରତ ସରକାରଙ୍କ ଟଙ୍କା ଆସିବା ସତ୍ତ୍ୱେ ଏହାର କାର୍ଯ୍ୟ ନ ହୋଇ ପଡ଼ି ରହିଛି କାହିଁକି ?"

ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, "ଏ ପର୍ଯ୍ୟନ୍ତ ସରକାରଙ୍କ ଅର୍ଥ ବିଭାଗ ତରଫରୁ ଆମକୁ L. C. (Letter of Credit) ମିଳିନାହିଁ ।

ଏଇକଥା ଶୁଣୁ ଶୁଣୁ ଶିକ୍ଷା ସଚିବ ଗଗନ ବିହାରୀ ଧଳ କହିଲେ, ଆପଣ କାହିଁକି ବାଜେ କଥା କହୁଛନ୍ତି ?"

ସଙ୍ଗେ ସଙ୍ଗେ ଜଣେ ଗୋରା ଦୀର୍ଘକାୟ ବ୍ୟକ୍ତି ନିର୍ଭୀକ ଭାବରେ ଉତ୍ତର ଦେଲେ, "The Principal is right in his statement. The work has been stopped due to want of L.C. from the Government."

ସେ ଭଦ୍ରବ୍ୟକ୍ତିଙ୍କୁ ମୁଁ ପୂର୍ବରୁ ଦେଖି ନ ଥିଲି କି ଜାଣି ନ ଥିଲି । ମୋ ପ୍ରତି ଏପରି 'ବାଜେ' ଶବ୍ଦ ପ୍ରୟୋଗ କରିଥିବା ବ୍ୟକ୍ତିଙ୍କ ବିପକ୍ଷରେ ଆଉ ଜଣେ ନିର୍ଭୀକ ବ୍ୟକ୍ତି ସତ କଥା କହି ଯେପରି ଭାବେ ସମସ୍ତଙ୍କ ଆଗରେ ମୋର ସମ୍ମାନ ରଖିଲେ, ତାହା ଉପସ୍ଥିତ ଲୋକମାନଙ୍କ ମଧ୍ୟରେ ଗୁଞ୍ଜରଣ ସୃଷ୍ଟିକଲା ।

କିଛି ସମୟ ପରେ ଶ୍ରୀଯୁକ୍ତ ଆଚାର୍ଯ୍ୟ କଲେଜ ବାରଣ୍ଡା ମଧ୍ୟକୁ ପ୍ରବେଶ କଲେ । ସେ ସମୟରେ ତାଙ୍କର ନଜର ପଡ଼ିଲା ଶିକ୍ଷାଦାନ ଚାଲିଥିବା ଏକ ଶ୍ରେଣୀ ଗୃହ ଉପରେ । ସେ ତତ୍‌କ୍ଷଣାତ୍ ସେଠାକୁ ଗଲେ ଓ ଇନ୍ଦିରାଗାନ୍ଧୀ ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ କଲେଜରେ ଚାଲିଥିବା ବି.ଏଡ଼୍ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ସଂପର୍କରେ ଅବଗତ ହେଲେ ।

ସେତେବେଳେ ସେ କାହିଁକି କୋରାପୁଟରେ ଉପଗ୍ରହ ମାଧ୍ୟମରେ ବି.ଏଡ଼୍ ଶିକ୍ଷା କାର୍ଯ୍ୟକ୍ରମକୁ ସଂଯୋଗ କରାଯାଉ ନାହିଁ ବୋଲି ପ୍ରଶ୍ନ କଲେ ।

ତାଙ୍କର ପ୍ରଶ୍ନ ଶୁଣି ମହାବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଦିବାକର ଷଡ଼ଙ୍ଗୀ କୋରାପୁଟର ବଣପାହାଡ଼ଘେରା ଭୌଗୋଳିକସ୍ଥିତି କିପରି ଦୂରଶିକ୍ଷା କାର୍ଯ୍ୟକ୍ରମକୁ ଟେଲିଭିଜନ ମାଧ୍ୟମରେ ପ୍ରସାରଣ କରିବାରେ ବାଧା ସୃଷ୍ଟି କରୁଛି ବୋଲି ବର୍ଣ୍ଣନା କଲେ । ଏତଦ୍‌ବ୍ୟତୀତ ସେ ଶିକ୍ଷାରେ କିପରି ପ୍ରଯୁକ୍ତି ବିଦ୍ୟା (Technology)ର ପ୍ରୟୋଗ କରାଯାଇ ଶିକ୍ଷକ ପ୍ରଶିକ୍ଷଣକୁ ବଳିଷ୍ଠ କରାଯାଇ ପାରିବ ସେ ସଂପର୍କରେ ଆଲୋକପାତ କଲେ ।

ଅଧକ୍ଷଙ୍କ କାର୍ଯ୍ୟାଳୟ ବସିବା ପାଇଁ ପର୍ଯ୍ୟାପ୍ତ ନଥିବା ଯୋଗୁଁ ଶ୍ରୀଯୁକ୍ତ ଆଚାର୍ଯ୍ୟ ମହାବିଦ୍ୟାଳୟର ଏକ କୋଠରିରେ ବସି ପ୍ରାକ୍ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଓ ସେବାକାଳୀନ ପ୍ରଶିକ୍ଷଣ (Inservice Training) କାର୍ଯ୍ୟକ୍ରମ ସଂପର୍କରେ ମୂଲ୍ୟାୟନ କଲେ । ସେ ପ୍ରଥମେ ଉପସ୍ଥିତ ଅଧ୍ୟାପକମାନଙ୍କୁ ବ୍ୟକ୍ତିଗତ ଭାବେ ପ୍ରଶ୍ନ ପଚାରି ବିଭିନ୍ନ ତଥ୍ୟ ସଂପର୍କରେ ଅବଗତ ହେଲେ । ବର୍ଷକର କାର୍ଯ୍ୟକ୍ରମରେ ସେମାନେ କ'ଣ କରୁଛନ୍ତି ବୋଲି ପ୍ରଶ୍ନ କଲେ ।

ଏସବୁ ଆଲୋଚନା ସେ ଏକ ହାର୍ଦ୍ଦିକ ପରିବେଶରେ କରୁଥିଲେ । ଅଧଘଣ୍ଟା ବିତିଗଲା ପରେ ମୋ ଆଡ଼କୁ ଚାହିଁ କହିଲେ, ମୋର ଶେଷ ପ୍ରଶ୍ନ ଅଧକ୍ଷଙ୍କ ପାଇଁ ।

ଏହାପରେ ସେ ମୋତେ ପଚାରିଲେ, "ଆପଣଙ୍କ କଲେଜକୁ ସେବାକାଳୀନ ପ୍ରଶିକ୍ଷଣ ପାଇଁ ଦିଆଯାଇଥିବା ଅର୍ଥର ବିନିଯୋଗ କାହିଁକି ଆଶାନୁରୂପ ହୋଇ ନାହିଁ ?"

ମୁଁ ତାଙ୍କୁ କହିଲି, "ଏଇ ପ୍ରଶିକ୍ଷଣ ଅନୁଷ୍ଠାନ 'ଶିକ୍ଷକ ଶିକ୍ଷା ପ୍ରତିଷ୍ଠାନ (College of Teacher Educaion)ର ପଦମର୍ଯ୍ୟାଦା ପାଇବା ପରେ ଏଠାରେ ପ୍ରାୟ ଚଉଦ ଜଣ ଅଧ୍ୟାପକ ରହିବା କଥା, ମାତ୍ର ମତେ ମିଶାଇ ଆମେ ପାଞ୍ଚଜଣ ଅଧ୍ୟାପକ ଅଛୁ ।"

ସଙ୍ଗେ ସଙ୍ଗେ ନିର୍ଦ୍ଦେଶକ ତ୍ରିପାଠୀ ହସ୍ତକ୍ଷେପ କରି କହିଲେ, "ତଥାପି ତ ଆମକୁ ସେବାକାଳୀନ ଶିକ୍ଷକମାନଙ୍କ ପ୍ରଶିକ୍ଷଣ ପାଇଁ ଧ୍ୟାନ ଦେବାକୁ ପଡ଼ିବ ।"

ନିର୍ଦ୍ଦେଶକଙ୍କ ପାଟିରୁ କଥା ଛଡ଼େଇ ଶ୍ରୀଯୁକ୍ତ ଆଚାର୍ଯ୍ୟ କହିଲେ, "ପ୍ରଫେସର ତ୍ରିପାଠୀ, ପାଞ୍ଚଜଣ ଶିକ୍ଷକ କ'ଣ ପ୍ରାକ୍ ସେବାକାଳୀନ ପ୍ରଶିକ୍ଷଣ (Pre- service Training Programme) ସହିତ ସେବାକାଳୀନ ପ୍ରଶିକ୍ଷଣ କାର୍ଯ୍ୟକ୍ରମ କରିପାରିବେ ? ସେମାନେ ସେ କାର୍ଯ୍ୟକ୍ରମରେ ପାଠ ପଢ଼ାଇଲେ, ଏଠାରେ ତ ଶିକ୍ଷାଦାନ ନିଶ୍ଚିତ ଭାବେ ବାଧାପ୍ରାପ୍ତ ହେବ ।"

ଏହା କହି ସେ ବସିବା ସ୍ଥାନରୁ ଉଠି ପଡ଼ିଲେ । ଗଲାବେଳେ ସେ ହସି ହସି କହିଲେ, "ପ୍ରଫେସର ତ୍ରିପାଠୀ, ଆଗାମୀ କାଲି ସୁନାବେଡ଼ାଠାରେ ହେଉଥିବା ସେମିନାରକୁ ଏ ପ୍ରିନ୍‌ସପାଲଙ୍କୁ ନିମନ୍ତ୍ରଣ କର ।"

ତା'ପର ଦିନ ସୁନାବେଡ଼ାସ୍ଥିତ ନାଲକୋ ସମ୍ମିଳନୀକକ୍ଷରେ ସେମିନାର କାର୍ଯ୍ୟକ୍ରମ ଆରମ୍ଭ ହେଲା । ସର୍ବପ୍ରଥମେ ଶିକ୍ଷକ ଶିକ୍ଷାକୁ କିପରି ଅଧିକ ବଳିଷ୍ଠ (Viable) କରାଯାଇ ପାରିବ ସେ ସଂପର୍କରେ ପ୍ରଫେସର ସେବକ ତ୍ରିପାଠୀ ପ୍ରାଞ୍ଜଳଭାବେ ପାୱାର ପଏଣ୍ଟ ଉପସ୍ଥାପନା ଦ୍ୱାରା ନିଜର ବକ୍ତବ୍ୟ ରଖିଲେ । ତାଙ୍କର ବକ୍ତବ୍ୟକୁ ଉପସ୍ଥିତ ସମସ୍ତ ବ୍ୟକ୍ତି ଆଗ୍ରହର ସହିତ ଶୁଣୁଥିଲେ । ଏହାପରେ ଉପସ୍ଥିତ ଜିଲ୍ଲାପାଳମାନେ ସେମାନଙ୍କର ବକ୍ତବ୍ୟ ରଖିଥିଲେ । ସମସ୍ତଙ୍କ ମତାମତ ନିଆଯାଇଥିଲା । ଅଧ୍ୟକ୍ଷ ହିସାବରେ ମୁଁ ଓ ଜିଲ୍ଲାଶିକ୍ଷା ପ୍ରତିଷ୍ଠାନ, ଜୟପୁରର ପୂର୍ବତନ ଅଧ୍ୟକ୍ଷ କୈଳାସଚନ୍ଦ୍ର ଗୁରୁ ମଧ୍ୟ ତାଙ୍କର ବକ୍ତବ୍ୟ ଓ ମତାମତ ରଖିଥିଲେ । କୋରାପୁଟ ଜିଲ୍ଲାର ଶିକ୍ଷାମଣ୍ଡଳାଧୀଶ (Inspector of Schools) ଡକ୍ଟର ଧ୍ରୁବ ଚରଣ ପରିଡ଼ା ମଧ୍ୟ ତାଙ୍କର ସୁଚିନ୍ତିତ ମତାମତ ଦେଇଥିଲେ ।

ଶ୍ରୀଯୁକ୍ତ ଆଚାର୍ଯ୍ୟ ନିଜର ପରିଦର୍ଶନ ସଂପର୍କୀୟ କେତେକ ଅଭିଜ୍ଞତା ବର୍ଣ୍ଣନା କରିବା ସହିତ ଶିକ୍ଷା ପ୍ରଶାସନ ସହିତ ସଂଶ୍ଳିଷ୍ଟ କେତେକ ନୀତିଗତ ବିଷୟ ସଂପର୍କରେ

ସୂଚନା ଦେଇଥିଲେ । କଥା ପ୍ରସଙ୍ଗରେ ସେ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ଦୀର୍ଘଦିନ ହେଲା ପଡ଼ି ରହିଥିବା ଘର ସଂପର୍କରେ ଉଲ୍ଲେଖ କରିଥିଲେ । କହିଥିଲେ, "ଦୀର୍ଘଦିନ ହେଲା ପଡ଼ି ରହିଥିବା ସେ କାମ ପାଇଁ ଉପସ୍ଥିତ ଅଧକ୍ଷ ଦାୟୀ ନୁହଁନ୍ତି କିମ୍ବା ଏଠାରେ ଥିବା କୌଣସି ବ୍ୟକ୍ତି ମଧ୍ଯ ଦାୟୀ ନୁହଁନ୍ତି । ମାତ୍ର ଉଚ୍ଚସ୍ତରରେ ସମନ୍ୱୟର ଅଭାବରେ ଏହା ଘଟିଛି ।"

ଅଳ୍ପ ସମୟର ସଂପର୍କ ମଧ୍ୟରେ ଶ୍ରୀଯୁକ୍ତ ଆଚାର୍ଯ୍ୟ ମୋ ପ୍ରତି ନମନୀୟ ଆଚରଣ ପ୍ରଦର୍ଶନ କରିଥିଲେ । ସଭାଶେଷରେ ସେ ସମ୍ମିଳନୀ କକ୍ଷର ବାହାରେ ବୁଲୁଥିଲେ । ମୁଁ ଆସିଲାବେଳେ ତାଙ୍କୁ ଦେଖାକଲି । ସେ ମୋତେ ଦେଖି ଶିକ୍ଷା ସଚିବ ଶ୍ରୀଯୁକ୍ତ ଧଳ ଓ ନିର୍ଦ୍ଦେଶକ ପ୍ରଫେସର ତ୍ରିପାଠୀଙ୍କୁ ତତ୍‌କ୍ଷଣାତ୍ ସେଠାକୁ ଡ଼କାଇ କହିଲେ, "ପ୍ରିନ୍‌ସପାଲଙ୍କ କୋଠାଘର କାମ ଯେମିତି ହୁଏ, ତାହା ଆପଣମାନେ ଦେଖିବେ ।"

ଯାହାହେଉ ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ହସ୍ତକ୍ଷେପ ଯୋଗୁଁ ପରବର୍ତ୍ତୀ ସମୟରେ ମହାବିଦ୍ୟାଳୟର କୋଠାଘର ଓ ମହିଳା ଛାତ୍ରାବାସର ନିର୍ମାଣ କାର୍ଯ୍ୟ ସମ୍ଭବ ହୋଇ ପାରିଥିଲା ।

**ସରକାରୀ ଚାକିରିରୁ ଅବସର ଗ୍ରହଣ**

କ୍ରମଶଃ ମୋର ସରକାରୀ ଚାକିରିରୁ ଅବସର ଗ୍ରହଣ ଦିବସ ପାଖେଇ ଆସିଲା । ମୋତେ ବିଭିନ୍ନ ସ୍ଥାନୀୟ ସାହିତ୍ୟିକ ଅନୁଷ୍ଠାନ ତରଫରୁ ବିଦାୟ ସମ୍ବର୍ଦ୍ଧନା ଦିଆଗଲା । ଅଧ୍ୟକ୍ଷ ନାରାୟଣ ପଣ୍ଡା, ଡକ୍ଟର ଜଗବନ୍ଧୁ ସାମଲ, ଅଧ୍ୟାପିକା ପ୍ରୀତିଧାରା ସାମଲ, ଅଧ୍ୟାପକ ରବି ଶତପଥୀ, ଜୟପୁରର ବିଶିଷ୍ଟ କବି କମଳାକୃଷ୍ଣ ତ୍ରିପାଠୀ, ଶିକ୍ଷକ ବନ୍ଧୁ ଜଳଧର ସ୍ୱାଇଁ ପ୍ରମୁଖ ଏକ ସ୍ୱତନ୍ତ୍ର ଆୟୋଜିତ ବଣଭୋଜି କାର୍ଯ୍ୟକ୍ରମରେ ମୋତେ ବିଦାୟକାଳୀନ ଶୁଭେଚ୍ଛା ଜଣାଇଲେ ।

କୋରାପୁଟ ଜିଲ୍ଲା ଶିକ୍ଷା ମଣ୍ଡଳାଧୀଶ ଡକ୍ଟର ଧ୍ରୁବଚରଣ ପରିଡ଼ାଙ୍କ ସମୟରେ ମୋର ଶିକ୍ଷାମଣ୍ଡଳାଧୀଶ କାର୍ଯ୍ୟାଳୟ ସହିତ ଘନିଷ୍ଠ ସମ୍ପର୍କ ଥିଲା । ଶିକ୍ଷାମଣ୍ଡଳାଧୀଶ କାର୍ଯ୍ୟାଳୟ ଆନୁକୂଲ୍ୟରେ ଶିକ୍ଷାମଣ୍ଡଳାଧୀଶ ଡକ୍ଟର ପରିଡ଼ା ଏକ ସ୍ୱତନ୍ତ୍ର ବିଦାୟ ସମ୍ବର୍ଦ୍ଧନା ଉତ୍ସବ କରି ମୋର ଭବିଷ୍ୟତ ଜୀବନର ଶୁଭକାମନା କରିଥିଲେ ।

ମୋର କୋରାପୁଟ ରହଣି ମଧ୍ୟରେ ମୁଁ ଦୁଇଥର ରାଜ୍ୟସ୍ତରୀୟ ଓ ରାଷ୍ଟ୍ରପତି ସ୍ତରୀୟ ପୁରସ୍କାର ନିମନ୍ତେ ଶିକ୍ଷକ ଚୟନ କମିଟିରେ ଥିଲି । ଏଥିରେ ନିଜେ ଜିଲ୍ଲାପାଳ ସଭାପତି ଥିଲେ । ଅନ୍ୟ ସଦସ୍ୟ ଭାବରେ ଡି.ଏ.ଭି ମହାବିଦ୍ୟାଳୟର ଅଧକ୍ଷ ଓ କୋରାପୁଟର ବିଶିଷ୍ଟ ଶିକ୍ଷକ ଶ୍ରୀଯୁକ୍ତ ରାମଚନ୍ଦ୍ର ସାହୁ ଥିଲେ । ଶିକ୍ଷାମଣ୍ଡଳାଧୀଶ ଡକ୍ଟର

ପରିଡ଼ା କନ୍‌ଭେନ୍‌ର ଥିଲେ । ଆମେ ଶିକ୍ଷା ଜିଲ୍ଲା ତରଫରୁ ଶିକ୍ଷକ ମନୋନୟନ ଅତି ନିରପେକ୍ଷ ଭାବରେ କରୁଥିଲୁ । ଡକ୍ଟର ପରିଡ଼ା କୌଣସି କ୍ଷେତ୍ରରେ କାହା ସପକ୍ଷରେ ପଦଟିଏ ମଧ୍ୟ କହୁ ନ ଥିଲେ । ମାତ୍ର ପରିତାପର ବିଷୟ ଥିଲା ଯେ ପ୍ରତିଥର ପୁରସ୍କାରର ଫଳାଫଳ ଜଣାପଡ଼ିଲା ପରେ କେତେକ ସମ୍ବାଦପତ୍ରରେ ଡକ୍ଟର ପରିଡ଼ାଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ସମ୍ବାଦମାନ ବାହାରୁଥିଲା ।

୨୦୦୭ ମସିହା, ଏପ୍ରିଲ ମାସ ୩୦ ତାରିଖ ଥିଲା ମୋର ଚାକିରି ଜୀବନର ଅବସର ଦିନ । ସେଦିନ ଥିଲା ମଧ୍ୟ ବି.ଏଡ୍ ପରୀକ୍ଷାର୍ଥୀମାନଙ୍କ ବିଦାୟର ଦିନ । ତା'ର କିଛିଦିନ ପୂର୍ବରୁ ଆମେ ଏଇ ଏପ୍ରିଲ ମାସରେ ମହାବିଦ୍ୟାଳୟର ବାର୍ଷିକ ଉତ୍ସବ ଅନୁଷ୍ଠିତ କରିଥିଲୁ । ମୁଁ ସେଇ ସମୟରେ ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ, ଜୟପୁରର ମୁଖ୍ୟଥିବା ହେତୁ ନିର୍ଦ୍ଦେଶକ ତ୍ରିପାଠୀଙ୍କୁ ଦିନବେଳେ କୋରାପୁଟରେ ଓ ସନ୍ଧ୍ୟା ସମୟରେ ଜୟପୁର ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନରେ ବାର୍ଷିକ ଉତ୍ସବରେ ଯୋଗଦେବାକୁ ନିମନ୍ତ୍ରଣ କରିଥିଲି । ସେ ସମ୍ମତି ପ୍ରଦାନ କରିଥିଲେ । ମାତ୍ର ସେ ସମୟରେ ସେ ରାଜ୍ୟ ବାହାରକୁ କୌଣସି କାମରେ ଯାଇଥିଲେ । ସେ ଯେ ଯୋଗଦେବେ ସେ ଆଶା ମଧ୍ୟ ଆମେ ଛାଡ଼ି ଦେଇଥିଲୁ । ମାତ୍ର ସେ କାର୍ଯ୍ୟକ୍ରମର ପୂର୍ବଦିନ ଭୁବନେଶ୍ୱରରେ ପୂର୍ବାହ୍ନରେ ପହଞ୍ଚିଥିଲେ । ଆସିବା ନ ଆସିବା ମଧ୍ୟରେ ସେ ସପରିବାର ହୀରାଖଣ୍ଡ ଏକ୍ସପ୍ରେସ୍‌ରେ ବିଜୟନଗରମ୍ ଆସିଲେ । ସେଠାରୁ ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନର ଅଧ୍ୟାପକ ଯୁଗଳ କିଶୋର ମିଶ୍ର ତ୍ରିପାଠୀ ଦମ୍ପତିଙ୍କୁ ସ୍ୱାଗତ ଜଣାଇ କୋରାପୁଟ ଜଗନ୍ନାଥ ମନ୍ଦିରର ଅତିଥି ଭବନରେ ପହଞ୍ଚାଇ ଦେଇଥିଲେ ।

ଦିନରେ ସେ କୋରାପୁଟ ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ବାର୍ଷିକ ଉତ୍ସବରେ ଯୋଗଦାନ କରି ଶିକ୍ଷା ସଂପର୍କରେ ଏକ ସାରଗର୍ଭକ ଉଦ୍‌ବୋଧନ ଉପସ୍ଥିତ ଅଧ୍ୟାପକ, ଶିକ୍ଷାର୍ଥୀ, ଅଭିଭାବକ ଓ ଗଣମାଧ୍ୟମର ପ୍ରତିନିଧିମାନଙ୍କ ସମକ୍ଷରେ ରଖିଥିଲେ । ବକ୍ତବ୍ୟର ଶେଷ ଭାଗରେ ସେ କହିଥିଲେ, "ବହୁଘାତ ପ୍ରତିଘାତ ମଧ୍ୟରେ ମୁଁ ଆସିଛି । ଏପରିକି ହୀରାଖଣ୍ଡରେ ଚଢ଼ି ପୁଣି ନ ଆସିବାକୁ ନିଷ୍ପତ୍ତି ନେଇ ଓହ୍ଲେଇ ଯାଇଛି । ମାତ୍ର ଏସବୁ ମଧ୍ୟରେ ମୋ ପାଖରେ ଗୋଟିଏ ପ୍ରଶ୍ନ ଥିଲା, ତାହା ହେଉଛି ବିଶ୍ୱାସର ପ୍ରଶ୍ନ । ନିକଟରେ ଅବସର ନେବାକୁ ଥିବା ଜଣେ ଅଧ୍ୟକ୍ଷଙ୍କୁ କଥା ଦେଇ ଶେଷ ମୁହୂର୍ତ୍ତରେ ବିଶ୍ୱାସକୁ ଭାଙ୍ଗିବାକୁ ମୋ ବିବେକ ମୋତେ ଦଂଶନ କରିଥିଲା ।"

ସେଦିନ ସାଂସ୍କୃତିକ କାର୍ଯ୍ୟକ୍ରମ ଓ ମଧ୍ୟାହ୍ନଭୋଜନ ପରେ ସେ ସ୍ୱଳ୍ପ ସମୟ ପାଇଁ ଶାବର ଶ୍ରୀକ୍ଷେତ୍ର ଅତିଥି ଭବନରେ ବିଶ୍ରାମ ନେଇଥିଲେ । ଅପରାହ୍ନରେ ସନ୍ଧ୍ୟା

ସମୟରେ ଆସି ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ, ଜୟପୁରର ବାର୍ଷିକ ଉତ୍ସବରେ ଯୋଗଦେଇ ରାତି ନଅଟା ପରେ ପୁଣି ବିଜୟନଗରମ୍ ବାଟେ ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ କରିଥିଲେ ।

ମୁଁ କୋରାପୁଟରେ କାମ କଲାବେଳେ ଅନୁଭବ କରିଥିଲି ଯେ ଗୋଟିଏ ମହାବିଦ୍ୟାଳୟ ବଡ଼ ହେଉ ବା ଛୋଟ ହେଉ ଅଧ୍ୟକ୍ଷଙ୍କର କାର୍ଯ୍ୟର ଚାପ ପ୍ରାୟତଃ ଉଣା ଅଧିକେ ସମାନ ଥାଏ । ମୁଁ ୨୦୦୭ ଏପ୍ରିଲ ୩୦ ପୂର୍ବରୁ କଲେଜର ସମସ୍ତ କାର୍ଯ୍ୟ ସାରିବାକୁ ଆପ୍ରାଣ ଚେଷ୍ଟା କରିଥିଲି ଓ ସାରିଥିଲି ମଧ୍ୟ । କୌଣସି କର୍ମଚାରୀଙ୍କ ବ୍ୟକ୍ତିଗତ କାମ ଓ 'ଗୋପନୀୟ ଚରିତ୍ର ପଞ୍ଜିକା' ଲେଖିବା କାର୍ଯ୍ୟ ମଧ୍ୟ ବାକି ରଖି ନ ଥିଲି । ଏସବୁ କାର୍ଯ୍ୟ ପଛରେ ଥିଲା ଗୋଟିଏ ଯୁକ୍ତି । କେହି ଯେମିତି ମୋର ଅବସର ପରେ ହଇରାଣ ହେବେ ନାହିଁ କିମ୍ବା ମୋ ଘରକୁ କୌଣସି କାଗଜ ନେଇ ଆସିବେ ନାହିଁ ।

ଡି.ଏ.ଭି ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ କାମକଲାବେଳେ ମୋର ସୌଭାଗ୍ୟ ଥିଲା ଯେ ମୁଁ ଡକ୍ଟର ପ୍ରଦୀପ କୁମାର ଡାଙ୍ଗଙ୍କ ଭଳି ଜଣେ ଅମାୟିକ, କାର୍ଯ୍ୟଦକ୍ଷ, କର୍ତ୍ତବ୍ୟନିଷ୍ଠ ବ୍ୟକ୍ତିଙ୍କୁ ପ୍ରଥମ ସହକାରୀ ଭାବେ ପାଇଥିଲି । କଲେଜ କାର୍ଯ୍ୟାଳୟର ମୁଖ୍ୟ କିରାଣି ଚିନ୍ତାମଣି ସାହୁଙ୍କ ସହିତ ବିଭିନ୍ନ ସମୟରେ ମତ ଭିନ୍ନତା ଥିଲେ ମଧ୍ୟ ସେ ମୋ କାର୍ଯ୍ୟକାଳ ସମୟରେ ମୋର ରକ୍ଷାକବଚ ରୂପେ କାର୍ଯ୍ୟ କରୁଥିଲେ । ମୋର ଚରମ ଦୁର୍ଭାଗ୍ୟଥିଲା ଯେ ମୁଁ ଜନୈକ ଖଳନାୟକଙ୍କ ସଂପର୍କରେ ଆସିଥିଲି ଯେକି ତାଙ୍କର ବ୍ୟକ୍ତିଗତ ସ୍ୱାର୍ଥ ଚରିତାର୍ଥ ନ ହେବା ଯୋଗୁଁ ମୋ ବିରୋଧରେ ବେନାମୀ ଦରଖାସ୍ତ ପକାଇ ଉଚ୍ଚସ୍ତରରୁ ତଦନ୍ତର ସମ୍ମୁଖୀନ କରାଇଥିଲେ ଓ ବିଭିନ୍ନ କୈଫିୟତ ଦେବାରେ ମୋର ମୂଲ୍ୟବାନ ସମୟ ନଷ୍ଟ କରିଥିଲେ । ମୋର ସବୁଠାରୁ ଗ୍ରହଣୀୟ କାର୍ଯ୍ୟଥିଲା ଯେ ବି.ଏଡ୍ ପିଲାମାନଙ୍କୁ ଫେଲ କରାଇବାର ଧମକ ଦେଇ ଦୀର୍ଘଦିନ କାଳ ଟିଉସନ୍ କରି ଆସୁଥିବା ଜନୈକ ଅଧ୍ୟାପକଙ୍କ ତଥା କଥିତ ଟିଉସନ୍ ମୋ ସମୟରେ ବନ୍ଦ କରି ଦେଇଥିଲି ଓ ମହାବିଦ୍ୟାଳୟକୁ ଦୀର୍ଘବର୍ଷର ବଦନାମରୁ ରକ୍ଷା କରିଥିଲି । ମୋର ପୁଣ୍ୟ ଥିଲା ଯେ ମୁଁ ମୋର ନିଜସ୍ୱ ଶକ୍ତି ଓ ଅନ୍ୟମାନଙ୍କ ସୌହାର୍ଦ୍ଦ୍ୟ ବଳରେ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ଉନ୍ନତି କ୍ଷେତ୍ରରେ ମୋର ସମୟ ବିନିଯୋଗ କରିଥିଲି ଓ ସେଥିରେ ମଧ୍ୟ ସଫଳ ହୋଇଥିଲି ।

**ଅବସର ଦିନର ଅନୁଭୂତି**

କଥାରେ ଅଛି ସମୟ ଓ ଜୁଆର କାହାକୁ ଅପେକ୍ଷା କରନ୍ତି ନାହିଁ । ଏପ୍ରିଲ୩୦, ୨୦୦୭ ତା' ବାଟରେ ଆସି ପହଞ୍ଚିଲା । ପିଲାମାନେ ଓ ଅଧ୍ୟାପକଗଣ ଏକ ଗତାନୁଗତିକ ବିଦାୟ ସମ୍ବର୍ଦ୍ଧନାର ଆୟୋଜନ କଲେ ।

ଦିନ ଗୋଟାଏ ବେଳେ, ମୋତେ ପିଲାମାନେ ବିଦାୟ ସଭାକୁ ଯିବାକୁ ଡ଼ାକିଲେ, ମୁଁ ଗଲି । ଅଧ୍ୟାପକ ଓ ପିଲାମାନେ ସେମାନଙ୍କର ବକ୍ତବ୍ୟ ରଖିଲେ । କିଏ କେଉଁ ଦୃଷ୍ଟିରୁ କ'ଣ କହିଲେ ସେଥିପାଇଁ ମୋ ନଜର ରହିଲା ନାହିଁ । ସେଦିନ ମୁଁ ମାନସିକ ସ୍ତରରେ ଅତ୍ୟନ୍ତ ଆନନ୍ଦିତ ଥିଲି । କାରଣ ଆଉ କେତୋଟି ମୁହୂର୍ତ୍ତରେ ମୁଁ ଦୀର୍ଘ ପଇଁତିରିଶ ବର୍ଷ ବନ୍ଧନରୁ ମୁକ୍ତ ହୋଇ ଭୁବନେଶ୍ୱରସ୍ଥ ପଟିଆ ଷ୍ଟେସନ ନିକଟସ୍ଥ ମୋର ବାସଭବନ ବ୍ରହ୍ମାନିବାସକୁ ଚାଲିଯିବି । ସେଠି କାହାକୁ ଅବାଞ୍ଛିତ କୈଫିୟତ ଦେବାକୁ ପଡ଼ିବ ନାହିଁ, ଯଦି ଦେବାକୁ ପଡ଼ିବ ତେବେ ସେଇ ପରଂବ୍ରହ୍ମ ପରମେଶ୍ୱରଙ୍କୁ ଯେ ସତ୍ୟ, ସନାତନ, ନିର୍ଲିପ୍ତ ଓ ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ ଚେତନ ଓ ଅବଚେତନ ଶକ୍ତିକୁ 'ସମନ୍ୟାୟ' ପ୍ରଦାନ କରିଥାନ୍ତି ।

ମୋର ବିଦାୟକାଳୀନ ଅଭିଭାଷଣ ଅତି ସଂକ୍ଷିପ୍ତ ଥିଲା । ଭାଷଣ ମଧ୍ୟରେ ଲକ୍ଷ୍ୟକଲି କେତେକ ପିଲା କାନ୍ଦିବାକୁ ଆରମ୍ଭ କରିଛନ୍ତି । ମୁଁ ସେମାନଙ୍କ ଉଦ୍ଦେଶ୍ୟରେ କହିଥିଲି, "ଯେତେବେଳେ ଯିଏ ବିଦାୟ ନେଉଛନ୍ତି; ତାଙ୍କୁ ଯଦି ହସି ହସି ବିଦାୟ ଦିଆଯାଏ, ତେବେ ତାଙ୍କ ବିଦାୟ ଚିତ୍ତାକର୍ଷକ ହୁଏ । ପରବର୍ତ୍ତୀ ଜୀବନକାଳ ପାଇଁ ସମସ୍ତଙ୍କ ହସ ହସ ଶୁଭେଚ୍ଛା ହିଁ ମନରେ ଶାନ୍ତି ଆଣି ଦେଇଥାଏ ।"

ବିଦାୟକାଳୀନ ସ୍ମୃତି ହିସାବରେ ମୋତେ ମହାବିଦ୍ୟାଳୟ ତରଫରୁ ଅଳ୍ପ କିଛି ଉପହାର ଦିଆଯାଇଥିଲା । ସବୁଠାରୁ ଶ୍ରେଷ୍ଠ ଉପହାର ଥିଲା ପିଲାମାନଙ୍କ ଓ ସହକର୍ମୀମାନଙ୍କର ସ୍ନେହ, ଶ୍ରଦ୍ଧାର ପ୍ରତୀକ ଓ ପିଲାମାନଙ୍କ ଦ୍ୱାରା ପ୍ରସ୍ତୁତ ମୋ ରଚିତ ଗୀତ ବହି "କେମିତି ଗଢ଼ିବେ ସନ୍ତାନ ସେମାନେ"ର ଅଡ଼ିଓ କ୍ୟାସେଟ୍ । । ଏହି କ୍ୟାସେଟ୍ ଶ୍ରୀଯୁକ୍ତ ଗଙ୍ଗାଧର ସାହୁଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ଆମେ ସମସ୍ତେ ଏକାଠି ମହାବିଦ୍ୟାଳୟର ବାରଣ୍ଡାରେ ମଧ୍ୟାହ୍ନଭୋଜନ କରିଥିଲୁ । ସେଦିନ ପାଞ୍ଚଟା ବେଳେ ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ ଜୟପୁରର ଅଧ୍ୟାପକ ଶ୍ରୀଯୁକ୍ତ ନରସିଂହ ପାଣିଗ୍ରାହୀ, ଅଧ୍ୟାପକ ନୀଳାଚଳ ପ୍ରଧାନ, ଅଧ୍ୟାପକ ଯୁଗଳ କିଶୋର ମିଶ୍ର ପ୍ରମୁଖ ଏକ କାର ସହିତ ଆସି ପହଞ୍ଚିଲେ । ମୁଁ ସଙ୍ଗେ ସଙ୍ଗେ ଓଡ଼ିଶା ସରକାରଙ୍କ ଆଦେଶନାମା ଅନୁଯାୟୀ ଅଧ୍ୟାପକ ଡକ୍ଟର ପ୍ରଦୀପ କୁମାର ଡାଙ୍ଗକୁ ମହାବିଦ୍ୟାଳୟ ଦାୟିତ୍ୱ ହସ୍ତାନ୍ତର କରିଲି । ମୋର ସମସ୍ତ ଜିନିଷପତ୍ର ନେଇ ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନକୁ ଯାଇ ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କୁ ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ, ଜୟପୁର ଦାୟିତ୍ୱ ଦେଇ ସଂପୂର୍ଣ୍ଣ କାର୍ଯ୍ୟମୁକ୍ତ ହେଲି ।

**ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ**

ମୋ ପ୍ରତି ଜିଲ୍ଲା ଶିକ୍ଷା ପ୍ରତିଷ୍ଠାନ, ଜୟପୁରର ଅଧ୍ୟାପକଗଣଙ୍କ ଏତେ ଶ୍ରଦ୍ଧା ଥିଲା ଯେ ସେମାନେ ମୋତେ ସେଠାକାର ଅତିଥି ଭବନରେ ତିନି ଚାରିଦିନ

ବିଦେଇବାକୁ ଅନୁରୋଧ କରିଥିଲେ । ତଦନୁଯାୟୀ ମେ ୫ ତାରିଖ ଦିନ ହୀରାଖଣ୍ଡ ଏକ୍ସପ୍ରେସ୍‌ରେ ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ କରିବା ନିମନ୍ତେ ମୋର ଅଗ୍ରୀମ ଟିକେଟ୍ କରାଯାଇଥିଲା ।

ସେଦିନ ଅପରାହ୍ନରେ ଜୟପୁର ଛାଡ଼ି ମୁଁ ଶ୍ରୀଯୁକ୍ତ ପାଣିଗ୍ରାହୀ ଓ ତାଙ୍କ ବନ୍ଧୁମାନଙ୍କ ଗହଣରେ ଶାବର ଶ୍ରୀକ୍ଷେତ୍ରାଧିପତି ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କଲି । ସେଠାରେ ଆଗରୁ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଦିବାକର ଷଡ଼ଙ୍ଗୀ ଆମ ସହିତ ମିଶିଥିଲେ । ସେଠାରୁ ଆମେ କୋରାପୁଟ ଷ୍ଟେସନକୁ ଆସିଥିଲୁ । ଷ୍ଟେସନ୍‌ରେ ମଧ୍ୟ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର କେତେକ ସହକର୍ମୀ ଅପେକ୍ଷା କରିଥିଲେ । ଗାଡ଼ି ଛାଡ଼ିଲାବେଳକୁ ମୋ ବସିବା ସ୍ଥାନରେ ଅଧ୍ୟାପକ ରବୀନ୍ଦ୍ରନାଥ ସାହୁ ପହଞ୍ଚି ପଞ୍ଚଦୀପଟିଏ ଉପହାରସ୍ୱରୂପ ପ୍ରଦାନ କରିଥିଲେ ।

ନିର୍ଦ୍ଦିଷ୍ଟ ସମୟରେ ହୀରାଖଣ୍ଡ ଏକ୍ସପ୍ରେସ୍ କୋରାପୁଟ ଷ୍ଟେସନ ଛାଡ଼ିଲା । ମୁଁ ସମସ୍ତଙ୍କଠାରୁ ହସିହସି ବିଦାୟ ନେଲି ।

ମୋର ଚାକିରି ଜୀବନର ଶେଷ ଚାରିବର୍ଷ ପ୍ରଭୁ ଜଗନ୍ନାଥଙ୍କ ଶାବର ଶ୍ରୀକ୍ଷେତ୍ରରେ କଟିଥିବା ହେତୁ ମୁଁ ନିଜକୁ ଭାଗ୍ୟବାନ ମନେ କରିଥିଲି ।

**ସ୍ମୃତିରେ ସୁରେନ୍ଦ୍ର ଲାଲ ଦାସ, ବି.ଏଡ୍ କଲେଜ, ଆନନ୍ଦ ନଗର**

ସରକାରୀ ଜୀବନରୁ ଅବସର ନେଲାପରେ ଯେ ମୋତେ ପୁଣି ବେସରକାରୀ ମହାବିଦ୍ୟାଳୟର ଜୀବନ ଅପେକ୍ଷା କରିଥିବ, ତାହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ମୋତେ କେବଳ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ମୁଖ୍ୟ କିରାଣି ଚିନ୍ତାମଣି ବାବୁ ଅନେକ ସମୟରେ କହୁଥିଲେ, "ସାର୍ ! ମୋର ଯାହା ଧାରଣା ହେଉଛି, ଆପଣ ଅବସର ପରେ ବସିବେନି ।" ସେତେବେଳେ ଓଡ଼ିଶା ସରକାର ଅବସର ସମୟକୁ ଆଉ ଦୁଇବର୍ଷ ବଢ଼ାଇବା ପାଇଁ ବିଚାର ବିମର୍ଷ ମଧ୍ୟ କରୁଥିଲେ । କିନ୍ତୁ ତାହା ହେଲା ନାହିଁ । ଭାରତର ଅଧିକାଂଶ ରାଜ୍ୟରେ ଅବସର ସମୟ ଷାଠିଏ ଥିଲେ ମଧ୍ୟ ଓଡ଼ିଶାର କର୍ମଚାରୀମାନଙ୍କ ଦାବିକୁ ଓଡିଶା ସରକାର ଗ୍ରହଣ କରି ନ ଥିଲେ ।

ମୁଁ ମେ' ମାସ ଶେଷ ସପ୍ତାହରେ ବେଲୁରପାଖ ଆନନ୍ଦନଗରସ୍ଥ ସ୍ୱ-ଅର୍ଥରେ ପରିଚାଳିତ ସୁରେନ୍ଦ୍ରଲାଲ ଦାସ ବି.ଏଡ୍ ଶିକ୍ଷକ ପ୍ରଶିକ୍ଷଣ ପ୍ରତିଷ୍ଠାନର ସେକ୍ରେଟେରୀ ଇଂ. ବିଷ୍ଣୁପଦ ଦାସଙ୍କଠାରୁ ଏକ ଫୋନ୍ କଲ୍ ପାଇଲି । ସେ ମୋତେ ଭୁବନେଶ୍ୱରରେ ଦେଖା କରିବା ପାଇଁ ଗୋଟିଏ ଦିନ ମାଗିଲେ । ନିର୍ଦ୍ଧାରିତ ଦିନରେ ସେ କଲେଜର

ପୂର୍ବତନ ଛାତ୍ର- ତଥା କିରାଣି ସାନୁ ସହିତ ଆସି ଦେଖାକଲେ । ତାଙ୍କର ଆଚରଣ ସେତେବେଳେ ଏତେ ଭଦ୍ର ଥିଲା ଯେ ତାଙ୍କ ଅନୁରୋଧ ରକ୍ଷା କରି ମୁଁ ୨୦୦୭ ଜୁଲାଇ ମାସରେ ସେଠାରେ ଯୋଗ ଦେଲି । ଦରମା ସଂପର୍କରେ ମୋତେ ପଚାରିବାରୁ ମୁଁ ତାଙ୍କୁ ହସି ହସି କହିଲି, "ଆପଣଙ୍କ ଇଛା ଯାହାହେବ ଦେବେ । ମାତ୍ର ମୋର ଗୋଟିଏ ସର୍ତ୍ତ ଅଛି ଯେ ମୁଁ ଷାଠିଏ ବର୍ଷରୁ ଅଧିକ ସମୟ ସେଠାରେ କାମ କରିବି ନାହିଁ ଓ ସେ ମୋତେ ସେଠାରେ ଅଧିକ ରହିବାକୁ ବାଧ କରିବେ ନାହିଁ ।" ମୋ ସର୍ତ୍ତରେ ସେ ରାଜି ହେବାରୁ ମୁଁ ସେଠାରେ ୨୦୦୭ ଜୁଲାଇ ମାସରେ କାର୍ଯ୍ୟରେ ଯୋଗ ଦେଇଥିଲି ।

ଆନନ୍ଦନଗରରସ୍ଥ ସୁରେନ୍ଦ୍ରଲାଲ ସେଲ୍‌ଫ ଫାଇନାଇନ୍‌ସିଂ ବି.ଏଡ୍ କଲେଜ ଚାରିମହଲା ବିଶିଷ୍ଟ ନିଜସ୍ୱ କୋଠାଘରେ ଚାଲୁଥିଲା । କଲିକତା ବିଶ୍ୱବିଦ୍ୟାଳୟ ତଥା ଏନ୍.ସି.ଟି.ଇ.ର ନୀତି ନିୟମ ଅନୁସାରେ ଶହେ ଜଣ ପିଲା ଭର୍ତ୍ତି ହୋଇଥିଲେ । ସେଠାକାର ଅଧ୍ୟାପକମାନେ ଯୋଗ୍ୟତାସଂପନ୍ନ ଥିଲେ, ସେମାନଙ୍କ ମଧ୍ୟରୁ ମୋର ବିଶେଷଭାବେ ସଂପର୍କ ଥିଲା ଅଧ୍ୟାପକ ଅରିନ୍ଦମ ଭଟ୍ଟାଚାର୍ଯ୍ୟଙ୍କ ସହିତ । ଅଧ୍ୟାପକ ଭଟ୍ଟାଚାର୍ଯ୍ୟ ବର୍ତ୍ତମାନ ବେଲୁରମଠସ୍ଥ ଶ୍ରୀରାମକୃଷ୍ଣ ମିଶନ ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନରେ କାର୍ଯ୍ୟ କରୁଛନ୍ତି । ଅନ୍ୟ ଅଧ୍ୟାପକ ଅଧ୍ୟାପିକାମାନଙ୍କ ମଧ୍ୟରୁ ଶ୍ରୀମତୀ ଶାନ୍ତା ବାନାର୍ଜୀ, ଅଧ୍ୟାପିକା ସୁଜାତା ମାଇତି, ଅଧ୍ୟାପିକା ଅନୁରାଧା ଅଧିକାରୀ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ସେଇ ସମୟରେ ମୁଁ ଶ୍ରୀରାମକୃଷ୍ଣ ମିଶନ ପରିଚାଳିତ ବେଲୁର ଶିକ୍ଷକ ଶିକ୍ଷା ନିକେତନର ଅଧକ୍ଷ ମହାରାଜାଜୀଙ୍କ ସହିତ ଘନିଷ୍ଠଭାବେ ସଂପୃକ୍ତ ଥିଲି । ସେ ବିଭିନ୍ନ ସମୟରେ ମୋ ସହିତ କେତେକ ବିଷୟରେ ପରାମର୍ଶ ଚାହୁଁଥିଲେ । କଲିକତା ବିଶ୍ୱବିଦ୍ୟାଳୟ ଶିକ୍ଷା ବିଭାଗର ଡିନ୍ ତଥା ବିଶିଷ୍ଟ ଲେଖକ ପ୍ରଫେସର ମଳୟ ସେନ୍‌ଗୁପ୍ତଙ୍କ ସହିତ ସ୍ୱଳ୍ପ ସମୟର ପରିଚିତି ମଧ୍ୟରେ ପାରସ୍ପରିକ ସଂପର୍କ ଏପରି ବଢ଼ିଥିଲା ଯେ ସେ ଶିକ୍ଷା ସଂପର୍କରେ ସ୍ୱତପ୍ରବୃତ୍ତ ଭାବେ ମୋ ସହିତ ଆଲୋଚନା କରୁଥିଲେ । ଥରେ ମୋ ସପକ୍ଷରେ ସେକ୍ରେଟେରୀଙ୍କୁ କହିଥିଲେ, "ବିଷ୍ଣୁବାବୁ ! ଆପଣ କେବେ ବ୍ରହ୍ମାବାବୁଙ୍କୁ ଆପଣଙ୍କ ମହାବିଦ୍ୟାଳୟରୁ ଛାଡ଼ିବେ ନାହିଁ । ତାଙ୍କଭଳି ଶିକ୍ଷାବିତ୍ ଆମ ପଶ୍ଚିମବଙ୍ଗରେ ଖୁବ୍ କମ୍ ଅଛନ୍ତି ।"

ଠିକ୍ ଏଇକଥା କଲେଜ ଦ୍ୱାରା ଆୟୋଜିତ ଏକ ସେମିନାରରେ ତତ୍‌କାଳୀନ ସି.ପି.ଆଇର ସାଧାରଣ ସଂପାଦକ ବିମାନ ବସୁ ମୋର ବକ୍ତବ୍ୟ ଶୁଣି ତାଙ୍କ ଅଭିଭାଷଣର ଶେଷରେ କହିଥିଲେ, "ଡ଼ଃ ବ୍ରହ୍ମାଙ୍କ ଭଳି ଶିକ୍ଷାବିତ୍ ଆମ ରାଜ୍ୟରେ କମ୍ ଅଛନ୍ତି ।

ତାଙ୍କୁ ମହାବିଦ୍ୟାଳୟ ପରିସର ମଧ୍ୟରୁ ବିଦାୟ ଦେଲାବେଳେ ସେ ହଠାତ୍ କହିଲେ, "ବ୍ରହ୍ମାବାବୁ ଆପଣଙ୍କ ଭିତ୍ତି ପ୍ରବନ୍ଧଟିକୁ ମୋତେ ଦିଅନ୍ତୁ ।" ତା'ପରେ ସେ କଲେଜ ଗେଟ୍ ନିକଟରେ ଅପେକ୍ଷା କରି ରହିଲେ । କଲେଜକୁ ଫେରି ଭିତ୍ତି ପ୍ରବନ୍ଧଟିକୁ ତାଙ୍କୁ ନେଇ ଦେଇଥିଲି ।

ଆନନ୍ଦନଗର ବି.ଏଡ୍ କଲେଜରେ କଲିକତା ସହରର ଅନେକ ମାନ୍ୟଗଣ୍ୟ ଲୋକ ଓ ରାଜନେତାଙ୍କ ସଂପର୍କୀୟ ପଢୁଥିଲେ । ସେମାନେ ମଝିରେ ମଝିରେ ବିଶୃଙ୍ଖଳିତ ହେବାକୁ ଚେଷ୍ଟା କରୁଥିଲେ ମଧ୍ୟ ମୋତେ ଦେଖିଲେ ନୀରବ ରହୁଥିଲେ ଓ ଆବଶ୍ୟକ ଦୂରତ୍ୱ ମଧ୍ୟ ରକ୍ଷା କରୁଥିଲେ । ଶ୍ରେଣୀ ଗୃହରେ ମୋର ଶିକ୍ଷାଦାନକୁ ଆଗ୍ରହ ସହକାରେ ଶୁଣୁଥିଲେ । ଅନେକ ଛାତ୍ରଛାତ୍ରୀ ମୁଁ କାର୍ଯ୍ୟାଳୟରେ ବସିଥିଲାବେଳେ ଆସି ମୋର ପାଦ ସ୍ପର୍ଶ କରି ଆଶୀର୍ବାଦ ନେଉଥିଲେ । ସେମାନଙ୍କ ଆଚରଣ ଓ ସଂପର୍କ ଉନ୍ନତ ଧରଣର ଥିଲା ।

ବିଷ୍ଣୁବାବୁଙ୍କ ଅନିଚ୍ଛା ସତ୍ତ୍ୱେ ଠିକ୍ ଦୁଇବର୍ଷ ପରେ ମୁଁ ସେ ଅନୁଷ୍ଠାନ ଛାଡ଼ିଲି । ସଂପାଦକ ବିଷ୍ଣୁପଦ ଦାସ ମୋ ପରାମର୍ଶ ଅନୁଯାୟୀ ନୂତନ ଅଧ୍ୟକ୍ଷ ନିଯୁକ୍ତ କଲେ । କୌଣସି କାରଣରୁ ତାଙ୍କ ସହିତ ତାଙ୍କର ମନୋମାଳିନ୍ୟ ହେଲା । ପୁଣି ମୋତେ ଆସି ବର୍ଷ ମଝିରେ ଡାକିଲେ ଯିବା ପାଇଁ ।

ମୁଁ ତାଙ୍କୁ ମୋର ସର୍ତ୍ତ ମନେ ପକାଇ ଦେଲି । ତଥାପି ସେ ମୋତେ କହିଲେ, "ସାର୍ ! ଆପଣ ଯେମିତି ସମସ୍ତଙ୍କୁ ନେଇ ସେ କଲେଜ ଚଳାଉଥିଲେ, ତାହା ଆଉ କେହି ପାରିବେ ନାହିଁ । ତେଣୁ ଆପଣ ଆସନ୍ତୁ ।"

ମୁଁ ତାଙ୍କୁ ଯିବି ଯିବି କହି ସମୟ ଗଡ଼େଇ ଚାଲିଲି । ଯେଉଁ ପ୍ରତିଷ୍ଠାନରୁ ସମ୍ମାନର ସହିତ ବିଦାୟ ନେଇ ଆସିଛି, ସେଠାକୁ ଦ୍ୱିତୀୟବାର ଯିବାକୁ ମୋର ବିବେକ କହିଲା ନାହିଁ ।

**ସ୍ମୃତିରେ ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନ, ନନ୍ଦନପୁର**

ଅକ୍ଟୋବର ମାସ ୨୦ ତାରିଖ, ୨୦୦୯ ମସିହା । ସେଦିନ ଥାଏ ପ୍ରଫେସର ଜଗନ୍ନାଥ ମହାନ୍ତିଙ୍କ ପ୍ରତିଷ୍ଠିତ ମାଣିକ ବିଶ୍ୱନାଥ ଦାତବ୍ୟ ସ୍ମୃତିନ୍ୟାସର ବାର୍ଷିକ ଉତ୍ସବ । ଏଇ ଉତ୍ସବରେ ରାଜ୍ୟର ବିଭିନ୍ନ କୃତୀ ଶିଶୁ ସାହିତ୍ୟିକମାନଙ୍କୁ ମାନପତ୍ର ଓ ଉପାୟନ ଦିଆଯାଇ ସମ୍ବର୍ଦ୍ଧିତ କରାଯାଏ । ଏତଦ୍‌ବ୍ୟତୀତ ବିଦ୍ୟାଳୟ ପିଲାମାନଙ୍କ ମଧ୍ୟରେ

ବିଭିନ୍ନ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ପ୍ରଥମ, ଦ୍ୱିତୀୟ ଓ ତୃତୀୟ ହୋଇଥିବା ପ୍ରତିଯୋଗୀମାନଙ୍କୁ ମଧ୍ୟ ଅତିଥିମାନେ ପୁରସ୍କାର ଦେଇଥାନ୍ତି ।

ସେଦିନ ମୋର ଭୁବନେଶ୍ୱରସ୍ଥ ଲୋହିଆ ଏକାଡ଼େମୀରେ ଅନୁଷ୍ଠିତ ହେଉଥିବା ବାର୍ଷିକ ଉତ୍ସବକୁ ଯିବାରେ ଥାଏ । ସେଥିପାଇଁ ମୁଁ ପ୍ରସ୍ତୁତ ହେଉଥାଏ । ଏଇ ସମୟରେ ମୋତେ ଓଡ଼ିଶାର ଜଣେ ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଭାବଗ୍ରାହୀ ବିଶ୍ୱାଳ ଫୋନ କରି କହିଲେ, "ବ୍ରହ୍ମାବାବୁ ! ମୋ ସହିତ କଲିକତାର ଦୁଇଜଣ ବିଶିଷ୍ଟ ଇଂଜିନିୟର ଡକ୍ଟର ଅରୂପ କୁମାର ଭୌମିକ ଓ ଡକ୍ଟର ସୋମନାଥ ମାଇତି ଆସିଛନ୍ତି । ସେମାନେ ଆପଣଙ୍କ ସହିତ ଦେଖା କରିବାକୁ ଚାହାଁନ୍ତି । ତେଣୁ ଆମେ ସନ୍ଧ୍ୟାବେଳକୁ ଆପଣଙ୍କ ଘରକୁ ଯିବୁ ।"

ମୁଁ ସଙ୍ଗେ ସଙ୍ଗେ ପ୍ରଫେସର ବିଶ୍ୱାଳଙ୍କୁ କହିଲି, "ମୋ ପକ୍ଷରେ ସନ୍ଧ୍ୟା ସମୟରେ ଘରେ ରହିବା ସମ୍ଭବ ହେବ ନାହିଁ । ପୂର୍ବରୁ ପ୍ରଫେସର ମହାନ୍ତିଙ୍କ ଆୟୋଜିତ କାର୍ଯ୍ୟକ୍ରମରେ ଯୋଗ ଦେବା ନିମନ୍ତେ ମୁଁ ପ୍ରତିଶ୍ରୁତି ବଦ୍ଧ ।

ତେଣୁ ସେ ମୋତେ କହିଲେ, "ତା ହେଲେ ଆପଣ ଟିକେ ମାଷ୍ଟର କ୍ୟାଣ୍ଟିନସ୍ଥିତ କେଶରୀ ହୋଟେଲକୁ ରାତି ନଅଟାବେଳେ ଆସି ପାରିବେ କି ?" ସେତେବେଳକୁ ମାଣିକ-ବିଶ୍ୱନାଥ ଦାତବ୍ୟ ସ୍ମୃତିନ୍ୟାସର ବାର୍ଷିକ ଉତ୍ସବ ସରି ଯାଇଥିବ କହି ମୁଁ ଯିବାକୁ ରାଜି ହେଲି । ନିର୍ଦ୍ଧାରିତ ସମୟରେ ସେମାନଙ୍କୁ ହୋଟେଲ କେଶରୀରେ ଦେଖା ସାକ୍ଷାତ କଲି । ମୋତେ ପ୍ରଫେସର ବିଶ୍ୱାଳ ଡକ୍ଟର ଭୌମିକ ଓ ଡକ୍ଟର ମାଇତିଙ୍କ ସହିତ ପରିଚିତ କରାଇ ଦେଲେ । କଥା ପ୍ରସଙ୍ଗରେ ଆରମ୍ଭ କଲେ, "ଡକ୍ଟର ଭୌମିକ ହେଉଛନ୍ତି ନବ ପ୍ରତିଷ୍ଠିତ ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନର ସଂପାଦକ । ତାଙ୍କ ପ୍ରତିଷ୍ଠାନଟିକୁ ଅନୁମୋଦନ ନିମନ୍ତେ ଭୁବନେଶ୍ୱରସ୍ଥିତ ଏନ୍.ସି.ଟି.ଇର ଆଞ୍ଚଳିକ କାର୍ଯ୍ୟାଳୟ, ନୂଆଦିଲ୍ଲୀସ୍ଥ କାର୍ଯ୍ୟାଳୟକୁ ଲେଖିଥିଲେ । ସେଇ କାମରେ ସେ ଦିଲ୍ଲୀ ଯାଇଥିଲେ । ନୂଆଦିଲ୍ଲୀସ୍ଥ ଏନ୍.ସି.ଟି.ଇ କାର୍ଯ୍ୟାଳୟକୁ ସେ ପଠାଇଥିବା ଅଧ୍ୟକ୍ଷଙ୍କ ତଥ୍ୟ ଦେଖି କର୍ତ୍ତୃପକ୍ଷ ଅଧ୍ୟକ୍ଷଙ୍କ ଯୋଗ୍ୟତା ଉପରେ ପ୍ରଶ୍ନ ଉଠାଇଲେ । ମାତ୍ର ସାତଦିନ ମଧ୍ୟରେ ଆଉ ଜଣେ ଯୋଗ୍ୟତାସଂପନ୍ନ ଅଧ୍ୟକ୍ଷଙ୍କ ବାୟୋଡ଼ାଟା ତଥା ନିଯୁକ୍ତି ପତ୍ର ସେଠାରେ ଦାଖଲ କରିବାକୁ ସେମାନେ କହିଛନ୍ତି । ଡକ୍ଟର ଭୌମିକ ମୋର ପୂର୍ବ ପରିଚିତ ହୋଇଥିବା ହେତୁ ଓ ଆପଣ ଅବସର ପରେ କୌଣସି ସ୍ଥାନରେ କାର୍ଯ୍ୟକରୁ ନ ଥିବା ହେତୁ ମୁଁ ଆପଣଙ୍କ ସପକ୍ଷରେ ପ୍ରସ୍ତାବ ଦେଇଛି ।"

ମୁଁ ପ୍ରଫେସର ବିଶ୍ୱାଳଙ୍କ ମୁହଁକୁ ଚାହିଁଲି । ସେ ମୋଠାରୁ କୌଣସି ଉତ୍ତର ପାଇବା ପୂର୍ବରୁ ମୋତେ କହିଲେ, "ଆପଣ ଜଣେ ଲେଖକ । ଡକ୍ଟର ଭୌମିକ ମଧ୍ୟ ଜଣେ ଲେଖକ । ସେ କୋଲକତାସ୍ଥିତ ଏକ ଯାନ୍ତ୍ରିକ ମହାବିଦ୍ୟାଳୟରେ ଅଧ୍ୟକ୍ଷ ଅଛନ୍ତି ।"

ମୁଁ ଲକ୍ଷ୍ୟକଲି ଡକ୍ଟର ଭୌମିକ ମଧ୍ୟ ମୋଠାରୁ ସକାରାତ୍ମକ ଉତ୍ତର ପାଇବା ନିମନ୍ତେ ଚାହିଁ ରହିଛନ୍ତି । ମନେ ମନେ ଭାବିଲି, ନିଜ ଅଞ୍ଚଳର ଶିକ୍ଷାର ବିକାଶ ନିମନ୍ତେ ଜଣେ ଅଧ୍ୟକ୍ଷ ମୋର ସାହାଯ୍ୟ ମାଗୁଛନ୍ତି । ଅନେକ ସମୟରେ ଅତୀତରେ ମଧ୍ୟ ପ୍ରଫେସର ବିଶ୍ୱାଳ ମୋତେ ଅଯାଚିତ ସାହାଯ୍ୟ କରିଛନ୍ତି । ପ୍ରଥମ ଥର ପାଇଁ ସେ ମୋତେ ସାହାଯ୍ୟ ମାଗୁଛନ୍ତି । ସାହାଯ୍ୟ ପାଇ ସାହାଯ୍ୟ କରିବା ହେଉଛି ମଣିଷର ଧର୍ମ । ତେଣୁ ମୁଁ ସେମାନଙ୍କୁ ଆଉ ଅସୁବିଧାରେ ନ ପକାଇ ପ୍ରଫେସର ବିଶ୍ୱାଳଙ୍କ ପ୍ରସ୍ତାବରେ ରାଜି ହୋଇଗଲି ।

ମାତ୍ର ମୋର ପ୍ରସ୍ତାବ ରହିଲା, ସେମାନେ ଯେତେବେଳେ ଜଣେ ଯୋଗ୍ୟତା ସଂପନ୍ନ ଅଧ୍ୟକ୍ଷ ପାଇଯିବେ ମୋତେ ତୁରନ୍ତ ମୋ ଦାୟିତ୍ୱରୁ ଅବ୍ୟାହତି ଦେବେ । ସେମାନେ ମୋ ପ୍ରସ୍ତାବରେ ରାଜି ହେଲେ । ନବ ପ୍ରତିଷ୍ଠିତ ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନ ୨୦୧୦-୨୦୧୧ ଶିକ୍ଷାବର୍ଷରୁ କାର୍ଯ୍ୟକଲା । ପଶ୍ଚିମବଙ୍ଗର ପଶ୍ଚିମ ମେଦିନୀପୁରର ଗଡରା ନିକଟବର୍ତ୍ତୀ ଗାଉଁଲୀ ପରିବେଶ ମଧ୍ୟରେ ନନ୍ଦନପୁର ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ଅବସ୍ଥିତ । ଏଇ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟର ନବନିର୍ମିତ କୋଠାଘରେ ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନ ପ୍ରତିଷ୍ଠା କରାଯାଇଅଛି । ପ୍ରତିଷ୍ଠାନର ଆଗରେ ଏକ ବିରାଟ ଖେଳପଡ଼ିଆ । ଖେଳପଡ଼ିଆକୁ ଲାଗି ଗାଁକୁ ଯାଇଥିବା ଛୋଟିଆ ରାସ୍ତା ଓ ନନ୍ଦନପୁର ସମବାୟ ସମିତି କାର୍ଯ୍ୟାଳୟ । ତା'ପରେ ଦିଗନ୍ତ ବିସ୍ତାରୀ ଶସ୍ୟ ଶ୍ୟାମଳା ଭୂଇଁ । କଲେଜର ଉପର ମହଲାରେ ଥାଇ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତର ଦୃଶ୍ୟ, ପକ୍ଷୀମାନଙ୍କର ବିଚରଣ, ରାସ୍ତାରେ ଲୋକମାନଙ୍କର ଆଗମନ ଓ ପ୍ରସ୍ଥାନ, ଖେଳପଡ଼ିଆରେ ପିଲାମାନଙ୍କର ବିଭିନ୍ନ ଖେଳ ପ୍ରଦର୍ଶନ ଯେ କୌଣସି ଲୋକଙ୍କୁ ଗ୍ରାମିଣ ଜୀବନର ଲୋଭନୀୟ ପରିବେଶ ସଂପର୍କରେ ଆକର୍ଷିତ କରିଥାଏ ।

ସେଠାକାର ଜନଜୀବନ, ସଭାସମିତି, ପର୍ବପର୍ବାଣି, ବିବାହ ବ୍ରତ ଆଦିରେ ମୁଁ ଓତଃପ୍ରୋତ ଭାବରେ ସଂଶ୍ଳିଷ୍ଟ ହୋଇଗଲି । ନନ୍ଦନପୁର ଉଚ୍ଚ ମାଧ୍ୟମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ରାଜକୁମାର ଦାସ କର୍ମକାର, ସମସ୍ତ ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କର ମୋ ପ୍ରତି ସମ୍ମାନବୋଧ ମୋତେ ଯେମିତି ସେଇ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟର ଜଣେ ବ୍ୟକ୍ତିବିଶେଷରେ ପରିଣତ କରିଦେଲା । ସେଠାକାର ବିଶିଷ୍ଟ ବ୍ୟକ୍ତି ଅମଳେନ୍ଦୁ ଭଟ୍ଟାଚାର୍ଯ୍ୟ,

ଉପେନ୍ଦ୍ର ନାଥ ମିଶ୍ର, ପ୍ରଣବ ଗୋସ୍ୱାମୀ, ସୁଶୀଲ କୁମାର କର, ନିଟ୍ ଦୁର୍ଗାପୁରର ଗଣିତ ବିଭାଗର ମୁଖ୍ୟ ପ୍ରଫେସର ସମରେନ୍ଦ୍ର କରଙ୍କ ସହିତ ସଂପର୍କ ଗଢ଼ି ଉଠିଲା । ଏତଦ୍‌ବ୍ୟତୀତ ସ୍ଥାନୀୟ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ, କଲୋରାର ପ୍ରଧାନ ଶିକ୍ଷକ ଡକ୍ଟର ନିରଞ୍ଜନ ଜେନା, ବାଲିତୋରା ବସନବାଲା ଆଦର୍ଶ ବିଦ୍ୟାପୀଠର ପ୍ରଧାନ ଶିକ୍ଷକ ତାପସ ଘୋଷ, ସରବେରିଆ ବିଧାନ ରାୟ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଡକ୍ଟର ବୃନ୍ଦାବନ ଘଟକ, ଗୋବିନ୍ଦ ନଗର ଉଚ୍ଚ ମାଧ୍ୟମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଅଚିନ୍ତ୍ୟ ଘୋଷଙ୍କ ସହିତ ମଧ୍ୟ ଭାବଗତ ସଂପର୍କ ରହିଲା ।

ପଶ୍ଚିମବଙ୍ଗରେ ଅଧ୍ୟାପନା ସମୟରେ ମୁଁ ଲକ୍ଷ୍ୟ କରିଥିଲି ଯେ ବି.ଏଡ୍ ସ୍ତରର ପିଲାମାନେ ଇଂରାଜୀ କିମ୍ବା ହିନ୍ଦୀ ଭାଷାରେ ମୋର ଶିକ୍ଷାଦାନକୁ ବୁଝିପାରୁ ନାହାଁନ୍ତି । ତେଣୁ ମୋର ଶିକ୍ଷାଦାନର କୌଣସି ମହତ୍ତ୍ୱ ରହୁନାହିଁ । ସେଥିପାଇଁ କଠୋର ପରିଶ୍ରମ କରି ମୁଁ ବଙ୍ଗଳା ଭାଷା ବିଜ୍ଞାନ ଓ ବ୍ୟାକରଣ ଅଧ୍ୟୟନ କରିବାକୁ ଲାଗିଲି । ଏଇ ଅଧ୍ୟୟନ ୨୦୦୭ ମସିହାରେ ମୁଁ ବେଲୁର ନିକଟସ୍ଥ ଆନନ୍ଦନଗରଠାରେ ଥିଲାବେଳେ ଆରମ୍ଭ କରିଥିଲି । ଗୋଟିଏ ବର୍ଷର ଅଧ୍ୟୟନ ପରେ ମୁଁ ବଙ୍ଗଳା ଭାଷାରେ ଶିକ୍ଷାଦାନ କଲି । ଏହାଦ୍ୱାରା ପିଲାମାନେ ମଧ୍ୟ ସନ୍ତୋଷ ଲାଭ କଲେ । ଆମ ରାଜ୍ୟର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନରେ ଅଧ୍ୟାପକମାନେ ବିଦ୍ୟାଳୟର ବିଭିନ୍ନ ଶ୍ରେଣୀର ପିଲାଙ୍କୁ ନେଇ ଶ୍ରେଣୀଭିତ୍ତିକ ପ୍ରଦର୍ଶନମୂଳକ (Demonstration)ଶିକ୍ଷାଦାନ କରିଥାନ୍ତି । ତାହା ମୁଁ ପଶ୍ଚିମବଙ୍ଗର କୌଣସି ଶିକ୍ଷକ ଶିକ୍ଷା ପ୍ରତିଷ୍ଠାନରେ ଅନୁସୃତ ହେବାର ଦେଖି ନ ଥିଲି । ଏ ସଂପର୍କରେ ମୁଁ ନନ୍ଦନପୁରର ମୋର ସହକର୍ମୀମାନଙ୍କ ସହିତ ଆଲୋଚନା କଲି । ସେମାନେ ଆଗ୍ରହ ସହକାରେ ପ୍ରଦର୍ଶନମୂଳକ ଶିକ୍ଷାଦାନ ଦେବେ ବୋଲି ରାଜି ହେଲେ । ସେମାନଙ୍କ ଆଗ୍ରହ ଦେଖି ଏପରି ଶିକ୍ଷାଦାନ ଆରମ୍ଭ କରାଗଲା । ଶହେ ଜଣ ପିଲା ଓ ଅଧ୍ୟାପକମାନଙ୍କ ଗହଣରେ ଜଣେ ଜଣେ ଅଧ୍ୟାପକ ନିଜ ମେଥଡ୍ ବିଷୟ (Method Subject) କିପରି ଶିକ୍ଷାଦାନ କରିବେ ତାହା ପ୍ରଦର୍ଶନ କଲେ । ପ୍ରଦର୍ଶନ ପରେ ସେ ଶିକ୍ଷାଦାନ ସହିତ ସଂଶ୍ଳିଷ୍ଟ ମୌଳିକ ପ୍ରଶ୍ନମାନ ପିଲାମାନେ ଓ ଅନ୍ୟ ଅଧ୍ୟାପକମାନେ ଉତ୍‌ଥାପନ କଲେ । ସେ ସବୁ ପ୍ରଶ୍ନର ଉତ୍ତର ପ୍ରଦର୍ଶନମୂଳକ ଶିକ୍ଷାଦାନ ଦେଇଥିବା ଅଧ୍ୟାପକ ଦେଉଥିଲେ ।

ଏହିପରି ଏକ ସପ୍ତାହରୁ ଅଧିକ ଦିନ ଏହି କାର୍ଯ୍ୟକ୍ରମ ପ୍ରତ୍ୟେକ ଶିକ୍ଷା ବର୍ଷରେ ରଖାଗଲା । ଏଥିରେ ଇଂରାଜୀ ବିଷୟରେ ଅଧ୍ୟାପିକା ଶ୍ରୀମତୀ ଜୟିତା ସି, ଭୂଗୋଳରେ ଅଧ୍ୟାପକ ଗୌତମ ସରଦାର, ଜୀବ ବିଜ୍ଞାନରେ ଅଧ୍ୟାପକ ପ୍ରଦୀପ ରାୟ, ଭୌତିକ

ବିଜ୍ଞାନରେ ଅଧ୍ୟାପକ ମନୋରଞ୍ଜନ ମାନ୍ନା, ଗଣିତରେ ଅଧ୍ୟାପକ ରାଜକୁମାର, ଇତିହାସରେ ଅଧ୍ୟାପିକା ତନୁଜା ଘୋଷ, ବଙ୍ଗଳାରେ ଅଧ୍ୟାପକ ସୌରଭ ଚକ୍ରବର୍ତ୍ତୀ ପ୍ରଦର୍ଶନମୂଳକ ଶିକ୍ଷାଦାନ ଦେଉଥିଲେ । ଏତଦ୍‌ବ୍ୟତୀତ ଅଧ୍ୟାପକ ଦିଲ୍ଲୀପ କୁମାର ସାମନ୍ତ ବିଭିନ୍ନ ବିଷୟ କିପରି କମ୍ପ୍ୟୁଟରର ସହାୟତା ନେଇ ପାୱାର ପଏଣ୍ଟ ମାଧ୍ୟମରେ ଶିକ୍ଷାଦାନ ଦିଆଯିବ, ତାହା ପ୍ରଦର୍ଶନ କରୁଥିଲେ । ମୁଁ ମଧ୍ୟ ମୋର ରହଣି କାଳରେ ପ୍ରତିବର୍ଷ କୈଶୋର ଶିକ୍ଷା ସଂପର୍କୀୟ ସମ୍ବେଦନଶୀଳ ବିଷୟବସ୍ତୁକୁ ପାୱାର ପଏଣ୍ଟ ମାଧ୍ୟମରେ ଉପସ୍ଥାପିତ କରୁଥିଲି ।

ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନ ମୋର ଅବସ୍ଥାନ ସମୟ (୨୦୧୦-୨୦୧୫) ମଧ୍ୟରେ ଏକ ଆଦର୍ଶ ଶିକ୍ଷାନୁଷ୍ଠାନ ଭାବେ ନିଜର ସ୍ଥିତି ରଖିଥିଲା । ଏ ସଂପର୍କରେ ବିଦ୍ୟାସାଗର ବିଶ୍ୱବିଦ୍ୟାଳୟର କର୍ମକର୍ତ୍ତାମାନେ ବିଭିନ୍ନ ସମୟରେ ମତବ୍ୟକ୍ତ କରୁଥିଲେ । ପାଲପରା ମହାବିଦ୍ୟାଳୟର ଶିକ୍ଷାବିତ୍ ଡକ୍ଟର ବିଭାସ କାନ୍ତି ମଣ୍ଡଳଙ୍କ ଭାଷାରେ, "ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନ ଆମ ବିଦ୍ୟାସାଗର ବିଶ୍ୱବିଦ୍ୟାଳୟ ଅଧୀନରେ କାର୍ଯ୍ୟ କରୁଥିବା ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନ ମଧ୍ୟରେ ଅନ୍ୟତମ ଆଦର୍ଶ ଓ ଗୌରବମୟ ପ୍ରତିଷ୍ଠାନ ।"

ନନ୍ଦନପୁର ଅଞ୍ଚଳ ଓ ପରିବେଶକୁ ଦେଖିଲେ ମୋର ମନେ ପଡ଼େ ସତେ ଯେମିତି ମୋର ପୂର୍ବଜନ୍ମର ସଂପର୍କ ଏଇ ଅଞ୍ଚଳରେ କେବେ ନା କେବେ ଥିଲା । ସେଥିପାଇଁ ମୁଁ ରାସ୍ତାରେ ଚାଲିଗଲାବେଳେ ସାଧାରଣ ଲୋକଟିଏ ମଧ୍ୟ ମୋ ସହିତ ସଂପର୍କର ସେତୁ ବାନ୍ଧୁ ଥିଲା । ମୁଁ ରହୁଥିବା 'ସତ୍ୟନିବାସ'ର ମାଲିକ ସତ୍ୟଚରଣ ଜନା, ନନ୍ଦନପୁର ଉଚ୍ଚ ବିଦ୍ୟାଳୟରେ ପଢୁଥିବା ତାଙ୍କ ପୁତ୍ର ସାୟନ, ସତ୍ୟର ପତ୍ନୀ ପ୍ରତିମା ଓ ସତ୍ୟର ବୁଢ଼ୀ ମାଆଙ୍କର ମୋ ପ୍ରତି ଅସମ୍ଭବ ଶ୍ରଦ୍ଧା ଓ ଭକ୍ତି ଥିଲା ।

ପ୍ରତ୍ୟେକ ଶିକ୍ଷାବର୍ଷର ଶେଷରେ ମୁଁ ମୋର ଇସ୍ତଫା ପତ୍ର ସଂପାଦକ ଇଂ. ଅରୂପ ଭୌମିକକୁ ଦେଉଥିଲେ ମଧ୍ୟ ସେ ତାହା ଗ୍ରହଣ କରୁ ନ ଥିଲେ । ସେ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିଙ୍କ ଅନୁରୋଧ ଓ ମୋର ଛାତ୍ରଥିବା ଅଧ୍ୟାପକମାନଙ୍କ ସ୍ନେହ ଓ ଶ୍ରଦ୍ଧା ମୋତେ ପୁଣି ଭୁବନେଶ୍ୱରରୁ ନନ୍ଦନପୁରକୁ ଟାଣି ନେଉଥିଲା । ମାତ୍ର ବୟସର ଆହ୍ୱାନରେ ମୁଁ ସେମାନଙ୍କ ଅନୁରୋଧକୁ ନମ୍ରତାର ସହିତ ଏଡ଼େଇ ଦେଇଛି । ସଂପ୍ରତି ୨୦୧୪-୨୦୧୫ ଶିକ୍ଷା ବର୍ଷରେ ନନ୍ଦନପୁର ଶିକ୍ଷକ ଶିକ୍ଷଣ ପ୍ରତିଷ୍ଠାନର ଦାୟିତ୍ୱରୁ କାର୍ଯ୍ୟ ମୁକ୍ତ ଅଛି ।

## ମୋ ସାହିତ୍ୟିକ ଜୀବନର ମୂଳଦୁଆ ଓ ବିକାଶ

ପ୍ରତ୍ୟେକ ଶିଶୁ ହେଉଛି ଏକ ଚାରାଗଛ ସଦୃଶ । ତା'ର ଶାରୀରିକ ଓ ମାନସିକ ଅଭିବୃଦ୍ଧିର ବିକାଶ ତାର ପିତାମାତା ଓ ପରିବାରର ସଦସ୍ୟଙ୍କ ଉପରେ ନିର୍ଭର କରିଥାଏ ।

ମୋ ବୋଉ ଶ୍ରୀମତୀ ଜାନକୀ ଦେବୀ ପାଠ ପଢ଼ି ନ ଥିଲେ । ମାତ୍ର ସେ ରାମାୟଣ ଓ ମହାଭାରତର ଅନେକ ପଦ ମନେ ରଖିଥିଲେ । ସେସବୁ ଏପରି ଗାଉଥିଲେ ଯେ ତାହା ଆମକୁ ଚକିତ କରୁଥିଲା । ମୋର ଅଧ୍ୟାପକ ଜୀବନରେ ମୁଁ ତା'ର ମୁଖ ନିଃସୃତ ଗୀତ ଓ ଅନେକ ସମୟରେ ବିବେକପୂର୍ଣ୍ଣ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଯାଉଥିଲି ।

ମୋ ବାପା ସ୍ୱର୍ଗତଃ ଲକ୍ଷ୍ମଣ ପଣ୍ଡା ଜଣେ ବିଦ୍ୱାନ ପୁରୁଷ ଥିଲେ । ସେ ମଉଦା ଏମ୍.ଇ. ସ୍କୁଲରୁ ପାଠ ପଢ଼ିଥିଲେ । ପରବର୍ତ୍ତୀ ସମୟରେ ଶିକ୍ଷକ ପ୍ରଶିକ୍ଷଣ ପାଇଥିଲେ । ପିଲାଟିବେଳୁ ମୋର ସାହିତ୍ୟିକ ଜୀବନର ମୂଳଦୁଆ ସେହିଁ ପକାଇଥିଲେ । ହେତୁ ପାଇଲା ପରଠାରୁ ସେ ମୋତେ ତାଙ୍କ ସହିତ ଜଲୌକାରେ ଅବସ୍ଥିତ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶ୍ରମ ଆଡ଼କୁ ବୁଲାଇ ନେଉଥିଲେ । ଆଶ୍ରମରେ ଆୟୋଜିତ ସଙ୍ଗୀତ ଆସର ଓ ସଭା ସମିତିରେ ଯୋଗ ଦେଉଥିଲେ । ତାଙ୍କ ଧର୍ମ ସଭାରେ ଭାଷଣ ଦେଲାବେଳେ ସେ ଭଗବତ୍ ଗୀତାର ବିଭିନ୍ନ ଶ୍ଳୋକକୁ ଉପସ୍ଥାପନା କରି ନିଜର ବକ୍ତବ୍ୟ ରଖୁଥିଲେ ।

ଥରେ ଆମ ପଡ଼ୋଶୀ ଗ୍ରାମ ଯଶୋରାଜ ପୁର ନିକଟବର୍ତ୍ତୀ ବିରୂପା ନଦୀକୂଳରେ ଅବସ୍ଥିତ ସିଦ୍ଧଦେବ ଘାଟ ସମୀପସ୍ଥ ତ୍ରିଲୋଚନ ମନ୍ଦିର ପରିସରରେ ଏକ ଯଜ୍ଞ ଅନୁଷ୍ଠିତ ହେଉଥିଲା ।

ମୋତେ ବାପା ତାଙ୍କ ସହିତ ଯଜ୍ଞସ୍ଥଳକୁ ନେଇଥିଲେ । ଯଜ୍ଞ ସ୍ଥଳରେ ଏକ ଧାର୍ମିକ ସଭାର ଆୟୋଜନ କରାଯାଇଥିଲା । ସେଇ ଧର୍ମ ସଭାରେ ବାପା ଧର୍ମ କିପରି ମଣିଷର ରକ୍ଷାକବଚ ହୋଇଥାଏ ତାହା ବୁଝାଇଥିଲେ । ସେ ଭଗବତ୍ ଗୀତାର ବିଭିନ୍ନ ଶ୍ଳୋକ ଆବୃତ୍ତି ମାଧ୍ୟମରେ ନିଜର ବକ୍ତବ୍ୟ ରଖିଥିଲେ । ଏହା ପ୍ରାୟ ଷାଠିଏ ବର୍ଷ ତଳର କଥା ହେଲେ ମଧ୍ୟ ମୋର ସେଇ ଯଜ୍ଞର ସ୍ମୃତି ବାପାଙ୍କର ଭାଷଣ ଦେବାର ଶୈଳୀ ଆଜି ମଧ୍ୟ ମନେ ଅଛି । ସେଇପରି ପ୍ରାଥମିକ ଶିକ୍ଷକମାନଙ୍କର ଅନୁଷ୍ଠିତ ହେଉଥିବା ମାସିକ ଶିକ୍ଷାଦାନ ସଂପର୍କୀୟ ଆଲୋଚନା ଚକ୍ରକୁ ମଧ୍ୟ ବାପା ତାଙ୍କ ସହିତ ମୋତେ ନେଉଥିଲେ । ମୁଁ ସଭା ଗୃହରେ ପଛରେ ବସି ପ୍ରାଥମିକ ଶିକ୍ଷକଙ୍କ ଶିକ୍ଷାଦାନ ଓ ଶିକ୍ଷାଦାନ ପରବର୍ତ୍ତୀ ଆଲୋଚନା ଲକ୍ଷ୍ୟ କରୁଥିଲି । ସେ ସମୟରେ ମୁଁ ପ୍ରାଥମିକ ସ୍ତରରେ ପଢୁଥିଲି । ସେଇ ସମୟରୁ ଶିକ୍ଷାଦାନ ସଂପର୍କୀୟ ଆଲୋଚନା କିପରି କରାଯାଏ, ତାହା ଲକ୍ଷ୍ୟ କରିଥିଲି ।

ଆଜିକାଲି ଏ ପ୍ରକାର ମାସିକ ବୈଠକ ଓ ଶିକ୍ଷାଦାନ ପ୍ରାଥମିକ ବିଦ୍ୟାଳୟ ସ୍ତରରେ ପ୍ରାୟତଃ ନାହିଁ ।

ଦ୍ୱିତୀୟ ଶ୍ରେଣୀରେ ମୋର ଅକ୍ଷର ଶିକ୍ଷା ସରିଗଲା । ମୁଁ ଯୁକ୍ତାକ୍ଷର ଥିବା ବହି ବେଶ୍ ଭଲଭାବରେ ପଢ଼ିପାରିଲି । ପଢ଼ାବହି ଛଡ଼ା ଅନ୍ୟ ବହି ପଢ଼ିବା ପାଇଁ ଖୋଜିଲି । ଆମ ଘରେ ଗୋଟିଏ ବଡ଼ ସିନ୍ଦୁକ ଥିଲା । ସେ ସିନ୍ଦୁକ ମଧ୍ୟରେ ବେତର ବୁଣା ଏକ ପେଡ଼ିଥିଲା । ସେ ପେଡ଼ିରେ କିଛି ବହି ଥିବାର ମୁଁ ଜାଣିଲି । ସେହି ପେଡ଼ି ଖୋଲୁ ଖୋଲୁ ମୋର ନଜର ପଡ଼ିଲା ଗୋଟିଏ ଅତି କ୍ଷୁଦ୍ର ପୁସ୍ତକ । ତାହା ହେଉଛି "ଜଳୌକା ମାହାତ୍ମ୍ୟ" । ଏଇ ଜଳୌକା ମାହାତ୍ମ୍ୟର ଲେଖକ – ଲକ୍ଷ୍ମଣ ପଣ୍ଡା; ମୋ ବାପା । ସେ ବହିଟି ସୁନ୍ଦର ପଦ ମାଧ୍ୟମରେ ପ୍ରାୟ ଦଶ ବାର ପୃଷ୍ଠାରେ ଛପା ହୋଇଥିଲା । ଏହାର ଶୈଳୀ ଅତି ସରଳ ଓ ସାବଲୀଳ ଥିଲା । ମୁଁ ବାରମ୍ବାର ବିଭିନ୍ନ ସମୟରେ ଏଇ ବହିଟିକୁ ପଢ଼ିଲି । ଜଳୌକାର ଅଲୌକିକ ଘଟଣାବଳୀ ସହିତ ଏଥିରେ ବାବା ବୈକୁଣ୍ଠନାଥଙ୍କ ଆଶ୍ରମ ପରିସର ମଧ୍ୟରେ ଅବସ୍ଥିତ ମଣିନାଗ ଗୁମ୍ଫା ସଂପର୍କରେ ଲେଖାଥିଲା । ସାଧୁ ସନ୍ଥମାନେ କିପରି ନିଶାର୍ଦ୍ଧରେ ନଳୀ ଗୁମ୍ଫାରେ ଭଜନ କୀର୍ତ୍ତନ କରନ୍ତି, ତାହା ମଧ୍ୟ ବର୍ଣ୍ଣନା କରାଯାଇଥିଲା । ସେତେବେଳର ଏଇ ବହି ଜଳୌକା ମାହାତ୍ମ୍ୟ ମୋ ଶିଶୁ ପ୍ରାଣରେ ସାହିତ୍ୟ ପ୍ରତି ଅନୁରାଗ ସୃଷ୍ଟି କରିଥିଲା ।

ମୁଁ ମୋ ଅଧ୍ୟାପକ ଜୀବନରେ ବାପାଙ୍କର ସ୍ମୃତି ଉପଲକ୍ଷେ ତାଙ୍କ ଅବର୍ତ୍ତମାନରେ 'ଜଳୌକା ମାହାତ୍ମ୍ୟ' ମୁଦ୍ରଣ କରି ବଣ୍ଟନ କରିବା ପାଇଁ ଏହାର ଗୋଟିଏ ମୁଦ୍ରିତ ବହି ଖୋଜିଲି । ଏହା ଆମ ଘରେ ନ ଥିଲା । ଯାହାଙ୍କୁ ପଚାରିଲି ସେମାନେ ମଧ୍ୟ ଜଳୌକା ମାହାତ୍ମ୍ୟ ସଂପର୍କରେ କିଛି କହି ପାରିଲେ ନାହିଁ । ମାତ୍ର ବହୁଦିନ ପରେ ବାବାଙ୍କ ଆଶ୍ରମର ଜନୈକ ବାଳକାନନ୍ଦ ବାବା ତଥା ମୋ ବାପାଙ୍କ ଛାତ୍ର 'ବିଭୁ ବନ୍ଦନା' ନାମକ ଭକ୍ତି ପୁସ୍ତକରେ କେତେକ ଲେଖା ସ୍ଥାନିତ କରିଛନ୍ତି । ସେଥିରେ 'ଜଳୌକା ମାହାତ୍ମ୍ୟ' ସ୍ଥାନିତ କରିଛନ୍ତି । ଏହା ବାପାଙ୍କ ରଚିତ ଜଳୌକା ମାହାତ୍ମ୍ୟ ଅନୁରୂପ ହୋଇଅଛି ।

ଏଇ ସମୟରେ ମୋ ଦଦେଇ ଶ୍ରୀଯୁକ୍ତ ରଘୁନାଥ ପଣ୍ଡା ସରକାରଙ୍କ ତରଫରୁ ଏକ ଗୋଷ୍ଠୀ ରେଡ଼ିଓ (Community Radio) ଆଣିଥିଲେ । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ମନୋରଞ୍ଜନ କାର୍ଯ୍ୟକ୍ରମ ଆଦି ବିଭିନ୍ନ ଜନସଚେତନାତ୍ମକ କାର୍ଯ୍ୟକ୍ରମ ସଂପର୍କରେ ସେତେବେଳେ ଗ୍ରାମାଞ୍ଚଳରେ ରେଡ଼ିଓ ମାଧ୍ୟମରେ ପ୍ରଚାର ପ୍ରସାର କରିବା ନିମନ୍ତେ ଏହା ଉଦ୍ଦିଷ୍ଟ ଥିଲା । ଏହା ସହିତ ପଲ୍ଲୀଗୀତ, ନାଟକ ଓ ଭଜନ ଆଦି ମଧ୍ୟ ବେତାର କାର୍ଯ୍ୟକ୍ରମରେ ସ୍ଥାନ ପାଇଥିଲା ।

ସେ ସମୟରେ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଅନେକ ଭଜନ ରେଡ଼ିଓରେ ପ୍ରଚାରିତ ହେଲାବେଳେ ଆପେ ଆପେ ମୁଁ ମୋର ସମସ୍ତକାମ ଛାଡ଼ି ଦାଣ୍ଡକୁ ଶୁଣିବାକୁ ଚାଲି ଆସୁଥିଲି । ଆଜି ମଧ୍ୟ ମୋ ସ୍ମୃତିରେ ବାବା ବୈକୁଣ୍ଠନାଥଙ୍କ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରସାରିତ ଏକ ଭଜନର କେତୋଟି ଧାଡ଼ି ମନେ ଅଛି :

**ଭଗବାନ ! ପ୍ରେମମୟ ଭଗବାନ**
**ପ୍ରେମେ ଝରାଇଛ ଯମୁନା ପୁଳୀନ**
**ପ୍ରେମେ ଗାଇ ରାଧାର ନାମ**
**ଭଗବାନ୍ ! ପ୍ରେମମୟ ଭଗବାନ୍ ।**

ଆମ ଘରକୁ ବାବାଙ୍କ ଅନେକ ରଚନାବଳୀ ଆସୁଥିଲା । ସେଥି ମଧ୍ୟରୁ "ଭଜନ ଶତଦଳ" ମୋତେ ବିଶେଷ ଭଲ ଲାଗିଥିଲା । ବାବା ବୈକୁଣ୍ଠନାଥଙ୍କ ରଚନାବଳୀ ପ୍ରଥମଖଣ୍ଡ ଶ୍ରୀଯୁକ୍ତ ଦେବେନ୍ଦ୍ର ନାଥ ପଟ୍ଟନାୟକ (ଦେବଦୂତ)ଙ୍କ ସଂପାଦନାରେ ୨୦୦୦ ମସିହାରେ ପ୍ରକାଶିତ ହୋଇଅଛି ।

ଜଳୌକା ଆଶ୍ରମର ସବୁଠାରୁ ଶ୍ରେଷ୍ଠ ସାହିତ୍ୟିକ ଅବଦାନ ହେଉଛି ଆଶ୍ରମର ମୁଖପତ୍ର "ଜଳୌକା ବାଣୀ" । ଏହା ୧୯୬୪ ମସିହାରେ ଏକ ଷାଣ୍ମାସିକ ପତ୍ରିକା ଭାବେ ବାବା ବୈକୁଣ୍ଠନାଥଙ୍କ ଆଶୀର୍ବାଦ ଲାଭ କରି ଆତ୍ମପ୍ରକାଶ କରିଥିଲା । ଏହାର ପ୍ରଥମ ସଂପାଦକ ଥିଲେ ଦେବେନ୍ଦ୍ରନାଥ ପଟ୍ଟନାୟକ । ସେ ଭାରତ ସରକାରଙ୍କ କ୍ଷେତ୍ର ପ୍ରଚାର ସଂସ୍ଥାର ଜଣେ ଉଚ୍ଚ ପଦସ୍ଥ କର୍ମଚାରୀ ହୋଇଥିବା ହେତୁ ସଂପାଦକ ଭାବେ ପ୍ରତ୍ୟକ୍ଷ ଭାବେ ତାଙ୍କର ନାମ ପତ୍ରିକାରେ ଦିଆ ନଯାଇ 'ଦେବଦୂତ' ରୂପେ ଛଦ୍ମ ନାମରେ ଦିଆଯାଇଥିଲା ।

ସେତେବେଳେ ମୁଁ ଦଶମ ଶ୍ରେଣୀରେ ପଢୁଥିଲି । ଜଳୌକାବାଣୀ ଏକ ଷାଣ୍ମାସିକ ପତ୍ରିକା ହୋଇଥିବା ହେତୁ ଏହା ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଓ ବୈଶାଖ ପୂର୍ଣ୍ଣିମା ସଂଖ୍ୟା ରୂପେ ପ୍ରକାଶ ଲାଭ କରୁଥିଲା । କାର୍ତ୍ତିକ ପୂର୍ଣ୍ଣିମାରେ ଜଳୌକାରେ ବାବାଙ୍କ ଭକ୍ତମାନେ ଅଂଶଗ୍ରହଣ କରୁଥିଲେ । ଆଶ୍ରମର ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ଧର୍ମସଭାର ଆୟୋଜନ କରାଯାଉଥିଲା । ସେଇସବୁ ଧର୍ମ ସଭାରେ ବାବା ନିଜେ ସଭାପତିତ୍ୱ କରୁଥିଲେ । ମୋର ବୟସ ଖୁବ୍ କମ୍ ହେଲେ ମଧ୍ୟ ସେ ମୋତେ ଆୟୋଜିତ ଧର୍ମ ସଭାରେ ମୋର ବକ୍ତବ୍ୟ ରଖିବାକୁ ଆମନ୍ତ୍ରଣ କରୁଥିଲେ । ମୁଁ ମାନ୍ୟଗଣ୍ୟ ବ୍ୟକ୍ତିବିଶେଷଙ୍କ ସମ୍ମୁଖରେ ଭାଷଣ ଦେଇ ନିଜକୁ ଗୌରବାନ୍ୱିତ ମନେ କରୁଥିଲି । ମୋର କବିତା 'ଜଳୌକା ବାଣୀ'ରେ ପ୍ରଥମେ ୧୯୬୭ ମସିହାରେ ସ୍ଥାନିତ ହୋଇଥିଲା ଓ ପରବର୍ତ୍ତୀ ସମୟରେ

ଧାରାବାହିକ ଭାବେ ବିଭିନ୍ନ ସଂଖ୍ୟାରେ ପ୍ରକାଶ ଲାଭ କଲା । ଏହା ଫଳରେ ଏହାର ସଂପାଦକ ଦେବେନ୍ଦ୍ରବାବୁ ମୋତେ ବିଭିନ୍ନ ସଂଖ୍ୟା ପାଇଁ ଲେଖା ଦେବାକୁ ଉତ୍ସାହିତ କରୁଥିଲେ ।

'ଜଳୌକା ବାଣୀ'ରେ ଦୀର୍ଘଦିନ ରହିଥିବା ସଂପାଦକ ଦେବେନ୍ଦ୍ର ପଟ୍ଟନାୟକ ଜଣେ ଉଚ୍ଚକୋଟୀର ସାହିତ୍ୟିକ । ତାଙ୍କର ଲେଖା ଯେତିକି ସଂକ୍ଷିପ୍ତ ସେତିକି ବୌଦ୍ଧିକ । ସେ ଆକାଶବାଣୀ, କଟକର ବାର୍ତ୍ତା ସଂପାଦକ ଥିଲାବେଳେ ବିଭିନ୍ନ ସମୟରେ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ମାନବ କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ ବାର୍ତ୍ତା ଆକାଶବାଣୀ କଟକ କେନ୍ଦ୍ର ମାଧ୍ୟମରେ ପ୍ରଚାର ଓ ପ୍ରସାର କରୁଥିଲେ । ବିଶେଷତଃ ଏଇ ବାର୍ତ୍ତା କାର୍ତ୍ତିକ ପୂର୍ଣ୍ଣିମା ଓ ବୈଶାଖ ପୂର୍ଣ୍ଣିମା ଉପଲକ୍ଷେ ପ୍ରଚାରିତ ହେଉଥିବା ମୋର ଦୃଷ୍ଟିକୁ ଆସିଥିଲା ।

ମାଧ୍ୟମିକ ସ୍ତରରେ ମୁଁ ପଢୁଥିଲାବେଳେ ଆମ ଘରକୁ ସ୍ୱର୍ଗତଃ ବିଜୁ ପଟ୍ଟନାୟକଙ୍କ ପ୍ରତିଷ୍ଠିତ ଓ ସୁରେନ୍ଦ୍ର ମହାନ୍ତିଙ୍କ ସଂପାଦିତ ଦୈନିକ 'କଳିଙ୍ଗ' ଖବର କାଗଜ ଆସୁଥିଲା । କଳିଙ୍ଗର 'ଉଦୟଭାନୁ' ଶୀର୍ଷକ ପୃଷ୍ଠାଟି ଶିଶୁ ସାହିତ୍ୟ ପୃଷ୍ଠା ଥିଲା । ମୁଁ ଗାନ୍ଧି ଶିକ୍ଷାଶ୍ରମରେ ନବମ, ଦଶମ ଓ ଏକାଦଶ ଶ୍ରେଣୀରେ ପଢୁଥିଲାବେଳେ ମୋର କବିତାମାନ ଏହାର ପୃଷ୍ଠାରେ ସ୍ଥାନିତ ହେଉଥିଲା । ଏତଦ୍‌ବ୍ୟତୀତ ମୁଁ ପୂଜ୍ୟ ରାମକୃଷ୍ଣ ନନ୍ଦଙ୍କ ସଂପାଦିତ 'ସଂସାର'ର ଗ୍ରାହକ ହୋଇଥିବା ହେତୁ ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ଶିଶୁସାହିତ୍ୟିକଙ୍କ ଲେଖାର ସଂସ୍ପର୍ଶରେ ମଧ୍ୟ ଆସୁଥିଲି ।

ଗାନ୍ଧିଶିକ୍ଷାଶ୍ରମର ଶିକ୍ଷକ ଶ୍ରୀଯୁକ୍ତ ଜଗନ୍ନାଥ ନାୟକ, ଶ୍ରୀଯୁକ୍ତ ବୈଷ୍ଣବ ଚରଣ ନାୟକ, ଶ୍ରୀଯୁକ୍ତ ଭକ୍ତଚରଣ ନାୟକ, ଶ୍ରୀଯୁକ୍ତ ବଂଶୀଧର ମିଶ୍ର ପ୍ରମୁଖ ସାହିତ୍ୟପ୍ରେମୀ ଥିଲେ । ସେମାନଙ୍କ ଲେଖା ଓ ଦିଗ୍‌ଦର୍ଶନ ସହିତ ଓଡ଼ିଶାର ଲବ୍ଧପ୍ରତିଷ୍ଠିତ ସାହିତ୍ୟିକ ଧନେଶ୍ୱର ସାମଲଙ୍କ ରଚିତ ପୁସ୍ତକ ଓ ଲେଖାର ପ୍ରଭାବ ମଧ୍ୟ ସେତେବେଳେ ଛାତ୍ରଛାତ୍ରୀଙ୍କ ସାହିତ୍ୟିକ ପ୍ରତିଭାର ଉନ୍ମେଷ ଓ ବିକାଶର ସହାୟକ ଥିଲା ।

ମାଧ୍ୟମିକ ଶିକ୍ଷା ଶେଷପରେ ମୁଁ ପ୍ରାକ୍ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇଁ ରାଜ୍ୟ ଓ ଦେଶର ଜଣାଶୁଣା ମହାବିଦ୍ୟାଳୟ ରେଭେନ୍‌ସା କଲେଜରେ ୧୯୬୬ ମସିହାରେ ପଢ଼ିବାର ସୁଯୋଗ ପାଇଲି । ରେଭେନ୍‌ସା କଲେଜର ବୌଦ୍ଧିକ ପରିବେଶ ଜଣେ ଶିକ୍ଷାର୍ଥୀର ଚିନ୍ତାରାଜ୍ୟରେ ସାଧାରଣତଃ ଆଲୋଡ଼ନ ସୃଷ୍ଟି କରିଥାଏ । ସେଠି ମୁଁ ଯେଉଁସବୁ ସାହିତ୍ୟପ୍ରେମୀ ଅଧ୍ୟାପକମାନଙ୍କ ସଂସ୍ପର୍ଶରେ ଆସିଥିଲି, ସେମାନେ ହେଲେ, ଅଧ୍ୟାପକ ସୌଭାଗ୍ୟ କୁମାର ମିଶ୍ର, ଅଧ୍ୟାପକ ପ୍ରଫୁଲ୍ଲ ମହାନ୍ତି, ଅଧ୍ୟାପକ ପରେଶ ରାଉତ, ପ୍ରଫେସର

ଗୋଲକବିହାରୀ ଧଳ, ପ୍ରଫେସର ଗୋପାଳ ଚନ୍ଦ୍ର ମିଶ୍ର, ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର, ପ୍ରଫେସର କୁଞ୍ଜବିହାରୀ ଦାଶ, ପ୍ରଫେସର କାହ୍ନୁଚରଣ ମିଶ୍ର ଓ ପ୍ରଫେସର ପ୍ରାଣବନ୍ଧୁ କର ।

ସେଠାକାର ପରିବେଶ ଓ ସାହିତ୍ୟିକ ଜୀବନର ଉତ୍ତରଣ ହିଁ ମୋତେ ପୂର୍ବ ଛାତ୍ରାବାସର ମୁଖପତ୍ର ଜାଗରଣ (୧୯୬୯-୧୯୭୦)ର ସଂପାଦକ ହେବାର ସୌଭାଗ୍ୟ ଦେଇଥିଲା । ରେଭେନ୍ସା କଲେଜ ରହଣି ମଧ୍ୟରେ ମୋ ରଚିତ ପ୍ରଭାତୀତାରା (କବିତା ପୁସ୍ତକ), ସେ ମନ ବିହଙ୍ଗୀ (ଉପନ୍ୟାସ) ଓ ଛତିଆବଟର ମହାପୁରୁଷ ହାଡ଼ିଦାସ (ପ୍ରବନ୍ଧ ପୁସ୍ତକ) ପ୍ରକାଶିତ ହୋଇଥିଲା ।

ଏଇ ସମୟରେ ମୁଁ ହିନ୍ଦୀ ସାହିତ୍ୟ ଓ ଭାଷାବିଜ୍ଞାନ ସ୍ୱଚେଷ୍ଟାରେ ଅଧ୍ୟୟନ କରିଥିଲି । ବିଶିଷ୍ଟ ଭାଷାବିତ୍ ସୁନୀତି କୁମାର ଚାଟାର୍ଜୀଙ୍କ ଭାଷାତତ୍ତ୍ୱ ବିଜ୍ଞାନ ମୋର ଭାଷା ସଂପର୍କୀୟ ଦୃଷ୍ଟିକୋଣକୁ ପ୍ରସାରିତ କରିଥିଲା । ମୈଥୁଲୀ ଶରଣ ଗୁପ୍ତଙ୍କ 'ଯଶୋଧାରା' ଦିନକର ଜୀଙ୍କ 'ରଶ୍ମିରଥୀ' ପ୍ରେମଚନ୍ଦଙ୍କ 'ଗୋଦାନ' ମଧ୍ୟ ଅଧ୍ୟୟନ କରିଥିଲି । ପରବର୍ତ୍ତୀ ସମୟରେ ମୁଁ ହିନ୍ଦି ସାହିତ୍ୟର ମଧ୍ୟଯୁଗୀୟ କବି ନନ୍ଦଦାସଙ୍କ "**ଭ୍ରମର ଗୀତ**" ଓଡ଼ିଆରେ ଅନୁବାଦ ଓ ପ୍ରକାଶିତ କରିଅଛି ।

**ଶିଶୁ ସାହିତ୍ୟ ପ୍ରସଙ୍ଗ**

ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନରତ ଥିଲାବେଳେ ମୁଁ ଲକ୍ଷ୍ୟ କରିଥିଲି ଯେ ଓଡ଼ିଶାରେ ଶିଶୁ ସାହିତ୍ୟ ପ୍ରତି ଅନୁକୂଳ ବାତାବରଣ ନାହିଁ । କେତେକ ବୟସ୍କ ସାହିତ୍ୟିକମାନେ ମଧ୍ୟ ଶିଶୁ ସାହିତ୍ୟକୁ ଭିନ୍ନ ଦୃଷ୍ଟିରେ ଦେଖୁଛନ୍ତି । ଶିଶୁ ସାହିତ୍ୟର ଭାଷା, ଭାବ, ବିଷୟବସ୍ତୁର ଚୟନ ନିତାନ୍ତ କଷ୍ଟକର ବ୍ୟାପାର । ସାଧାରଣତଃ ବିକାଶଶୀଳ ଦେଶମାନଙ୍କରେ ବୟସ୍କମାନଙ୍କ ସାହିତ୍ୟ ରଚନାରେ ସଫଳ ହେବାପରେ ଜଣେ ସାହିତ୍ୟିକ ଶିଶୁ ସାହିତ୍ୟ ଲେଖିବାର ହାତ ଦେଇଥାନ୍ତି ।

ମୁଁ ମୋର ଅଧ୍ୟାପକ ଜୀବନରେ ନିଜକୁ କେବଳ ଶିଶୁ ସାହିତ୍ୟ ମଧ୍ୟରେ ସୀମାବଦ୍ଧ କରିବାକୁ ମନସ୍ଥ କରିଥିଲି । ମୋର ଇଚ୍ଛାଥିଲା ଯେପରି ମୁଁ ଓଡ଼ିଶାର ଶିଶୁମାନଙ୍କ ପାଇଁ ଏକ ସଫଳ ଶିଶୁ ପତ୍ରିକାଟିଏ ପ୍ରକାଶ କରି ପାରିବି । ସେଥିପାଇଁ ମୁଁ ଶିଶୁ ସାହିତ୍ୟ ରଚନା ଓ ଗବେଷଣା ମଧ୍ୟରେ ମୋର ସାହିତ୍ୟ ଚର୍ଚ୍ଚାକୁ ସୀମିତ କରିଥିଲି ।

ମୋର ପ୍ରଥମ ଶିଶୁ ଗଳ୍ପ, "ଆସ ସଙ୍ଗାତ ବଣକୁ ଯିବା" ୧୯୮୦ ମସିହାରେ ଆତ୍ମପ୍ରକାଶ କଲା । ଏହା ମୋର ନିଜସ୍ୱ ଚେଷ୍ଟାରେ ପ୍ରକାଶିତ ହୋଇଥିଲା । ମାତ୍ର ମୁଁ

ଦେଖିଲି ଯେ ନିଜସ୍ୱ ଚେଷ୍ଟାରେ ପ୍ରକାଶିତ ପୁସ୍ତକ ବଜାରକୁ ଛାଡ଼ିବା ବଡ଼ କଷ୍ଟକର ବ୍ୟାପାର । ସେତେବେଳେ ମୁଁ ସମ୍ବଲପୁରରେ ଥିବା ହେତୁ "ଆସ ସଙ୍ଗାତ ବଣକୁ ଯିବା"ର କେତେ ଖଣ୍ଡ ବହି ସମ୍ବଲପୁର ବସଷ୍ଟାଣ୍ଡରେ ଜନୈକ ଭଦ୍ରବ୍ୟକ୍ତିଙ୍କୁ ବିକ୍ରୟ ନିମନ୍ତେ ଦେଇଥିଲି । ସେ ଅନେକ ଖଣ୍ଡ ବିକ୍ରି କରିଥିଲେ ମଧ୍ୟ ମୋତେ ଟଙ୍କାଟିଏ ବି ଦେଇ ନ ଥିଲେ । ତେଣୁ ଏଥିପାଇଁ ସେତେବେଳେ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଖର୍ଚ୍ଚ କରିଥିବା ସମସ୍ତ ଟଙ୍କା ବୁଡ଼ି ଯାଇଥିଲା ।

ଏହାପରେ ୧୯୮୧ ମସିହାରେ ମୋର ବନ୍ଧୁ ଫାଶିୟାର ଆଚାର୍ଯ୍ୟଙ୍କ ସହିତ 'ଶିକ୍ଷା ଦୁନିଆର କଥା ରାଇଜ' ନାମରେ ଏକ ଶିଶୁ ଗଳ୍ପ ଆଚାର୍ଯ୍ୟ ପ୍ରକାଶନୀ, ଝିରପାଣି, ରାଉରକେଲାଦ୍ୱାରା ପ୍ରକାଶିତ ହୋଇଥିଲା । ୧୯୮୩ ମସିହାରେ ମୋର ପ୍ରଥମ ଶିଶୁ ଉପନ୍ୟାସ 'ସୂର୍ଯ୍ୟମୁଖୀ' କଟକର ଝାଞ୍ଜିରମଙ୍ଗଳାସ୍ଥିତ ସୁନାପିଲା ପ୍ରକାଶନୀ ପ୍ରକାଶ କରିଥିଲେ । ୧୯୯୧ ମସିହାରେ ମୋ ରଚିତ ପଣ୍ଡିତ ନୀଳକଣ୍ଠଙ୍କ ଜୀବନୀ ପଣ୍ଡିତ ନୀଳକଣ୍ଠ ସ୍ମୃତି ସଂସଦ, ୩୦୩ ଖାରବେଳ ନଗର, ଭୁବନେଶ୍ୱର ଦ୍ୱାରା ଆତ୍ମପ୍ରକାଶ କରିଥିଲା । ଭାରତୀୟ ଭେଷଜ ବିଜ୍ଞାନର ମୌଳିକ ଚିନ୍ତାଧାରାକୁ ନେଇ ମୁଁ ୧୯୮୦ ମସିହାରେ 'ମୁନା ଡ଼ାକ୍ତର' ନାମକ ଏକ ଶିଶୁ ଉପନ୍ୟାସ ପିଲାମାନଙ୍କ ପାଇଁ ଲେଖିଥିଲି । ଏହା ସେତେବେଳେ ସମ୍ବଲପୁରର ଶାହ ପବ୍ଲିକେଶନ ଓ ଡିଷ୍ଟ୍ରିବ୍ୟୁଟର ପ୍ରକାଶ କରିଥିଲେ । ଏହାର ଦ୍ୱିତୀୟ ସଂସ୍କରଣ ୨୦୦୪ ମସିହାରେ ରଜନୀଶ ପବ୍ଲିକେଶନ, ଜଗତପୁର ଦ୍ୱାରା ପ୍ରକାଶିତ ହୋଇଅଛି ।

ମୋ ରଚିତ ଅନ୍ୟାନ୍ୟ ଶିଶୁ ପୁସ୍ତକଗୁଡ଼ିକ ହେଲା "ବଜାରେ ବାଜା ବାଜାବାଲା (୨୦୦୪), ଭ୍ରମଣ କାହାଣୀ ବିଲାତ ଅନୁଭୂତିର ଅଭୁଲା କଥା (୨୦୦୯) ଓ ମାମୁଘର ହେଉ ଯେତେ ଦୂର (୨୦୧୦) । ଏହାଛଡ଼ା ଅନେକ ପାଣ୍ଡୁଲିପି ଯନ୍ତ୍ରସ୍ଥ ହୋଇ ପ୍ରକାଶ ଅବସ୍ଥାରେ ରହିଅଛି । ସଂପ୍ରତି ମୋ ରଚିତ ଅଧିକାଂଶ ଗଳ୍ପ ଓ କବିତା ଭୁବନେଶ୍ୱରରୁ ପ୍ରକାଶ ମଙ୍ଗରାଜଙ୍କ ସଂପାଦନାରେ ପ୍ରକାଶିତ ହେଉଥିବା ଶିଶୁ ପ୍ରତିଭାରେ ନିୟମିତ ସ୍ଥାନ ପାଉଛି । ଶ୍ରୀମତୀ ସରଳା ପତ୍ରୀଙ୍କ ସଂପାଦିତ ନନ୍ଦନକାନନ, ପ୍ରଶାନ୍ତ ଦାଶଙ୍କ ଶରଗଶଶୀ, ପ୍ରଶାନ୍ତ କରଙ୍କ ପ୍ରତିଷ୍ଠିତ ଓ ପ୍ରଫୁଲ୍ଲ କରଙ୍କ ସଂପାଦିତ ଶିଶୁ ସମାଜରେ ମଧ୍ୟ ପ୍ରକାଶିତ ହେଉଅଛି । ଏତଦ୍‌ବ୍ୟତୀତ ଅନେକ ଲେଖା ଅନୁଗୁଳର ନରେଶ ବେହେରାଙ୍କ ସଂପାଦିତ "କାଳିଆ ସୁନା" ଶିଶୁ ପତ୍ରିକାରେ ଓ ଅନ୍ୟାନ୍ୟ ପତ୍ରପତ୍ରିକାରେ ମଧ୍ୟ ଦୀର୍ଘଦିନ ହେଲା ସ୍ଥାନ ପାଉଅଛି ।

ଆନ୍ତର୍ଜାତିକ ଶିକ୍ଷାକ୍ଷେତ୍ରରେ ଆମ ରାଜ୍ୟର ପ୍ରଥମ ଶିଶୁ ସାହିତ୍ୟ ଗବେଷଣା ପୁସ୍ତକ

ଶିକ୍ଷା ବିଷୟରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ହାସଲ କରିବାର ଯୋଗ୍ୟତା ଦେଇଥିବା ମୋର ସନ୍ଦର୍ଭ "The Educational Implications of Children's Literature" ନୂଆଦିଲ୍ଲୀସ୍ଥ ଦୀପ୍ ଆଣ୍ଡ ଦୀପ୍ ପବ୍ଲିକେଶସନ୍ ଦ୍ୱାରା ୧୯୮୯ ମସିହାରେ ISBN ପ୍ରକାଶନ ନଂ ୮୧-୭୧୦୦-୧୩୮-୬ ଥାଇ ପ୍ରକାଶିତ ହୋଇଅଛି । କେବଳ ପ୍ରକାଶନ ସମୟରେ ଏହାର ନାମ ପରିବର୍ତ୍ତିତ ହୋଇ "Children's Literature and Education in India" ରଖାଯାଇଅଛି ।

ଏହା ଦେଶ ଓ ବିଦେଶର ଅଧିକାଂଶ ଅଗ୍ରଣୀ ବିଶ୍ୱବିଦ୍ୟାଳୟର ପୁସ୍ତକାଳୟରେ ଗଚ୍ଛିତ ଅଛି । ବିଦେଶର କେତେକ ପ୍ରକାଶକ ମଧ୍ୟ ଏହାକୁ ପ୍ରକାଶ କରିଛନ୍ତି ।

ଏଇ ଗବେଷଣାଲବ୍ଧ ପୁସ୍ତକ ହେଉଛି ଆମ ରାଜ୍ୟ ଓଡ଼ିଶାର ଶିଶୁ ସାହିତ୍ୟ ଓ ଶିକ୍ଷା ସଂପର୍କରେ ଲିଖିତ ପ୍ରଥମ ଗବେଷଣା ପୁସ୍ତକ, ଯାହାକି ଇଂରାଜୀ ଭାଷାରେ ଲିଖିତ । ଏହି ଗବେଷଣା ସନ୍ଦର୍ଭର ପରୀକ୍ଷକ ତଥା କାଲିଫର୍ଣ୍ଣିଆ ବିଶ୍ୱ ବିଦ୍ୟାଳୟ ପ୍ରଫେସର ଚାର୍ଲସ ଏସ୍ ବେନ୍‌ସନ୍ (Charles S. Benson)ଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ପ୍ରଫେସର ବେନ୍‌ସନ୍ ଲେଖିଛନ୍ତି :

Mr. Digaraj Brahma provides a most complete review of the evalution of Children's literature in different nations. His origional research deals inter alia with two important matters : (1) Children's own opinions of reading materials to them and (2) School Policy towards Children's access to books. Brahma's analysis appears to be well grounded on developmental psychology".

ଏତଦ୍‌ବ୍ୟତୀତ ଏଇ ଗବେଷଣାଲବ୍ଧ ପୁସ୍ତକରେ ପୃଥିବୀର ବିଭିନ୍ନ ଦେଶ, ଭାରତବର୍ଷର ବିଭିନ୍ନ ରାଜ୍ୟ ଏବଂ ଓଡ଼ିଶାର ଶିଶୁ ସାହିତ୍ୟର ପୃଷ୍ଠଭୂମି ସଂପର୍କରେ ଦର୍ଶାଯାଇଅଛି । ଶିଶୁ ସାହିତ୍ୟର ସାମାଜିକ, ଅର୍ଥନୈତିକ ଓ ମନସ୍ତାତ୍ତ୍ୱିକ ପୃଷ୍ଠଭୂମି ସଂପର୍କରେ ମଧ୍ୟ ବିଶେଷଣାତ୍ମକ ଦୃଷ୍ଟିକୋଣରୁ ଆଲୋକପାତ କରାଯାଇଅଛି ।

ଏଇ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ପ୍ରକାଶିତ ସନ୍ଦର୍ଭ ସଂପର୍କରେ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ନରେନ୍ଦ୍ର ପ୍ରସାଦ ଦାସ କହନ୍ତି, "ମୁଁ ଶିଶୁ ସାହିତ୍ୟ ସଂପର୍କୀୟ

ଅନେକ ଗବେଷଣାତ୍ମକ ସନ୍ଦର୍ଭ ଅଧ୍ୟୟନ କରିଅଛି । ତନ୍ମଧ୍ୟରୁ ଡକ୍ଟର ଦିଗରାଜ ବ୍ରହ୍ମାଙ୍କ ସନ୍ଦର୍ଭର ସ୍ଥାନ ସ୍ୱତନ୍ତ୍ର ଓ ଅନନ୍ୟ । ଏହା ଫଳରେ ତାଙ୍କର ମୌଳିକ ସନ୍ଦର୍ଭ ଆଜି ଦେଶ ବିଦେଶରେ ମାନ୍ୟତା ଲାଭ କରିଅଛି ।"(ବକ୍ତବ୍ୟ : ରାଜଧାନୀ ଶିଶୁ ସାହିତ୍ୟ ସଂସଦ, ବାର୍ଷିକ ଉତ୍ସବ, ମାର୍ଚ୍ଚ, ୨୨, ୨୦୧୫)

**ଆନୁଷ୍ଠାନିକ ସ୍ୱୀକୃତି ଓ ସମ୍ମାନ**

ଆମ ରାଜ୍ୟର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ମୋର ସାହିତ୍ୟିକ କୃତି ଓ ଗବେଷଣାକୁ ସମ୍ମାନ ଜଣାଇ ସମ୍ବର୍ଦ୍ଧିତ କରିଛନ୍ତି । ସେହିସବୁ ଅନୁଷ୍ଠାନ ହେଲା :

- ❒ ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟ ସମ୍ମାନ, ୧୯୮୦
- ❒ କୁଆଁତାରା ଶିଶୁ ସାହିତ୍ୟ ସମ୍ମାନ, ୧୯୯୦
- ❒ ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ ମୁଖପତ୍ର ଶିକ୍ଷା ପ୍ରଦୀପ ରୌପ୍ୟଜୁବୁଲି ଉତ୍ସବ ସମ୍ମାନ, ୨୦୦୧
- ❒ ଶିଶୁ ସାହିତ୍ୟ ରଚନା ଓ ଗବେଷଣା ନିମନ୍ତେ ଶ୍ରେଷ୍ଠ ସମ୍ମାନ, ୨୦୦୧, ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦ, ପୁରୀ
- ❒ ନିରାମୟ ପରିବେଶ ସମ୍ମାନ ୨୦୦୧, ନିରାମୟ ପରିବେଶ, ସଂସ୍ଥା କଟକ
- ❒ ନନ୍ଦନକାନନ ଉଚ୍ଚବିଦ୍ୟାଳୟ ରଜତ ଜୟନ୍ତୀ ସମ୍ମାନ, ୨୦୦୨
- ❒ ଶିଶୁ ବଜାର ସମ୍ମାନ, ୨୦୦୨, ଶିଶୁ ବଜାର ଚୌଦ୍ୱାର
- ❒ ସ୍ୱର୍ଗତଃ ରାମକୃଷ୍ଣ ନନ୍ଦଙ୍କ ପ୍ରତିଷ୍ଠିତ 'ସଂସାର' ସମ୍ମାନ, ୨୦୦୫
- ❒ ରାଜ୍ୟ କଳା ଗବେଷଣା, ପ୍ରଶିକ୍ଷଣ ପରିଷଦ ସ୍କାର୍ଟ ସମ୍ମାନ, ୨୦୦୬
- ❒ ସତ୍ତା ସାହିତ୍ୟ ସଂସଦ, କୋରାପୁଟ, ସତ୍ତା ସମ୍ମାନ, ୨୦୦୭ ଓଡ଼ିଶା ବିଦ୍ୟାଳୟ ଶିକ୍ଷା ସେବା ସଂଘ, ସ୍ୱତନ୍ତ୍ର ସମ୍ମାନ, ୨୦୦୭
- ❒ ଓଡ଼ିଶା ବିଦ୍ୟାଳୟ ଶିକ୍ଷା ସେବା ସଂଘ ସ୍ୱତନ୍ତ୍ର ସମ୍ମାନ
- ❒ ମାଣିକ ବିଶ୍ୱନାଥ ସ୍ମୃତି ସମ୍ମାନ, ୨୦୦୮, ଭୁବନେଶ୍ୱର
- ❒ ଜୟଦେବ ସଂସ୍କୃତି ବିକାଶ ପରିଷଦ, ଜୟଦେବ ସମ୍ମାନ, ୨୦୦୯
- ❒ ରାଜ୍ୟସ୍ତରୀୟ ସର୍ବଶ୍ରେଷ୍ଠ ଶିଶୁ ସାହିତ୍ୟିକ ଘୁଙ୍ଗୁର ସମ୍ମାନ,୨୦୦୯

- ସ୍ନେହସୁଧା ଶିଶୁ ସାହିତ୍ୟ ସମ୍ମାନ, ୨୦୧୦
- ପରଶମଣି ସମଗ୍ରିକ ଶିଶୁ ସାହିତ୍ୟ ସାଧନା ସମ୍ମାନ, ୨୦୧୧, ବାରିପଦା
- ଝୁମୁକା ରୌପ୍ୟ ଜୟନ୍ତୀ ସମାରୋହ ସମ୍ମାନ, ୨୦୧୧
- ରାଜ୍ୟସ୍ତରୀୟ ଶିଶୁ ମହୋତ୍ସବ ସମ୍ମାନ, ପୁରୀ, ୨୦୧୧
- ଶିଶୁ ସାହିତ୍ୟ ଲେଖକ ସମ୍ମେଳନ ସମ୍ମାନ, ଓଡ଼ିଶା, ୨୦୧୧
- ଭାରତୀୟ ଶିକ୍ଷା ବିକାଶ ସଂସ୍ଥାନ, ବିଦ୍ୟାଭୂଷଣ ସମ୍ମାନ, ୨୦୧୩
- ନିଖିଳ ଉତ୍କଳ ଶିଶୁ ସାହିତ୍ୟ ସମ୍ମାନ, ୨୦୧୬

**ସାହିତ୍ୟ ଏକାଡ଼େମୀ ପ୍ରଦତ୍ତ ପୁରସ୍କାରର ବିଚାରକ ମଣ୍ଡଳୀରେ ସ୍ଥାନ**

ରାଜ୍ୟସ୍ତରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ କେନ୍ଦ୍ରସ୍ତରରେ ନୂଆଦିଲ୍ଲୀସ୍ଥ ସାହିତ୍ୟ ଏକାଡ଼େମୀ ତରଫରୁ ବିଭିନ୍ନ ସାରସ୍ୱତ କୃତିକୁ ସମ୍ମାନ ଜଣାଇ ସାହିତ୍ୟିକମାନଙ୍କୁ ପୁରସ୍କାର ଦେବାର ବିଧିବିଧାନ ଅଛି । ଓଡ଼ିଶା ସାହିତ୍ୟ ଏକାଡ଼େମୀ ବିଭିନ୍ନ ସମୟରେ ଶିଶୁ ସାହିତ୍ୟ ବିଭାଗର ସର୍ବଶ୍ରେଷ୍ଠ ମୌଳିକ ସର୍ଜନାର ମନୋନୟନ ଦାୟିତ୍ୱ ଅର୍ପଣ କରିଛନ୍ତି । ସେହିପରି, କେନ୍ଦ୍ର ସାହିତ୍ୟ ଏକାଡ଼େମୀ ମଧ୍ୟ ବାଲ୍ ସାହିତ୍ୟ ପୁରସ୍କାର ଚୟନ କ୍ଷେତ୍ରରେ ଜଣେ ବିଚାରକ ହିସାବରେ ସୁଯୋଗ ଦେଇଛନ୍ତି ।

**ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସମ୍ପର୍କ**

ମୁଁ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠିତ All India Writers and Illustrators for Children (AWIC) ସଂସ୍ଥାର ଜଣେ ଆଜୀବନ ସଦସ୍ୟ । ଏହି ଅନୁଷ୍ଠାନଟି ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ କାର୍ଟୁନିଷ୍ଟ ଶଙ୍କରଙ୍କ ଦ୍ୱାରା ପ୍ରତିଷ୍ଠିତ । ଏହାର ମୁଖପତ୍ର (All India Writers & Illustrators) ରେ ମୋର ବିଭିନ୍ନ ସମୟରେ ଲେଖା ପ୍ରକାଶିତ ହୋଇଅଛି । ମୋ ଲିଖିତ ଓଡ଼ିଆ ଶିଶୁ ସାହିତ୍ୟର ବିଭିନ୍ନ ଲେଖକଙ୍କର ସାହିତ୍ୟକୃତିର ମଧ୍ୟ ମୂଲ୍ୟାୟନ ବାହାରିଛି । ମୋ ଦ୍ୱାରା ପ୍ରସ୍ତୁତ ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ ପ୍ରଫେସର ଜଗନ୍ନାଥ ମହାନ୍ତିଙ୍କ ଉପରେ ରଚିତ A Profile of Jagannath Mohanty ଏବଂ ରାମପ୍ରସାଦ ମହାନ୍ତିଙ୍କ ଉପରେ ଲିଖିତ A Profile of Ramprasad Mohanty ପ୍ରକାଶିତ ହୋଇ ରାଜ୍ୟର ଏଇ ଦୁଇ ଶିଶୁ ସାହିତ୍ୟିକଙ୍କୁ ସେମାନଙ୍କ ଅବଦାନ ସଂପର୍କରେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ପରିଚିତ କରାଇବାର

ସୁଯୋଗ ଦେଇଛି । ଏଇ ପତ୍ରିକାରେ ପ୍ରଫେସର ଜଗନ୍ନାଥ ମହାନ୍ତିଙ୍କ ସହିତ ଲିଖିତ ମୋର କେତେକ ଗବେଷଣାତ୍ମକ ନିବନ୍ଧ ମଧ୍ୟ ପ୍ରକାଶିତ ହୋଇଅଛି ।

ଏତଦ୍‌ବ୍ୟତୀତ ପ୍ରଫେସର ଜଗନ୍ନାଥ ମହାନ୍ତି ଓ ପ୍ରଫେସର ନରେନ୍ଦ୍ର ପ୍ରସାଦ ଦାସଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିବା ଓଡ଼ିଆ ଶିଶୁ ସାହିତ୍ୟ ଏକାଡ଼େମୀର ମଧ୍ୟ ଆଜୀବନ ସଭ୍ୟ ଅଛି । ସଂପ୍ରତି ଅଖିଳ ଭାରତ ଶିଶୁ ସାହିତ୍ୟ ସମ୍ମେଳନ, ଓଡ଼ିଶାର ମୁଁ ଆଜୀବନ ସଭ୍ୟ ଅଛି ।

ମାଣିକ- ବିଶ୍ୱନାଥ ଦାତବ୍ୟ ସ୍ମୃତିନ୍ୟାସ ୧୯୯୨ ମସିହାରେ ପ୍ରଫେସର ଜଗନ୍ନାଥ ମହାନ୍ତିଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଏଇ ସ୍ମୃତିନ୍ୟାସର ସଭ୍ୟ ହିସାବରେ ମୁଁ ଦୀର୍ଘଦିନ କାର୍ଯ୍ୟ କରିଥିଲି । ଏହାର ମୁଖପତ୍ର ଆହ୍ଲାଦିନୀରେ ମୋର ଅନେକ ମୌଳିକ ପ୍ରବନ୍ଧ ମଧ୍ୟ ପ୍ରକାଶିତ ହୋଇଅଛି । ଆହ୍ଲାଦିନୀ, ୧୯୧୪ ମସିହାର ସଂଖ୍ୟାଟି ରାଜ୍ୟର ବିଶିଷ୍ଟ ଶିଶୁ ସାହିତ୍ୟିକ ସୁଶାନ୍ତ କୁମାର ସେନାପତି ଓ ମୋ ଦ୍ୱାରା ସଂପାଦିତ ହୋଇ ଆତ୍ମପ୍ରକାଶ ଲାଭ କରିଅଛି । ଏତଦ୍‌ବ୍ୟତୀତ ୨୦୧୩ ମସିହା "ପ୍ରଫେସର ଜଗନ୍ନାଥ ମହାନ୍ତି ସ୍ମାରକୀ ବକ୍ତୃତା" ଦେବାର ସୌଭାଗ୍ୟ ମଧ୍ୟ ମୋତେ ମିଳିଅଛି । ସେଇ ବକ୍ତୃତା ନିମନ୍ତେ ପ୍ରସ୍ତୁତ ନିବନ୍ଧରେ ପ୍ରଫେସର ଜଗନ୍ନାଥ ମହାନ୍ତି କିପରି ଜଣେ ଶିକ୍ଷାବିତ୍ ହିସାବରେ ତାଙ୍କର ସାମଗ୍ରିକ ଜୀବନକୁ ଶିଶୁ ସାହିତ୍ୟ ଓ ଶିଶୁର ବିକାଶ କ୍ଷେତ୍ରରେ ଉତ୍ସର୍ଗ କରିଥିଲେ ତାହା ଦର୍ଶାଯାଇଅଛି ।

**ଏକାମ୍ର ଶିଶୁ ସାହିତ୍ୟ ସଂସଦ**

ଓଡ଼ିଶାର ଏକ ଜଣାଶୁଣା ଅନୁଷ୍ଠାନ ଭାବେ ଏକାମ୍ର ଶିଶୁସାହିତ୍ୟ ସଂସଦ ପରିଚିତ । ଏହି ଅନୁଷ୍ଠାନଟି ୨୦୦୫ ମସିହାରେ ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ଶରତ କୁମାର ବିଶ୍ୱାଳଙ୍କ ଦ୍ୱାରା ପ୍ରତିଷ୍ଠିତ । ଏହି ସଂସଦର ଉପଦେଷ୍ଟା ହିସାବରେ ମୋତେ ରଖାଯାଇଅଛି । ଏହାର କାର୍ଯ୍ୟକାରିଣୀ ସଦସ୍ୟରୂପେ ବିଶିଷ୍ଟ ଶିକ୍ଷାବିତ୍‌ମାନେ ମଧ୍ୟ ଅଛନ୍ତି । ସେମାନେ ହେଲେ : ଡକ୍ଟର ଦିଗରାଜ ବ୍ରହ୍ମା, ଉପଦେଷ୍ଟା, ଡକ୍ଟର ଶରତ କୁମାର ବିଶ୍ୱାଳ, ସଭାପତି, ଡକ୍ଟର ବିଷ୍ଣୁଚରଣ ସାହୁ, କାର୍ଯ୍ୟକାରୀ ସଭାପତି, ଡକ୍ଟର ଅର୍ଜ୍ଜୁନ କୁମାର ବିଶ୍ୱାଳ, ଉପ ସଭାପତି, ଶ୍ରୀ ଲକ୍ଷ୍ମୀପ୍ରସାଦ ସାହୁ, ସଂପାଦକ, ଶ୍ରୀ ସହଦେବ ପଣ୍ଡା, କୋଷାଧ୍ୟକ୍ଷ, ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତି, ସଭ୍ୟା, ଶ୍ରୀମତୀ ହରିପ୍ରିୟା ପଟ୍ଟନାୟକ, ସଭ୍ୟା, ଶ୍ରୀ ଶରତ ପାଇକରାୟ, ସଭ୍ୟ, ଶ୍ରୀ ପବିତ୍ର ମୋହନ ଦାସ, ସଭ୍ୟ, ଶ୍ରୀ ଜବାହରଲାଲ ସୁବୁଦ୍ଧି, ସଭ୍ୟ, ଶ୍ରୀ ପ୍ରକାଶ ମଙ୍ଗରାଜ, ସଂଯୋଜକ । ଏଇ ଅନୁଷ୍ଠାନର ଲକ୍ଷ୍ୟ ହେଲା – ଓଡ଼ିଆ ଶିଶୁ ସାହିତ୍ୟ ଓ ଶିଶୁର ଅନ୍ତର୍ନିହିତ ଶକ୍ତିର ବିକାଶ ସାଧନ କରିବା, କୃତୀ ଶିକ୍ଷକ

ଓ କୃତୀ ଶିଶୁ ସାହିତ୍ୟିକମାନଙ୍କୁ ଉପାୟନ ପ୍ରଦାନ, ଶିଶୁ ସାହିତ୍ୟ ପୁସ୍ତକ ଓ ଶିଶୁ ସାହିତ୍ୟ ପତ୍ରିକା ପ୍ରକାଶ କରିବା, ଗୁଣାତ୍ମକ ଶିକ୍ଷାର ଉନ୍ନତି ପାଇଁ ଶିକ୍ଷାନୁଷ୍ଠାନ ଓ ଶିକ୍ଷକମାନଙ୍କ ପାଇଁ କର୍ମଶାଳା, ପାଠଚକ୍ର ସମ୍ମିଳନୀ ଆଦିର ଆୟୋଜନ କରିବା । ଦୀର୍ଘ ଏକ ଦଶନ୍ଧି ଧରି ଏଇ ଅନୁଷ୍ଠାନ ନିଜର ଲକ୍ଷ୍ୟ ପଥରେ ଆଗେଇ ଚାଲିଥିଲାବେଳେ ଏହାର ସଦସ୍ୟମାନେ ବିଭିନ୍ନ ଅନୁଷ୍ଠାନ ସହିତ ସଂପର୍କ ରଖି ରାଜ୍ୟର କଳା-ସାହିତ୍ୟ-ସଂସ୍କୃତିର ବିକାଶ ସାଧିତ କରୁଛନ୍ତି ।

**ମହିମା ଆଶ୍ରମ ଓ ମହିମା ଜ୍ଞାନ ମନ୍ଦିର, ପଟିଆ, ଚନ୍ଦ୍ରଶେଖରପୁର**

ଭୁବନେଶ୍ୱରର ଜୟଦେବବିହାର ଛକରୁ ନନ୍ଦନକାନନ ରାସ୍ତାରେ ପ୍ରାୟ ୫ କିଲୋମିଟର ଗଲେ ପଟିଆ ଛକର ଠିକ୍ ପୂର୍ବରୁ ମହିମା ଆଶ୍ରମ ଓ ମହିମାଜ୍ଞାନ ମନ୍ଦିର ଶିକ୍ଷାନୁଷ୍ଠାନ ପଡ଼େ । ଏଇ ଅନୁଷ୍ଠାନଟି ମହିମା ସ୍ୱାମୀଙ୍କ ଆଶୀର୍ବାଦ ଲାଭ କରି ସାଧୁ ଦୟାନିଧି ଦାସ ଓ ତାଙ୍କ ପଟ୍ଟଶିଷ୍ୟ ସାଧୁ ସୁବାସ ଦାସଙ୍କ ଦ୍ୱାରା ୧୯୯୩ ମସିହାରେ ପ୍ରତିଷ୍ଠିତ ହୋଇଅଛି । ଏଥିରେ ପ୍ରାକ୍ ବିଦ୍ୟାଳୟ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଦାନ ଦେବାର ବ୍ୟବସ୍ଥା ଅଛି ।

ଦୀର୍ଘ ଦୁଇ ଦଶନ୍ଧି ହେଲା ମୁଁ ଏଇ ଅନୁଷ୍ଠାନର ବିଭିନ୍ନ କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ ଅଛି । ଶିକ୍ଷାବିତ୍‌ମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିବା ହେତୁ ଏଇ ଅନୁଷ୍ଠାନର ଶିକ୍ଷାର୍ଥୀମାନଙ୍କ ବୌଦ୍ଧିକ ଓ ଆତ୍ମିକ ବିକାଶ ଘଟୁଅଛି ।

**ରେଭେନ୍‌ସା, ୭୦ ବାର୍ଷିକ ବନ୍ଧୁମିଳନ ଓ ଦରଦୀ ବନ୍ଧୁ ସୌମ୍ୟରଞ୍ଜନ**

ଜଣେ ଜଣେ ସ୍ନାତକ ହେବା ପରେ ଆମ ବନ୍ଧୁମାନଙ୍କ ମଧ୍ୟରୁ ଅଧିକାଂଶ ୧୯୭୦ ମସିହାର ବାର୍ଷିକ ପରୀକ୍ଷା ପରେ ପରେ ପରସ୍ପରଠାରୁ ଅଲଗା ହୋଇଗଲେ । ମହାବିଦ୍ୟାଳୟ ପରିସରରେ ଆରମ୍ଭ ହୋଇଥିବା ବନ୍ଧୁତ୍ୱ ମାନସିକ ସ୍ତରରେ ମଝିରେ ମଝିରେ ଉଙ୍କିମାରୁଥିଲେ ମଧ୍ୟ ସମସ୍ତ ବନ୍ଧୁମାନଙ୍କୁ ଏକ ସ୍ଥାନରେ ଏକ ପରିବେଶରେ ଦେଖିବାର ଓ ଭାବବିନିମୟର ସୁଯୋଗ ନ ଥିଲା । ପରବର୍ତ୍ତୀ ସମୟରେ ଆମକୁ ଏଇ ସୁଯୋଗ ଦେଇଛନ୍ତି ଆମ୍ଭମାନଙ୍କର ବନ୍ଧୁ ତଥା ସମ୍ବାଦର ସୁଯୋଗ୍ୟ ସଂପାଦକ ଶ୍ରୀଯୁକ୍ତ ସୌମ୍ୟରଞ୍ଜନ ପଟ୍ଟନାୟକ । ଶ୍ରୀଯୁକ୍ତ ପଟ୍ଟନାୟକ ଜଣେ ସ୍ନେହୀ ଓ ବନ୍ଧୁବତ୍ସଳ ବ୍ୟକ୍ତି । ସେ ୧୯୮୨ ମସିହାରେ ରେଭେନ୍‌ସା : ୭୦ ବନ୍ଧୁମିଳନ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ଏଭଳି ବନ୍ଧୁ ମିଳନ କାର୍ଯ୍ୟକ୍ରମ ଆମ ରାଜ୍ୟର ସର୍ବପ୍ରଥମ ବନ୍ଧୁମିଳନ ଥିଲା । ପ୍ରାୟ କେତେ ବର୍ଷ ହେଲା ଏଇ କାର୍ଯ୍ୟକ୍ରମ ଭୁବନେଶ୍ୱରର ଭିଆଇପି କଲୋନୀସ୍ଥ

ତାଙ୍କ ବାସଭବନରେ ଆୟୋଜନ କରାଯାଉଅଛି । ପ୍ରତ୍ୟେକ ବନ୍ଧୁମାନଙ୍କୁ ତାଙ୍କ ପରିବାର ସହିତ ଯୋଗଦେବା ନିମନ୍ତେ ରେଭେନ୍‌ସା-୭୦ ଆନୁକୂଲ୍ୟରେ ପଟ୍ଟନାୟକ ଦମ୍ପତି ଆମନ୍ତ୍ରଣ କରି ଆପ୍ୟାୟିତ କରିଥାନ୍ତି । ବନ୍ଧୁ ପ୍ରଫେସର ଶରତ ନାୟକ ଓ ପ୍ରଫେସର ସରୋଜ ପଣ୍ଡା ଏହି କାର୍ଯ୍ୟକ୍ରମକୁ ପ୍ରାୟତଃ ଦେଖାଶୁଣା କରନ୍ତି ।

ଶ୍ରୀଯୁକ୍ତ ସୌମ୍ୟରଞ୍ଜନ ପଟ୍ଟନାୟକ ବନ୍ଧୁମାନଙ୍କୁ ଯେତିକି ଭଲ ପାଆନ୍ତି ତାହାଠାରୁ ଅଧିକ ନିଜ ଜନ୍ମମାଟି ଓଡ଼ିଶାକୁ ମଧ୍ୟ ପ୍ରାଣଠାରୁ ଅଧିକ ଭଲ ପାଆନ୍ତି । ସେଥିପାଇଁ ସେ "ଆମ ଓଡ଼ିଶା" ନାମକ ସଂଗଠନ ଗଢ଼ି ଓଡ଼ିଶାର କଳା - ସାହିତ୍ୟ - ସଂସ୍କୃତିର ପୃଷ୍ଠପୋଷକତା କରି ଆସୁଛନ୍ତି ।

"ଆମ ଓଡ଼ିଶା" ଆନୁକୂଲ୍ୟରେ ଶ୍ରୀଯୁକ୍ତ ପଟ୍ଟନାୟକ ଦୀର୍ଘଦିନହେଲା ରକ୍ତଦାନ ଶିବିରମାନ ରାଜ୍ୟର ବିଭିନ୍ନ ସ୍ଥାନରେ ଆୟୋଜନ କରି ବାର୍ତ୍ତା ଦେଇଛନ୍ତି ଯେ "ଆମେ ରକ୍ତ ବିନା ଜଣେ ବ୍ୟକ୍ତିର ଅମୂଲ୍ୟ ଜୀବନର ଅବସାନ ଘଟିବାକୁ ଦେବୁ ନାହିଁ ।" ସେଇପରି ଅର୍ଥ ବିନା ଯେମିତି ଜଣେ ମେଧାବୀ ଛାତ୍ର ଶିକ୍ଷାଦାନରୁ ବଞ୍ଚିତ ନ ହୁଅନ୍ତୁ, ସେଥିପାଇଁ ସମ୍ବାଦ - ଆମ ଓଡ଼ିଶା ଚାରିଟେବୁଲ ଟ୍ରଷ୍ଟ ଆନୁକୂଲ୍ୟରେ ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ମଧ୍ୟ ବୃତ୍ତି ପ୍ରଦାନର ବ୍ୟବସ୍ଥା ସେ କରିଛନ୍ତି ।

ରାଜ୍ୟର ଏଇପରି ଜଣେ ଜନ ହିତୈଷୀ ବ୍ୟକ୍ତି ଓ ତାଙ୍କର ବନ୍ଧୁମାନଙ୍କ ମିଳନ ଉତ୍ସବ ରେଭେନ୍‌ସା-୭୦ କେବଳ ବନ୍ଧୁମିଳନରେ ସୀମିତ ନ ହୋଇ ସେଦିନ ରାଜ୍ୟର ବିକାଶ ସଂପର୍କୀୟ ଚିନ୍ତନ ଓ ମନନର ପରିକଳ୍ପନା କରିଥାଏ ।

## ମୋ ସ୍ମୃତିର ଶେଷ ଫର୍ଦ୍ଦ

ମଣିଷର ସ୍ମୃତି ଓ ବିସ୍ମୃତିକୁ ନେଇ ଗଢ଼ିଉଠେ ମଣିଷର ଆତ୍ମକଥା । ମୋ ସ୍ମୃତି ମୋ ପାଇଁ ଯେତିକି ପବିତ୍ର ସେତିକି ମଧ୍ୟ ଆନନ୍ଦଦାୟକ । କାରଣ ଏହି ପବିତ୍ର ସ୍ମୃତିର ନଖ ଦର୍ପଣରେ ମୁଁ ଦେଖୁଛି ଆମ ଗାଁ ରୁଦ୍ରପୁରର ଦୁଇଧାଡ଼ି ଘର ମଧ୍ୟ ଦେଇ ବଗିଚା ମୁଣ୍ଡରୁ ବିରୂପା ନଦୀବନ୍ଧ ପର୍ଯ୍ୟନ୍ତ ଲମ୍ବିଯାଇଥିବା ଛୋଟିଆ ରାସ୍ତା । ଆଉ ସେଇ ରାସ୍ତାର ଉଭୟ ପାର୍ଶ୍ୱରେ ଥିବା ଆମ ପୂର୍ବପୁରୁଷଙ୍କର ଯୁଗଯୁଗର ଭିଟାମାଟି । କେଉଁକାଳରୁ ସେଇ ଗାଁର ଭିଟାମାଟିରେ ସେମାନେ ଗଢ଼ିଥିଲେ ସେମାନଙ୍କ ଆଭିଜାତ୍ୟପୂର୍ଣ୍ଣ ଘର, ସେଇସବୁ ଘର କ୍ରମଶଃ ଲୋପ ପାଇ ତା' ସ୍ଥାନରେ ଠିଆ ହୋଇଛି ଆଧୁନିକତାର ସ୍ପର୍ଶ ପାଇ ନୂତନ ନୂତନ ଘର । ଅତୀତରେ ସଞ୍ଜପହରରେ ଅନ୍ଧାର ହୋଇ ଯାଉଥିବା ଗାଁଦାଣ୍ଡ ଆଜି ବିଜୁଳିବତିରେ ଆଲୋକିତ ।

ଗାଁ ମୁଣ୍ଡରୁ ଚାଲିଚାଲି ଗଲାବେଳେ ମୁଁ ଖୋଜେ ମୋ ଦଦେଇ ସୋମନାଥ ପଣ୍ଡାଙ୍କୁ ଓ କକେଇ ସୂର୍ଯ୍ୟମଣି ପଣ୍ଡାଙ୍କୁ । ସେମାନଙ୍କ ଘରକୁ ଲାଗି ଆମ ଗ୍ରାମର ପ୍ରଥମ ମାଟ୍ରିକୁଲେଟ୍‌ର ସମ୍ମାନ ପାଇ ରାଜ୍ୟ ବାହାରେ ଚାକିରି କରିଥିବା ଓ ପରବର୍ତ୍ତୀ ସମୟରେ ସମାଜ ସେବାରେ ନିୟୋଜିତ ଥିବା ଅନ୍ୟତମ ଦଦେଇ ତଥା ସ୍ୱାଧୀନତା ସଂଗ୍ରାମୀ ଗିରିଧାରୀ ପଣ୍ଡାଙ୍କୁ । ତାଙ୍କ ଘର ସାମନାରେ ଥିବା ଭାଲୁଆ ନନା (ନରେନ୍ଦ୍ର ପଣ୍ଡା) ଓ ତାଙ୍କ ଘରକୁ ଲାଗି ମୋ କକେଇ ବ୍ରଜ କିଶୋର ପଣ୍ଡାଙ୍କୁ ଓ ତାଙ୍କ ପଡ଼ୋଶୀ ଦ୍ୱାରିକାନାଥ ପଣ୍ଡାଙ୍କୁ । ସେଇପରି ଗାଁ ମଝିରେ ଥିବା ରାଧାଅଜା (ରାଧାମୋହନ ପଣ୍ଡା), ଦଦେଇ ବିଶ୍ୱନାଥ ପଣ୍ଡା, ବାମାନା (ବାମଦେବ ପଣ୍ଡା), ବୟସରେ ବଡ଼ ଓ ଆମକୁ ସାଦରରେ କକେଇ ଡାକୁଥିବା ଶୁକୁରିଆ (ଭ୍ରମରବର ପଣ୍ଡା), ବିଷ୍ଣୁଆନା (ବିଷ୍ଣୁଚରଣ ବ୍ରହ୍ମା) ନଟିଆନା, କକେଇ ମାର୍କଣ୍ଡ ପଣ୍ଡା, ଭଗିଆନା (ଭଗବାନ ପଣ୍ଡା) ଓ ହରିଆନା (ହରିହର ବ୍ରହ୍ମା) । କିନ୍ତୁ ସେମାନଙ୍କୁ ମୁଁ ବା ପାଇବି କିପରି ? ସେମାନେ ସଂପ୍ରତି ଗାଆଁ ମାଟିର ମୋହମମତା ଛାଡ଼ି ବଡ଼ବଡୁଆ ହୋଇ ଯାଇଛନ୍ତି ।

ତା'ପରେ ପୂଜାପଡ଼ିଆ ଅତିକ୍ରମକରି ମୁଁ ଯେତେବେଳେ ଯାଏ ଦେଖେ ମୋ କକେଇ ସଦାନାଥ ପଣ୍ଡାଙ୍କ ଭଗ୍ନ ଭିଟାମାଟି । ସେ ଆଜି ନାହାଁନ୍ତି । ତାଙ୍କର ଏକମାତ୍ର ପୁତ୍ର ନୃସିଂହ ଚରଣ ବ୍ରହ୍ମାଙ୍କର ମଧ୍ୟ ଅକାଳ ବିୟୋଗ ହୋଇ ଯାଇଅଛି । ମୋ ଜେଜେ ଗୋପୀନାଥ ପଣ୍ଡା ଓ ସଦା କକେଇଙ୍କ ବାପା ଚକ୍ରଧର ପଣ୍ଡା ହେଉଛନ୍ତି ଦୁଇ ଭାଇ । ମୋ ଜେଜେଙ୍କ ପିତା ଥିଲେ ଚନ୍ଦ୍ରଶେଖର ପଣ୍ଡା । ଜେଜେଙ୍କର ଥିଲେ ଚାରି ପୁଅ, ରଘୁନାଥ ପଣ୍ଡା, ଲକ୍ଷ୍ମଣ ପଣ୍ଡା, କୁଞ୍ଜବିହାରୀ ପଣ୍ଡା ଓ ପଞ୍ଚାନନ ପଣ୍ଡା । ସେମାନେ ସମସ୍ତେ ଆଜି ସ୍ୱର୍ଗୀୟ ।

ମୋ ଦଦେଇ ସ୍ୱର୍ଗତଃ ରଘୁନାଥ ପଣ୍ଡା ଜଣେ ଗୌରବର୍ଣ୍ଣଯୁକ୍ତ ଦୀର୍ଘକାୟ ବ୍ୟକ୍ତି ଓ ସ୍ୱାଧୀନତା ସଂଗ୍ରାମୀ ଥିଲେ । ତାଙ୍କୁ ଆମ ଘରର ପିଲାମାନେ ଜେଜେ ବୋଲି ଡାକୁଥାନ୍ତି । ମୋ ବାପା ଲକ୍ଷ୍ମଣ ପଣ୍ଡା ତାମ୍ରବର୍ଣ୍ଣଯୁକ୍ତ ଗୌରବର୍ଣ୍ଣ ବିଶିଷ୍ଟ ଉଚ୍ଚ ଉଚ୍ଚତା ବିଶିଷ୍ଟ ବ୍ୟକ୍ତି ଥିଲେ । ସେ ଯେତିକି ନମ୍ର ଥିଲେ, ସେତିକି ବିନୟୀ ମଧ୍ୟ । ଦିନେ କେବେ କାହାକୁ ନିନ୍ଦା କରିବାର ମୁଁ ଦେଖି ନାହିଁ କିମ୍ବା ତାଙ୍କ ଶତ୍ରୁର ଅନିଷ୍ଟ ଚିନ୍ତା କରିବାର ମଧ୍ୟ ଲକ୍ଷ୍ୟ କରି ନାହିଁ । ଅଧିକାଂଶ ସମୟରେ ସେ ମୋତେ କଥାପ୍ରସଙ୍ଗରେ କହୁଥିଲେ । "କାହାରି ମନରେ କେବେ କଷ୍ଟ ନ ଦେବା ପାଇଁ" । ତାହା ଯେତେଦୂର ସମ୍ଭବ ମୁଁ ମୋର ଜୀବନରେ ପାଳନ କରିବାକୁ ଚେଷ୍ଟା କରିଛି ।

ବାପାଙ୍କର ତଳଭାଇ ସ୍ୱର୍ଗତଃ ପଞ୍ଚାନନ ପଣ୍ଡା ଉଚ୍ଚ ଶିକ୍ଷିତ ଥିଲେ । ସେ ପ୍ରଥମେ ଓଡ଼ିଶା ଲୋକସେବା ଆୟୁକ୍ତଙ୍କ କାର୍ଯ୍ୟାଳୟରେ ଅବସ୍ଥାପିତ ହୋଇଥିଲେ । ପରବର୍ତ୍ତୀ ସମୟରେ ଭାରତ ସରକାରଙ୍କ ଅଧୀନରେ କଟକରେ କାର୍ଯ୍ୟରତ ଥିଲେ । ମୁଁ ଭଲ ପାଠ ପଢୁଥିବା ହେତୁ ତାଙ୍କର ମୋ ପ୍ରତି ଶ୍ରଦ୍ଧା ଥିଲା । ଗାଁକୁ ବିଭିନ୍ନ ସମୟରେ ଆସୁଥିଲାବେଳେ ସେ ମୋତେ ପାଠ ପଚାରୁଥିଲେ । ମୋ ଉତ୍ତର ଶୁଣି ଖୁସି ହେଉଥିଲେ ।

ବାପାଙ୍କର ଅନ୍ୟଜଣେ ଭାଇ କୁଞ୍ଜବିହାରୀ ପଣ୍ଡା ଅଳ୍ପ ବୟସରେ ମୃତ୍ୟୁବରଣ କରିଥିଲେ । ଆମେ ପିଲାମାନେ ତାଙ୍କୁ ଦେଖିନାହୁଁ କି ଜାଣିନାହୁଁ । ତାଙ୍କ ସ୍ତ୍ରୀ ରାଜଖୁଡ଼ି ବାଲ୍ୟବିଧବା ହୋଇ ଦେବିଲ୍‌ରେ ରହୁଥିଲେ ।

ମୋ ବାପାଙ୍କର ଛଅ ଝିଅ ପରେ ଆମେ ଦୁଇ ପୁଅ । ବାପାଙ୍କର ଛଅ ଝିଅ ମଧ୍ୟରୁ ଦୁଇଜଣଙ୍କ ଅକାଳ ବିୟୋଗ ଘଟିଥିଲା । ଆମେ ସେମାନଙ୍କୁ ଦେଖିନାହୁଁ ।

ବାପାଙ୍କର ବଡ଼ ଝିଅ ହାରାମଣି ଦେବୀ ପୂର୍ବକଚ୍ଛସ୍ଥ ବିଶିଷ୍ଟ ସମାଜସେବୀ ତଥା ଶିକ୍ଷକ ଇନ୍ଦ୍ରମଣି ପାଣିଗ୍ରାହୀଙ୍କୁ ବିବାହ କରିଥିଲେ । ହାରାନାନୀଙ୍କ ତଳ ଭଉଣୀ ବାଉତି ନାନୀ ସମସରପୁର ଗ୍ରାମର ପ୍ରାଥମିକ ଶିକ୍ଷକ ରମେଶଚନ୍ଦ୍ର ଆଚାର୍ଯ୍ୟଙ୍କ ପାଣିଗ୍ରହଣ କରିଥିଲେ । ବାଉତି ନାନୀଙ୍କ ତଳ ଭଉଣୀ ଦୋଲାନୀ ଯଶୋରାଜପୁର ଗ୍ରାମର ବିଶିଷ୍ଟ ଶିକ୍ଷକ ବଂଶୀଧର ମିଶ୍ର ଓ ଦୋଳିନାନୀଙ୍କ ତଳ ଭଉଣୀ ଟୁନିନାନୀ ମଉଦା ଖଣ୍ଡେଇତାର ଗଣେଶ୍ୱର ମିଶ୍ରଙ୍କୁ ବିବାହ କରିଛନ୍ତି । ଆଜି ସମୟ ସ୍ରୋତରେ ମୋର ବଡ଼ ଭଉଣୀ ହାରାନାନୀ ଓ ଭିଣୋଇ ଇନ୍ଦ୍ରମଣି ପାଣିଗ୍ରାହୀଙ୍କ ସ୍ୱର୍ଗାବାସ ହୋଇଅଛି । ଟୁନାନିର ଅକାଳ ବିୟୋଗ ହୋଇଅଛି । ଭିଣୋଇ ବଂଶୀଧର ମିଶ୍ର ଆଉ ଇହଜଗତରେ ନାହାଁନ୍ତି ।

ମୋ ବଡ଼ ଭାଇ ଚତୁର୍ଭୁଜ ବ୍ରହ୍ମା ପୁରୀ ବିଦ୍ୟାଳୟ ସମୂହର କ୍ରୀଡ଼ାବିଭାଗର ପରିଦର୍ଶକ ଭାବେ ଅବସର ନେଇଛନ୍ତି । ରାଜ୍ୟର ଜୁନିୟର ରେଡ଼କ୍ରସର ଅଧିକାରୀ ଭାବରେ ସେ କିଛି ବର୍ଷ କାର୍ଯ୍ୟ କରିଥିଲେ । ସେ ଭେଡ଼ା ସାଲେପୁର ଗ୍ରାମନିବାସୀ ବିଦ୍ୱାନ ପଣ୍ଡିତ ବ୍ରହ୍ମାନନ୍ଦ ଷଡ଼ଙ୍ଗୀଙ୍କ ଜ୍ୟେଷ୍ଠା କନ୍ୟା ହାରାମଣି ଷଡ଼ଙ୍ଗୀଙ୍କୁ ବିବାହ କରିଛନ୍ତି । ତାଙ୍କର ବଡ଼ ପୁଅ ଡକ୍ଟର ସରୋଜ ସୁନ୍ଦର ବ୍ରହ୍ମା ସିଡ଼ିଏସ୍ଥିତ ଡିଏଭି ପବ୍ଲିକ୍ ସ୍କୁଲରେ ପିଜି ଶିକ୍ଷକଭାବେ ଅବସ୍ଥାପିତ । ଝିଅ ସୁକାନ୍ତି ବ୍ରହ୍ମା କୃଷି ବିଜ୍ଞାନୀ ବେଣୁଧର ପଣ୍ଡାଙ୍କୁ ବିବାହ କରିଛନ୍ତି । ଆୟୁଷ୍ମାନ ସରୋଜର ଐଶ୍ୱର୍ଯ୍ୟା ଓ ଅନନ୍ୟା ନାମକ ଦୁଇଟି କନ୍ୟା ସନ୍ତାନ । ସେ ଛଅଗାଁ ନିବାସୀ ସାଧୁଚରଣ ପତ୍ରୀଙ୍କ କନିଷ୍ଠ କନ୍ୟା ଅନିମା ପତ୍ରୀଙ୍କୁ ବିବାହ କରିଛନ୍ତି ।

ମୋ ପରିବାର କହିଲେ ଚାରି ପୁଅ, ଆମେ ସ୍ୱାମୀ ଓ ସ୍ତ୍ରୀ । ବଡ଼ପୁଅ ଶ୍ରୀମାନ୍ ଜ୍ୟୋତିପ୍ରକାଶ ବ୍ରହ୍ମା, ଏମ୍.ଏ. (ରାଜନୀତି ବିଜ୍ଞାନ), ଏଲ.ଏଲ.ବି ଏବଂ ପି.ଜି.ଡ଼ି.ଏମ୍ । ଦ୍ୱିତୀୟ ପୁତ୍ର ଶ୍ରୀମାନ୍ ଦୀପ୍ତିପ୍ରକାଶ ବ୍ରହ୍ମା, ଏମ୍.ଏ., ଏମ୍.ଫିଲ୍, ଏମ୍.ବି.ଏ., ଏଲ.ଏଲ.ଏମ୍, ତୃତୀୟ ପୁତ୍ର ଶ୍ରୀମାନ ଶକ୍ତିପ୍ରକାଶ ବ୍ରହ୍ମା, ବି.ଟେକ୍ (ମେକାନିକାଲ), ପୋଷ୍ଟ ଗ୍ରାଜୁଏଟ୍ ଡ଼ିପ୍ଲୋମା-ଇନ୍- ପ୍ଲାଷ୍ଟିକ୍ ଇଞ୍ଜିନିୟରିଙ୍ଗ । ଏଇ ପ୍ଲାଷ୍ଟିକ୍ ଇଞ୍ଜିନିୟରିଙ୍ଗ ପରୀକ୍ଷାରେ ସେ ସର୍ବଭାରତୀୟସ୍ତରରେ ତୃତୀୟ ସ୍ଥାନ ଅଧିକାର କରିଥିଲେ । ସବାସାନପୁଅ ଶ୍ରୀମାନ୍ କାନ୍ତି ପ୍ରକାଶ ବ୍ରହ୍ମା, ଏମ୍.ଟେକ୍ (ଆଇ.ଆଇ.ଟି, ନୂଆଦିଲ୍ଲୀ) ଏବଂ ଭୁବନେଶ୍ୱରସ୍ଥିତ ଜାଭିୟର ପ୍ରତିଷ୍ଠାନରୁ ମ୍ୟାନେଜମେଣ୍ଟ ଡିଗ୍ରୀ ହାସଲ କରି ସ୍ୱର୍ଣ୍ଣପଦକ ହାସଲ କରିଛନ୍ତି ।

ଶ୍ରୀମାନ୍ ଜ୍ୟୋତିପ୍ରକାଶ ପତଣ୍ଡା ନିବାସୀ କାଶୀନାଥ ପଣ୍ଡାଙ୍କ ଦ୍ୱିତୀୟ କନ୍ୟା ଆୟୁଷ୍ମତୀ ସୌମ୍ୟା ସାରସ୍ୱତା ପଣ୍ଡା, ଏମ୍.ଏ. (ଜର୍ଣ୍ଣାଲିଜିମ୍)ଙ୍କୁ ବିବାହ କରିଛନ୍ତି । ଦ୍ୱିତୀୟ ପୁତ୍ର କଟକ ତୁଳସୀପୁରସ୍ଥିତ ପ୍ରତାପକେଶରୀ ପଣ୍ଡାଙ୍କ ଦ୍ୱିତୀୟ କନ୍ୟା ଆୟୁଷ୍ମତୀ ସନ୍ଧ୍ୟାରାଣୀ ପଣ୍ଡା, ଏମ୍.ଏ(ଅର୍ଥନୀତି)ଙ୍କ ପାଣିଗ୍ରହଣ କରିଛନ୍ତି । ତୃତୀୟ ପୁତ୍ର ଶକ୍ତିପ୍ରକାଶ କଟକ ତେଲେଙ୍ଗା ବଜାର ନିବାସୀ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ କନ୍ୟା ଆୟୁଷ୍ମତୀ ଅନ୍ନପୂର୍ଣ୍ଣା ମହାପାତ୍ର, ବି.ଏସ୍.ସି(ଡିଷ୍ଟିଂସନ), ଏମ୍‌ବିଏଙ୍କୁ ଓ ସବାସାନ ପୁଅ କାନ୍ତିପ୍ରକାଶ ବଡ଼ମ୍ବା ନିକଟସ୍ଥ ଶଙ୍ଖାମେରୀ ଗ୍ରାମର ଶ୍ରୀ ଅନିରୁଦ୍ଧ ମିଶ୍ରଙ୍କ କନ୍ୟା ଆୟୁଷ୍ମତୀ ଶ୍ୱେତା ମିଶ୍ର, ବି.ଟେକ୍(ମେକାନିକାଲ)ଙ୍କ ପାଣିଗ୍ରହଣ କରିଛନ୍ତି ।

ସଂପ୍ରତି ବଡ଼ ପୁଅ ଜ୍ୟୋତିପ୍ରକାଶର ପୁତ୍ର ଦେବାଂଶୁ ବ୍ରହ୍ମା (ରିଷି) ଚନ୍ଦ୍ରଶେଖରପୁରସ୍ଥିତ ଡ଼ି.ଏ.ଭି ପବ୍ଲିକ ସ୍କୁଲରେ ଅଧ୍ୟୟନରତ । ଦୀପ୍ତିପ୍ରକାଶର ଶିଶୁପୁତ୍ର ରିକୁଲ (ରୁଦ୍ରାଂଶୁ ବ୍ରହ୍ମା) ଆଦ୍ୟ ଶୈଶବର ପ୍ରଥମ ପାହାଚରେ ଅଛି ।

ମୋ କକେଇ ସ୍ୱର୍ଗତଃ ପଞ୍ଚାନନ ପଣ୍ଡାଙ୍କ ଦୁଇ ପୁଅ ଓ ଦୁଇ ଝିଅ । କକେଇଙ୍କ ବଡ଼ ପୁଅ ଜଗଦାନନ୍ଦ ବ୍ରହ୍ମା ଭାରତୀୟ ବାୟୁସେନାରେ କମିଶନ୍ ପାହ୍ୟାର ଜଣେ ଉଚ୍ଚ ପଦସ୍ଥ ଅଧିକାରୀ ଭାବେ କାର୍ଯ୍ୟ କରିଥିଲେ । ଏବେ ସେ ଭୁବନେଶ୍ୱରରେ ଅବସରକାଳୀନ ଜୀବନ ଅତିବାହିତ କରୁଛନ୍ତି । ଦୁଇ ଝିଅ ଗୀତାରାଣୀ ଓ ଚିତ୍ରା ମଧ୍ୟ ଯୋଗ୍ୟତାସଂପନ୍ନା । କକେଇଙ୍କ ସାନ ପୁଅ ନିଖିଳାନନ୍ଦ ବ୍ରହ୍ମା ଏକ ମେଡ଼ିସିନ୍ କମ୍ପାନୀର ଉଚ୍ଚ ପଦସ୍ଥ ଅଫିସର ।

ମୋ ଦଦେଇ ରଘୁନାଥ ପଣ୍ଡାଙ୍କ କୌଣସି ସନ୍ତାନସନ୍ତତି ନ ଥିଲେ । ସେ ଆମ ଗାଁରେ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁମୁଖରେ ପଡ଼ିଥିବା ବାଳକୃଷ୍ଣ ପଣ୍ଡା ଓ ତାଙ୍କ

ସ୍ତ୍ରୀଙ୍କ ଶିଶୁପୁତ୍ରକୁ ସେ ସ୍ଥାନରୁ ଉଠାଇ ଆଣିଥିଲେ । ତାଙ୍କର ନାମ ଦେଇଥିଲେ ଅରକ୍ଷିତ । ଅରକ୍ଷିତ ନନା (କୃପାସିନ୍ଧୁ ପଣ୍ଡା)ଙ୍କ ଦୁଇପୁଅ : ରାମ ନାରାୟଣ ବ୍ରହ୍ମା ଓ ସତ୍ୟ ନାରାୟଣ ବ୍ରହ୍ମା ସେମାନେ ମଧ୍ୟ ନିଜ କର୍ମ ଓ ଦକ୍ଷତା ବଳରେ ସମାଜରେ ସୁପ୍ରତିଷ୍ଠିତ ।

ଆମ ପୈତୃକ ଘରର ପୂର୍ବ ଦିଗରେ ସ୍ୱର୍ଗତଃ ଯମେଶ୍ୱର ପଣ୍ଡା ଘର । ତାଙ୍କ ଅବର୍ତ୍ତମାନରେ ତାଙ୍କ ନାତି ପତିତପାବନ ଦାଶ ଓ ମନୋରଞ୍ଜନ ଦାସ ସେଠାରେ ରହୁଛନ୍ତି । ମନୋରଞ୍ଜନ ବୃତ୍ତିରେ ଜଣେ ଶିକ୍ଷକ । ସେ ବର୍ତ୍ତମାନ ବାବା ଭୈରବାନନ୍ଦ ବାଳିକା ବିଦ୍ୟାଳୟ, ଜଳୌକାରେ କାର୍ଯ୍ୟରତ ।

ଆମ ଘର ଦେଇ ଗାଁ ଦାଣ୍ଡ ଅତିକ୍ରମ କରିଗଲେ ପଡ଼େ ଦୋଳ ମଣ୍ଡପ । ଦୋଳ ମଣ୍ଡପ ପରେ ପରେ ଆମ ପୂର୍ବପୁରୁଷଙ୍କ ଦ୍ୱାରା ପ୍ରତିଷ୍ଠିତ ବ୍ରାହ୍ମଣ ଶାସନ ପଡ଼େ । ଏହା ରୁଦ୍ରପୁର ବ୍ରାହ୍ମଣ ଶାସନ ନାମରେ ପରିଚିତ । ଏଇ ଶାସନରେ ଶତପଥୀ, ପତି, ଦ୍ୱିବେଦୀ, ପଣ୍ଡା, ମିଶ୍ର, ନନ୍ଦ ବ୍ରାହ୍ମଣ ଆଦି ବସବାସ କରନ୍ତି । ମୋ ବାପାଙ୍କ ସମସାମୟିକ ଶାସନର ବ୍ୟକ୍ତି ହେଲେ ବିଶ୍ୱନାଥ ଶତପଥୀ, ପୂର୍ଣ୍ଣାନନ୍ଦ ଦ୍ୱିବେଦୀ, ତ୍ରିଲୋଚନ ଶତପଥୀ, ଦୈତାରୀ ଶତପଥୀ ଓ ବନମାଳି ପତିଙ୍କ ବାପା ବରଜୁ ପତି । ମିଶ୍ର ପରିବାରର ଦୁଇଭାଇ ହେଲେ ବାବାଜୀ ମିଶ୍ର ଓ ତାଙ୍କ ସାନ ଭାଇ ବିମ୍ବାଧର ମିଶ୍ର । ସେମାନଙ୍କୁ ଆମେ କକେଇ ହିସାବରେ ଡ଼ାକୁ । ବିମ୍ବାଧାର ମିଶ୍ରଙ୍କୁ ଆମ ଗାଁର ସମସ୍ତେ ଏପରିକି ଆମ ପିଲାଛୁଆ ଓ ତାଙ୍କ ପିଲାଛୁଆ ବିମ୍ବ କକେଇ ବୋଲି ଡାକନ୍ତି । ସେ ହେଉଛନ୍ତି ଆମ ଗାଁ ପିଲାମାନଙ୍କ ସାର୍ବଜନୀନ କକେଇ । ସେହିପରି ଶାସନର ବୀରବର ପଣ୍ଡାଙ୍କୁ ଆମେ ଦୁଇ ଭାଇ ମାମୁ ବୋଲି ଡାକୁ ।

ଶାସନ ଗାଁକୁ ଟପି ଗଲେ ପଡ଼େ ସୁଦୀର୍ଘ ବିରୂପା ନଦୀବନ୍ଧ । ଏହାର ଦକ୍ଷିଣ ଦିଗ ଜଳୌକା ପାହାଡ଼କୁ ସ୍ପର୍ଶ କଲାବେଳେ ପଶ୍ଚିମ ଦିଗ କେରୁଆଳ ଖଣ୍ଡ ରାସ୍ତା, ଯଶୋରାଜ ପୁର, ସମସରପୁର ଆଦି ଅଞ୍ଚଳକୁ ସ୍ପର୍ଶକରି ଆଗେଇ ଯାଇଛି ।

ନଦୀବନ୍ଧର ଅନତି ଦୂରରେ ଆମ ଗାଆଁ ରୁଦ୍ରପୁର ନଦୀ ଘାଟ । ପିଲାବେଳେ ଆମେ କରୁଣା ମାମୁଙ୍କ ଡଙ୍ଗାରେ ବସି ଅନେକ ଥର ନଈର ଏପାଖ ସେପାଖ ପାରି ହୋଇଥାଉ । ଏଇ ଡଙ୍ଗାରେ ବସି ମୁଁ ଡଙ୍ଗାବୁଲା ସହିତ ପାଠର ବିଭିନ୍ନ ପଏଣ୍ଟ ଲେଖା ଟିପା କଥାକୁ ମୁଖସ୍ଥ କରିବା ସହିତ ନଦୀବୁଲାର ମଜା ମଧ୍ୟ ଅନେକ ସମୟରେ ନେଇଛି । କରୁଣା ମାମୁଙ୍କ ସ୍ନେହ ଓ ସ୍ମୃତି ଭୁଲିବାର ନୁହେଁ ।

ମୁଁ ନନା ଡାକୁଥିବା ବ୍ୟକ୍ତିମାନେ ହେଲେ ରମେଶଚନ୍ଦ୍ର ବ୍ରହ୍ମା, ପ୍ରମୋଦ ଚନ୍ଦ୍ର ବ୍ରହ୍ମା, ପ୍ରଫୁଲ୍ଲ ଚନ୍ଦ୍ର ପଣ୍ଡା, ବିଭୂତି ଭୂଷଣ ବ୍ରହ୍ମା (ବିଭୁନା), ବାମଦେବ ପଣ୍ଡା (ବାମାନା),

ହରିହର ବ୍ରହ୍ମା (ହରିଆନା), ଭଗବାନ ବ୍ରହ୍ମା (ଭଗିଆନା), ନଟବର ପଣ୍ଡା(ନଟିଆନା) ଓ ଶିବନାରାୟଣ ବ୍ରହ୍ମା (ବାବୁନା) ।

ବୟସରେ ଛୋଟ ହେଲେ ମଧ୍ୟ ସମ୍ମାନରେ ବଡ଼ଥିବା ବ୍ୟକ୍ତିମାନେ ହେଲେ ସୁବାସ ଚନ୍ଦ୍ର ବ୍ରହ୍ମା (ସୁବାସ କକେଇ), ପ୍ରତାପ ଚନ୍ଦ୍ର ବ୍ରହ୍ମା (ପ୍ରତାପ କକେଇ) ।

ମୁଁ ବୟସରେ ଖୁବ୍ କମ୍ ହେଲେ ମଧ୍ୟ ମୋତେ କକେଇ ଡାକି ଆହ୍ଲାଦିତ କରିଥିବା ବୟସ୍କ ବ୍ୟକ୍ତି ଥିଲେ ଭ୍ରମରବର ପଣ୍ଡା (ଶୁକୁରିଆ), ନିରଞ୍ଜନ ବ୍ରହ୍ମା (ନୀରା) ।

ମୋର ଅନୁଜ ପ୍ରତିମ ସମ୍ମାନର ଅଧିକାରୀ ହେଲେ ଜୀବନକୃଷ୍ଣ ବ୍ରହ୍ମା, ବିଜୟକେତନ ବ୍ରହ୍ମା, ପ୍ରଶାନ୍ତ କୁମାର ବ୍ରହ୍ମା, ପ୍ରଦୀପ୍ତ କୁମାର ବ୍ରହ୍ମା, ଦୀନକୃଷ୍ଣ ବ୍ରହ୍ମା ଓ ପ୍ରଭାତ କୁମାର ବ୍ରହ୍ମା ।

**ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀ ଓ ଆମ ପରିବାର**

ମୋ ବାପା ଜଳୌକା ଆନନ୍ଦଧାମର ପ୍ରତିଷ୍ଠାତା ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ସମସାମୟିକ ଥିଲେ । ପିଲାବେଳୁ ସେ ବାଳକ ବଟ ନାମରେ ପରିଚିତ ଥିଲେ । ସେ ସଂପର୍କରେ ସେ ଲେଖିଥିଲେ "ଆଜିର ଶ୍ରୀ ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କୁ ଅତି ପିଲାଦିନୁ ଅର୍ଥାତ୍ 'ବଟକୃଷ୍ଣ' ଅବସ୍ଥାରୁ ଜାଣିଥିଲି । ମାମୁଘରେ (ବିଶ୍ୱନାଥପୁର) ରହି ମଣିଷ ହେଲାବେଳେ ସେ ଦୋଳଯାତ୍ରା ମେଲଣରେ ଆତ୍ମହରା ହୋଇ ଯାଉଥିଲେ । ପାଠ ପଢ଼ିବା ଅପେକ୍ଷା ଅଷ୍ଟପ୍ରହରୀ, ନାମ ସଂକୀର୍ତ୍ତନ ଉପରେ ମନ ଥିଲା ବେଶୀ । କେତେଥର ତାଙ୍କୁ ମାମୁ ଖୋଜି ଖୋଜି ସେହିଭଳି ସ୍ଥାନରେ ପାଇଛନ୍ତି । ପ୍ରସାଦ ସେବନପରେ ସେ ସୁନାପିଲାଟି ଭଳି ମାମୁଘରକୁ ଫେରି ଆସନ୍ତି ।"

ଦଳ ଗଢ଼ି ଖେଳିବା ଅପେକ୍ଷା ପିଲାଙ୍କୁ ମତାଇ ମେଳା କରିବା, ସତ୍ୟନାରାୟଣ ପୂଜା କରିବା, କୀର୍ତ୍ତନ ଦଳ, ରାସ ଦଳ ଗଢ଼ିବାରେ ତାଙ୍କର ଆଗ୍ରହ ଥିଲା ବେଶୀ ତେଣୁ ସେତେବେଳର ରାସପ୍ରେମୀ ଓ ବିଖ୍ୟାତ ନାଟ୍ୟାକାର ସ୍ୱର୍ଗତଃ ବୈଷ୍ଣବ ପାଣି (ଯେ କି ବଟକୃଷ୍ଣଙ୍କ ଆତ୍ମୀୟ ମଉସା) ତାଙ୍କୁ ଧରମ ପୁଅ କରିଥିଲେ ।

"ଆନନ୍ଦକନ୍ଦ ଲୋକରେ ବିଚରଣ କରୁ କରୁ ଆମରି ସାଙ୍ଗ ରାସ କୀର୍ତ୍ତନର ସଂଗଠକ ବଟ ଦିନେ ଅଦୃଶ ହୋଇଗଲା । ପ୍ରଥମେ ପ୍ରଥମେ ଆମେ ବ୍ୟସ୍ତ ହେଲୁ । ଦୁଃଖ ଲାଗିଲା । ପରେ ହୁଏତ ସେ କଥା ପାଶୋରି ଯିବାକୁ ପଡ଼ିଥିଲା ।" (ଜଳୌକାବାଣୀ, ମେ ୧୦, ୧୯୭୧)

ବାଳକ ବଟ କଟକ ଜିଲ୍ଲାସ୍ଥ ଟାଙ୍ଗୀଥାନା ଅନ୍ତର୍ଗତ ବିଶ୍ୱନାଥପୁର ଗ୍ରାମର ଜମିଦାର ଚୌଧୁରୀ ପରିବାରରେ ୧୯୧୨ ମସିହା ଜାନୁୟାରୀ ୨୦ ତାରିଖରେ ଜନ୍ମଗ୍ରହଣ

କରିଥିଲେ । ପିତା ଚୌଧୁରୀ ଚୈତନ୍ୟ କର ଓ ମାତା ସୁଭଦ୍ରା ଦେବୀଙ୍କର ସେ ଥିଲେ ଏକମାତ୍ର ସନ୍ତାନ । ଜନ୍ମର ଅଳ୍ପଦିନ ପରେ ସେ ମାତାଙ୍କୁ ହରାଇଥିଲେ । ପିତା ଚୈତନ୍ୟଙ୍କ ସ୍ୱର୍ଗାବାସ ବେଳକୁ ବଟଙ୍କୁ ହୋଇଥିଲା ମାତ୍ର ପାଞ୍ଚବର୍ଷ । ଏହା ଫଳରେ ଶିଶୁପୁତ୍ର ବଟଙ୍କ ଲାଳନପାଳନ ଦାୟିତ୍ୱ ମାହାଙ୍ଗା ଥାନା କୁଆଁପାଳ ନିକଟବର୍ତ୍ତୀ ଜ୍ୟେଷ୍ଠମାମୁ ଦିନବନ୍ଧୁ ତ୍ରିପାଠୀ ନେଇଥିଲେ । ମାମୁ, ମାଇଁ, ଆଈ ପ୍ରଭୃତି ଆତ୍ମୀୟଙ୍କ ଲାଳନପାଳନ ମଧ୍ୟରେ ବଟ ବାପାମାଆଙ୍କ ଅଭାବ ଭୁଲିଥିଲେ । ତାଙ୍କର ସଂସାର ବିମୁଖ ଭାବ ଦେଖି ମାମୁ ତାଙ୍କୁ ବିବାହ ବନ୍ଧନରେ ବାନ୍ଧିବା ପାଇଁ ଯତ୍ନ କରି ବିଫଳ ହୋଇଥିଲେ । ତେଣୁ ସେ ପଶ୍ଚିମବଙ୍ଗରେ ଥିବା ତାଙ୍କ ବ୍ୟବସାୟ ପ୍ରତିଷ୍ଠାନରେ କାମ କରିବା ନିମନ୍ତେ ତାଙ୍କୁ ପଠାଇଥିଲେ । ମାତ୍ର ସେ ବ୍ୟବସାୟରେ ନ ଲାଗି ଆଧାତ୍ମିକ ଅନ୍ୱେଷଣରେ ମନୋନିବେଶ କରିଥିଲେ ।

ପଶ୍ଚିମବଙ୍ଗରେ ଥିଲାବେଳେ ସେ ବ୍ରହ୍ମପୁରତଟସ୍ଥ ଯୋଗମାୟା ପୀଠରେ ୧୧୮ ବର୍ଷରେ ପଦାର୍ପଣ କରିଥିବା ଗୁରୁ ନିରଞ୍ଜନ ସ୍ୱାମୀଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ଗୁରୁ ପ୍ରଦତ୍ତ ତାଙ୍କର ନାମ ସେଇଦିନଠାରୁ ବୈକୁଣ୍ଠନାଥ ବ୍ରହ୍ମଚାରୀ ହୋଇଥିଲା । ସେ ଗୁରୁଙ୍କ ଆଦେଶରେ ପଶ୍ଚିମବଙ୍ଗ ଛାଡ଼ି ଜଳୌକା ପାହାଡ଼ ଓ ସେଥିରେ ଥିବା ମଣିନାଗ ଆଶ୍ରମରେ ଆସି ରହିଥିଲେ । ପାହାଡ଼ର ଘନ ବୃକ୍ଷଲତା , ଗୁମ୍ଫାର ବିଜନତା ମଧ୍ୟରେ ଦୁଃଖ କଷ୍ଟ ଓ ବୁଭୁକ୍ଷୁ ଅବସ୍ଥାରେ ଜୀବନ କଟାଇଥିବା ବୈକୁଣ୍ଠଙ୍କ ବିଷୟରେ ଆଶ୍ରମର ଗୁରୁଜୀ ଲକ୍ଷ୍ମଣ ପଣ୍ଡା ଉଲ୍ଲେଖ କରିଛନ୍ତି :

"ଏହା ଭିତରେ କେତେ ବର୍ଷ ବିତିଗଲା । ଦିନେ ମାଗୁରାର ଦ୍ୱାରିକାନାଥ ଶତପଥୀ ମୋତେ ଖବର ଦେଲେ ଯେ ବଟ ଫେରି ଆସି ମଣିନାଗ ଗୁମ୍ଫାରେ ଅଛି । ଭାରି ଖୁସି ଲାଗିଲା । ମନ ଉଚ୍ଚାଟ ଧରିଲା । ମାଗୁରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ହେଡ଼ପଣ୍ଡିତ ଭାବେ ମୋ ଉପରେ ଯଥେଷ୍ଟ ଦାୟିତ୍ୱ । ତାକୁ ସାରି ଜଳୌକା ପାହାଡ଼ ଅଭିମୁଖେ ଆଗେଇଲି । ଗୋଟିଏ ବରଗଛ ମୂଳରେ ହାତରେ ବଂଶୀଟିଏ ଧରି ବସିଥିଲେ ବ୍ରହ୍ମଚାରୀ, ଦୀର୍ଘଦିନର ବିଚ୍ଛେଦ ପରେ ଏ ମିଳନ ଅତ୍ୟନ୍ତ ମଧୁମୟ ହେଲା । ପୁଣି ମୁଁ ଫେରି ପାଇଲି ସେ କୀର୍ତ୍ତନ ପାଗଳ ବଟକୁ । କିନ୍ତୁ ଆଜି ସିଏ ବ୍ରହ୍ମଚାରୀ, ବହୁ ଅନୁଭୂତିର ଅଧିକାରୀ । ଗୁମ୍ଫା ଭିତରେ ଦେଖିଲି ଖଣ୍ଡିଏ ଲୁଗା ପଡ଼ିଛି, ସେଇଟି ବୋଧହୁଏ ବିଛଣା, ହାରମୋନିୟମ୍ ଓ ବଂଶୀଟିଏ ହେଲା ତାଙ୍କର ସମ୍ପତ୍ତି । ମୋତେ ଅନୁରୋଧ କଲେ ଗୀତ ଗାଇବାକୁ । ମୁଁ ପଚାରିଲି, "ଗୀତ ଗାଇଲେ ତ ପେଟ ପୁରୁ ନ ଥିବ ? ଆମ ଭଳି

ଅତିମାତ୍ରାରେ ସାଂସାରିକ ବନ୍ଧନରେ ଥିବା ବ୍ୟକ୍ତିବିଶେଷଙ୍କ ପକ୍ଷରେ ଏଇ ପ୍ରଶ୍ନ ପଚାରିବା ସ୍ୱାଭାବିକ୍ । ଏଭଳି ଯେତେ ପ୍ରଶ୍ନ ପଚାରିଛି ସବୁର ଉତ୍ତର ମୁଁ ଫେରି ପାଇଛି ତାଙ୍କ ନୀରବ ହସରେ । ପରେ ଅବଶ୍ୟ ସେ ଅନେକଥର କହିଛନ୍ତି ମୋର ଜନ୍ମ ହୋଇଛି ଗାଇବାକୁ ଓ ଖାଇବାକୁ , ତେଣୁ କେତେବେଳେ କେମିତି ଖାଇବାକୁ ମିଳି ଯାଉଛି । କିନ୍ତୁ ସେଥିପାଇଁ କେବେହେଲେ ଗୁରୁତ୍ୱ ଦେଇନି ।"

(ବୈକୁଣ୍ଠ ରଚନାବଳୀ ୧୯୮୯, ପୃଷ୍ଠା୩୬-୩୭)

ବାପାଙ୍କ ସହିତ ବାବା ବୈକୁଣ୍ଠଙ୍କ ସଂପର୍କ ଅତି ନିବିଡ଼ ଥିଲା । ବାବାଙ୍କଦ୍ୱାରା ରସିକନଗର ନିମ୍ନ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ହେଲାପରେ ସେ ବାପା ଲକ୍ଷ୍ମଣଙ୍କୁ ମାଗୁରାରୁ ସେଠାକୁ ବଦଳି କରି ନେଇଥିଲେ । ମୁଁ ବାପାଙ୍କ ସହିତ ନିମ୍ନ ପ୍ରାଥମିକ ସ୍ତରରେ ରସିକ ନଗରରେ ପଢୁଥିଲା ବେଳେ ବାଲ୍ୟାବସ୍ଥାରୁ ବାବାଙ୍କ ସଂସ୍ପର୍ଶରେ ଆସିଥିଲି । ଏହା ମୋର ପୂର୍ବଜନ୍ମର ସୁକୃତ ଥିଲା । ବାପା ଓ ବାବାଙ୍କ କଣ୍ଠସ୍ୱର ସହ ହାରମୋନିୟମ, ଡୁବିତାଲା, ଜଳତରଙ୍ଗର ସଂଯୋଜନାରେ ଜଳୌକା ଆଶ୍ରମରେ ସଙ୍ଗୀତର ଯେଉଁ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି ହୁଏ ତାହା ଅନନ୍ୟ । ଅନେକ ସମୟରେ ସେଇ ସଙ୍ଗୀତର ମୂର୍ଚ୍ଛନା ଶୁଣିବାକୁ ବିଷଧର ସର୍ପମାନେ ମଧ୍ୟ ଆସିଥାନ୍ତି । ସଙ୍ଗୀତ ଆସର ସରିଗଲେ ନିଜ ବାଟରେ ଚାଲି ଯାଆନ୍ତି । କେବେ କେମିତି ରାତିରେ ଆଶ୍ରମରେ ଥିଲାବେଳେ ବାବା ମୋତେ ସଙ୍ଗୀତ ଶିଖାଇବାକୁ ଚେଷ୍ଟା କରିଛନ୍ତି । ହାରମୋନିୟମ ବଜାଇବାକୁ ସୁଯୋଗ ଦେଇଛନ୍ତି । ଯେତେ ଚେଷ୍ଟାକଲେ ମଧ୍ୟ କୌଣସି ସୁଫଳ ହେଲା ନାହିଁ । ବାବା ମୋତେ "ବେତାଳିଆ" କହି ସଙ୍ଗୀତ ଶିକ୍ଷାଦାନରୁ ବିରତ ରହୁଥିଲେ ।

ଆଶ୍ରମର ଚଳନି ଅତୀବ ଦୟନୀୟ ଥିଲା । ଅରୁଆଭାତ ଓ ଡ଼ାଲମା ଥିଲା ମୁଖ୍ୟ ମଧ୍ୟାହ୍ନଭୋଜନ । ଅନେକ ସମୟରେ ଅରୁଆ ଚାଉଳରେ ଏତେ ଚାଉଳ ପୋକ ରହୁଥିଲେ ଯେ ସେଗୁଡ଼ିକୁ ଚାଉଳରୁ ଅଲଗା କରିବା ହୁଏତ କଷ୍ଟକର ଥିଲା । ବୋଧେହୁଏ ଆଶ୍ରମରେ ଥାଳି କିମ୍ବା କୌଣସି ପାତ୍ର ନ ଥିଲା । ସେତେବେଳେ ବାବା ରହୁଥିଲେ ମଣିନାଗ ଗୁମ୍ଫା ଓ ମଣ୍ଡପତଳ ଚାଳ ଘରେ । ଚାଳ ଘରର ବାରଣ୍ଡାଟି ପକା ଥିଲା । ସେଇ ବାରଣ୍ଡାର ପକାରେ ଆମେ ଧାଡ଼ି ଧାଡ଼ି ହୋଇ ବସୁଥିଲୁ । ପକାରେ ଭାତ ଡାଲି ଆଦି ବଢ଼ା ହେଉଥିଲା । ଆମେ ଡାଲି ପାଇଁ ଭାତର ଖଳା କଲା ପରେ ସେଥିରେ ଡାଲି ଦିଆ ଯାଉଥିଲା । ଅନ୍ୟ ପଦାର୍ଥ ଶାଗ କିମ୍ବା ତରକାରୀ ସେଇ ତଳେ ବଢ଼ାଯାଉଥିଲା । ସେସବୁ ବୁଢ଼ାବାବା ବାଢ଼ି ଦେଉଥିଲେ । ଯେହେତୁ ବାବା ଓ ବାପା ଭାତରୁ ପୋକ କାଢ଼ି

ନିଃସଂକୋଚରେ ପ୍ରସାଦ ସେବନ କରୁଥିଲେ, ମୁଁ ମଧ୍ୟ ସେମାନଙ୍କ ସହିତ ସେଇପରି ଖାଉଥିଲି । ସେ ସମୟରେ ଆଶ୍ରମରେ ପ୍ରସ୍ତୁତ କାଞ୍ଜି ହେଉଛି ଆଶ୍ରମର ଏକ ବିଶେଷ ତରଳ ଖାଦ୍ୟ । ଏହାକୁ ଯିଏ ଖାଇଛନ୍ତି, ସିଏ ତା'ର ମଜା ନେଇଛନ୍ତି ।

କ୍ରମଶଃ ଆଶ୍ରମରେ ନିତ୍ୟାନନ୍ଦ ବାବା, ଯଦୁ ବାବା, ପ୍ରେମାନନ୍ଦ ବାବା, ଅଶୋକାନନ୍ଦ ବାବା, ବାଳକାନନ୍ଦ ବାବା, ଆଦି ବୈକୁଣ୍ଠନାଥଙ୍କ ଶିଷ୍ୟତ୍ୱ ଗ୍ରହଣ କରି ରହିଲେ । ମୋ ବାପାଙ୍କୁ ବାବା ବୈକୁଣ୍ଠନାଥ 'ଗୁରୁଜୀ' ବୋଲି ସମ୍ବୋଧନ କରୁଥିଲେ । ସେ ମଧ୍ୟ ଅନେକ ସମୟରେ ଆମ ବଡ଼ ଭଉଣୀ ହାରାନୀ, ବଡ଼ ଭାଇ ଭୁଜନା ଓ ମୋ କଥା ବାପାଙ୍କୁ ପଚାରୁଥିଲେ । ତାଙ୍କ ଦୃଷ୍ଟିରେ ଆମେ ଥିଲୁ ତାଙ୍କ ପରିବାରର ଜଣେ ଜଣେ । ବାବାଙ୍କ ଶୁଭଦୃଷ୍ଟି ଆମ ପ୍ରତି ଥିବା ହେତୁ ଆଶ୍ରମର ଅନ୍ତେବାସୀଗଣ ଆମ ପରିବାରର ଲୋକଙ୍କୁ ଭଲ ପାଉଥିଲେ ।

କ୍ରମଶଃ ବାପା ବୃଦ୍ଧ ହେଲେ । ଆଉ ଚଳପ୍ରଚଳ କରି ପାରିଲେ ନାହିଁ । ଥରେ ବାପାଙ୍କର ବ୍ରହ୍ମଚାରୀଙ୍କୁ ଆଶ୍ରମରେ ଦେଖା କରିବାକୁ ଇଚ୍ଛା ହେଲା । ସେ ସମୟରେ ପୂର୍ବକଚ୍ଛରୁ ମୋର ବଡ଼ ଭଉଣୀ ହାରାନୀ ଆମ ଘରକୁ ଆସିଥିଲେ । ବାପା ନାନୀ ଆଗରେ ତାଙ୍କ ଇଚ୍ଛା ପ୍ରକାଶ କଲେ । ନାନୀ ବାପାଙ୍କୁ ଏକ ରିକ୍ସାରେ ନେଇ ବ୍ରହ୍ମଚାରୀଙ୍କ ଆଶ୍ରମ ଆନନ୍ଦଧାମକୁ ଗଲା । ପାହାଡ଼ ଉପର ଆଶ୍ରମରୁ ତଳେ ଥିବା ବାପାଙ୍କୁ ଦେଖି ବାବା ଡାକ ଛାଡ଼ିଲେ, "ଆରେ ଯାଅରେ, ଗୁରୁଜୀ ଆସିଛନ୍ତି । ତାଙ୍କୁ ଶୂନ୍ୟେ ଶୂନ୍ୟେ ମଠ ଉପରକୁ ଟେକି ଆଣ ।" ସଙ୍ଗେ ସଙ୍ଗେ ଯୁବ ବାବାମାନେ ଆସି ବାପାଙ୍କୁ ଟେକି ଟେକି ପାହାଡ଼ ଉପରକୁ ନେଇଗଲେ । ବାଲ୍ୟବନ୍ଧୁ ଗୁରୁଜୀଙ୍କୁ ସମ୍ମାନ ଦେଉଥିବା ବୈକୁଣ୍ଠ ସେଦିନ ଆନନ୍ଦର ଆତିଶଯ୍ୟରେ ତଲ୍ଲୀନ ହୋଇଯାଇଥିଲେ । ବାପା ମଧ୍ୟ ଘରକୁ ଆସି ବାବାଙ୍କ ଆତିଥ୍ୟ ସଂପର୍କରେ ଆମକୁ ବର୍ଣ୍ଣନା କରିଥିଲେ ।

ଜୀବନର ଶେଷ ଭାଗରେ ମୋ ଦଦେଇ ଓ ବାପା ଉଭୟେ ବାବା ବୈକୁଣ୍ଠନାଥଙ୍କ ଛବି ନିଜ ଶୟନ କକ୍ଷରେ ରଖିଥିଲେ । ଆମ ଇଷ୍ଟଦେବ ଲକ୍ଷ୍ମୀକାନ୍ତ ଓ ବାବା ବୈକୁଣ୍ଠନାଥଙ୍କୁ ସ୍ମରଣ ପୂର୍ବକ ସେମାନେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଏହିପରି ବାବା ବୈକୁଣ୍ଠନାଥ ଓ ଆମ ପରିବାର ମଧ୍ୟରେ ଏକ ଆଧ୍ୟାତ୍ମିକ ବଳୟ ସୃଷ୍ଟି ହୋଇଥିଲା ।

ବାପାଙ୍କ ଅବର୍ତ୍ତମାନରେ ହନୁମାନ ମନ୍ଦିର, ଗରାପୁର କିମ୍ବା ଭୁବନେଶ୍ୱରର ବୈକୁଣ୍ଠ ସରଣୀରେ ଅବସ୍ଥିତ ରାଧାକୃଷ୍ଣଙ୍କ ମନ୍ଦିରରେ ଯେ କୌଣସି ଉତ୍ସବ ହେଲେ

ବାବାଙ୍କ ଖୋଜାପଡ଼େ ଗୁରୁଜୀଙ୍କ ପୁଅ ଭୁଜ, ଦିଗ ଆସିଛନ୍ତି କି ନାହିଁ । ମୋ ବଡ଼ ଭାଇ ପ୍ରାୟତଃ ସମସ୍ତ କାର୍ଯ୍ୟକ୍ରମରେ ଯୋଗ ଦିଅନ୍ତି । ମୁଁ କୌଣସି କାମ ନଥିଲେ ଯାଏ ।

ମୁଁ ଲକ୍ଷ୍ୟକରିଥିଲି ଯେ ମୋ ବାପାଙ୍କର ଆଶ୍ରମ ନେଇ ଦୁଇଟି ସ୍ପଷ୍ଟ ନୀତି ଥିଲା । ପ୍ରଥମତଃ ସେ ଆଶ୍ରମକୁ ଚାନ୍ଦା ଭେଦା ଦେବେ, ମାତ୍ର ଆଶ୍ରମରୁ କୌଣସି ଦ୍ରବ୍ୟ ନେବେ ନାହିଁ । ଦ୍ୱିତୀୟତଃ ଆଶ୍ରମର ଆଭ୍ୟନ୍ତରୀଣ ଘଟଣାରେ ମୁଣ୍ଡ ଖେଳାଇବେ ନାହିଁ । ଆମେ ଦୁଇଭାଇ ବାପାଙ୍କର ସେଇ ଆଦର୍ଶ ବାପାଙ୍କ ଅବର୍ତ୍ତମାନରେ ମାନି ଚଳିଛୁ । ଆଶ୍ରମର ଆଭ୍ୟନ୍ତରୀଣ କାର୍ଯ୍ୟକଳାପରେ ମଥା ଖେଳାଇ ନାହୁଁ । ସେଥିପାଇଁ ବାବା ବୈକୁଣ୍ଠନାଥ କେବେ ହେଲେ ତାଙ୍କ ଜୀବଦଶା ମଧ୍ୟରେ ତାଙ୍କର ଅତିପ୍ରିୟ ବାଲ୍ୟବନ୍ଧୁ ତଥା ଗୁରୁଜୀଙ୍କ ପରିବାର ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ନାହାଁନ୍ତି । ତଥାପି ଆମେ ଆଶ୍ରମରୁ ଅନେକ ପାଇଛୁ । ଯାହାକୁ କି ବିକି ଭାଙ୍ଗି ଚଳିଲେ ମଧ୍ୟ ସରିବ ନାହିଁ । ତାହା ହେଉଛି ପରମପୂଜ୍ୟ ବାବାଙ୍କର ଆଶୀର୍ବାଦ -ବାବା ବୈକଣ୍ଠନାଥଙ୍କର ପ୍ରତ୍ୟେକ ବୈକୁଣ୍ଠ ପରିବାର ପ୍ରତି ଥିବା ଅସରନ୍ତି ଆଶୀର୍ବାଦ । ସେଇ ଆଶୀର୍ବାଦର ସୁଫଳ ଆଜି ସମଗ୍ର ବୈକୁଣ୍ଠ ପରିବାର ପାଇ ପାରିଛନ୍ତି ।

### ଆମ ପରିବାର ଓ ବନ୍ଧୁବାନ୍ଧବ

ମୋ ବାପା ସ୍ୱର୍ଗତଃ ଲକ୍ଷ୍ମଣ ପଣ୍ଡା ଛତିଆର ନନ୍ଦ ପରିବାରର ଜୋଇଁ ଥିଲେ । ତାଙ୍କ ଶ୍ୱଶୁରଙ୍କ ନାମ ବୃନ୍ଦାବନ ନନ୍ଦ । ଆମେ ଦୁଇଭାଇ ଅଜା ଆଈଙ୍କୁ ଦେଖିନାହୁଁ କିମ୍ବା ତାଙ୍କ ସଂପର୍କରେ କିଛି ଜାଣି ନାହୁଁ ।

ମୋ ବୋଉ ଜାନକୀ ଦେବୀଙ୍କ ମୁହଁରୁ ଆମେ ଅନେକ ସମୟରେ ଶୁଣୁ ଯେ ସେ ହେଉଛି ଛତିଆର ପ୍ରତାପୀ ବୁରୁନ୍ଦୁ ନନ୍ଦଙ୍କ ଝିଅ । ସେଥିପାଇଁ ସେ କେବେ କାହାରିକୁ ଡ଼ରୁ ନ ଥିଲା । ବେଳେବେଳେ ବାପାଙ୍କ ଉପରେ ରାଗିଗଲେ ହଠାତ୍ ତା' ପାଟିରୁ ବାହାରି ଆସୁଥିଲା, "ମୁଁ ହେଉଛି ବୁରୁନ୍ଦ ନନ୍ଦ ଝିଅ । ପ୍ରଳୟ କରିଦେବି ।" ଏସବୁ କଥାର ପ୍ରଭାବ ବାପା କିମ୍ବା ଆମ ଉପରେ କିଛି ପଡୁ ନଥିଲା ।

ମୋ ମାମୁଙ୍କ ନାମ ମାୟାଧର ନନ୍ଦ । ତାଙ୍କର ଦୁଇ ପୁଅ । ଜଣେ ହେଉଛନ୍ତି ଦୁର୍ଯ୍ୟୋଧନ ନନ୍ଦ ଓ ଆଉ ଜଣେ ଶତ୍ରୁଘ୍ନ ନନ୍ଦ । ପିଲାବେଳେ ଥରେ ଦୁଇଥର ମୁଁ ମାମୁ ଘରକୁ ଯାଇଛି । ବୋଉ ପ୍ରାୟତଃ ମାମୁ ଘରକୁ ଯାଉ ନ ଥିଲା । ହୁଏତ ଅଜା ଆଈଙ୍କ ଅବର୍ତ୍ତମାନରେ ସେ ସାନଭାଇ ଓ ଭାଉଜଙ୍କ ପାଖକୁ ଯିବାକୁ ପସନ୍ଦ କରୁ ନଥିଲା । ମାତ୍ର

ତା'ର ସମ୍ପର୍କ ଛତିଆର ସମଗ୍ର ନନ୍ଦ ପରିବାରରେ ଥିଲା । ଥରେ ଛତିଆ ଗଲେ ସେ ଜାନାନାନୀ ହିସାବରେ ସବୁ ମାମୁମାନଙ୍କ ଆଦର ଓ ଆତିଥ୍ୟ ପାଇଥାଏ । ଭଣଜା ହିସାବରେ ଆମକୁ ଭୀକନ ମାମୁ, ମୂକ୍ଷା ମାମୁ, ଧଡ଼ି ମାମୁ, ବେଙ୍ଗ ମାମୁ, ଗୋବର୍ଦ୍ଧନ ମାମୁ, ନରୁ ମାମୁ ଆଦି ଆଦର କରନ୍ତି । ସେମାନଙ୍କର ପିଲାମାନଙ୍କର ମଧ୍ୟ ଆମ ପ୍ରତି ଅତୁଟ ସ୍ନେହ ଥାଏ । ମାମୁ ପୁଅ ଭାଇ ହିସାବରେ ସଜୁନା, ସୁବାସନା, (ଡ଼ାକ୍ତର ସୁବାସ ନନ୍ଦ) ଚିତ୍ତନା, ଉଷା ନନା (ପ୍ରଫେସର ଉଷାକାନ୍ତ ନନ୍ଦ) ଆଦିଙ୍କର ମୋ ପ୍ରତି ଯଥେଷ୍ଟ ସ୍ନେହ ଶ୍ରଦ୍ଧା ଥିଲା । ମୁଁ ସମ୍ବଲପୁରରେ ୧୯୭୨ ମସିହାରେ ବି.ଏଡ୍ ପଢ଼ିଲାବେଳେ ସୁବାସନା ବୀର ସୁରେନ୍ଦ୍ରସାଏ ମେଡ଼ିକାଲ କଲେଜରେ ଏମ୍.ବି.ବି.ଏସ୍ ପଢୁଥିଲେ । ମୋର ଶାରୀରିକ ଅସୁସ୍ଥତା ସମୟରେ ତାଙ୍କ ପାଖରେ ରଖି ମୋର ଚିକିତ୍ସା କରାଇଥିଲେ । ସେହିପରି ସେ ଛତିଆରେ ଡାକ୍ତର ଥିଲାବେଳେ ମଧ୍ୟ ଆମ ଗ୍ରାମକୁ ବିଭିନ୍ନ ସମୟରେ ଯାଇ ମୋ ବାପା ଓ ବୋଉଙ୍କ ଚିକିତ୍ସାରେ ମଧ୍ୟ ସହାୟତା କରୁଥିଲେ ।

ଛତିଆ ନନ୍ଦ ପରିବାରର ଭଣଜା ହିସାବରେ ଆମ ମନରେ ସ୍ୱତଃପ୍ରବୃତ୍ତ ଭାବେ ଆନନ୍ଦ ଆସେ ଓ ଆମେ ଦୁଇଭାଇ ଗୌରବ ଅନୁଭବ କରୁ ।

ମୋ ବାପାଙ୍କ ଅବର୍ତ୍ତମାନରେ ମୋ ବଡ଼ଭାଇଙ୍କ ମୋ ପରିବାର ପ୍ରତି ଥିବା ଶୁଭେଚ୍ଛା ଓ ଆଶୀର୍ବାଦ ଅନେକ ସମୟରେ ମୋ ସ୍ମୃତି ମଧ୍ୟକୁ ଆସିଯାଏ । ଗ୍ରାମରେ ମୋ ସାନପୁଅ ଆୟୁଷ୍ମାନ ଶକ୍ତିପ୍ରକାଶ ଓ କାନ୍ତି ପ୍ରକାଶର ବ୍ରତଘର ସମୟରେ ଛାମୁଡ଼ିଆ ନିମନ୍ତେ ବାଉଁଶ ହାଣିବାକୁ କହିଥିବା ଲୋକ ନ ଆସିବାରୁ ସେ ନିଜେ ଆମ ଘରର ଇଦାବାଡ଼ି ଯାଇ ବାଉଁଶ ହାଣି କାନ୍ଧରେ ବୋହି ବ୍ରତଘର ନିମନ୍ତେ ଛାମୁଡ଼ିଆ ତିଆରି କରିଥିଲେ । ସେତେବେଳେ ସେ ଯେଉଁ କଷ୍ଟ ନେଇଥିଲେ, ମୋ ଭଳି କର୍ମକୁଣ୍ଠ ମଣିଷଟିଏ ବା କିପରି ତାହା ଭୁଲି ପାରିବ ! ମୋ ପୁତୁରା ଆୟୁଷ୍ମାନ ସରୋଜ ମୁଁ ଗାଁରୁ ସମ୍ବଲପୁର ଅଭିମୁଖେ ଚାଲି ଚାଲି ଛତିଆ ବସ ଧରିବାକୁ ଆସୁଥିବାବେଳେ, ଜବରଦସ୍ତ ମୋତେ ସାଇକେଲରେ ବସାଇ ଛତିଆରେ ଆଣି ଛାଡ଼ି ଦେଇଛି । ଆଜି ପର୍ଯ୍ୟନ୍ତ ଆମେ ବାପାଙ୍କ ଅନ୍ତେ ଅଭିନ୍ନ ଥିଲାବେଳେ ଆୟୁଷ୍ମାନ ସରୋଜ ଆମ ପରିବାରର ବଡ଼ ପୁଅର ସମ୍ମାନ ଓ ମାନ ମର୍ଯ୍ୟାଦାର ଅଧିକାରୀ ହୋଇଅଛି ।

ମୋ ଶ୍ୱଶୁର ସମସରପୁରର ପ୍ରବୀଣ ପ୍ରଧାନଶିକ୍ଷକ ସୁରେନ୍ଦ୍ର କୁମାର ଆଚାର୍ଯ୍ୟଙ୍କ ଦେହାନ୍ତ ପରେ ମୋ ପିଲାଙ୍କ ବଡ଼ ମାମୁ ଡାକ୍ତର ପ୍ରଦୀପ କୁମାର ଆଚାର୍ଯ୍ୟ ଶ୍ୱଶୁରଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ଆଜି ପର୍ଯ୍ୟନ୍ତ ତୁଲାଇ ଚାଲିଛନ୍ତି । ତାଙ୍କଭଳି ଜଣେ ଦରଦୀ,

ବନ୍ଧୁବତ୍ସଳ ବ୍ୟକ୍ତି ଏ ଯୁଗରେ ବିରଳ । ତାଙ୍କ ସଂସ୍ପର୍ଶରେ ଆସିଥିବା ରୋଗୀ, ଡ଼ାକ୍ତର ଓ ବ୍ୟକ୍ତିବିଶେଷ ତାଙ୍କର କାର୍ଯ୍ୟଦକ୍ଷତା ଓ କର୍ମକୁଶଳତା ଉପଲବ୍ଧି କରିଛନ୍ତି । ଅନ୍ୟ ମାମୁମାନେ ହେଲେ ଶିକ୍ଷକ ପ୍ରମୋଦ କୁମାର ଆଚାର୍ଯ୍ୟ, ଶିକ୍ଷକ ପ୍ରତାପ କୁମାର ଆଚାର୍ଯ୍ୟ, ପ୍ରଭାତ କୁମାର ଆଚାର୍ଯ୍ୟ ଓ ପ୍ରଭାସ କୁମାର ଆଚାର୍ଯ୍ୟ । ପ୍ରଭାତ କୁମାର ଆଚାର୍ଯ୍ୟଙ୍କ ଦୁଃଖଦ ମୃତ୍ୟୁ ଆମ ସମସ୍ତଙ୍କୁ ବାଧିଛି ।

ମୋ ଚାରି ଭଉଣୀଙ୍କ ପିଲାମାନେ ସମସ୍ତେ ସୁଶିକ୍ଷିତ ଓ ଯୋଗ୍ୟ । ବଡ଼ ଭଉଣୀ ହାରାମଣି ଏବଂ ଇନ୍ଦ୍ରମଣି ପାଣିଗ୍ରାହୀଙ୍କ ବଡ଼ପୁଅ ଚିତ୍ତରଞ୍ଜନ ପାଣିଗ୍ରାହୀ ପ୍ରଧାନ ଶିକ୍ଷକ ଭାବେ ଅବସର ନେଇଛନ୍ତି । ତାଙ୍କ ତଳ ଭାଇ ତଥା ରାଜ୍ୟପାଳ ପୁରସ୍କାର ପ୍ରାପ୍ତ ଶିକ୍ଷକ ରମାରଞ୍ଜନ ପାଣିଗ୍ରାହୀ ଖାନନଗର ଏମ୍.ଇ ସ୍କୁଲର ପ୍ରଧାନ ଶିକ୍ଷକ ଥିଲାବେଳେ ଅକାଳ ବିୟୋଗର ସମ୍ମୁଖୀନ ହୋଇଛନ୍ତି । ତୃତୀୟ ପୁତ୍ର ଜ୍ଞାନ ରଞ୍ଜନ ପାଣିଗ୍ରାହୀ ବ୍ୟାଙ୍କ ଅଫ ଇଣ୍ଡିଆର ଉଚ୍ଚ ପଦସ୍ଥ ଅଧିକାରୀ ଭାବେ ସ୍ୱେଚ୍ଛାକୃତ ଅବସର ନେଇଛନ୍ତି । ଚତୁର୍ଥ ସନ୍ତାନ ମନୋରଞ୍ଜନ ପାଣିଗ୍ରାହୀ ସର୍ବଭାରତୀୟ ରାଜସ୍ୱ ସେବାର ଜଣେ କମିଶନର ପାହ୍ୟାର ଅଧିକାରୀ । ସଂପ୍ରତି ସେ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର କମିଶନର ତଥା-ଶାସନ ସଚିବ ଅଛନ୍ତି ।

ଶ୍ରୀମାନ୍ ମନୋରଞ୍ଜନ ହେଉଛନ୍ତି ଆମ ଘରର ଏକମାତ୍ର ଭଣଜା ଯାହାଙ୍କଠାରୁ ମୁଁ ମାମୁଘରର ସ୍ମୃତି ଓ ମାମୁ ଘର ଗାଁର କଥା ଓ କାହାଣୀ ଅନେକ ଥର ଶୁଣିଛି । ଅଜା ଆଈଙ୍କ ସ୍ନେହ ଶ୍ରଦ୍ଧା, କେଉଁଦିନ ପିଲାବେଳେ ତାକୁ ଆଇ ଚାରିଅଣା ପଇସା ଜଳଖିଆ ଖାଇବାକୁ ଦେଇଥିଲେ, ତାହା ସେ ଏବେ ମଧ ତା'ର କର୍ମବ୍ୟସ୍ତ ଜୀବନ ମଧରେ ମନେ ପକାଇ କହେ । ଖାଲି ସେତିକି ନୁହେଁ, ମାମୁଘର ଗାଁର ପରିବେଶ, ଗଛଲତା, ଗାଁର ଲୋକମାନଙ୍କର କଥା କୁହେ । ମୋ ପିଲାମାନଙ୍କ ଜନ୍ମ ବର୍ଷ ଓ ତାରିଖ ମଧ ତା'ଠାରୁ ଶୁଣି ମୁଁ ଆଶ୍ଚର୍ଯ୍ୟ ହୁଏ । ସେ ସ୍ୱତପ୍ରବୃତ୍ତଭାବେ ମାମୁ ଘରର ସୁଖଦୁଃଖ ସହିତ ଭାଗୀଦାର ହୁଏ । କେହି କିଛି ନ କହିଲେ ମଧ ସେ ଆପେ ଆପେ ସହାୟତାର ହାତ ବଢ଼ାଏ । ସେହିପରି ତା'ର ଡାକ୍ତରାଣୀ ପତ୍ନୀ ସଂଘମିତ୍ରା ପତି ମୋ ସହିତ ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କୀୟ ଅନେକ ବିଷୟବସ୍ତୁ ଆଲୋଚନା କରିଥାନ୍ତି । ଶିଶୁ ମନସ୍ତତ୍ତ୍ୱ ଓ ଶିକ୍ଷା ସଂପର୍କରେ ସଂଘମିତ୍ରାଙ୍କର ଯଥେଷ୍ଟ ଜ୍ଞାନ ଅଛି ।

ମୋ ବଡ଼ ଭଉଣୀ ହାରାନୀଙ୍କ ଜୋଇଁମାନଙ୍କ ମଧରେ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ମିଶ୍ର ଓ ଡକ୍ଟର ତୀର୍ଥାନନ୍ଦ ମିଶ୍ରଙ୍କ ଓଡ଼ିଶାର ଶିକ୍ଷା ଓ ସାହିତ୍ୟକୁ ଯଥେଷ୍ଟ ଅବଦାନ ଅଛି ।

ଏଇ ଦୁଇ ଜୋଇଁ ମୋ ସହିତ ଅଧିକାଂଶ ସମୟରେ ସାହିତ୍ୟ ସଂପର୍କରେ ଆଲୋଚନା କରନ୍ତି । ଡକ୍ଟର ତୀର୍ଥାନନ୍ଦ ମିଶ୍ରଙ୍କ ଅକାଳ ବିୟୋଗ ଆମକୁ ବ୍ୟଥିତ କରିଛି । ଏତଦ୍‌ବ୍ୟତୀତ ନାନୀର, ଅନ୍ୟତମ ଜୋଇଁ ବସନ୍ତ କୁମାର ମିଶ୍ର ଜଣେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ହିସାବରେ ଜଣାଶୁଣା । ସବାସାନ ଜୋଇଁ ରବୀନ୍ଦ୍ରନାଥ ପଣ୍ଡା ଜଣେ ଶିକ୍ଷକ ହିସାବରେ ଜଣାଶୁଣା ।

ମୋର ଦ୍ୱିତୀୟ ବଡ଼ ଭଉଣୀ ବାଉତି ନାନୀ ଓ ରମେଶଚନ୍ଦ୍ର ଆଚାର୍ଯ୍ୟଙ୍କ ଜ୍ୟେଷ୍ଠପୁତ୍ର ମହେନ୍ଦ୍ର ଆଚାର୍ଯ୍ୟ ଜଣେ ସଙ୍ଗୀତ ନିର୍ଦ୍ଦେଶକ । ସେ ମୋତେ ଦେଖିଲେ କହେ, "ମାମୁ ! ମୁଁ ତୁମର ଏକମାତ୍ର ଭଣଜା ଯେ କି ଅଜାଙ୍କ ସଙ୍ଗୀତ କଳା ଆଣିଛି ।" ଦ୍ୱିତୀୟ ସନ୍ତାନ ଅଶୋକ କୁମାର ଆଚାର୍ଯ୍ୟ ଜଣେ ଆଗ୍ନିକ ଅଧିକାରୀ । ତୃତୀୟ ସନ୍ତାନ ପ୍ରଦ୍ୟୁମ୍ନ ଆଚାର୍ଯ୍ୟ ଶିକ୍ଷକତା କରନ୍ତି । ଶେଷ ସନ୍ତାନ ପ୍ରବୀର ଆଚାର୍ଯ୍ୟ ସମସରପୁରରେ ନିଜସ୍ୱ ବ୍ୟବସାୟରେ ନିୟୋଜିତ ।

ମୋର ତୃତୀୟ ବଡ଼ ଭଉଣୀ ଦୋଲାନୀ ଓ ବଂଶୀଧର ମିଶ୍ରଙ୍କ ବଡ଼ପୁଅ ଅଧ୍ୟାପକ ଦେବେନ୍ଦ୍ର ମିଶ୍ର ଇଂରାଜୀ ଭାଷା ଓ ସାହିତ୍ୟର ଜଣେ ଅବସରପ୍ରାପ୍ତ ଅଧ୍ୟାପକ । ସାନ ପୁଅ ଭବାନୀ ଶଙ୍କର ମିଶ୍ର (ଧୀର) ଏମ୍.ଏ, ଏମ୍.ଏଡ଼ ଜଣେ ସମାଜସେବୀ ।

ମୋର ଚତୁର୍ଥ ଭଉଣୀ ଟୁନାନୀ ଓ ଗଣେଶ୍ୱର ମିଶ୍ରଙ୍କ ପ୍ରଥମ ପୁତ୍ର ଅଶୋକ କୁମାର ମିଶ୍ର ମୋ ପାଖରେ ମାଧ୍ୟମିକ ସ୍ତରରେ ପାଠପଢ଼ି ମୁଁ ସମ୍ବଲପୁରରେ ଅଧ୍ୟାପକ ଥିଲାବେଳେ ବି.ଏଡ଼ ପରୀକ୍ଷାରେ ସଫଳତା ହାସଲ କରି ସେଠାରେ ଶିକ୍ଷକତା କରିଥିଲେ । ପରବର୍ତ୍ତୀ ସମୟରେ ସେ ଚୌଧୁରୀ ରାଧାନାଥ ବିଦ୍ୟାଳୟ ଭେଡ଼ାରେ ଅବସ୍ଥାପିତ ହୋଇଥିଲେ । ସଂପ୍ରତି ଓଡ଼ିଶା ଶିକ୍ଷାସେବାରେ ନିୟୋଜିତ । ତା'ର ସାନ ଭାଇ ତ୍ରିଲୋଚନ ମିଶ୍ର ଗାଁରେ କାର୍ଯ୍ୟରତ ।

## ସ୍ମୃତିର ନକ୍‌ସାରେ କେରୁଆଲଖଣ୍ଡ ଓ ଅନ୍ୟାନ୍ୟ ବ୍ୟକ୍ତି ବିଶେଷ

ଆମ ଗାଁର ସ୍ମୃତି ଜନଜୀବନର ମାନସପଟରେ ଏକ ସମିଶ୍ରିତ ସଂସ୍କୃତିର ଚିତ୍ର ବହନ କରେ । ରୁଦ୍ରପୁର କହିଲେ ସେଥିରୁ କେରୁଆଳ ଗ୍ରାମକୁ ବାଦ ଦେଇ ଚିନ୍ତା କରାଯାଇପାରେ ନାହିଁ କିମ୍ବା ଆମ ଗାଁର ଅଳ୍ପଦୂରରେ ଅବସ୍ଥିତ ସ୍ୱତନ୍ତ୍ର ସାମାଜିକ ଗୋଷ୍ଠୀ ଓ ବ୍ୟକ୍ତିବିଶେଷଙ୍କୁ ଛାଡ଼ି ପରିକଳ୍ପନା କରାଯାଇପାରେନା । ସେଇପରି ପଡ଼ୋଶୀ ଗଣେଶ୍ୱରପୁର ଗ୍ରାମ, ଦେବିଲ ଓ ଅଡ଼ମ୍ବୁର ପାଟଣାକୁ ବାଦ୍ ଦେଇ ରୁଦ୍ରପୁରର ସ୍ଥିତି ମଧ୍ୟ ଚିନ୍ତା କରାଯାଇ ପାରେନା ।

କେରୁଆଳ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ମା ମଙ୍ଗଳା ହେଉଛନ୍ତି ଆମ ସମସ୍ତଙ୍କ ରକ୍ଷାକର୍ତ୍ତ୍ରୀ । ପ୍ରତ୍ୟକ୍ଷ ଦେବୀ ହିସାବରେ ଜଣାଶୁଣା । ଏଇ ମା ମଙ୍ଗଳାଙ୍କୁ ପ୍ରତ୍ୟକ୍ଷ ଭାବେ ଦର୍ଶନ କରି ଥିବାର କଥା ଆମେ ଅନେକ ପୂର୍ବଶୂରୀଙ୍କଠାରୁ ଶୁଣି ଅଛୁ । ସେ ସମ୍ପର୍କରେ ମୋ ବୋଉ ଜାନକୀ ଦେବୀ ମୋତେ ଅନେକ ଥର କହିଛନ୍ତି ।

"ନିଶାର୍ଦ୍ଧରେ ଯେତେବେଳେ ସମଗ୍ର ଗାଁ ଶୋଇପଡ଼େ, ସେଇ ସମୟରେ ଗାଁ ଦାଣ୍ଡ ଆଲୋକମୟ ହୋଇ ଉଠେ । ପଛେ ପଛେ ଦେବୀ ମା ମଙ୍ଗଳା ଗାଁ ରାସ୍ତା ପାରି ହୁଅନ୍ତି । ଦିନେ ଏଇ ଘଟଣା କ'ଣ ଜାଣିବା ପାଇଁ ସେ ଘରର କବାଟ ଫାଙ୍କରେ ଦେଖିଲେ ପୂଜାପଡ଼ିଆ ଆଡୁ ଗାଁ ଦାଣ୍ଡ ରାସ୍ତା ହାଲୋରମୟ ହୋଇଯାଇଛି । କ୍ରମଶଃ ତାହା ଆମଘର ଦାଣ୍ଡ ରାସ୍ତା ଆଡ଼କୁ ଆଗେଇ ଆସୁଛି । ଆମ ଘର ଅତିକ୍ରମ କଲା ପରେ ପରେ ପରିବାରର ଲୋକେ ଲକ୍ଷ୍ୟ କଲେ ଯେ ସ୍ୱୟଂ ମା ମଙ୍ଗଳା ଆଲୋକମାଳାର ପଛେ ପଛେ ଚାଲିଛନ୍ତି । ଦେବୀ ଆମଘର ଅତିକ୍ରମ କଲାପରେ ପରେ ହଠାତ୍ ସେ ଆଲୋକବର୍ତ୍ତିକା ଲିଭିଗଲା । ଗାଁ ଦାଣ୍ଡ ପୂର୍ବବତ୍ ଶୂନ୍‌ଶାନ ହୋଇଗଲା ।"

ଆମ ପିଲାବେଳେ ଦଦେଇ ରଘୁନାଥ ପଣ୍ଡାଙ୍କ ଉଦ୍ୟମରେ ଓ କେରୁଆଳବାସୀଙ୍କ ସାହାଯ୍ୟ ସମର୍ଥନରେ ଠାକୁରାଣୀଙ୍କ ପାଖରେ ଅନେକ ସମୟରେ ଯଜ୍ଞ ଅନୁଷ୍ଠିତ ହେଉଥିଲା । ଆଖପାଖ ଅଞ୍ଚଳର ଲୋକେ ଆସି ମାନବ କଲ୍ୟାଣ ଉପଲକ୍ଷେ ହେଉଥିବା ଏଇ ଯଜ୍ଞ କାର୍ଯ୍ୟରେ ଯୋଗଦାନ କରୁଥିଲେ । ଆମେ ପିଲାମାନେ ମଧ୍ୟ ବିଧିବିଧାନ ସହିତ ପରିଚିତ ହୋଇ ସାଂସ୍କୃତିକ ଉତ୍ସବର ମଜା ନେଉଥିଲୁ ।

ସେଇପରି ଦୋଳ ଯାତ୍ରାରେ ଠାକୁରଙ୍କ ପହଣ୍ଡି ସମୟରେ ଢ଼ୋଲ ଓ ମାର୍ଦଳ ସହିତ ବାଡ଼ିଖେଳ ଓ ବନତବୁଲା ଗାଁ ଦାଣ୍ଡର ରାସ୍ତାକୁ ରସାଣିତ କରୁଥିଲା । ଅତୀତର ସେଇ ପରମ୍ପରାରେ କିଛିଟା ପରିବର୍ତ୍ତନ ଘଟିଥିଲେ ମଧ୍ୟ ସେ ପରମ୍ପରାର ଝଲକ ଏବେ ମଧ୍ୟ ମଉଳି ଯାଇନି । ସେଇପରି ଛତିଆ, ଜରିପଡ଼ା, ଗୋବିନ୍ଦପୁର ଓ ମଞ୍ଜେଶ୍ୱରର ମେଳଣ ସମୟରେ ବିମାନକୁ କାନ୍ଧରେ ବୋହି ବୋହି ନେଇ ମେଳଣ ସ୍ଥାନରେ ଠାକୁରଙ୍କୁ ପହଞ୍ଚାଇ ଦେବାର ପୂର୍ବରୁ ବିମାନର ଆଗରେ ପଟୁଆର ଧରି ଯାଉଥିବା ଗାଁ ଲୋକଙ୍କ ବାଡ଼ିଖେଳ, ବାଜାର ଶବ୍ଦ, ବନତ ବୁଲାଣ କେରୁଆଳ ଓ ରୁଦ୍ରପୁରବାସୀଙ୍କର ଧାର୍ମିକ ଉଦାମତା ପ୍ରକାଶ କରିଥାଏ ।

ଆଜି ମୋ ମାନସପଟ୍ଟରେ କେରୁଆଳର ହାତୀ ଅଜାଙ୍କ ଯାତ୍ରା ସମୟରେ ଜାତିବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତଙ୍କ ମଥାରେ ଅବିର ଦେବାର ଦୃଶ୍ୟ ସେମିତି ଉଜ୍ଜୀବିତ

ହୋଇ ରହିଅଛି । ଆମ ଘର ସହିତ ସୁସମ୍ପର୍କ ରଖିଥିବା ଗୁଲୁରିଆ, ସୁଲୁରିଆ, ରାମ ଆଦିଙ୍କ ମୋ ପ୍ରତି ସ୍ନେହ, ଶ୍ରଦ୍ଧା କେବେ ଭୁଲିବାର ନୁହେଁ । ସେଇପରି କେରୁଆଳର ବିଶେଷ ବ୍ୟକ୍ତି ଶିକ୍ଷାବିତ୍ ବଂଶୀଧର ଭଳ, କୃଷିବିତ୍ କୈଳାସ ରାଉତ, କୁଶାସନ ଲେଙ୍କା, ଟିକମ, ରଘୁ, ଅନୁଜପ୍ରତିମ ସାହିତ୍ୟିକ ମୂରଲୀଧର ରାଉତଙ୍କ ସଂପର୍କ ଓ ସେମାନଙ୍କ ସହିତ ବିତେଇଥିବା ପ୍ରତ୍ୟେକ ମୁହୂର୍ତ୍ତ ମନେ ଅଛି ।

ମୋ ଉପର ପିଢ଼ିର ସେ ଅଞ୍ଚଳର ଅଧିକାଂଶ ବ୍ୟକ୍ତି ମୋ ବାପାଙ୍କର ଛାତ୍ରଥିଲେ । ବାପାଙ୍କ ପ୍ରତି ସେ ଅଞ୍ଚଳର ଅସମ୍ଭବ ଶ୍ରଦ୍ଧା ଓ ସମ୍ମାନ ଥିବା ହେତୁ ସେମାନେ ମୋ ପ୍ରତି ସ୍ନେହଶୀଳ ଥାଆନ୍ତି । ସେହିସବୁ ବ୍ୟକ୍ତିମାନଙ୍କ ମଧ୍ୟରେ ନହରା ଗ୍ରାମର ବିଶିଷ୍ଟ ବ୍ୟକ୍ତି ବୀର କିଶୋର ଦାସ, ପ୍ରଫୁଲ୍ଲ ଦାଶ, ଅମୂଲ୍ୟ ଦାଶ, କେଶାନା ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଦେବଲି ଗ୍ରାମନିବାସୀ ପ୍ରଫେସର ଗୟାଧର ପଣ୍ଡା ଜଣେ କୃତବିଦ୍ ଅନନ୍ୟ ମଣିଷ । ପିଲାଟିବେଳୁ ସେ ପିତାଙ୍କୁ ହରାଇଥିଲେ । ଟିକିଏ ଗର୍ବ ଓ ଦମ୍ଭ ତାଙ୍କୁ ସ୍ପର୍ଶ କରି ପାରି ନ ଥିଲା । ତାଙ୍କୁ ଆମେ ଦୁଇ ଭାଇ ଗୟାମାମୁ ବୋଲି ଡ଼ାକୁ । ମୁଁ ହାଇସ୍କୁଲରେ ପଢୁଥିଲାବେଳେ ରାଜଖୁଡ଼ୀ ଦେବିଲରେ ରହୁଥିଲେ । ମୁଁ ଖୁଡ଼ୀ ଘରକୁ ଗଲାବେଳେ ଗୟାମାମୁଙ୍କ ମାଆ ତଥା ରଙ୍ଗଆଈଙ୍କ ସ୍ନେହ ଓ ଶ୍ରଦ୍ଧା ପାଉଥିଲି । ସେଠାରେ ମୁଁ ବେଳେବେଳେ ଗୟାମାମୁଙ୍କୁ ଦେଖେ । ସେ ଥିଲେ ଏଇ ବିଧବା ଆଈଙ୍କ ଏକମାତ୍ର କଲେଜ ପଢୁଆ ସନ୍ତାନ । କଲେଜ ଶିକ୍ଷା ସମାପ୍ତ କରି ସେ ଦର୍ଶନ ଶାସ୍ତ୍ରରେ ଏମ୍ ଏ. ଅଧ୍ୟୟନ କରୁଥିଲେ । ଆମ ଅଞ୍ଚଳର ସେ ଥିଲେ ପ୍ରଥମ ଅଧ୍ୟାପକ । ତାଙ୍କୁ ନେଇ ଆମେ ଗୌରବ ଅନୁଭବ କରୁଥିଲୁ ।

ମୋ ସ୍ମୃତିରେ ମନେପଡ଼େ ଅଡ଼ମ୍ବରୁପାଟଣା ଗ୍ରାମ । ସେଇ ଗ୍ରାମ ଦେଇ ମୁଁ ଚଢ଼େଇପଦା ଗ୍ରାମ ଅତିକ୍ରମ କରି ମାଗୁରା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପାଠ ପଢୁଥିଲି । ଅଡ଼ମ୍ବରୁପାଟଣା ଗ୍ରାମ ଦେଇ ଗଲାବେଳେ ସ୍ମୃତିରେ ଆସିଯାଏ ମାଗୁରା ସ୍କୁଲର ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଆମ ପ୍ରିୟ ପ୍ରଧାନଶିକ୍ଷକ ଯୋଗୀସାରଙ୍କ ଘର । ଯୋଗୀସାରଙ୍କ ଘର ଆଗରେ ଥିବା ମନ୍ଦରଧର ମହାପୁରୁଷଙ୍କ ସମାଧିପୀଠ । ସେଇ ପୀଠକୁ ଯାଇ ଆମେ ଶିଶୁମାନେ ସାଧୁଙ୍କ ସମାଧିରେ ମଥା ରଖି କୃପାଭିକ୍ଷା କରୁଥିଲୁ ।

ଗାନ୍ଧିଶିକ୍ଷାଶ୍ରମରେ ପଢୁଥିଲାବେଳେ ଅଷ୍ଟମ ଶ୍ରେଣୀରେ ବୈରୀ ହାଇସ୍କୁଲରୁ ଆସି ପ୍ରଫୁଲ୍ଲ ସାହୁ ନାମକ ଯଶୋରାଜପୁରର ଜନୈକ ଛାତ୍ର ପାଠ ପଢୁଥିଲେ । ସେ ତୀକ୍ଷ୍ଣ ବୁଦ୍ଧି ସଂପନ୍ନ ଓ ଜଣେ ଧୀମାନ ଛାତ୍ର ଥିଲେ । ଆମେ ଦୁହେଁ ପ୍ରାୟ ଆମ ସ୍କୁଲଠାରୁ ଦଶ

କିଲୋମିଟର ଦୂରରେ ଅବସ୍ଥିତ ବୈରୀ ହାଇସ୍କୁଲରେ ରାଷ୍ଟ୍ରଭାଷା ପରୀକ୍ଷା ଦେଉଥିଲୁ । ରାଷ୍ଟ୍ରଭାଷା ପ୍ରାରମ୍ଭିକ, ପ୍ରବେଶ ଓ ପରିଚୟ ପରୀକ୍ଷା ବୈରୀକେନ୍ଦ୍ରରୁ ଦେଇ ଓ୍ୱାର୍ଦ୍ଧାରୁ ପ୍ରମାଣପତ୍ର ପାଇଥିଲୁ । ପରୀକ୍ଷା ପରେ ଆସି ବୈରୀରେ ଶ୍ରୀଯୁକ୍ତ ଉପେନ୍ଦ୍ର ମଉସାଙ୍କ ଦୋକାନରେ ଜଳଖିଆ ଖାଉଥିଲୁ । ମୁଁ ପ୍ରଫୁଲ୍ଲର ସାଙ୍ଗ ହୋଇଥିବା ହେତୁ ଉପେନ୍ଦ୍ର ମଉସା ଜଳଖିଆ ବାବଦ ପଇସାଟିଏ ମଧ୍ୟ ନେଇ ନ ଥିଲେ । ପରବର୍ତ୍ତୀ ସମୟରେ ପ୍ରଫୁଲ୍ଲ ରେଭେନ୍‌ସା ମହାବିଦ୍ୟାଳୟରୁ ପ୍ରାଣୀ ବିଜ୍ଞାନରେ ସ୍ନାତକ ଡ଼ିଗ୍ରୀ ହାସଲ କରି ଓଡ଼ିଶା ବନ୍ୟସେବା (OFS)ର ଜଣେ ଉଚ୍ଚ ପଦସ୍ଥ ଅଧିକାରୀ ଭାବେ କାର୍ଯ୍ୟ କରିଥିଲେ । ଚାକିରିର ଶେଷ କେତେ ବର୍ଷ ସେ ଭାରତୀୟ ବନ୍ୟସେବା (IFS) ଚାକିରୀକୁ ପଦୋନ୍ନତି ପାଇଥିଲେ ।

ସେ ସମୟରେ ଆମ ଗାଆଁ ନିକଟସ୍ଥ ହରିପୁର ଗ୍ରାମର ପ୍ରବୀଣ ଶିକ୍ଷକ ବଳରାମ ସାମଲ ବୈରୀ ହାଇସ୍କୁଲର ପ୍ରଧାନଶିକ୍ଷକ ଥିଲେ । ଛାତ୍ରାବସ୍ଥା ସମୟରେ ସେଇ ଗ୍ରାମର ମୋର ଶିକ୍ଷକ ଅନନ୍ତ ଚରଣ ରାଉତରାୟଙ୍କ ଘର । ଏଇ ଦୁଇଜଣ ଶିକ୍ଷାବିତ୍‌ଙ୍କର ମୋ ପ୍ରତି ନମନୀୟ ମନୋଭାବ ଥିଲା ।

ମୋର ଅବସର ପରବର୍ତ୍ତୀ ସମୟରେ ଆମ ପରିବାରର ଭଲମନ୍ଦ, ସୁଖଦୁଃଖରେ ସମଭାଗୀ ହୋଇ ଆମ ପରିବାର ସହିତ ସଂପର୍କ ରଖିଛନ୍ତି ପ୍ରଫେସର ଭେଦୁଲା ଭୀମ ଶଙ୍କର ଶାସ୍ତ୍ରୀ ଓ ଅଧ୍ୟାପକ ପ୍ରଫେସର ଗୌରୀ ଶଙ୍କର ମହାପାତ୍ର । ପ୍ରଫେସର ଶାସ୍ତ୍ରୀ ମୋ ପ୍ରତି ନିତାନ୍ତ ସଦୟ । ସେ ଉତ୍କଳ ବିଶ୍ୱବିଦ୍ୟାଦଳୟର ଜନଶିକ୍ଷା ବିଭାଗର ନିର୍ଦ୍ଦେଶକ ଥିଲାବେଳେ ମୋର ବ୍ୟକ୍ତିଗତ ଅସୁବିଧା ସମୟରେ ଯେପରି ସହାୟତା କରିଥିଲେ ତାହା ଆଜି ପର୍ଯ୍ୟନ୍ତ ଭୁଲି ପାରିନାହିଁ ।

ସେହିପରି ମୋର ଶିକ୍ଷକ ପ୍ରଫେସର ଗୌରୀଶଙ୍କର ମହାପାତ୍ର ମୁଁ ରାଜ୍ୟ ଶିକ୍ଷା ଗବେଷଣା ପରିଷଦରେ କାର୍ଯ୍ୟ କରୁଥିଲାବେଳେ ମୋ ପାଖକୁ ଆସି ମୋତେ ସରକାରୀ କାର୍ଯ୍ୟରେ କେତେକ କ୍ଷେତ୍ରରେ ସତର୍କତା ଅବଲମ୍ବନ କରିବାକୁ ପରାମର୍ଶ ଦେଉଥିଲେ । ସେଥିପ୍ରତି ଯଦି ଦୃଷ୍ଟି ଦେଇ ନଥାନ୍ତି, ତେବେ ଜଣୈକ ନିର୍ଦ୍ଦେଶକଙ୍କ ସମୟରେ ସରକାରୀ କାର୍ଯ୍ୟ ସଂପାଦନାରେ ମୁଁ ଦୋଷୀ ବୋଲି ସାବସ୍ତ୍ୟ ହୋଇଥାନ୍ତି । ମାତ୍ର ତାଙ୍କର ଓ ପ୍ରଫେସର ପ୍ରଫୁଲ ଚନ୍ଦ୍ର ମହାପାତ୍ରଙ୍କ ପରାମର୍ଶ ମୋତେ ଅନେକ ବିପଦରୁ ରକ୍ଷା କରିଅଛି ।

ମୋର ବ୍ୟକ୍ତିଗତ ଜୀବନରେ ମୁଁ ମୋର ଜଣେ ପରମ ହିତୈଷୀ ଗୁରୁଜନ ତଥା ପୂର୍ବତନ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଶିବରାମ ପଟ୍ଟନାୟକଙ୍କ ପରାମର୍ଶରୁ ବଞ୍ଚିତ

ହୋଇଅଛି । ସ୍ୱର୍ଗତଃ ପଟ୍ଟନାୟକଙ୍କ ଏପ୍ରିଲ ୨୪, ୨୦୧୫ରେ ତାଙ୍କ ବାସଭବନ ଭୁବନେଶ୍ୱରସ୍ଥ କାନନ ବିହାରରେ ଦେହାବସାନ ହୋଇଅଛି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଆମେ ସଂଶ୍ଲିଷ୍ଟ ଥିବା ଭୁବନେଶ୍ୱର ମହିମା ଆଶ୍ରମ ଓ ମହିମା ଜ୍ଞାନ ମନ୍ଦିର ସହିତ ଉପଦେଷ୍ଟା ଭାବେ ସଂପୃକ୍ତ ଥିଲେ । ସ୍ୱର୍ଗତଃ ପଟ୍ଟନାୟକଙ୍କ ବିୟୋଗ ଆମ ସମସ୍ତଙ୍କ ପାଇଁ ଅପୂରଣୀୟ କ୍ଷତି ।

ସେହିପରି ମୁଁ କୃତଜ୍ଞ ମୋର ଶିକ୍ଷକପ୍ରତିମ ପ୍ରଫେସର କାଳିକୁମାର ଦାସଙ୍କ ପାଖରେ । ମୋ ପ୍ରତି ତାଙ୍କର ଅତୁଟ ସ୍ନେହ ଓ ଶ୍ରଦ୍ଧା ଭୁଲିବାର ନୁହେଁ ।

ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ ତଥା ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦର ଯେଉଁ ବନ୍ଧୁମାନେ ମୋତେ ଅଯାଚିତ ଭାବେ ସାହାଯ୍ୟ କରିଛନ୍ତି, ସେମାନେ ଆପେ ଆପେ ମୋ ସ୍ମୃତିରେ ଆସିଯାନ୍ତି । ସେମାନେ ହେଲେ, ସର୍ବଶ୍ରୀ ଯମେଶ୍ୱର ଦାସ, ବିନୋଦ ବିହାରୀ ନାୟକ, ଯତୀନ୍ଦ୍ର ପ୍ରଧାନ, ସୁଶାନ୍ତ ମହାପାତ୍ର, ଶ୍ରୀମତୀ ଶୈଳଶ୍ରୀ ବେହେରା, କୁଞ୍ଜ, ଗଗନ, ବିନୋଦ ବିହାରୀ ନାୟକ(ଜୁନିୟର), ଚିନୁ, କଳାଭୂଷଣ ପ୍ରଶାନ୍ତ କର, ବସନ୍ତ ପ୍ରମୁଖ ଅନେକ ବ୍ୟକ୍ତି ବିଶେଷ ।

ନନ୍ଦନକାନନ ହାଇସ୍କୁଲରର ଭୂତପୂର୍ବ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ସହଦେବ ପଣ୍ଡାଙ୍କ ସହିତ ଏବେ ମଧ୍ୟ ଆମ ପରିବାରର ସଂପର୍କ ରହିଛି । ଆମ ପରିବାରର ଭଲମନ୍ଦ ଓ ବିପଦଆପଦ ସମୟରେ ସେ ଆସି ସହାୟତାର ହାତ ବଢ଼ାନ୍ତି । ତାଙ୍କଭଳି ଜଣେ ସରଳ, ନିରଳସ ଅନୁଜ ସଦୃଶ ବନ୍ଧୁ ଆଜିକାର ସମାଜରେ ଖୁବ୍ କମ୍ ଦେଖାଯାନ୍ତି ।

ଏଇ ସ୍ମୃତି ଫର୍ଦ୍ଦରେ ନୂତନ ବର୍ଷ ୨୦୧୭ରେ ଯୋଡ଼ି ହୋଇଯାଇଛନ୍ତି କବି ବସନ୍ତ ମାଝି । ଶ୍ରୀଯୁକ୍ତ ମାଝିଙ୍କ ପ୍ରଚେଷ୍ଟାରୁ ଆତ୍ମପ୍ରକାଶ ଲାଭ କରିଛି "ଶିଶୁ ସାହିତ୍ୟିକା-ତଥା ମୋର ଧର୍ମପତ୍ନୀ ଜ୍ୟୋତ୍ସ୍ନାରାଣୀ ବ୍ରହ୍ମାଙ୍କ ରଚିତ "ଫୁଲେ ଫୁଲେ ପ୍ରଜାପତି" ଶିଶୁ କବିତା ପୁସ୍ତକ ।

**ଶେଷଫର୍ଦ୍ଦର ଶେଷକଥା : ଏଇଠି ଶେଷ ହେଉ**

ଏକଦା ବିଶ୍ୱବିଖ୍ୟାତ ଐତିହାସିକ କାରର୍ଲାଇଲ୍ (Carlyle (1795-1881) କହିଥିଲେ, The history of what man has accomplished this world is at bottom the history of greatmen who have worked here". ବଡ଼ ମଣିଷଙ୍କ ଅବଦାନ ହିଁ ସେଇ ସମୟର ଇତିହାସ । ମାତ୍ର ଏଇ ମତ ଗ୍ରହଣୀୟ ନୁହେଁ

ବୋଲି ପରବର୍ତ୍ତୀ ସମୟରେ ସମାଜବିତ୍ ଓ ଜନନାୟକଗଣ ମତପେଷଣ କରିଛନ୍ତି । ସେମାନେ ସାଧାରଣତଃ କହନ୍ତି ପ୍ରତ୍ୟେକ ବ୍ୟକ୍ତିର ସଫଳତା ପଛରେ ଅଗଣିତ ଜନସାଧାରଣଙ୍କର ଅବଦାନ ଅଛି । ସେହି ଅବଦାନକୁ ଇତିହାସ ଅଣଦେଖା କରିବାକୁ ଚାହେଁ ନାହିଁ ।"

'ମୋ ସ୍ମୃତିର ଆଲେଖ୍ୟ' କାହିଁକି ଲେଖାଯିବ ବୋଲି ମୁଁ ଅନେକ ବର୍ଷ ହେଲା ନିଜ ମନକୁ ନିଜେ ପ୍ରଶ୍ନ କରିଛି । ଏ ଦେଶ ଓ ରାଜ୍ୟର ମୁଁ ଏପରି ଏକ ମଣିଷ ନୁହେଁ, ଯାହାର ଆତ୍ମଜୀବନୀ ଅନ୍ୟମାନଙ୍କର ପଠନଯୋଗ୍ୟ ହେବ । ଅନେକ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇ ଜୀବନର ପାହାଚ ଉପରେ ପାହାଚ ଚଢ଼ି ମୁଁ ଆଗେଇ ଚାଲିଛି । ଯେତେବେଳେ ବିପଦର ସମ୍ମୁଖୀନ ହୋଇ ମୁଁ ମାନସିକ ସ୍ତରରେ ଭାରାକ୍ରାନ୍ତ ଓ ବିବ୍ରତ ହୋଇଛି, ଅନେକ ଆଶା ଓ ଆଶ୍ୱାସନା ହଜି ଯାଇଛି, ସେତେବେଳେ ମୋ ଅନ୍ତଃସ୍କରଣରୁ କେଉଁ ଅଦୃଶ୍ୟ ଶକ୍ତି ମୋତେ ବାର୍ତ୍ତାଦେଇ କହନ୍ତି, "ଯା'ର ପଛରେ ମୁଁ ଅଛି, ତା'ର ପୁଣି ଚିନ୍ତା କରିବାର କ'ଣ ଅଛି ?" ତଥାପି ଚିନ୍ତା ଓ ଅପ୍ରତ୍ୟାଶିତ ଆଶଙ୍କା ମୋତେ ଛାଡ଼ିନି । ରକ୍ତ ମାଂସଧାରୀ ମଣିଷ ପକ୍ଷରେ ଏସବୁ ଛାଡ଼ିବା ସହଜ ନୁହେଁ । ଏଇ ଆତ୍ମ ଜୀବନୀକୁ କେହି ଜଣେ ତ ପଢ଼ିବେ । ପ୍ରତ୍ୟେକ ମଣିଷର ଜୀବନ ସଂଗ୍ରାମ କିପରି ମଣିଷର ସଂଗ୍ରାମ ସହିତ ଓତପ୍ରୋତ ଭାବରେ ଜଡ଼ିତ ତାହା ତ ଅନୁଭବ କରିବେ ।

ମୋ ଜୀବନରେ ମୁଁ ଅନେକ କାଳଜୟୀ ବ୍ୟକ୍ତିବିଶେଷଙ୍କ ଆତ୍ମଜୀବନୀ ପଢ଼ିଛି । ମହାତ୍ମାଗାନ୍ଧୀ ଏକମାତ୍ର ବ୍ୟକ୍ତି ଯାହାଙ୍କ ଆତ୍ମଜୀବନୀ ଜୀବନର ଏକ ଖୋଲାପୁସ୍ତକ, ଯେଉଁଥିରେ ସେ ନିଜର ଦୋଷ ଦୁର୍ବଳତା ଉଲ୍ଲେଖ କରିଛନ୍ତି । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଆତ୍ମଜୀବନୀ "ଅର୍ଦ୍ଧଶତାବ୍ଦୀର ଇତିହାସ ଓ ତହିଁରେ ମୋ ସ୍ଥାନ"ର ପ୍ରତ୍ୟେକ ପକ୍ତି ମୋର ଅନ୍ତର୍ଦୃଷ୍ଟି ବଢ଼ାଇଛି । ସ୍ୱର୍ଗତଃ ଭାରତ ଚନ୍ଦ୍ର ନାୟକଙ୍କ ଆତ୍ମଜୀବନୀ "ମୋର ପୂର୍ବ ସ୍ମୃତିକଥା" ରେ ଜଣେ ମାଜିଷ୍ଟ୍ରେଟ ଭାବେ ସେ କିପରି ଜନଜୀବନ ଓ ପାରିବାରିକ ଜୀବନ ସହିତ ସମନ୍ୱୟ ରକ୍ଷା କରି ସତ୍ୟ ନ୍ୟାୟ ପଥରେ ଆଗେଇଥିଲେ ତାହା ବର୍ଣ୍ଣନା କରିଛନ୍ତି । ସେଇପରି ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ତାଙ୍କ ଆତ୍ମଜୀବନୀ "ସ୍ମୃତି ଓ ଅନୁଭୂତି"ରେ ଆମ ଦେଶର ଗଣତାନ୍ତ୍ରିକ ବିଧିବ୍ୟବସ୍ଥାରେ କିପରି କାର୍ଯ୍ୟ କରୁଥିଲେ ଓ ପ୍ରଶାସନକୁ ଜନାଭିମୁଖୀ କରିଥିଲେ ତାହା ବର୍ଣ୍ଣନା କରିଛନ୍ତି । ଏସବୁ ଆତ୍ମଜୀବନୀ ଯେତେକି ଶିକ୍ଷଣୀୟ, ସେତିକି ଭବିଷ୍ୟତ ବଂଶଧରଙ୍କ ଚରିତ୍ର ଗଠନର ସହାୟକ ମଧ୍ୟ ।

ମୋର ସୌଭାଗ୍ୟ ଯେ ମୁଁ ପ୍ରତ୍ୟକ୍ଷ ଭାବେ ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କ ସଂସ୍ପର୍ଶରେ ଆସିଥିଲି । ସେ ମୋ ହାତରେ ତାଙ୍କ ଲିଖିତ ଆତ୍ମଜୀବନୀ "ଜୀବନ ତରଙ୍ଗ" ଦେଇଥିଲେ । ମୁଁ ଯେତେଥର ଜୀବନ ତରଙ୍ଗ ପଢ଼ିଛି, ପ୍ରତ୍ୟେକଥର ଜଣେ ଶିକ୍ଷାବିତ୍‌ଙ୍କ ଆଶା, ଆକାଂକ୍ଷା ଓ କାର୍ଯ୍ୟଶୈଳୀ ଅନୁଧ୍ୟାନ କରିଛି । ସେହିପରି ଶିକ୍ଷାବିତ୍ ପ୍ରଫେସର ଶ୍ରୀ ରାମଚନ୍ଦ୍ର ଦାଶଙ୍କ "ମୋ ଅକୁହା କାହାଣୀ" ପଢ଼ି ତାଙ୍କ ପାଇଁ ସ୍ୱତପ୍ରବୃତ୍ତ ଭାବେ ପାଟିରୁ 'ଆହା' ଶବ୍ଦଟିଏ ବାହାରିଛି ।

ମୋ ଆତ୍ମଜୀବନୀ 'ମୋ ସ୍ମୃତିର ଆଲେଖ୍ୟ' ଆଇନାରେ ମୁଁ ନିଜେ ଯେତେବେଳେ ନିଜକୁ ଦେଖିଛି, ମୋ ଆଖକୁ ଆସିଛି ଏମିତି କିଛି ଘଟଣାବଳୀ ଯାହାର ସ୍ଥିତି ଓ ବିଲୟକୁ ମୁଁ ସମଦୃଷ୍ଟିରେ ଦେଖିଛି । ଯେମିତି କୌଣସି ଘଟଣା ଘଟିନାହିଁ । ଏପରି ସ୍ଥିତିରେ ଏକ ଆତ୍ମଜୀବନୀ ଲେଖିବାର କ'ଣ ଆବଶ୍ୟକତା ରହିଅଛି - ଏ ପ୍ରଶ୍ନ ଅନେକ ଥର ମୋ ମନକୁ ଆସିଅଛି ।

ପରବର୍ତ୍ତୀ ସମୟରେ ଲକ୍ଷ୍ୟ କରିଛି ଆମ ରାଜ୍ୟର ଅନେକ ମାନ୍ୟଗଣ୍ୟ ବ୍ୟକ୍ତିବିଶେଷ ମୋ ଚିନ୍ତା ଓ ଚେତନାକୁ ଭଲ ପାଆନ୍ତି । ଅନେକ ଅନୁଷ୍ଠାନ ସ୍ୱତପ୍ରବୃତ୍ତଭାବେ ମୋ କାର୍ଯ୍ୟଧାରାକୁ ସ୍ୱୀକୃତି ଦିଅନ୍ତି । ରାଜ୍ୟର "ପାଠ୍ୟପୁସ୍ତକ ଲେଖକ ଓ ସ୍ତମ୍ଭକାର" ହିସାବରେ ମୋର କିଛିଟା ସ୍ଥିତି ଅଛି । ମୋର ବହୁ ପୁରାତନ ଛାତ୍ରମଧ୍ୟ ମୋତେ ଗୁରୁଦିବସର ବାର୍ତ୍ତା ପଠାନ୍ତି । 'ଗୁରୁଣାମ୍ ଗୁରୁ' କହି ଆତ୍ମଶାନ୍ତି ଲାଭ କରନ୍ତି । ସେମାନେ ମଧ୍ୟ ମୋ ଜୀବନର ଘଟଣାବଳୀ ଜାଣିବାକୁ ଆଗ୍ରହ ପ୍ରକାଶ କରନ୍ତି ।

ଏଇସବୁ କଥାଭାବି "ମୋ ସ୍ମୃତିର ଆଲେଖ୍ୟ" ଲେଖିବାକୁ ମନସ୍ଥ କଲି । ଲେଖିଲାବେଳେ ମୋ ମାନସିକ ସ୍ତରରେ କାହାପ୍ରତି ଟିକିଏ ହେଲେ ଅସୂୟାଭାବ ନ ଥିଲା । ଯେଉଁ କେତେକ ଘଟଣାବଳୀ ସ୍ୱତପ୍ରବୃତ୍ତ ଭାବେ ଘଟିଯାଇଛି ତା'ର ଅବତାରଣା କରିଛି । ସରକାରୀ ଚାକିରିର ଶେଷ ଭାଗରେ ଘଟିଥିବା କେତେକ ଘଟଣାବଳୀ ଉଲ୍ଲେଖ କରିବାରେ କୌଣସି ଉଦ୍ଦେଶ୍ୟ ନ ଥିଲା, ମାତ୍ର ସେ ସମୟରେ ସତ୍ ସାହସର ସହିତ ମୁଁ ଯେମିତି ପରସ୍ଥିତିର ସମ୍ମୁଖୀନ ହୋଇଥିଲି ଏବଂ ଚାକିରିକାଳୀନ ଦୁର୍ଯ୍ୟୋଗକୁ ମୁକାବିଲା କରି ରକ୍ଷା ପାଇଥିଲି, ତାହା ପାଠକମାନଙ୍କୁ ଜଣାଇ ଟିକିଏ ଆଶ୍ୱସ୍ତି ଲାଭ କରିଛି ।

ମୋ ପଛରେ ମୋ ବାପା ଓ ବୋଉଙ୍କ ନିରନ୍ତର ଆଶୀର୍ବାଦ ଅଛି । ବାପା କୁହନ୍ତି, "ସେ ଯୋଗ୍ୟ, ତା'ର ପିଲାମାନଙ୍କୁ କ'ଣ ଯୋଗ୍ୟ କରିପାରିବନି ?" ବୋଉ

କହେ, ସେ ଧର୍ମରେ ଚାଲିଛି, ସେଇ ଧର୍ମ ହିଁ ତାକୁ ରକ୍ଷା କରିବ ।" ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀଙ୍କ ଆଶୀର୍ବାଦ ଆମଘର ଓ ପରିବାରର ସମସ୍ତ ସଦସ୍ୟଙ୍କ ପ୍ରତି ଅଛି । ତାହାହିଁ ଆଜି ପର୍ଯ୍ୟନ୍ତ ଆମର ରକ୍ଷାକବଚ ହୋଇଅଛି ।

ପୁନଶ୍ଚ ଆତ୍ମଜୀବନୀ ହେଉଛି ଏପରି ଏକ ଲେଖା ଯାହାର ଶେଷ ନାହିଁ । କାରଣ ଲେଖକ ହିଁ ବଞ୍ଚିଥିବା ଅବସ୍ଥାରେ ଲେଖିଥାନ୍ତି । ତାଙ୍କ ଜୀବନକାଳର ଆଉ କିଛି ସମୟ ବାକି ରହିଥାଏ । ସେ ସମୟରେ କିଛି ଘଟଣା ବା ଦୁର୍ଘଟଣା ଘଟିପାରେ । ତଥାପି ଜଣେ ବ୍ୟକ୍ତିଙ୍କ ପକ୍ଷରେ ଆତ୍ମଜୀବନୀ ପଠନର ମୂଲ୍ୟ ଆଗାମୀ ବଂଶଧରମାନଙ୍କ ପାଇଁ ଥାଏ । କାରଣ ଆତ୍ମଜୀବନୀ ପଠନର ଅନୁଭୂତି ସେମାନଙ୍କ ଅନୁଭୂତିକୁ ମାର୍ଜିତ ଓ ପରିପୁଷ୍ଟ କରିଥାଏ । ଅନ୍ୟକୁ ମୂଲ୍ୟାୟନ କରିବାକୁ ସୁଯୋଗ ଦେଇଥାଏ ।

ଏକଥା ସତ ଯେ ଦିନେ ନା ଦିନେ ଜଣେ ବ୍ୟକ୍ତିର ପଞ୍ଚଭୂତ ଶରୀର ମାଟିରେ ମିଶିଯିବ, ମାତ୍ର ତା'ର ଚିନ୍ତା ଓ ଚେତନାର ବିଲୟ ଅତି ସହଜରେ ଘଟିବ ନାହିଁ । କେଉଁଠି ନା କେଉଁଠି କେଉଁ ରୂପରେ ସାଇତା ହୋଇ ରହିଯିବ ।

ମୋର ଚିନ୍ତା ଓ ଚେତନା ମୋଠାରେ ଶେଷ ନ ହେଉ । "ମୋ ସ୍ମୃତିର ଆଲେଖ୍ୟ" ଏଇଠି ଶେଷ ହେଉ । ଜୀବନର ଶେଷ ସ୍ମୃତି ଆଗାମୀ ପ୍ରତୀକ୍ଷମାଣ ବର୍ଷ, ମାସ, ଦିନ, ଦଣ୍ଡ ପାଇଁ ସେମତି ସ୍ମୃତି ହୋଇ ରହିଯାଉ ।



